ଜାତୀୟ ଜୀବନ ଚରିତମାଳା

# ରବୀନ୍ଦ୍ରନାଥ ଠାକୁର

କୃଷ୍ଣ କୃପାଳିନୀ

ଅନୁବାଦ

ବସନ୍ତ କୁମାର ପଣ୍ଡା



ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

ପ୍ରତ୍ୟେକ ଅଧ୍ୟାୟର ଆରମ୍ଭରେ ଥିବା ଉଦ୍ଧୃତିମାନ ରବୀନ୍ଦ୍ର ରଚନାବଳୀରୁ ନିଆଯାଇଛି ।

ISBN 81-237-2744-5

1999 (ଶକାବ୍ଦ 1921)


Tagore: A Life *(Oriya)*

**ଟ. 60.00**

ନିର୍ଦ୍ଦେଶକ, ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ, ଏ-5, ଗ୍ରୀନ୍ ପାର୍କ୍,
ନୂଆଦିଲ୍ଲୀ-110 016 କର୍ତ୍ତୃକ ପ୍ରକାଶିତ ।

# ସୂଚୀପତ୍ର

# ବଂଶାନୁଚରିତ

*ଶତାବ୍ଦୀ ଶତାବ୍ଦୀ ତବ ଏକ ପରେ ଏକ*
*କ୍ଷୁଦ୍ର ଏକ ବନ ପୁଷ୍ପେ ଆଣଇ ମହକ ।*

ଭାରତୀୟ ପରଂପରାରେ ଇତିହାସ ଓ କିମ୍ବଦନ୍ତୀ, ବାସ୍ତବତା ଓ କଳ୍ପନା ଏପରି ଓତଃପ୍ରୋତ ଭାବେ ଜଡ଼ିତ ହୋଇ ରହିଛି ଯେ କେଉଁଠି ଗୋଟିକର ଶେଷ ଓ ଅନ୍ୟଟିର ଆରମ୍ଭ କହିବା ସର୍ବଦା ସହଜ ନୁହେଁ । ତେଣୁ ଏପରିକି ଠାକୁର ପରିବାର ଭଳି ଏକ ପ୍ରତିଷ୍ଠିତ ଘରର ବଂଶାନୁଚରିତ ଖୋଜିବାକୁ ଗଲାବେଳେ ଆମେ ଲୋକପରଂପରା ଓ ପାରିବାରିକ କାହାଣୀର କୁହେଳିକା ମଧ୍ୟରେ ନିଜକୁ ହଜାଇ ଦେଉ । ଆଉ ତା'ରି ଭିତରୁ ସତର୍କତାର ସହିତ ଆମକୁ ପଛକୁ ଫେରିବାକୁ ହୋଇଥାଏ ।

ଦୀର୍ଘଦିନର ରାଜନୈତିକ ଅସ୍ଥିରତା ଓ ଧାର୍ମିକ ତଥା ସାମାଜିକ ବିଶୃଙ୍ଖଳା ପରେ ଅଷ୍ଟମ ଶତାବ୍ଦୀର ମଧ୍ୟଭାଗକୁ ବଙ୍ଗପ୍ରଦେଶ ଏକ ଶକ୍ତିଶାଳୀ ହିନ୍ଦୁରାଜ୍ୟ ଭାବରେ ପ୍ରତିଷ୍ଠା ଲାଭ କରିଥିଲା। ଏହାହିଁ ପାଠ୍ୟ ପୁସ୍ତକ ସମର୍ଥିତ ଇତିହାସ । ବୌଦ୍ଧ ଅରାଜକତାରେ ଭ୍ରଷ୍ଟ ହିନ୍ଦୁ ସମାଜର ଶୁଦ୍ଧତାକୁ ଫେରାଇ ଆଣିବା ପାଇଁ ବ୍ରାହ୍ମଣ୍ୟ ସଂସ୍କୃତିର ପ୍ରଧାନ ପୀଠ ପଶ୍ଚିମ କନୌଜରୁ ପାଞ୍ଚଜଣ ବ୍ରାହ୍ମଣଙ୍କୁ ଅଣାଯାଇଥିଲା । ଏଯାବତ୍ ଲୋକ ସ୍ମୃତିରେ ରହିଥିବା ସେହି ପାଞ୍ଚବ୍ରାହ୍ମଣଙ୍କ ଉତ୍ତର ପୁରୁଷଗଣହିଁ ସେହିକାଳରୁ ପ୍ରଚଳିତ ହୋଇ ଆସୁଥିବା ବଙ୍ଗଦେଶର ଅଭିଜାତ ଜାତିଗତ ପରଂପରା ପ୍ରଚଳନ କରିଥିଲେ । ବର୍ତ୍ତମାନ ବଙ୍ଗପ୍ରଦେଶ ଯେଉଁ ଅବସ୍ଥାରେ ଅଛି ତା'କୁ ସେଥିପାଇଁ ଯେ କେତେ ବିଚିତ୍ର ବଂଶାନୁକ୍ରମିକ ପରୀକ୍ଷା ଦେଇ ଗତି କରିବାକୁ ପଡ଼ିଛି ସେ ବିଷୟରେ ଐତିହାସିକମାନେ ପ୍ରାୟତଃ ନିରବ । କ୍ରମଶଃ ଯୋଗ୍ୟତର ଦାୟାଦ ସୃଷ୍ଟିକରିବାର ପ୍ରୟାସ ସେହି କ୍ରମପରିଣାମର ମୂଳଥିଲା । ସେଇ ପାଞ୍ଚବ୍ରାହ୍ମଣଙ୍କ ମଧ୍ୟରୁ ଜଣଙ୍କ ନାଁ ଥିଲା ଦକ୍ଷ । ସେ ହିଁ ଠାକୁର ବଂଶର ଆଦିପୁରୁଷ ଭାବରେ ଖ୍ୟାତ ।

ଇତିହାସ ପରିହାସରେ ପୂର୍ଣ୍ଣ । ଦ୍ୱାଦଶ ଶତାବ୍ଦୀର ଶେଷଭାଗରେ ବଙ୍ଗପ୍ରଦେଶକୁ ପଶ୍ଚିମ ପଟରୁ ତୁର୍କ ଆଫଗାନ୍‌ମାନେ ପ୍ରବଳ ଭାବରେ ପ୍ରବେଶ କରିଥିଲେ ଓ କାଳକ୍ରମେ ଏହା ଦିଲ୍ଲୀର ମୁସଲମାନ ସମ୍ରାଟଙ୍କ ଅଧୀନରେ ଗୋଟିଏ ରାଜ୍ୟଭାବରେ ଶାସିତ ହୋଇଆସିଲା । ବହୁତ ହିନ୍ଦୁଙ୍କୁ ଧର୍ମାନ୍ତର କରି ଇସଲାମ୍ କରାଗଲା । କେତେକ ବଳାତ୍କାର ପୂର୍ବକ ଓ ଆଉ କେତେକ ନୂଆ ମାଲିକମାନଙ୍କର କ୍ଷମତାର ଅଂଶୀଦାର ହେବାର ଲୋଭରେ ଧର୍ମାନ୍ତରିତ ହୋଇଥିଲେ । ଜଣେ ଦୁଃସାହସୀ ବ୍ରାହ୍ମଣ ଯୁବକ ମୁସଲମାନ କନ୍ୟାକୁ ପ୍ରେମ କରୁଥିଲେ । ଗୋଟିଏ ଟେକାରେ ଦୁଇଟି

ପଞ୍ଚାମାରିଲା ପରି ସୌଭାଗ୍ୟ ସେ ଅର୍ଜନ କଲେ । ସ୍ୱେଚ୍ଛାକୃତ ଭାବରେ ନୂତନଧର୍ମ ଗ୍ରହଣ କରିବା ଫଳରେ ସେ ଇପ୍‌ସିତା କନ୍ୟାଟିକୁ ପାଇଲେ ଓ ହୋଇପାରିଲେ ଜଣେ ପ୍ରଭାବଶାଳୀ କ୍ଷମତାଧର ବ୍ୟକ୍ତି- ଦକ୍ଷିଣ ବଙ୍ଗରେ ଜେସୋରର୍ ମୁସଲମାନ ରାଜ୍ୟପାଳଙ୍କର ଦେବାନ୍ । ତାଙ୍କର ନୂଆ ନାଁ ହେଲା ପୀର ଅଲ୍ଲି ଖାଁ । ଦୁଇଜଣ ବିଶ୍ୱସ୍ତ କର୍ମଚାରୀ ତାଙ୍କର ଥିଲେ, ବ୍ରାହ୍ମଣ ଦୁଇ ଭାଇ- କାମଦେବ ଓ ଜୟଦେବ । ଇତିହାସରେ ଅଲିଖିତ ଅନେକ କାଳାନ୍ତର ଓ ଜନ୍ମାନ୍ତର ପରେ ଏମାନେ ହିଁ ସେଇ କିମ୍ବଦନ୍ତୀ-ପୁରୁଷଦକ୍ଷଙ୍କର ପ୍ରତ୍ୟକ୍ଷ ବଂଶଧର ଥିଲେ ।

ଏପରି କଥାଟିଏ ଅଛି, ରମଜାନ୍‌ର ଉପବାସ ଦିନରେ ପୀର ଅଲ୍ଲି ଖାଁଙ୍କୁ ଲେମ୍ବୁଟିଏ ଶୁଂଘୁଥିବାର ଦେଖି କାମଦେବ ଥଟ୍ଟା କରି କହିଲେ, 'ଆମ ଧର୍ମାନୁଶାସନ ଅନୁଯାୟୀ ଆଘ୍ରାଣ ଅର୍ଦ୍ଧଭୋଜନ ସଦୃଶ । ତେଣୁ ଆପଣ ଉପବାସ ଭଙ୍ଗ କରିଛନ୍ତି ।' ପୀର ଅଲ୍ଲି ଖାଁ ସେଠି କିଛି କହିଲେ ନାହିଁ । କିନ୍ତୁ ହିନ୍ଦୁ ଘରେ ଜନ୍ମହୋଇଥିବାରୁ କଥାଟା ତାଙ୍କ ମନକୁ ବିଚଳିତ କରୁଥାଏ । କିଛିଦିନ ଉତ୍ତାରେ ରାଜ୍ୟପାଳଙ୍କ ପ୍ରାସାଦରେ ଏକ ସଂଗୀତ ଆସରକୁ ସେ ଅନ୍ୟାନ୍ୟ ହିନ୍ଦୁମାନଙ୍କ ସହିତ ଏଇ ଦୁଇ ବ୍ରାହ୍ମଣ ଭାଇଙ୍କୁ ନିମନ୍ତ୍ରଣ କଲେ । ଏଇ ଆସରରେ ଯେଉଁ ସଭାଘରେ ଶ୍ରୋତାମାନେ ସଂଗୀତ ଉପଭୋଗ କରୁଥିଲେ ତାର ପାର୍ଶ୍ୱବର୍ତ୍ତୀ ଅନ୍ୟ ଏକ ଘରେ ଗୋମାଂସ ସମେତ ବହୁମୂଲ୍ୟ ସୁସ୍ୱାଦୁ ମୁସଲମାନ ଖାଦ୍ୟ ପରିବେଷଣ ପାଇଁ ରଖାଯାଇଥିଲା । ସଂଗୀତ ପ୍ରେକ୍ଷାଳୟ ଭିତରକୁ ସେହି ଖାଦ୍ୟର ବାସ୍ନା ପ୍ରବେଶ କରୁଥିବାରୁ ଶ୍ରୋତାମାନେ ଅତିଷ୍ଠ ହୋଇଉଠିଥିଲେ । ପୀର ଅଲ୍ଲି ଖାଁ ସ୍ମିତ ହସି ମନ୍ତବ୍ୟ ଦେଲେ, 'ତୁମର ଧର୍ମନୀତି ଅନୁସାରେ ଯଦି ଆଘ୍ରାଣ ଅର୍ଦ୍ଧଭୋଜନ, ତେବେ ତୁମେ ସମସ୍ତେ ଅସ୍ପୃଶ୍ୟ ଖାଦ୍ୟ ଚାଖି ସାରିଛ ଓ ନିଜର ଜାତି ହରାଇଛ ।' ହଠାତ୍ ଭୟ ଖେଳିଗଲା । ହିନ୍ଦୁମାନେ ନାକ ବନ୍ଦ କରି ସେଠାରୁ ପଳାଇଲେ । କିନ୍ତୁ ଏ ଘଟଣା ସମସ୍ତଙ୍କ ମନରେ ଦାଗ ରଖିଦେଲା । ସେଇଦିନ ଠାରୁ ଠାକୁର ପରିବାର ଜାତିପ୍ରଥାର ଶ୍ରେଣୀ ବିଭାଜନରେ ନିମ୍ନକୁ ଖସିଆସିଥିଲେ ଓ ସେମାନଙ୍କୁ ଉପହାସ ଛଳରେ ପୀରାଲ୍ଲି ବ୍ରାହ୍ମଣ ବୋଲି କୁହାଗଲା ।

ଜାତିଗତ ଶୁଦ୍ଧତା ହରାଇଲା ପରେ ପରିବାରଟି ପାଇଁ ସେ ସମାଜରେ ଆଉ ସ୍ଥାନ ନଥିଲା । ଏହି ସମାଜରେ ବସବାସ କରିବା ଏମାନଙ୍କ ପାଇଁ କଷ୍ଟସାଧ ହୋଇଉଠିଲା । ଯେତେବେଳେ ଏହି ପରିବାରର କନ୍ୟାମାନଙ୍କ ପାଇଁ ଉପଯୁକ୍ତ ବର ଖୋଜିବାକୁ ପଡ଼ିଲା ସେତେବେଳେ ଏଇ ସମସ୍ୟା ଆହୁରି ଘନୀଭୂତ ହୋଇଉଠିଲା । ତେଣୁ ସେଇ ପରିବାରର ଲୋକେ ନିଜର ପୈତୃକ ଗୃହ ଛାଡ଼ି ଉଦ୍‌ବାସ୍ତୁ ହୋଇ ସ୍ଥାନକୁ ସ୍ଥାନ ବୁଲିଲେ । ନିଜ ନିଜର ଭାଗ୍ୟ ଓ କନ୍ୟା ପାଇଁ ବର ଖୋଜୁଥିଲେ । ଯିଏ ଏଇ ପରିବାର କନ୍ୟାକୁ ଗ୍ରହଣ କରିବ ସିଏ ନିଶ୍ଚୟ ସାହସୀ ବ୍ରାହ୍ମଣ । ଏହିପରି ଜଣେ ସାହସୀ ବ୍ୟକ୍ତି ଥିଲେ ଜଗନ୍ନାଥ କୁଶାରୀ । ସେ ଏଇ ଦୁର୍ଭାଗା ଦୁଇଭାଇ କାମଦେବ ଓ ଜୟଦେବଙ୍କ ଝିଆରୀକୁ ବିବାହ କରିଥିଲେ । ତାଙ୍କରି ବିଚାର ବିବେଚନା ଶୂନ୍ୟ କାର୍ଯ୍ୟ ସବୁ ଅଶାନ୍ତି ଓ ଦୁଃସ୍ଥିତିର କାରଣ ହେଲା । ଏଇ ଅପରିଣାମଦର୍ଶୀ କାର୍ଯ୍ୟ ପାଇଁ ଜଗନ୍ନାଥ କୁଶାରୀଙ୍କୁ ବହୁମୂଲ୍ୟ ଦେବାକୁ ପଡ଼ିଥିଲା । ନିଜଘର ଛାଡ଼ିବାକୁ ପଡ଼ିଥିଲା । ଏଇ ସାହସୀ ଓ ଉଦ୍ଦାମ ବ୍ୟକ୍ତିଙ୍କର ପୁରୁଷାନୁକ୍ରମିକ ଭାବେ କେହି ଜଣେ ବଂଶଧରଙ୍କୁ ହିଁ ଠାକୁର ପରିବାରର ପ୍ରତିଷ୍ଠାତା ଭାବରେ ବିଶ୍ୱାସ କରାଯାଏ ।

ତାଙ୍କ ନାଁ ଥିଲା ପଞ୍ଚାନନ କୁଶାରୀ । ସାମାଜିକ ଶାସ୍ତି ଓ ଦେଶତ୍ୟାଗ ସେଇ ବଂଶର ଉତ୍ତର ପୁରୁଷମାନଙ୍କୁ ଅଧିକ ପ୍ରତିରୋଧ ପ୍ରବଣ ଓ ପ୍ରଗତିଶୀଳ କରିଦେଇଥିଲା । ଜାତିଗତ ଅହମିକା

ହରାଇଥିବା ଯୋଗୁଁ ସେମାନଙ୍କର ଆଉ ଭୟଭାବନା ନଥିଲା । ଆଉ ବେଶୀ କିଛି ହରାଇବା ପାଇଁ ନଥିଲା । ଅଧିକ ଧର୍ମାର୍ଜନର ସୁଯୋଗ ନଥିବାରୁ ସେମାନେ ଅଧିକ ମାନବତାବାଦୀ ହେବା ସମ୍ଭବ ହୋଇପାରିଲା । ସେଇ ସମୟରେ ଜଗତ ଓ ଜୀବନରେ ଯେତେଦୂର ସମ୍ଭବ ଅନ୍ୟ ଭଲ କଥା ସବୁ ଆହରଣ କରିବା ପାଇଁ ସେମାନେ ଚାହିଁଥିଲେ । ପରିବେଶ ଥିଲା ଦୁଃସାହସିକତାର ଅନୁକୂଳ । ଅଜଣା ଅଶୁଣା କଥାମାନ ଦେଶରେ ଘଟୁଥିଲା । ସାଗର ସେପାରିରୁ ଗୋରାସାହେବ ଆସି କାରଖାନା ଓ ବାଣିଜ୍ୟ କେନ୍ଦ୍ର ଖୋଲିଲେ ପବିତ୍ର ଗଙ୍ଗାକୂଳରେ । ଆଉ ସେମାନଙ୍କର କ୍ଷମତା ଓ ସମ୍ମାନ ଏପରିଥିଲା ଯେ ମୁସଲମାନ ଶାସକମାନେ ବି ସେମାନଙ୍କ ସହିତ ସୁସଂପର୍କ ରଖିବାକୁ ଗୌରବ ମଣୁଥିଲେ । ତେଣୁ ପଞ୍ଚାନନ ଓ ତାଙ୍କ କକା ଶୁକଦେବ ସପ୍ତଦଶ ଶତାବ୍ଦୀର ଶେଷ ଦଶକରେ ତାଙ୍କ ପୂର୍ବ ପୁରୁଷଙ୍କ ପରି ଘର ଛାଡ଼ି ଆସି ବ୍ରିଟିଶ୍ ବସତିର ଅନତି ଦୂରରେ ଗୋବିନ୍ଦପୁର ଗ୍ରାମରେ ବସତି ସ୍ଥାପନ କଲେ ।

ଗୋବିନ୍ଦପୁର ସେତେବେଳେ ଥିଲା ତଥାକଥିତ ନିମ୍ନଜାତି ମତ୍ସ୍ୟଜୀବୀ ବାସିନ୍ଦାଙ୍କର ଏକ ଗାଁ । ସେମାନଙ୍କ ମଧ୍ୟରେ ଏକ ବ୍ରାହ୍ମଣ ପରିବାର ଆସି ବସାବାନ୍ଧିଥିବାର ଦେଖି ସେମାନେ ଆପଣାକୁ ଗର୍ବିତ ମନେକଲେ ଓ କକାପୁତୁରାଙ୍କୁ ବ୍ରାହ୍ମଣଭାବରେ ସର୍ବମତେ ସମ୍ମାନ ଦେଲେ । ପଞ୍ଚାନନଙ୍କୁ ସେମାନେ ପଞ୍ଚାନନ ଠାକୁର ବୋଲି ସମ୍ବୋଧନ କରୁଥିଲେ । ଏଇ ଠାକୁର ନାଁଟି ଏବେ ମଧ୍ୟ ବ୍ରାହ୍ମଣମାନଙ୍କ ଉଦ୍ଦେଶ୍ୟରେ ପ୍ରଚଳିତ । ସେଇ ନଦୀ ଦେଇ ଯେଉଁ ବିଦେଶୀ ଜାହାଜ ସବୁ ଆସୁଥିଲା ସେ ସେଥିରେ ଜିନିଷ ପତ୍ର ଯୋଗାଇବାର ବେଶ୍ ଲାଭଦାୟକ ପେଶାଟିଏ ପାଇଗଲେ । ବ୍ରିଟିଶ୍ ଓ ଅନ୍ୟବିଦେଶୀ ବଣିକମାନେ ତାଙ୍କ ସହିତ ମିଶିବାର ସୁଯୋଗ ପାଇଲେ ଓ ଠାକୁର ପଞ୍ଚାନନଙ୍କର ପାରିବାରିକ ସାଙ୍ଗ ବୋଲି ଭାବିଲେ । ତେଣୁ ସେମାନେ ତାଙ୍କୁ ମିଷ୍ଟର ଠାକୁର ଭାବରେ ସମ୍ବୋଧନ କଲେ । କିନ୍ତୁ ଠାକୁର ଶବ୍ଦଟି ବିଦେଶୀମାନଙ୍କୁ ଅଖାଡୁଆ ଲାଗିବାରୁ ସେମାନେ ତାଙ୍କ ନିଜଭଳି 'ଟାଗୋର' ବୋଲି ଉଚ୍ଚାରଣ କଲେ । ପରିବାରଟିର ସଂପଦ ବଢ଼ିଲା । ପ୍ରଥମରୁ ହିଁ ଭାରତରେ ବ୍ରିଟିଶ୍ ଶକ୍ତିର ଅଭ୍ୟୁଦୟ ସହିତ ତା'ର ଭାଗ୍ୟ ଜଡ଼ିତ ଥିଲା । ଇଂରେଜମାନଙ୍କର କ୍ଷମତା ଓ ବାଣିଜ୍ୟ ଯେତିକି ବଢ଼ିବାରେ ଲାଗିଲା, ଏଇ ମତ୍ସ୍ୟଜୀବୀ ଗ୍ରାମଟିର ସେତିକି ଉନ୍ନତି ହେଲା । ପ୍ରଥମରୁ ଥିବା ମତ୍ସ୍ୟଜୀବୀମାନଙ୍କର ଛୋଟ ଗାଁ ଟି କଲିକତା ନଗରୀରେ ପରିଣତ ହେଲା । ଠାକୁର ପରିବାରର ଭାଗ୍ୟ ଏହାରି ସହିତ ବଢ଼ିବାରେ ଲାଗିଲା । ପଞ୍ଚାନନଙ୍କ ଦାୟାଦମାନେ ହେଲେ ବଣିକ ରାଜପୁତ୍ର ଓ ଅଭିଜାତ ଜମିଦାର ।

କବିଗୁରୁ ରବୀନ୍ଦ୍ରନାଥଙ୍କ ପିତାମହ ଦ୍ୱାରକାନାଥ ଠାକୁରଙ୍କ ଜୀବନକାଳରେ ପରିବାରଟି ଧନସଂପତ୍ତି ଦିଗରୁ ଶୀର୍ଷସ୍ଥାନରେ ପହଞ୍ଚିଥିଲା । ଯଦି ସେ ଆଗକାଳରେ ଜନ୍ମହୋଇଥାନ୍ତେ ତାଙ୍କର ସୁନ୍ଦର ଦେହର ଗଠନ, ବହୁମୁଖୀ ପ୍ରତିଭା, ଅଦମ୍ୟ ଉତ୍ସାହ ଓ ଦୁଃସାହସୀ ଚରିତ୍ର ପାଇଁ ସେ ନିଶ୍ଚୟ ନିଜେ ଗୋଟିଏ ରାଜ୍ୟ ପ୍ରତିଷ୍ଠା କରି ତା'ର ରାଜା ହୋଇଥାନ୍ତେ । ତାଙ୍କର ଉଦାର ଓ ମହତ୍ ଜୀବନ ସାଧନା ଓ ଲୋକହିତକର ଅଜସ୍ରଦାନ ପାଇଁ ଲୋକେ ତାଙ୍କୁ 'ପ୍ରିନ୍ସ' ଆଖ୍ୟା ଦେଇଥିଲେ । ତାଙ୍କର ବିପୁଳ ବ୍ୟବସାୟର ଅନ୍ତର୍ଭୁକ୍ତ ଥିଲା ନୀଳଚାଷ କାରଖାନା, ଲୁଣଖଣି, ଚିନିକଳ, ଚା' ବଗିଚା ଓ କୋଇଲା ଖଣି ଇତ୍ୟାଦି । ବଙ୍ଗ ଓ ଓଡ଼ିଶାରେ ବହୁ କୃଷିଖମାରର ସେ ମାଲିକ ଥିଲେ । ବ୍ରିଟିଶ୍ ଉପକୂଳକୁ ଚଳାଚଳ କରୁଥିବା କେତୋଟି ମାଲବାହୀ ଜାହାଜ ତାଙ୍କର ଥିଲା । ଭାରତୀୟ ମୂଳଧନରେ ଏ ଦେଶର ପ୍ରଥମ ଆଧୁନିକ ବ୍ୟାଙ୍କ୍‌କୁ 'ୟୁନିୟନ ବ୍ୟାଙ୍କ୍' ନାମରେ

ସେ ପ୍ରତିଷ୍ଠା କରିଥିଲେ । ଏଇ ସବୁ ବହୁପ୍ରକାର ବ୍ୟବସାୟକୁ ସେ ନିଜର ବାଣିଜ୍ୟ ପ୍ରତିଷ୍ଠାନ 'କାର୍; ଟେଗୋର ଏଣ୍ଡ କମ୍ପାନୀ' ମାଧ୍ୟମରେ ପରିଚାଳନା କରୁଥିଲେ ।

ସେ ପ୍ରାଚୁର୍ଯ୍ୟ ଭିତରେ ଜୀବନ ବିତାଇଥିଲେ ଓ ରାଜକୀୟ ରୀତିରେ ଅତିଥି ସତ୍କାର କରୁଥିଲେ । ସେ ଯୁଗର ଅଭିଜାତ ସଂପ୍ରଦାୟର ଜୀବନ ଥିଲା ଦ୍ବିମୁଖୀ । ଘରେ ଥିଲା ପାରିବାରିକ ଜୀବନର ନୈତିକ ପାରଂପାରିକ ଜୀବନଚର୍ଯ୍ୟା, ସକାଳୁ ସଂଧ୍ୟା ପର୍ଯ୍ୟନ୍ତ ଇଷ୍ଟଦେବଙ୍କର ପୂଜା ଚାଲିଥିଲା । ଘରର ଅନ୍ଦରମହଲକୁ ଛାଡ଼ିଦେଲେ ବାହାରେଥିଲା ସୁରମ୍ୟ ଅଭ୍ୟର୍ଥନା କକ୍ଷ । ଗୃହକର୍ତ୍ତା ସେଠି ନିଜର ବନ୍ଧୁ ଓ ଅତିଥିମାନଙ୍କୁ ଚର୍ଚ୍ଚା କରୁଥିଲେ । ମୁକ୍ତଭାବେ ସୁରାର ସ୍ରୋତ ଛୁଟୁଥିଲା ସେଠି । ସୁନ୍ଦର କାରୁକାର୍ଯ୍ୟ ଖଚିତ ହୁକା ସୁବାସିତ ତମାଖୁରେ ଭର୍ତ୍ତିହୋଇ ରହୁଥିଲା । ପ୍ରସିଦ୍ଧ ସଂଗୀତଜ୍ଞମାନେ ନିଜର କଣ୍ଠ ଓ ଯନ୍ତ୍ର ସଂଗୀତର ପରାକାଷ୍ଠା ଓ ପାରଦର୍ଶୀ ନର୍ତ୍ତକୀଗଣ ସେମାନଙ୍କର ଚମତ୍କାର ନୃତ୍ୟ ନୈପୁଣ୍ୟ ଦେଖାଇବା ପାଇଁ ପ୍ରତିଯୋଗିତା କରୁଥିଲେ । ଦ୍ୱାରକାନାଥଙ୍କର ବିଶ୍ୱବିଖ୍ୟାତ ପୌତ୍ରଙ୍କ ଉଦ୍ଦେଶ୍ୟରେ ଏକ ସକୃତଜ୍ଞ ଜାତିର ସମ୍ମାନର ସ୍ମାରକୀ ଭାବରେ ବର୍ତ୍ତମାନ ବି କଲିକତା ନଗରୀର ମଧ୍ୟ ଭାଗରେ ଠାକୁର ପରିବାରର ଜୋଡ଼ାସାଙ୍କୋ ପ୍ରାସାଦ ଏକ ବିଶ୍ୱବିଦ୍ୟାଳୟ (ରବୀନ୍ଦ୍ର ଭାରତୀ) ଭାବରେ ବିଦ୍ୟମାନ । କିନ୍ତୁ ବନ୍ଧୁ, ଅତିଥି ଓ ତତ୍କାଳୀନ କଲିକତାର ଶୀର୍ଷ ସ୍ଥାନୀୟ ଶାସକ ଗୋଷ୍ଠୀର ବିଖ୍ୟାତ ଲୋକଙ୍କୁ ଅଭ୍ୟର୍ଥନା କରିବା ପାଇଁ ତାରି ପାର୍ଶ୍ୱରେ ଦ୍ୱାରକାନାଥଙ୍କ ଦ୍ବାରା ନିର୍ମିତ ହୋଇଥିବା ରାଜକୀୟ ପ୍ରକୋଷ୍ଠଟି ଆଉ ନାହିଁ ।

ନିଜର କ୍ଷମତା ବାହାରକୁ ଯାଇ ଅକାତରରେ ସାଧାରଣଙ୍କ ହିତ ପାଇଁ ଦ୍ୱାରକାନାଥଙ୍କ ଦାନର ପଟାନ୍ତର ନଥିଲା । ସେସମୟର ଏପରି କୌଣସି ଅନୁଷ୍ଠାନ ବା ଉଦ୍ଦେଶ୍ୟ ନଥିଲା ଯାହା ପାଇଁ ସେ ମୁକ୍ତ ହସ୍ତରେ ଦାନ କରିନଥିଲେ । କଲିକତାରେ ଜାତୀୟ ପାଠାଗାର ଓ 1816ରେ ଆଧୁନିକ ଉଚ୍ଚଶିକ୍ଷାର ପ୍ରଥମ କେନ୍ଦ୍ର ହିନ୍ଦୁ କଲେଜ (ବର୍ତ୍ତମାନର ପ୍ରେସିଡ଼େନ୍‌ସି କଲେଜ) ପ୍ରତିଷ୍ଠା ପାଇଁ ସେ ପ୍ରଭୂତ ସାହାଯ୍ୟ କରିଥିଲେ । 1835ରେ କଲିକତାରେ ପ୍ରଥମ ମେଡ଼ିକାଲ କଲେଜ ଓ ଡ଼ାକ୍ତରଖାନା ପ୍ରତିଷ୍ଠା ଦିଗରେ ସେ ସକ୍ରିୟ ସହଯୋଗ କରିଥିଲେ ଯେଉଁ ଅନୁଷ୍ଠାନ ବର୍ତ୍ତମାନ ଦେଶର ଏକ ପ୍ରମୁଖ ଡାକ୍ତରୀ ବିଦ୍ୟାକେନ୍ଦ୍ର ଓ ବିଶାଳ ଡ଼ାକ୍ତରଖାନାରେ ପରିଣତ ହୋଇପାରିଛି । ଡ଼ାକ୍ତରୀ ବିଦ୍ୟା ଅଧ୍ୟୟନ ଦିଗରେ ଛାତ୍ରମାନଙ୍କୁ ପ୍ରେରଣା ପାଇଁ ବୃତ୍ତି ଦେଉଥିଲେ ଓ ଶବ ବ୍ୟବଚ୍ଛେଦ ବିଷୟରେ ହିନ୍ଦୁମାନଙ୍କ ଭିତରେ ଥିବା ଧର୍ମାନ୍ଧତା ଦୂର କରିବା ପାଇଁ ଚେଷ୍ଟା କରୁଥିଲେ, ଏପରିକି ନିଜେ ବ୍ୟବଚ୍ଛେଦ ଗୃହରେ ଉପସ୍ଥିତ ରହୁଥିଲେ ।

ସାର୍ ଉଇଲିୟମ ଜୋନ୍‌ସ 1784ରେ 'ଏସିଆଟିକ୍ ସୋସାଇଟି' ପ୍ରତିଷ୍ଠା କରିଥିଲେ । ଦ୍ୱାରକାନାଥ ହେଲେ ଏହାର ପ୍ରଥମ ଭାରତୀୟ ସଭ୍ୟ ଓ ପୃଷ୍ଠପୋଷକ । ଆଜିର ବହୁ ଭାରତୀୟ ବିଜ୍ଞାନ ପ୍ରତିଷ୍ଠାନ, ଆର୍କିଓଲୋଜିକାଲ ସର୍ଭେ, ଜୁଲୋଜିକାଲ ସର୍ଭେ, ବଟାନିକାଲ ଓ ଜିଓଲୋଜିକାଲ ସର୍ଭେ, ସୁବିଖ୍ୟାତ ଓ ସୁବୃହତ କଲିକତାର ଭାରତୀୟ ଯାଦୁଘର ସବୁ କିଛି ମୂଳରେ ଥିଲା ଏଇ 'ଏସିଆଟିକ୍ ସୋସାଇଟି'ର ଦାନ । ସେ ସମୟରେ କଲିକତାରୁ ପ୍ରକାଶିତ ଏକ ପତ୍ରିକା ଦ୍ୱାରକାନାଥଙ୍କ ବିଲାତ ଭ୍ରମଣ ପ୍ରାକ୍‌କାଳରେ ମନ୍ତବ୍ୟ ପ୍ରକାଶ କରି ଲେଖିଥିଲା, ''ସାଧାରଣ ହିତକର କାର୍ଯ୍ୟରେ ଦ୍ୱାରକାନାଥଙ୍କ ଅର୍ଥାନୁକୂଲ୍ୟ ପ୍ରସଙ୍ଗ ଆଲୋଚନା କରିବାକୁ ହେଲେ କଲିକତାରେ ଥିବା ସମସ୍ତ ଜନହିତକର ପ୍ରତିଷ୍ଠାନର ନାମତାଲିକା ଦେବାକୁ ହେବ । କାରଣ ତାଙ୍କର ମୁକ୍ତ ହସ୍ତ ଦାନରୁ ବଂଚିତ କୌଣସି ଗୋଟିଏ ହେଲେ ଅନୁଷ୍ଠାନ ନାହିଁ ।''

ମୁକ୍ତହସ୍ତରେ ଓ ବିଶ୍ଳୋଚିତ ଭାବରେ ନିଜ ଅର୍ଥ ଦାନକରି କେବଳ ସେ ସନ୍ତୁଷ୍ଟ ନଥିଲେ । ସେକାଳରେ ଧର୍ମୀୟ, ସାମାଜିକ ଓ ରାଜନୈତିକ ପ୍ରଗତିଶୀଳ ଆନ୍ଦୋଳନ ବିରୋଧରେ ରକ୍ଷଣଶୀଳ ଲୋକେ ଯେତେପ୍ରକାର ପ୍ରତିବନ୍ଧକ ସୃଷ୍ଟି କରୁଥିଲେ ସେ ଅଦମ୍ୟ ସାହସରେ ତାହା ବିରୁଦ୍ଧରେ ଠିଆ ହେଉଥିଲେ । ଆଧୁନିକ ଭାରତର ନିର୍ମାତା, ଧର୍ମ ଓ ସମାଜଜୀବନର ଦୂର ଦ୍ରଷ୍ଟା, ସଂସ୍କାରକ ରାଜା ରାମମୋହନ ରାୟଙ୍କର ସେ ଥିଲେ ବଂଧୁ ଓ ବିଶ୍ୱସ୍ତ ଅନୁଗାମୀ । ଏକ ଆଧୁନିକ ଜାତି ରୂପେ ଭାରତୀୟ ସମାଜର ପୁନର୍ଗଠନ ପାଇଁ ଇଂରେଜ ଶାସନକୁ ଏକ ଐତିହାସିକ ଆବଶ୍ୟକତା ବୋଲି ସେ ଭାବୁଥିଲେ । ତେବେ ପ୍ରିନସ୍ ଦ୍ୱାରକାନାଥଙ୍କ ଚତୁର ରାଜନୈତିକ ଦୃଷ୍ଟିରୁ ସୁଶାସନର ପ୍ରତିଷ୍ଠା ନିମନ୍ତେ ଇଂରେଜ ଶାସନ ଉପରେ ପ୍ରଭାବ ପକାଇବା ପାଇଁ ଜନମତକୁ ପ୍ରଭାବଶାଳୀ ଓ ସଂଗଠିତ କରିବା ପ୍ରସଙ୍ଗବି ବାଦଯାଇନଥିଲା ।

ସେ କାଳରେ ଦରିଆ ପାରିହେବା କେବଳ ହିନ୍ଦୁସମାଜ ପାଇଁ ଏକ ଦୁଃସାହସିକ ଜଳଯାତ୍ରା ମାତ୍ର ନଥିଲା, ଏହା ଥିଲା ସମାଜ ବିରୁଦ୍ଧରେ ଏକ ବୈପ୍ଳବିକ କାର୍ଯ୍ୟ । ସମୁଦ୍ର ଯାତ୍ରାକୁ ହିନ୍ଦୁମାନେ ଭୟଙ୍କର ବିଧର୍ମୀ କାର୍ଯ୍ୟ ବୋଲି ମନେ କରୁଥିଲେ । ଯିଏ ସମୁଦ୍ର ଯାତ୍ରା କରୁଥିଲା ତାକୁ କଠୋର ପ୍ରାୟଶ୍ଚିତ କରିବାକୁ ପଡୁଥିଲା । ପ୍ରଥମେ 1842 ଓ ପରେ 1844ରେ ଦ୍ୱାରକାନାଥ ବିଲାତ ଯାଇଥିଲେ । ସୁବିଖ୍ୟାତ ପ୍ରାଚ୍ୟବିଦ୍ୟାବିତ୍ ଫ୍ରେଡ୍ରିକ୍ ମାକ୍ସମୁଲର ସେତେବେଳେ ତରୁଣ ଛାତ୍ର । ପ୍ୟାରିସ୍‌ରେ ସେ ପ୍ରଫେସର ବର୍ଣ୍ଣାଫ୍‌ଙ୍କ ପାଖରେ ଋକ୍ ବେଦ ଅଧ୍ୟୟନ କରୁଥାନ୍ତି । ଦୈବାତ୍ ଦ୍ୱାରକାନାଥଙ୍କର ପ୍ରାଣବନ୍ତ ଓ ବହୁମୁଖୀ ବ୍ୟକ୍ତିତ୍ୱ ସଂସ୍ପର୍ଶରେ ଆସିବା ଫଳରେ ଯେଉଁ ପ୍ରଭାବ ପଡ଼ିଥିଲା ତାହା ସେ ନିଜ ଆତ୍ମଜୀବନୀରେ ବର୍ଣ୍ଣନା କରିଛନ୍ତି । ଫ୍ରାନସ୍‌ର ସମ୍ରାଟ ଲୁଇ ଫିଲିପ୍‌ଙ୍କୁ ଦ୍ୱାରକାନାଥ ଯେପରି ଭୋଜି ସଭାରେ ଅଭ୍ୟର୍ଥନା କରିଥିଲେ, ଭୋଜି ସଭାର ଅଭ୍ୟର୍ଥନା କକ୍ଷଟି କିପରି ମୂଲ୍ୟବାନ କାଶ୍ମୀର ଶାଲରେ ସଜ୍ଜିତ ହୋଇରହିଥିଲା ଓ ଭୋଜି ଶେଷରେ ମହାମାନ୍ୟ ଅତିଥିମାନଙ୍କୁ ସେଗୁଡ଼ିକ ଉପହାର ଦିଆଯାଇଥିଲା, ତାହା ମାକ୍ସମୁଲର ବର୍ଣ୍ଣନା କରିଛନ୍ତି ।

ଦ୍ୱିତୀୟ ଥର ବିଲାତଯାଇ ଦ୍ୱାରକାନାଥ ଆଉ ଭାରତକୁ ଫେରିନଥିଲେ । ତାଙ୍କର ଅଗ୍ରଜ ଓ ବଂଧୁ ରାଜା ରାମମୋହନ ଯେପରି ବ୍ରିଷ୍ଟଲରେ ପ୍ରାଣତ୍ୟାଗ କରିଥିଲେ ସେହିପରି ଦ୍ୱାରକାନାଥ ଘରର ବହୁଦୂରରେ ଲଣ୍ଡନ ସହରରେ 1864 ଅଗଷ୍ଟ ପହିଲାରେ ମୃତ୍ୟୁ ବରଣ କରିଥିଲେ । ତା'ର ଠିକ ଦୁଇଦିନ ପରେ ଅଗଷ୍ଟ ତିନିରେ ଲଣ୍ଡନର ବିଖ୍ୟାତ 'ଟାଇମସ୍' ପତ୍ରିକା ଏକ ସ୍ୱତନ୍ତ୍ର ସଂଖ୍ୟାରେ ଶୋକପ୍ରକାଶ କରି ଲେଖିଥିଲା-''ବୋଧହୁଏ ଭାରତରେ ଏପରି ଅନ୍ୟକୌଣସି ବ୍ୟକ୍ତି ନଥିଲେ; ତାଙ୍କର ପଦପଦବୀ ଯାହା ହେଉନା କାହିଁକି ନିଜ ଚଉପାଶର ଲୋକଙ୍କ ଅଗ୍ରଗତି ପାଇଁ ଏତେ ବେଶୀ ଦାନ କେହି ଦେଇନାହାନ୍ତି । ଆମେ ବିଶ୍ୱାସ କରୁ, ଭାରତ ଓ ଇଂଲଣ୍ଡରେ ବର୍ତ୍ତମାନ ଯେଉଁମାନେ ସଫଳତା ଓ ସ୍ୱାଧୀନତାର ଅଧିକାରୀ ସେମାନେ ଦ୍ୱାରକାନାଥଙ୍କ ଆଶୀର୍ବାଦ ନିକଟରେ ଋଣୀ ।''

ଦ୍ୱାରକାନାଥଙ୍କର ତିନି ପୁଅ ଥିଲେ । ବଡ଼ପୁଅ ଦେବେନ୍ଦ୍ରନାଥ କବି ରବୀନ୍ଦ୍ରନାଥଙ୍କ ପିତା । ନିଜ ପଥରେ ଦେବେନ୍ଦ୍ରନାଥ ତାଙ୍କ ସଂପଦଶାଳୀ ପିତାଙ୍କଠାରୁ ଆହୁରିବେଶୀ ଖ୍ୟାତିଅର୍ଜନ କରିଥିଲେ । ପିତା ଦ୍ୱାରକାନାଥଙ୍କୁ ଯେପରି ଲୋକେ କହୁଥିଲେ 'ପ୍ରିନ୍ସ', ପୁତ୍ର ଦେବେନ୍ଦ୍ରନାଥଙ୍କୁ ସେପରି କହୁଥିଲେ 'ମହର୍ଷି' । ସେ ଏକାଧାରାରେ ଥିଲେ ଧର୍ମାତ୍ମା ଓ ସାଧକ । ଦ୍ୱାରକାନାଥଙ୍କ ପୁତ୍ର ହୋଇଥିଲେ ବି ସେ ଥିଲେ ରାଜା ରାମମୋହନ ରାୟଙ୍କର ନୈତିକ ଦାୟାଦ ଓ ଆଧ୍ୟାତ୍ମିକ

ଉତ୍ତରାଧିକାରୀ । ରାମମୋହନଙ୍କର ଆଦର୍ଶକୁ ସେ କେବଳ ବଂଚାଇ ରଖିନଥିଲେ ତାହାକୁ ଅଧିକ ସଫଳ କରିପାରିଥିଲେ । କବି ରବୀନ୍ଦ୍ରନାଥଙ୍କର ବୌଦ୍ଧିକ ବିକାଶରେ ତାଙ୍କ ପିତାଙ୍କର ବ୍ୟକ୍ତିତ୍ୱ ଗଭୀର ପ୍ରଭାବ ପକାଇଥିଲା ।

1817 ଖ୍ରୀଷ୍ଟାବ୍ଦରେ ଦେବେନ୍ଦ୍ରନାଥଙ୍କ ଜନ୍ମ । ଯେଉଁ ବିଳାସ ବ୍ୟସନ ଭିତରେ ସେ ବଢୁଥିଲେ ତାଙ୍କର ଆଦ୍ୟ ଯୌବନରେ ତାହା ଶୀର୍ଷରେ ପହଞ୍ଚିଥିଲା । ବିତ୍ତଶାଳୀ ପିତାଙ୍କର ସେ ଥିଲେ ସ୍ନେହ ଲାଳିତ ସନ୍ତାନ । ପାଖରେ ଥିଲେ ସ୍ନେହୀ ମା' ଓ ଆହୁରି ବେଶୀ ସ୍ନେହପ୍ରବଣା ଜେଜିମା' । ଏଇ ଭୋଗପ୍ରବଣ ଯୁବକ ବିଳାସରେ ବୁଡ଼ି ରହିଥିଲେ । କିନ୍ତୁ ତାଙ୍କର ଏଇ ବିଳାସମୟ ଜୀବନ ବେଶୀଦିନ ବିତି ନଥିଲା । ଅବିଳମ୍ବେ ହଠାତ୍ ସେ ଏକ ସଂକଟର ସମ୍ମୁଖୀନ ହେଲେ । ତାଙ୍କ ଜେଜିମା' ପଡ଼ିଥିଲେ ମୃତ୍ୟୁ ଶଯ୍ୟାରେ । ଗଙ୍ଗାକୂଳର ଏକ ଟାଇଲ ଘରକୁ ତାଙ୍କୁ ନିଆଗଲା । ଗଙ୍ଗାକୂଳରେ ମରି ସେ ସ୍ୱର୍ଗାରୋହଣ କରିବେ, ଏଇ ବିଶ୍ୱାସରେ । ଜେଜିମା' ତିନି ରାତି ସେହିପରି ପଡ଼ିରହିଲେ । ଆସନ୍ନ ମୃତ୍ୟୁର କରାଳ ବିଭୀଷିକା ସମ୍ମୁଖରେ ସେଇ ନିର୍ଜନ ନିକାଂଚନରେ ଦେବେନ୍ଦ୍ରନାଥ ତାଙ୍କୁ ସାରାକ୍ଷଣ ଜଗି ବସିଥିଲେ । ଠିକ୍ ତାଙ୍କ ମୃତ୍ୟୁର ପୂର୍ବରାତ୍ରିରେ ଏକୁଟିଆ ବସିଥିଲା ବେଳେ ନଇକୂଳରେ କିପରି ଏକ ଗଭୀର ଆଧ୍ୟାତ୍ମିକ ଉଦ୍‌ବେଳନ ଅନୁଭବ କରିଥିଲେ ଦେବେନ୍ଦ୍ରନାଥ । ତାଙ୍କର ସ୍ୱାଭାବିକ ଚେ଼ତନା ଲୋପ ପାଇ ଯାଇଥିଲା । ଯେତେବେଳେ ତାଙ୍କର ସଂବିତ୍ ଫେରିଆସିଲା, ସେଇ ସମୟର କଥା ସେ ନିଜ ଭାଷାରେ କହିଛନ୍ତି,''ମୁଁ ଆଉ ସେଇ ଏକା ମଣିଷ ନଥିଲି । ମୋ ଭିତରେ ଭୌତିକ ସଂପଦ ପ୍ରତି ପ୍ରବଳ ଅନିହା ସୃଷ୍ଟି ହେଲା । ମୁଁ ଯେଉଁ ବାଉଁଶ ଚାଂଚ଼ ଆସନ ଉପରେ ବସିଥିଲି ମନେ ହେଲା ସେଇଟା ହିଁ ମୋର ଯୋଗ୍ୟ ଆସନ, କାର୍ପେଟ ନୁହେଁ । ବ୍ୟୟବହୁଳ ଜୀବନକୁ ମୁଁ ଘୃଣା କଲି । ମନଭିତରେ ମୁଁ ଏକ ଅପୂର୍ବ ଆନନ୍ଦ ଅନୁଭବ କଲି ଯାହା କେବେ ହୋଇନଥିଲା ।.''

ଏହାର ବହୁ ବର୍ଷପରେ ସେ ଯେତେବେଳେ ଆତ୍ମଜୀବନୀ ଲେଖିଲେ ସେଥିରେ ତାଙ୍କର ଆଧ୍ୟାତ୍ମିକ ତୃଷ୍ଣା, ସତ୍ୟାନୁସନ୍ଧାନ ଓ ତାଙ୍କ ମନଭିତରେ ବିଶ୍ୱାସର ଜନ୍ମ ଓ ଜାଗରଣ ବିଷୟରେ ସେ ବର୍ଣ୍ଣନା କରିଥିଲେ । ଏଭେଲିନ୍ ଅଣ୍ଡରହିଲ୍ ଏହି ବହିଟି ବିଷୟରେ ଲେଖିଛନ୍ତି,''ମାନବାତ୍ମାର ଅତି ଅଳ୍ପ ସତ୍ ଇତିହାସ ଭିତରେ ଏହା ଗୋଟିଏ ।'' ଗଙ୍ଗାକୂଳରୁ ଘରକୁ ଫେରି ତାଙ୍କ ନିଜର ବହୁ ବ୍ୟବହାର୍ଯ୍ୟ ଜିନିଷ ସେ ନିଜର ବଂଧୁ ଓ ଅନ୍ୟମାନଙ୍କ ଭିତରେ ବାଣ୍ଟିଦେଲେ । ଭୋଗ୍ୟ ସାମଗ୍ରୀରୁ ସେ କୌଣସି ଆନନ୍ଦ ବା ଶାନ୍ତି ପାଇଲେନାହିଁ । ସେ ପଢ଼ିବାକୁ ଲାଗିଲେ ସବୁ ପ୍ରକାର ଭାରତୀୟ ଧର୍ମଗ୍ରନ୍ଥ ଓ ତା'ସହିତ ପାଶ୍ଚାତ୍ୟ ଦର୍ଶନ । କିନ୍ତୁ ସେଥିରୁ ସେ ଆଦୌ ସନ୍ତୋଷ ପାଇଲେ ନାହିଁ । ତାଙ୍କ ନିଜ ଭାଷାରେ ସେ କହିଛନ୍ତି,''ମୋ ମନରେ ଥିଲା ଗଭୀର ଦୁଃଖ, ଚାରିଆଡ଼ ଥିଲା ଅନ୍ଧକାର । ସଂସାରର ବହୁ ପ୍ରକାର ପାର୍ଥିବ ଆକର୍ଷଣ ଲୋପ ପାଇଯାଇ ଥିଲା । ଈଶ୍ୱରଭାବନାର ବି ମୁଁ ନିକଟବର୍ତ୍ତୀ ନଥିଲି । କି ପାର୍ଥିବ, କି ସ୍ୱର୍ଗୀୟ ସବୁ ସୁଖ ମୋ ପାଇଁ ଥିଲା ସମାନ ଅଲଭ୍ୟ । ଜୀବନ ଥିଲା ଦୁର୍ବିସହ । ପୃଥିବୀଟା ମୋ ପାଇଁ ଥିଲା ଶ୍ମଶାନ । ମନର ଏଇ ଅବସ୍ଥାରେ ମୁଁ ଦେଖିଲି କୌଣସି ଏକ ସଂସ୍କୃତ ବହିର ଗୋଟିଏ ପୃଷ୍ଠା ମୋ ସାମନାରେ ପବନରେ ଉଡ଼ିଗଲା । କୌତୁହଳ ବଶତଃ ମୁଁ ତାହା ଉଠାଇ ନେଇ ଦେଖିଲି । ସେଥିରେ କ'ଣ ଲେଖାଯାଇଛି ମୁଁ କିଛି ବୁଝିପାରିଲି ନାହିଁ ।'' ଜଣେ ସଂସ୍କୃତ ପଣ୍ଡିତଙ୍କୁ ସେ ଡ଼ାକି ପଠାଇଲେ । ସେ ପଢ଼ି ବୁଝାଇଦେଲେ । ଈଶାବାସ୍ୟ ଉପନିଷଦ୍‌ର ଗୋଟିଏ ଶ୍ଳୋକ ସେଥିରେ ଲେଖାଥିଲା ।

ତାହା ହେଲା-''ଏଇ ଚଳମାନ ଜଗତରେ ଯାହାକିଛି ଅଛି ତା'କୁ ଈଶ୍ୱର ଘେରି ରହିଛନ୍ତି । ତେଣୁ ବୈରାଗ୍ୟରେ ତୁମେ ସୁଖ ଅନୁଭବ କର । ଅନ୍ୟର ପଦାର୍ଥରେ ଲୋଭ କର ନାହିଁ ।''

ଅନ୍ଧାର ଭିତରେ ଅଣ୍ଡାଳି ହେଉଥିବା ତରୁଣ ଅଧ୍ୟାତ୍ମ ବିଶ୍ୱାସୀଙ୍କ ଆଗରେ ଏହା ଯେପରି ଥିଲା ସତ୍ୟର ଏକ ସ୍ୱପ୍ରକାଶ । ''ଈଶ୍ୱର ବିଶ୍ୱାସ ମୋର ଦୃଢ଼ମୂଳ ହେଲା । ସାଂସାରିକ ସୁଖ ପରିବର୍ତ୍ତେ ମୁଁ ସ୍ୱର୍ଗୀୟ ଆନନ୍ଦ ଚାଖିଲି ...... ମୁଁ ଯେତେବେଳେ ଗଭୀର ଭାବରେ ଉପନିଷଦ ଭିତରେ ପ୍ରବେଶ କଲି ଓ ଯେତେବେଳେ ମୋ ବୁଦ୍ଧି ସତ୍ୟର ଆଲୋକରେ ଉଦ୍‌ଭାସିତ ହୋଇଉଠିଲା, ସେତେବେଳେ ମୋ ଭିତରେ ପ୍ରକୃତ ଧର୍ମପ୍ରଚାର ପାଇଁ ବଳବତୀ ବାସନା ଜାଗିଲା ।'' 1839ଖ୍ରୀଷ୍ଟାବ୍ଦରେ ବଙ୍ଗଳାର ହିନ୍ଦୁମାନେ ଯେତେବେଳେ ଦେବୀପୂଜା ପାଳନ କରୁଥିଲେ ମହର୍ଷି ଦେବେନ୍ଦ୍ରନାଥ ତାଙ୍କ ବନ୍ଧୁମାନଙ୍କୁ ଏକାଠି କରି ଏକେଶ୍ୱରବାଦୀ ସମାଜ ପ୍ରତିଷ୍ଠା କଲେ । ଉପନିଷଦର ଶିକ୍ଷା ଅନୁସାରେ ବିଶ୍ୱଜନୀନ ନିର୍ଗୁଣ ଦେବତା ଯେ ସମସ୍ତ ଜୀବନର ମୂଳାଧାର, ତାଙ୍କରି ଉପାସନା ପାଇଁ ସେ ସବୁକିଛି ଉତ୍ସର୍ଗ କରିଦେଲେ । ଏଇ ବିଶ୍ୱାସ ଏକାଧାରାରେ ଥିଲା ପ୍ରାଚୀନ ଓ ନୂତନ । ତତ୍‌କାଳୀନ ହିନ୍ଦୁ ସମାଜର ପ୍ରଚଳିତ ଅନ୍ଧ ବିଶ୍ୱାସ ଓ କ୍ରିୟାଚାର ମୂଳକ ମୂର୍ତ୍ତିପୂଜା ବିରୁଦ୍ଧରେ ଏହାଥିଲା ଏକ ଆନ୍ଦୋଳନ । ସେ ଏଇ ନୂତନ ଧର୍ମର ଆଦ୍ୟ ଓଁକାର ଉଚ୍ଚାରଣ କଲାବେଳେ ତାଙ୍କ ବାସଭବନରେ ଦେବୀ ଆରାଧନା ଖୋଳ କରତାଳ ବଜାଇ ପୁରାଦମ୍‌ରେ ଚାଲିଥିଲା । ତା'କୁ ବନ୍ଦ କରିବା ତାଙ୍କ ପକ୍ଷେ ସମ୍ଭବ ନଥିଲା ।

1825ରେ ରାଜା ରାମମୋହନ ରାୟ ବ୍ରାହ୍ମସଭା ପ୍ରତିଷ୍ଠା କରିଥିଲେ । ଜାତି, ଧର୍ମ ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ଏଠି ମିଳିତ ହେଉଥିଲେ ଏକ ଈଶ୍ୱରଙ୍କ ଉପାସନା ପାଇଁ । ସେଠି କୌଣସି ମୂର୍ତ୍ତିପୂଜା ବା ସାଂପ୍ରଦାୟିକ କ୍ରିୟାଚାର ନଥିଲା । କିନ୍ତୁ ଏ ଧର୍ମଆନ୍ଦୋଳନ ପ୍ରାୟ ମ୍ଳାନ ହୋଇଆସିଥିଲା । ଉଦ୍ଦାମ ରହସ୍ୟବାଦୀ ତରୁଣ ଦେବେନ୍ଦ୍ରନାଥ ସତେ ଯେପରିକି ପ୍ରବୃତ୍ତିଚାଳିତ ହୋଇ ଧର୍ମ ସଂସ୍କାରକର ନିଷ୍ଠିତ ଅନୁଭୂତି ଘେନି ତାଙ୍କର ନବପ୍ରତିଷ୍ଠିତ ସଭାକୁ 1843ରେ ଏଥି ସହିତ ମିଶାଇ ଦେଇଥିଲେ । ପୁରାତନ 'ବ୍ରାହ୍ମସଭା'ର ନୂତନ ନାମ ହେଲା 'ବ୍ରାହ୍ମସମାଜ' । ଯେଉଁ ସଭାଥିଲା ଅଳ୍ପ କେତେଜଣ ବୁଦ୍ଧିଜୀବୀଙ୍କର ବୈଠକୀ ତାହା ହୋଇଉଠିଲା ଗତିଶୀଳ ଧର୍ମ ବିଶ୍ୱାସର ବଳିଷ୍ଠ କେନ୍ଦ୍ର ।

ଯେତେବେଳେ ଦେବେନ୍ଦ୍ରନାଥ ଏମିତି ଈଶ୍ୱର ମଦିରାରେ ଆସକ୍ତ ହୋଇଥିଲେ ଓ ଏକ ସଂସ୍କାରବାଦୀ ଚର୍ଚ୍ଚର ମୂଳଦୁଆ ପକାଉଥିଲେ ସେତେବେଳେ ତାଙ୍କର ପିତା ବିଳାସ ବିଭବ ଭିତରେ ଦେଶକୁ ଚମତ୍କୃତ କରିଦେଉଥିଲେ । ସେ ଭାବିବା ସ୍ୱାଭାବିକ ଯେ ତାଙ୍କର ଗୌରବର ଭାଗୀଦାର ହେବେ ତାଙ୍କ ପୁତ୍ର । ଧନ ଅର୍ଜନ ଓ ଧନନେଇ ସବୁକିଛି ସାଧନ କରିବାରେ ସେ ପରିବାରର ପରଂପରା ରକ୍ଷା କରିବେ । କିନ୍ତୁ ପୁତ୍ର ଲିପ୍ତ ଥିଲେ ସଂପୂର୍ଣ୍ଣ ଏକ ସ୍ୱତନ୍ତ୍ର ଲକ୍ଷ୍ୟ ସାଧନରେ । ବାପା ଏଥିରେ ହତାଶ ଓ ବିରକ୍ତ ହେଉଥିଲେ । ଥରେ ସେ କହିଥିଲେ, ''ଯାର ବ୍ୟବସାୟରେ ମନ ନାହିଁ, ସାରା ଦିନ ଖାଲି ବ୍ରାହ୍ମ ବ୍ରାହ୍ମ ହେଉଛି ।''

ତଥାପି ବାପପୁଅଙ୍କ ଭିତରେ ମତାନ୍ତର ଘଟି ନଥିଲା । ପୁଅ ବାପାଙ୍କ ବ୍ୟାଙ୍କରେ କାମ କରି ଚାଲିଥିଲେ । ଯଦିବା ତାଙ୍କ ଜୀବନର ଲକ୍ଷ୍ୟପୂରଣ ଦିଗରେ ତାଙ୍କର ଶକ୍ତି, ଆଗ୍ରହ ଓ ସମୟ ଅଧିକରୁ ଅଧିକ ବ୍ୟୟ ହେଉଥିଲା । ତାଙ୍କ ବାପା ଚତୁର ଭାବରେ ଏକ ସାବଧାନତା ଅବଲମ୍ବନ କରିଥିଲେ । ଏଇ ବିପୁଳ ଓ କ୍ରମବର୍ଦ୍ଧମାନ ବ୍ୟବସାୟର ତାଙ୍କ ମୃତ୍ୟୁ ପରେ କି ଦଶା ହେବ

ତାହା ସେ ଜାଣିପାରିନଥିଲେ । ତେଣୁ ସେ ଗୋଟିଏ ଟ୍ରଷ୍ଟ ଗଠନ କରି ପୁଅ ଯେପରି କିଛି ନିର୍ଦ୍ଦିଷ୍ଟ ଆୟ ପାଇବ, ତା'ର ବ୍ୟବସ୍ଥା କରିଥିଲେ । ଜୀବନଘେନି ସବୁଦିନେ ପଶାଖେଳି ଆସିଥିବା ଦ୍ୱାରକାନାଥ ବୁଝିଥିଲେ ସଂପଦ ହେଉଛି ଚିରଚଂଚଳା, ଭାଗ୍ୟ ଅନିଶ୍ଚିତ ।

ତାହାହିଁ ପ୍ରମାଣିତ ହେଲା । ଲଣ୍ଡନରେ ଦ୍ୱାରକାନାଥଙ୍କ ମୃତ୍ୟୁ ପରେ ଜଣାଗଲା ଯେ ତାଙ୍କ ବ୍ୟବସାୟର ସ୍ଥାୟୀ ସମ୍ପତ୍ତି ତୁଳନାରେ ବକେୟା ବେଶୀ । ବ୍ୟାଙ୍କରୁ ସମସ୍ତେ ଟଙ୍କା ଉଠାଇବାକୁ ବ୍ୟଗ୍ର ହେଲେ । ଆଉ ସେଇ ବିଖ୍ୟାତ 'କାର; ଟାଗୋର କମ୍ପାନୀ'ର ଦ୍ୱାର ତାଲାପଡ଼ିଲା । ଏଇ ସଂକଟ ପ୍ରମାଣ କରିଦେଲା କି ଧାତୁରେ ତାଙ୍କ ପୁଅ ଗଢ଼ା । ସେ ମହାଜନମାନଙ୍କୁ ଡ଼ାକି ତାଙ୍କର ସମସ୍ତ ଅଧିକାର ପତ୍ର ତାଙ୍କଆଗରେ ଥୋଇଦେଲେ । ଟ୍ରଷ୍ଟର କାଗଜ ପତ୍ରରେ ଯଦିବା ମହାଜନମାନଙ୍କର ଏଇ ସମ୍ପତ୍ତି ଉପରେ କୌଣସି ଦାବୀ ନଥିଲା ସେଇ ସମ୍ପତ୍ତି ଉପରୁ ସେ ଓ ତାଙ୍କର ଭାଇ ସ୍ୱେଚ୍ଛାକୃତ ଭାବରେ ନିଜର ଦାବୀ ପ୍ରତ୍ୟାହାର କରିନେଲେ । ଘୋଷଣା କଲେ ମହାଜନମାନଙ୍କର ଋଣ ସମ୍ପୂର୍ଣ୍ଣ ପରିଶୋଧ ନହେବା ପର୍ଯ୍ୟନ୍ତ ସେ ସେଥିରୁ କିଛି ଗ୍ରହଣ କରିବେ ନାହିଁ । ଏଇ ଭାବରେ ନିଜକୁ ଓ ନିଜ ପରିବାରକୁ କପର୍ଦ୍ଦକ ଶୂନ୍ୟତା ଭିତରକୁ ସେ ନେଇଗଲେ । ବୈରାଗ୍ୟରେ ତାଙ୍କ ଅନ୍ତର ପୂରିଗଲା । ''ମୁଁ ଯାହା ଭାବିଥିଲି ତାହାହିଁ ଘଟିଲା । ମୁଁ ଜଗତ-ବିରାଗୀ ହେବାକୁ ଚାହିଁଥିଲି । ଆଉ ଜଗତ ତା'ଇଚ୍ଛାରେ ମତେ ଛାଡ଼ି ଚାଲିଗଲା । ଘଟଣାର ଏ ଏକ ଅପୂର୍ବ ସଂଯୋଗ ।''

ଅବଶ୍ୟ ସେ ଏକାବେଳକେ କପର୍ଦ୍ଦକ ଶୂନ୍ୟ ହୋଇଗଲେ ନାହିଁ । ତାଙ୍କର ସାଧୁତା ମହାଜନମାନଙ୍କୁ ଅଭିଭୂତ କଲା । ସେମାନେ ତାଙ୍କୁ ଓ ତାଙ୍କ ଭାଇଙ୍କୁ ମାସକୁ ମାସ ଚଳିବା ଖର୍ଚ୍ଚ ଦେଲେ ଓ କିଛି ଦିନ ପରେ ସଂପତ୍ତିର ସମସ୍ତ ଭାର ତାଙ୍କରି ହାତରେ ନ୍ୟସ୍ତ କଲେ । ବାକି ପାଉଣା ସୁଝିବା ପାଇଁ ଦେବେନ୍ଦ୍ରନାଥ ଅତ୍ୟନ୍ତ ବ୍ୟୟ ସଂକୋଚ୍ ନୀତି ଧାରଣ କଲେ । ସେ ଯେ କେବଳ ସୁଧ ସହିତ ଋଣ ସୁଝି ଦେବାକୁ ସମର୍ଥ ହେଲେ ତା'ନୁହେଁ, ଇଂଲଣ୍ଡ ଯିବା ପୂର୍ବରୁ ଅତି ଉଦାର ଭାବରେ ନଭାବି ନଚିନ୍ତି ଯାହାକୁ ଯାହା ଦେବା ପାଇଁ ତାଙ୍କ ବାପା ପ୍ରତିଶ୍ରୁତି ଦେଇଥିଲେ ତାହାମଧ୍ୟ ସେ ପୂରଣ କଲେ ।

ମହର୍ଷି ଭାରତକୁ ତନ୍ନ ତନ୍ନ ଭ୍ରମଣ କଲେ । ସେ ଯୁଗରେ ଏଯାତ୍ରା ଥିଲା କଷ୍ଟ ସାଧ୍ୟ ଓ ଦୁଃସାହସିକ । ପ୍ରାୟ ପ୍ରତି ବର୍ଷ ସେ ଘର ଛାଡ଼ି ବୁଲିଯାଉଥିଲେ ପଶ୍ଚିମ ଉପତ୍ୟକା ଠାରୁ ଉତ୍ତରରେ ହିମାଳୟ ପର୍ଯ୍ୟନ୍ତ । ପ୍ରାଚୀନ ଋଷିମାନଙ୍କ ଭଳି ବରଫାବୃତ ହିମାଳୟର ଗିରିଶୃଙ୍ଗ ତାଙ୍କର ଥିଲା ଅତ୍ୟନ୍ତ ପ୍ରିୟ । ସେ ଥିଲେ ପ୍ରକୃତିର ରସଗ୍ରାହୀ ସୂକ୍ଷ୍ମ ପର୍ଯ୍ୟବେକ୍ଷକ । ପ୍ରକୃତି ଓ ମଣିଷ- ଉଭୟଙ୍କୁ ସେ ସମାନ ଭାବରେ ପର୍ଯ୍ୟବେକ୍ଷଣ କରୁଥିଲେ । ତାଙ୍କ ଆତ୍ମଜୀବନୀରେ ପ୍ରକୃତି, ମନୁଷ୍ୟ ଓ ଘଟଣାବଳୀର ଅତି ସୂକ୍ଷ୍ମ ଅନୁଧ୍ୟାନର ଚିତ୍ରଣ ହୋଇଛି ।

୧୮୫୬ରେ ସେ ହିମାଳୟ ଭ୍ରମଣରେ ଯିବା ପୂର୍ବରୁ ସାଂସାରିକ ଜୀବନ ବିଷୟରେ ବଡ଼ ବିତୃଷ୍ଣ ହୋଇପଡ଼ିଥିଲେ । ତାଙ୍କର ପ୍ରିୟ ହିମାଳୟ କୋଳରେ ସେ ଶେଷଜୀବନ ଅତିବାହିତ କରିବାକୁ ଚାହିଁଥିଲେ । ସଂସାର ଭିତରକୁ ଫେରି ନଆସି ନିରବରେ ଧ୍ୟାନ କରି ଶେଷ ଜୀବନ କଟାଇବାକୁ ସେ ଚାହୁଁଥିଲେ । କିନ୍ତୁ ଏହି ସଂକଳ୍ପ କିପରି ଭଙ୍ଗ ହୋଇଥିଲା, ତାହା କହିବା ପ୍ରାସଙ୍ଗିକ ହେବ । ୧୮୫୪ ସେପ୍ଟେମ୍ବରମାସରେ ଦିନେ ସେ ପାହାଡ଼ ଉପରେ ବୁଲୁଥିଲେ । ସଂପୂର୍ଣ୍ଣ ଭାବେ ଥିଲେ ନିଜ ଇଚ୍ଛାର ଅଧୀନ । ଏକ ଜଳପ୍ରପାତର ଦୃଶ୍ୟ ଉପଭୋଗ କରିବା ପାଇଁ ସେ ଠିଆହୋଇଥିଲେ ।

ଜଳର ଅନ୍ଧକାରମୟ ଭାଗ୍ୟ ବିଷୟରେ ସେ ଭାବିବାକୁ ଲାଗିଲେ । ଏଠି ଏଇ ଜଳ କେତେ ସ୍ୱଚ୍ଛ, ସୁନ୍ଦର ଓ ଶୀତଳ । କିନ୍ତୁ ଯେତେବେଳେ ତାହା ସମତଳ ଭୂମିରେ ପ୍ରବେଶ କରିବ, ହୋଇଯିବ କର୍ଦ୍ଦମାକ୍ତ ଓ ଅସ୍ୱଚ୍ଛ । ତା'ର ଅହମିକା ଚୂର୍ଣ୍ଣ ହୋଇଯିବ । ତଥାପି କୂଳରେ ପଟୁ ଢ଼ାଳି ମାଟିକୁ ଉର୍ବର କରି ତାହା ମନୁଷ୍ୟ ସମାଜର ଉପକାର କରିବ । ହଠାତ୍ ସେ ଶୁଣିବାକୁ ପାଇଲେ,- "ତୁମ ମନର ସକଳ ଅହଂକାର ଦୂରକରି ଏଇ ନଈଟି ଭଳି ହୁଅ ନମ୍ରନତ । ଯେଉଁ ସତ୍ୟ ତୁମେ ଉପଲବ୍ଧି କରିଛ, ଯେଉଁ ଭକ୍ତି ଓ ବିଶ୍ୱାସରେ ତୁମ ହୃଦୟ ପୂର୍ଣ୍ଣ ହୋଇଛି, ଯାଅ, ଜଗତରେ ତାହା ପ୍ରଚାର କର ।"

ତାଙ୍କର ବଳିଷ୍ଠ ଚରିତ୍ର ଓ ଜୀବନ ଦର୍ଶନ ସବୁ ପ୍ରକାର ପଳାୟନ ପନ୍ଥାର ବିରୋଧୀ ଥିଲା । ସେ ଏଇ ଆତ୍ମବାଣୀର ନିର୍ଦ୍ଦେଶ ଗ୍ରହଣ କରି କଲିକତାରେ ତାଙ୍କ କର୍ମଜୀବନକୁ ଫେରିଆସିଥିଲେ । ଯଦିବା ଏହାପରେ ବାରମ୍ବାର ହିମାଳୟ ଯାଇଥିଲେ କିନ୍ତୁ ପଳାୟନ ଭାବନା କେବେ ତାଙ୍କୁ ଆଉ ଗ୍ରାସ କରିନଥିଲା । ସେ ଏକ ପରିଣତ ଓ ପରିପୂର୍ଣ୍ଣ ଜୀବନ ଯାପନ କରିଥିଲେ । ଦେଖିଥିଲେ ଗତ ଶତାବ୍ଦୀର ସୂର୍ଯ୍ୟାସ୍ତ ଓ ନୂତନ ଶତାବ୍ଦୀର ସୂର୍ଯ୍ୟୋଦୟ । ଯେଉଁ ଧର୍ମୀୟ ଓ ସାମାଜିକ ଆନ୍ଦୋଳନର ମୂଳଦୁଆ ସେ ପକାଇଥିଲେ ତାହା ଯେପରି କ୍ରମବର୍ଦ୍ଧିତ ହୋଇଥିଲା ତାହା ଦେଖିବା ପାଇଁ ସେ ଠିଆହୋଇ ରହିଥିଲେ ପୁରାତନ ଓ ନୂତନ ମଧ୍ୟରେ ଏକ ନିଭୃତ ଗିରିଶୃଙ୍ଗଭଳି ।

# କୌତୂହଳୀ ଶିଶୁ

*ଶୈଶବର ଖେଳଘରେ ଶୁଣିଥିଲି ଯେତେ ପଦଧ୍ୱନି*
*ବିଶ୍ୱ ସଂଗୀତର ସୁରେ ଶୁଣେ ମୁହିଁ ତା'ର ପ୍ରତିଧ୍ୱନି ।*

ଏକଦା ଜୀବନର ଶେଷଭାଗ ହିମାଳୟରେ ସାଧନା କରି ବିତାଇବା କଥା ମହର୍ଷି କହୁଥିଲେ । ଭାଗ୍ୟକୁ ହିମାଳୟର ଆକାଶରୁ ମାଟିର ଧରଣୀରେ ପାଦ ଦେବାର ତିନି ବର୍ଷ ମଧ୍ୟରେ 7 ମେ' 1861 ଖ୍ରୀଷ୍ଟାବ୍ଦରେ ଜନ୍ମହେଲେ ରବୀନ୍ଦ୍ରନାଥ ଠାକୁର । ମହର୍ଷି ନିଜ ଲୋକଙ୍କୁ ବହୁ ମହତ୍ ଦାନ ଦେଇଛନ୍ତି, ମାତ୍ର ସେ ସବୁ ଭିତରେ ଶ୍ରେଷ୍ଠଦାନ ତାଙ୍କର ଚତୁର୍ଦ୍ଦଶ ସନ୍ତାନ ।

ଶିଶୁଟି ଜନ୍ମ ହେଲାବେଳେ ଘଟଣାଟିର ସେପରି କୌଣସି ପ୍ରାଧାନ୍ୟ ନଥିଲା । ତା'ପୂର୍ବରୁ ମା ଶାରଦା ଦେବୀ ତେରଟି ସନ୍ତାନର ଜନନୀ ହୋଇସାରିଥିଲେ ଓ ଆଉ ଦୁଇବର୍ଷ ପରେ ପୁଣି ଆଉ ଗୋଟିଏ ଶିଶୁର ଅପେକ୍ଷା ରଖୁଥିଲେ (ଅବଶ୍ୟ, ଶେଷ ଶିଶୁଟିର ଜନ୍ମ ପରେ ତାଙ୍କର ମୃତ୍ୟୁ ହୋଇଯାଇଥିଲା) । କୌଣସି ପରିବାରରେ ବୋଧହୁଏ ଚତୁର୍ଦ୍ଦଶ ସନ୍ତାନଙ୍କୁ ସ୍ୱାଗତ କରିବାର ଧୈର୍ଯ୍ୟ ନଥାଏ । ପୁଣି ଯେଉଁ ଏକାନ୍ନବର୍ତ୍ତୀ ପରିବାରଟିରେ ଭାଇ ଭଉଣୀ ଓ ସେମାନଙ୍କ ପିଲାମାନେ ଏକାଠି ଥାଆନ୍ତି ସେଠି ଆହୁରି ଉତ୍ସାହ କମ୍ । ଯେତେବେଳେ ଯୋଡ଼ାସାଙ୍କୋର ସେଇ ବିଶାଳ ଓ ପ୍ରକାଣ୍ଡ ପ୍ରାସାଦଟି ପୁତ୍ରପୌତ୍ରାଦି ଅସଂଖ୍ୟ ଶିଶୁଙ୍କର କୋଳାହଳରେ ପୂରିରହିଥିଲା ସେତେବେଳେ ପୁଣି ଆଉ ଗୋଟିଏ ନବଜାତକର ଆଗମନ; ଘଟଣାଟି ଆଦୌ ଗୁରୁତ୍ୱ ପାଇନଥିଲା । ଶିଶୁ ପୁତ୍ରଟିର ନାମକରଣ ହୋଇଥିଲା ରବୀନ୍ଦ୍ରନାଥ, ସଂକ୍ଷିପ୍ତରେ ରବି । ସେ ଖୁବ୍ ସ୍ୱାସ୍ଥ୍ୟବାନ୍ ଓ ଉଜ୍ଜ୍ୱଳ ଥିଲେ ବି ତାଙ୍କ ବଡ଼ ଭାଇ ଭଉଣୀଙ୍କ ପରି ଖୁବ୍ ବେଶୀ ଗୌରବର୍ଣ୍ଣର ନଥିଲେ । ସବା ବଡ଼ଭଉଣୀ ତାକୁ ଗାଧୋଇଦେଲା ବେଳେ କହୁଥିଲେ, 'ମୋ ରବି ବର୍ଣ୍ଣରେ ସାମାନ୍ୟ ଊଣା ହେଲେ କ'ଣ ହେଲା ଦିନେ ସେ ସମସ୍ତଙ୍କ ଠାରୁ ଉଜ୍ଜ୍ୱଳତର ହୋଇଉଠିବ ।'

ଯେତେବେଳେ ଶିଶୁଟି ସାମାନ୍ୟ ବଡ଼ହୋଇ ଛୋଟ ବାଳକ ଅବସ୍ଥାକୁ ଆସିଲା ଆହୁରି କେତେଜଣ ସମବୟସୀ ପୁତୁରା ଝିଆରୀଙ୍କ ସାଙ୍ଗେ ତା'ର ଦାୟିତ୍ୱ ଘରର ଚାକରଙ୍କ ଉପରେ ନ୍ୟସ୍ତ କରାଗଲା । ପଞ୍ଚଦଶ ଶିଶୁକୁ ଜନ୍ମ ଦେବାପରେ ମା ଭଗ୍ନସ୍ୱାସ୍ଥ୍ୟ ହୋଇ ପଡ଼ିଥିଲେ ଓ ଝିଅବୋହୂ, ପୁଅଜ୍ୱାଇଁ ଓ ସେମାନଙ୍କ ପିଲାଙ୍କୁ ନେଇ ସେଇ ବିଶାଳ ଘରର ନାନାକଥା ବୁଝିବାରେ ବ୍ୟସ୍ତ ରହୁଥିଲେ । ଗୋଟିଏ ଏକାନ୍ନବର୍ତ୍ତୀ ହିନ୍ଦୁ ପରିବାରର ଦୈନନ୍ଦିନ ବ୍ୟସ୍ତତା ସାଙ୍ଗକୁ ଠାକୁର ପରିବାର ଜାମାତାମାନଙ୍କୁ ଘରର ନିୟମିତ ବାସିନ୍ଦା ଭାବରେ ତାଲିକାଭୁକ୍ତ କରି ଆହୁରି କିଛି ନୂତନ ସମସ୍ୟା ବଢ଼ାଇଥିଲେ । ଏତେ ବଡ଼ ଘର ଓ ପରିବାରର ଏତେ ସଭ୍ୟଙ୍କୁ ଏକାଠି ସୁବ୍ୟବସ୍ଥିତ

ଭାବରେ ରଖିପାରୁଥିବା ଶାରଦା ଦେବୀ ନିଶ୍ଚୟ ଜଣେ ଅସାଧାରଣ ଗୁଣବତୀ, କର୍ମଦକ୍ଷା ଓ ଧୈର୍ଯ୍ୟଶୀଳା ମହିଳା ଥିଲେ । ଦୁଃଖର କଥା ଏଇ ଯେ, ଏଇ ମହିୟସୀ ମହିଳାଙ୍କ ବିଷୟରେ ବହୁକଥା ଅଜଣା ରହିଯାଇଛି । କାରଣ ସେ ନିଜ ବିଷୟରେ କିଛି ଜାଣିବାକୁ ନଦେଇ ଅନ୍ୟମାନଙ୍କୁ ବଡ଼ହେବା ପାଇଁ ସମ୍ଭବ କରିଥିଲେ ।

ତାଙ୍କ ପତି ଥିଲେ ପ୍ରକୃତରେ ଜଣେ ମନସ୍ୱୀ । ସେଥିପାଇଁ ଶାରଦାଦେବୀ ଗୌରବ ଅନୁଭବ କରୁଥିବେ । କିନ୍ତୁ ଧାର୍ମିକ ଜାଗରଣ ଦିଗରେ ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଘେନି ଦେବେନ୍ଦ୍ରନାଥ ନିଜକୁ ନିୟୋଜିତ କରିଥିବାରୁ ତାଙ୍କ ସହିତ ପାରିବାରିକ ଜୀବନଯାପନ କରିବା ସହଜ ନଥିଲା । ଶାରଦାଦେବୀ ନିଜେ ଜଣେ ନୈଷ୍ଠିକ ହିନ୍ଦୁ ପରିବାରର କନ୍ୟା ଥିଲେ । ତେଣୁ ନିଜ ମନରେଥିବା ପୌତ୍ତଳିକତାର ବଦ୍ଧମୂଳ ବିଶ୍ୱାସକୁ ଘୁଞ୍ଚାଇବା ପାଇଁ ତାଙ୍କୁ ଅତ୍ୟନ୍ତ ଉଦାର ହେବାକୁ ପଡ଼ିଥିବ । ତାଙ୍କର ବହୁ ସଂଖ୍ୟକ ସନ୍ତାନ ଥିଲେ ସ୍ୱାସ୍ଥ୍ୟବାନ୍, ସୁନ୍ଦର ଓ ମେଧାବୀ । ସେମାନଙ୍କ ମଧ୍ୟରେ କେହି କେହି ପ୍ରତିଭା ସଂପନ୍ନ, କେହି ପ୍ରତିଭାର ସନ୍ନିକଟ ଓ ଆଉ କେହି ମାନସିକ ଦୁର୍ବଳଥିଲେ । ତାଙ୍କର ଜ୍ୟେଷ୍ଠ ପୁତ୍ର ଦ୍ୱିଜେନ୍ଦ୍ରନାଥ ଉନ୍ନତ ପ୍ରତିଭାଧର ଥିଲେ । ଏକାଧାରରେ ସେ ଥିଲେ କବି, ସଂଗୀତଜ୍ଞ, ଦାର୍ଶନିକ ଓ ଗଣିତଜ୍ଞ । ସେ ଯାହା କରିଯାଇଛନ୍ତି ସେଥିରେ ତାଙ୍କ ମନର ମୌଳିକତା, କଳ୍ପନା ଶକ୍ତି ଓ ସୃଷ୍ଟିଶୀଳତାର ପରିଚୟ ସ୍ପଷ୍ଟ । କବିତା ରଚନା କ୍ଷେତ୍ରରେ ତାଙ୍କର ନବ ନବ ପରୀକ୍ଷା ଓ କଳାକୌଶଳର ପ୍ରୟୋଗ କନିଷ୍ଠତମ ଭାଇଙ୍କ କବିମନକୁ ଗଭୀରଭାବେ ପ୍ରଭାବିତ କରିଥିଲା । ଭାବୁକ ଓ ଦାର୍ଶନିକ ପ୍ରବନ୍ଧ ରଚୟିତା ଭାବରେ ଦ୍ୱିଜେନ୍ଦ୍ରନାଥ ବେଶ୍ ଖ୍ୟାତି ଅର୍ଜନ କରିଥିଲେ । ସେ ଥିଲେ ବଙ୍ଗଳା ସର୍ଟହ୍ୟାଣ୍ଡର ଉଦ୍‌ଭାବକ । ସେଇ ବିଷୟରେ ଗୋଟିଏ ସୂଚନାଗ୍ରନ୍ଥ ସେ ପଦ୍ୟାକାରରେ ରଚନା କରିଥିଲେ, ଯାହାକୁ ଜଣେ ସୁବିଦିତ ସମାଲୋଚକ ବର୍ଣ୍ଣନା କରିଛନ୍ତି,''ଏକ କୌଶଳ କୀର୍ତ୍ତି ଓ ଛାନ୍ଦ ବିସ୍ମୟ.'' ଭାବରେ ।

ତାଙ୍କର ଦ୍ୱିତୀୟ ପୁତ୍ର ସତ୍ୟେନ୍ଦ୍ରନାଥ ଥିଲେ ପ୍ରଥମ ଭାରତୀୟ ଇଣ୍ଡିଆନ୍ ସିଭିଲ ସର୍ଭିସ୍ ଅଫିସର । ତା'ଛଡ଼ା ତାଙ୍କର ଆହୁରି ଅନେକ ଉଚ୍ଚତର ଗୁଣ ଥିଲା । ସଂସ୍କୃତରେ ତାଙ୍କର ପାଣ୍ଡିତ୍ୟ ଥିଲା । ଗୀତା ଓ ମେଘଦୂତର କାବ୍ୟାନୁବାଦ, ବୌଦ୍ଧଧର୍ମ ବିଷୟରେ ଆଲୋଚନା ଗ୍ରନ୍ଥ ଓ ନିଜର ସ୍ମୃତିକଥା ଲେଖି ସେ ନିଜର ସାହିତ୍ୟାନୁରାଗର ପରିଚୟ ଦେଇଥିଲେ । ବଙ୍ଗଳା ପାଠକମାନଙ୍କୁ ମରାଠି ଧର୍ମ କାବ୍ୟର ସ୍ୱାଦ ଚଖାଇବାରେ ସେ ଥିଲେ ପ୍ରଥମ ଲେଖକ । ମହର୍ଷିଙ୍କର ଆତ୍ମଜୀବନୀକୁ ସେ ପ୍ରଥମେ ଇଂରାଜିରେ ଅନୁବାଦ କରିଥିଲେ, ଯାହା ପରବର୍ତ୍ତୀ କାଳରେ ଲଣ୍ଡନ ମାକ୍‌ମିଲନ୍ କଂପାନୀ ଦ୍ୱାରା ପ୍ରକାଶିତ ହେଲା । ତାଙ୍କର ପତ୍ନୀ ଅନିନ୍ଦ୍ୟ ସୁନ୍ଦରୀ ଓ ବୁଦ୍ଧିମତି ଥିଲେ କିନ୍ତୁ ସେ ଯୁଗର ଅଧିକାଂଶ ରମଣୀଙ୍କ ପରି ଥିଲେ ଅଶିକ୍ଷିତା । ତାଙ୍କୁ ସତ୍ୟେନ୍ଦ୍ରନାଥ କେବଳ ବଙ୍ଗଳା ଓ ଇଂରାଜୀରେ ନୁହେଁ, ସେ ଯୁଗରେ ସକଳ ବିଦ୍ୟାରେ ଶିକ୍ଷିତା କରାଇବା ପାଇଁ ସମର୍ଥ ହୋଇଥିଲେ । କଥା ଅଛି, ଥରେ ଯେତେବେଳେ ସତ୍ୟେନ୍ଦ୍ରନାଥ ତାଙ୍କ ଅବଗୁଣ୍ଠନ ଖୋଲି ଘୋଡ଼ା ଉପରେ ବସାଇ ବାହାରକୁ ନେଇଯାଇଥିଲେ କଲିକତା ସହର ସ୍ତମ୍ଭୀଭୂତ ହୋଇଯାଇଥିଲା ଓ ଘଟଣାଟି ଦୀର୍ଘଦିନ ପର୍ଯ୍ୟନ୍ତ ଲୋକସ୍ମୃତିରେ ରହିଥିଲା । ଲୋକେ କୁତ୍ସା କରିଥିଲେ ମଧ୍ୟ ସତ୍ୟେନ୍ଦ୍ରନାଥ ଅବିଚଳିତ ଥିଲେ ଓ ପରେ ସେ ତାଙ୍କୁ ସାଙ୍ଗରେ ଇଂଲଣ୍ଡ ଘେନିଯାଇଥିଲେ । ସେମାନଙ୍କର ପୁତ୍ର ଓ କନ୍ୟା ସୁରେନ୍ଦ୍ରନାଥ ଓ ଇନ୍ଦିରା- ଦୁହେଁ ଥିଲେ ସୁନ୍ଦର ଓ ସର୍ବଗୁଣ ସମ୍ପନ୍ନ । ପ୍ରଥମେ ଯେତେବେଳେ ରବୀନ୍ଦ୍ରନାଥ ପଢ଼ିବାପାଇଁ ଇଂଲଣ୍ଡ ଯାଇଥିଲେ ଏ ଦୁହେଁ ଥିଲେ ତାଙ୍କର

ମୁଖ୍ୟ ଖେଳ ସାଙ୍ଗ । ଇନ୍ଦିରା ଦେବୀ ଥିଲେ ଶେଷବୟସ ପର୍ଯ୍ୟନ୍ତ ବଙ୍ଗ ସାହିତ୍ୟର ପ୍ରବନ୍ଧ ନାରୀ ଲେଖିକା ଓ ରବୀନ୍ଦ୍ର ସଂଗୀତର ତତ୍‌ବିତ୍ । ସେଇ ରମଣୀୟ ଓ ତେଜୋଦୀପ୍ତ ମହିଳା 1960 ଅଗଷ୍ଟମାସରେ ସତାଅଶୀ ବର୍ଷ ବୟସରେ ମୃତ୍ୟୁ ବରଣ କରିବା ପର୍ଯ୍ୟନ୍ତ ଜୀବନର ଅନ୍ୟ ସବୁଦିଗପରି ପରିଣତ ବୟସକୁ ମଧ୍ୟ ଅତି ସହଜ ଭାବରେ ଗ୍ରହଣ କରିଥିଲେ ।

ଶାରଦା ଦେବୀଙ୍କର ତୃତୀୟ ପୁତ୍ର ହେମେନ୍ଦ୍ରନାଥ 40ବର୍ଷ ବୟସରେ ମୃତ୍ୟୁ ବରଣ କରିଥିଲେ । ସେ ପ୍ରଧାନତଃ ମନେ ପଡ଼ନ୍ତି, ଯେତେବେଳେ ତାଙ୍କର କନିଷ୍ଠତମ ଭାଇ ରବୀନ୍ଦ୍ରନାଥ ନିଜର ବାଲ୍ୟ ଶିକ୍ଷା ବର୍ଣ୍ଣନା ପ୍ରସଙ୍ଗରେ ତାଙ୍କୁ ଶ୍ରଦ୍ଧା ନିବେଦନ କରିଛନ୍ତି । ଶିଶୁ ରବୀନ୍ଦ୍ର ଓ ତାଙ୍କ ସାଙ୍ଗମାନଙ୍କ ପଢ଼ା ତଦାରଖ କରିବା ଦାୟିତ୍ୱରେ ଥିବା ହେମେନ୍ଦ୍ରନାଥ ସର୍ବଦା ମାତୃଭାଷାରେ ଶିକ୍ଷା ଦେବାକୁ ପ୍ରବର୍ତ୍ତାଉଥିଲେ । ଇଂରାଜୀ ଭାଷାରେ ନୁହେଁ । ଏଇ କ୍ଷୁଦ୍ର ଅଥଚ ମହତ୍ତର କଥାକୁ ସ୍ମରଣ କରି ବହୁ ବର୍ଷ ପରେ ରବୀନ୍ଦ୍ରନାଥ ଲେଖିଛନ୍ତି, ''ଯେତେଦୂର ସମ୍ଭବ ଶିକ୍ଷା ବ୍ୟବସ୍ଥା ଖାଇବା ପ୍ରଣାଳୀକୁ ଅନୁସରଣ କରିବା ଉଚିତ୍ । ଖାଦ୍ୟର ପ୍ରଥମ ସ୍ପର୍ଶରେ ଯେତେବେଳେ ପାଟିକୁ ସ୍ୱାଦ ଲାଗିଯାଏ, ପେଟ ଭର୍ତ୍ତି ହେବା ପୂର୍ବରୁ ତା'ର କାର୍ଯ୍ୟ ପାଇଁ ସଜାଗ ରହେ । ପାଚକ ରସ ଠିକ୍ କାର୍ଯ୍ୟ କରେ । ଶିଶୁର ଶିକ୍ଷା କ୍ଷେତ୍ରରେ ଠିକ୍ ଏପରି ହେବା କଥା । କିନ୍ତୁ ଜଣେ ବଙ୍ଗାଳୀ ଶିଶୁକୁ ଇଂରାଜୀରେ ଶିକ୍ଷା ଦିଆଗଲା ବେଳେ ଏପରି ହୋଇନଥାଏ । ଭାଷାଶିକ୍ଷା ବନାନ ଓ ବ୍ୟାକରଣ ନେଇ ସିଏ ଅସ୍ତବ୍ୟସ୍ତ ଓ ବାଷ୍ପରୁଦ୍ଧ ହୋଇପଡୁଥିବା ବେଳେ ତା'ର ଅନ୍ତର କ୍ଷୁଧାର୍ତ୍ତ ହୋଇରହିଥାଏ । ପୁଣି ସ୍ୱାଦ ଅନୁଭବ କଲାବେଳକୁ ଆଉ କ୍ଷୁଧା ନଥାଏ । ଯେତେବେଳେ ଚତୁର୍ଦ୍ଦିଗରେ ଇଂରାଜୀ ଶିକ୍ଷା ପାଇଁ ଉଦ୍‌ବେଳନ; ମୋର ତୃତୀୟ ଭାଇ ଆମକୁ ବଙ୍ଗଳା ଶିକ୍ଷାରେ ରଖି ନିଜର ସାହସିକତାର ପରିଚୟ ଦେଇଥିଲେ । ସେ ଆଜି ସ୍ୱର୍ଗରେ । ତାଙ୍କ ପାଇଁ ମୋର କୃତଜ୍ଞ ଶ୍ରଦ୍ଧାଞ୍ଜଳି ।''

ପଞ୍ଚମ ପୁତ୍ର ଜ୍ୟୋତିରିନ୍ଦ୍ରନାଥ ଥିଲେ ଅସାଧାରଣ ପ୍ରତିଭା ସଂପନ୍ନ । ସେ ଥିଲେ ସେଯୁଗର ଜଣେ ବହୁ ବିଜ୍ଞାପିତ ବ୍ୟକ୍ତି । ଏକାଧାରାରେ ଜଣେ ସଂଗୀତଜ୍ଞ, ଗୀତିକାର, କବି, ନାଟ୍ୟକାର ଓ ଚିତ୍ରଶିଳ୍ପୀ ଭାବରେ ତାଙ୍କର ସଚେତନ ପ୍ରୟାସ ଉଲ୍ଲେଖଯୋଗ୍ୟ । ତାଙ୍କର ଅମାପ ଶକ୍ତି ଓ ଉଗ୍ର ଜାତୀୟତା ତାଙ୍କୁ କଳା ଓ ସାହିତ୍ୟର ସୀମାଠାରୁ ବହୁ ଉର୍ଦ୍ଧ୍ୱରେ ଆହୁରି ଅନେକ ଦୁଃସାହସିକତାର ଦିଗକୁ ଘେନିଯାଇଥିଲା । ଜାହାଜ ଚଳାଚଳ, ପରିବହନ ଓ ଶିଳ୍ପ ପ୍ରତିଷ୍ଠା ଦିଗରେ ବ୍ରିଟିଶ୍‌ମାନଙ୍କର ଆଧିପତ୍ୟକୁ ଭାଙ୍ଗିଦେବା ପାଇଁ ସେ ଆପ୍ରାଣ ଉଦ୍ୟମ କରିଥିଲେ ଓ ଏହି କାର୍ଯ୍ୟରେ ଆର୍ଥିକ ଦିଗରୁ ସର୍ବସ୍ୱାନ୍ତ ହୋଇଯାଇଥିଲେ । ତାଙ୍କର କନିଷ୍ଠତମ ଓ ସର୍ବାଧିକ ଖ୍ୟାତିସଂପନ୍ନ ଭାଇଙ୍କର ବୌଦ୍ଧିକ ଓ କାବ୍ୟିକ ବିକାଶ ଦିଗରେ ଜ୍ୟୋତିରିନ୍ଦ୍ରନାଥଙ୍କ ପ୍ରଭାବ ଥିଲା ପ୍ରଚୁର ।

କନିଷ୍ଠ ପୁଅଙ୍କ ବ୍ୟତୀତ ଶାରଦାଦେବୀଙ୍କର ଅନ୍ୟାନ୍ୟ ସନ୍ତାନ ସନ୍ତତିଙ୍କ ମଧ୍ୟରେ ଉଲ୍ଲେଖଯୋଗ୍ୟ ଥିଲେ ଦୁଇ କନ୍ୟା । ଜ୍ୟେଷ୍ଠାକନ୍ୟା ସୌଦାମିନୀ ଥିଲେ ପ୍ରଥମରୁ ଶିଶୁ ରବୀନ୍ଦ୍ରନାଥଙ୍କର ପାଳନ ପୋଷଣ ଓ ଶେଷଆଡ଼କୁ ମହର୍ଷିଙ୍କର ସେବାକାର୍ଯ୍ୟରେ ନିୟୋଜିତା । ସେ ମହର୍ଷିଙ୍କର ଆଧାତ୍ମିକ ସହଯୋଗୀ ମଧ୍ୟ ଥିଲେ । ପଞ୍ଚମ କନ୍ୟା ସ୍ୱର୍ଣ୍ଣକୁମାରୀ ଥିଲେ ଖ୍ୟାତନାମା ଗାୟିକା ଓ ଲେଖିକା । ବଙ୍ଗ ସାହିତ୍ୟର ପ୍ରଥମ ନାରୀ ଔପନ୍ୟାସିକା ଭାବରେ ସେ ସ୍ମରଣୀୟା । ସ୍ୱର୍ଣ୍ଣକୁମାରୀଙ୍କର ଦୁଇ କନ୍ୟା, ହିରଣ୍ମୟୀ ସମାଜ-ସେବିକା ଭାବରେ ଓ ସରଳାଦେବୀ ଜଣେ ଲେଖିକା, ଗାୟିକା ଓ ସ୍ୱାଧୀନତା ସଂଗ୍ରାମୀ ଭାବରେ ପରିଚିତା ।

ଏପରି ବିଶାଳ ପରିବାରରେ ମେଧାବୀ, ଜିଦ୍‌ଖୋର ଓ ଅବାଧ- ନାନାଭାବ ଭଙ୍ଗୀର

ସନ୍ତାନ ସନ୍ତତିଙ୍କୁ ଏକତ୍ରିତ ଶାନ୍ତିପୂର୍ଣ୍ଣ ଭାବରେ ରଖିବା କିଛି କମ୍ କଥା ନୁହେଁ । ତେଣୁ ଶାରଦାଦେବୀ ଏସବୁ କାର୍ଯ୍ୟରେ ନିଜର ସମସ୍ତ ସମୟ ନିୟୋଜିତ କରୁଥିବା ବେଳେ ସାନପୁଅଟି ପାଇଁ ଯତ୍ ସାମାନ୍ୟ ସ୍ନେହ ଓ ସମୟ ଯେ ଦେଇପାରୁଥିଲେ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଏପରି ଭାରାକ୍ରାନ୍ତ ମାତୃତ୍ୱ ଘେନି ସେ ଆଉ ଅଧିକା କିଛି କରିପାରୁନଥିଲେ । ମାତ୍ର ମାତୃ ସ୍ନେହପାଇଁ ଶୈଶବର ଏଇ ଅତୃପ୍ତକାମନା ରବୀନ୍ଦ୍ରନାଥଙ୍କ ଜୀବନରେ ଶେଷପର୍ଯ୍ୟନ୍ତ ନାରୀ ମମତା ଓ ସେବା ପ୍ରତି ଏକ ମୋହାକାଂକ୍ଷା ହୋଇରହିଯାଇଥିଲା । ପ୍ରବୀଣ ବୟସରେ ରଚିତ ତାଙ୍କର ଶିଶୁ କବିତା ଗୁଡ଼ିକରେ ଏହାର ଆହତ ପ୍ରତିଧ୍ୱନି ଶୁଣିବାକୁ ମିଳେ । ସେଥିମଧ୍ୟରୁ କେତେଗୁଡ଼ିଏ ପରବର୍ତ୍ତୀ ସମୟରେ 'ଦି କ୍ରିସେଣ୍ଟ ମୁନ୍' (The Crescent Moon) ଶୀର୍ଷକ ଗ୍ରନ୍ଥାକାରରେ ପ୍ରକାଶ ପାଇଛି ।

ତଥାପି ଅନେକ ବର୍ଷ ପରେ ଯେତେବେଳେ ସେ ଶୈଶବର କଥା ସ୍ମରଣ କରିଛନ୍ତି ସେଥିରେ ଆତ୍ମଦୈନ୍ୟ ନାହିଁ । ବରଂ ନିଜକୁ ସେ ସୌଭାଗ୍ୟବାନ୍ ମନେ କରିଛନ୍ତି । କାରଣ ତାଙ୍କୁ ସହଜାତ ଭାବରେ ମିଳିଥିବା ସେଇ ବିପଜ୍ଜନକ ବିଳାସ ପିତାମାତାଙ୍କ ଠାରୁ ଦୂରରେ ରହିବାର ନିଃସଙ୍ଗତା ଭିତରେ ହଜିଯାଇଥିଲା । ଲାଳନ ପାଳନରେ ଶିଶୁ ମାନଙ୍କ ପ୍ରତି ସଜାଗ ରହିବା ବିଷୟରେ ମତ ଦେଇ ସେ ଲେଖିଛନ୍ତି,''ପିଲାମାନଙ୍କୁ ଆଦର କରିବା ଅଭିଭାବକ ମାନଙ୍କର ଏକ ସାମୟିକ ବିନୋଦନ । କିନ୍ତୁ ଶିଶୁମାନଙ୍କ ପାଇଁ ଏହା ଉପଦ୍ରବ ସଦୃଶ ।'' ଅନ୍ୟ କୌଣସି ଦିଗରୁ ମଧ୍ୟ ଶିଶୁଟି ଅତ୍ୟଧିକ ପ୍ରଶ୍ରୟ ପାଇନଥିଲା । ଅଭିଜାତ ଚଳଣି ବିଷୟରେ ତାଙ୍କ ପରିବାରର ପ୍ରସିଦ୍ଧି ଥିଲେ ମଧ୍ୟ ପିଲାମାନଙ୍କୁ କଠୋର ସଂଯମର ସହିତ ଲାଳନ ପାଳନ କରାଯାଉଥିଲା । ''ଆମ ଖାଦ୍ୟପେୟରେ ସୌଖୀନତାର ଗନ୍ଧ ନଥିଲା । ପୋଷାକ ପରିଚ୍ଛଦ ଏତେ ଯତ୍ ସାମାନ୍ୟ ଥିଲା ଯେ ଏଯୁଗର ପିଲାଙ୍କ ଆଗରେ ତାହା କହିଲେ ସମ୍ମାନହାନିର ଆଶଙ୍କା ଅଛି । ଦଶ ବର୍ଷ ବୟସ ହେବା ପର୍ଯ୍ୟନ୍ତ କେବେ କୌଣସି କାରଣରୁ ମୋଜା ଯୋତା ପିନ୍ଧି ନଥିଲୁ । ଶୀତ ଦିନରେ ଗୋଟିଏ ଜାମା ଉପରେ ଆଉ ଗୋଟିଏ ଜାମା ପିନ୍ଧି ରହୁଥିଲୁ । ଏହି କାରଣରୁ ନିଜକୁ କେବେ ଦୁର୍ଭାଗା ମନେ କରୁନଥିଲୁ । କେବଳ ଆମ ଘରର ସିଲେଇବାଲା ବୃଦ୍ଧ ନିୟାମତ୍ ଅବହେଳା କରି ଆମ ଜାମାରେ ପକେଟ ଯୋଡ଼ିବା ଅନାବଶ୍ୟକ ମନେକଲାବେଳେ ଆମେ ଅଭିଯୋଗ କରୁଥିଲୁ- କାରଣ ଏପରି କେହି ବାଳକ କୌଣସି ଅକିଞ୍ଚନ ଘରେ ବି ଜନ୍ମ ହୋଇ ନାହିଁ, ଯାହାର ପକେଟରେ ରଖିବା ପାଇଁ ସ୍ଥାବର ଅସ୍ଥାବର ସଂପତ୍ତି କିଛିମାତ୍ର ନାହିଁ ।''

ଶୈଶବ ଓ କୈଶୋର ତାଙ୍କର ପ୍ରଧାନତଃ ବିତିଥିଲା ଘରର ଚାକରମାନଙ୍କ ଦାୟିତ୍ୱରେ ଯାହାକୁ ପରବର୍ତ୍ତୀ ସମୟରେ ସେ 'ଭୃତ୍ୟରାଜକତନ୍ତ୍ର' ଭାବରେ ବର୍ଣ୍ଣନା କରିଛନ୍ତି । ଶିଶୁଟି ଅବିଶ୍ରାନ୍ତ ଥିଲା ଓ ''ସୁଦୂର ପ୍ରତି ତା'ର ଥିଲା ଅତ୍ୟନ୍ତ ଆକର୍ଷଣ'' । ବାଳକଟିର ଚପଳ କୌତୁହଳରୁ ନିଜକୁ ମୁକ୍ତ ରଖି ପାନୋଲ୍ଲାସରେ ମାତି ରହିବା ପାଇଁ ଜଣେ ଚାକର ସହଜ ଉପାୟଟିଏ ବାହାର କରିଥାଏ । ରବିକୁ ନିର୍ଦ୍ଦିଷ୍ଟ ଏକ ସୁବିଧାଜନକ ଜାଗାରେ ବସାଇଦେଇ ତା'ର ଚାରିପାଖେ ଚକରେ ବୃତ୍ତଟିଏ କାଟି ଏଇ ମେଜିକ୍ ବୃତ୍ତରୁ ବାହାରକୁ ଗୋଡ଼ ନକାଢ଼ିବା ପାଇଁ ଗମ୍ଭୀର ଭାବରେ ସେ କହିଦିଏ । ପିଲାଟି ଆଗରୁ ରାମାୟଣ କାହାଣୀ ଶୁଣି ଲକ୍ଷ୍ମଣ ରେଖା ପାର ହେବାରୁ ସୀତା କିପରି ଭୟଙ୍କର ଦଶା ଭୋଗିଲେ ସେ କଥା ଜାଣିଥାଏ । ତେଣୁ ସେ ବୃତ୍ତ ଭିତରେ ବସିଥାଏ । ଚାକରଟି ଅଦୃଶ୍ୟ ହୋଇଗଲେ ସୁଦ୍ଧା ବାହାରକୁ ଆସିବାକୁ ସାହାସ କରେ ନାହିଁ । ଭାଗ୍ୟତଃ ବୃତ୍ତଟି ଏକ

ଝରକା ପାଖରେ ଥାଏ । ସେଠାରୁ ବାହାରକୁ ଦେଖିଲେ ବିଶେ ଅଦୂରରେ ଥିବା ଏକ ପୁଷ୍କରିଣୀ । ତା'ର ଗୋଟିଏ ପଟେ ପ୍ରକାଣ୍ଡ ଏକ ବଟ ବୃକ୍ଷ ଓ ଅନ୍ୟ ପଟେ ସାରିବଦ୍ଧ ନାରିକେଳ ବୃକ୍ଷଶ୍ରେଣୀ । ଝରକାର ସଟର ଫାଙ୍କ ଦେଇ ସେ ପୋଖରୀରେ ସ୍ନାନରତ ଲୋକମାନଙ୍କର ସ୍ନାନ କର୍ମର ବିଶେଷତ୍ୱ ଦେଖୁଥିଲେ । ପ୍ରତ୍ୟେକେ ଆପଣାର କ୍ରିୟାଚାର ସମ୍ମତ ଠାଣିରେ ଗାଧୋଉଥାନ୍ତି । ଆଉ ଦେଖୁଥିଲେ ସେଇ ବିରାଟ ବଟବୃକ୍ଷ ଓ ତା'ର ଚାରିଦିଗରେ ଖେଳିବୁଲୁଥିବା ଆଲୋକ-ଛାୟାର ଦୃଶ୍ୟ । ଅନେକ ବର୍ଷ ପରେ ସେ ସେଇ ଶୈଶବର ସାଥୀମାନଙ୍କୁ କବିତାରେ ସ୍ମରଣ କରିଛନ୍ତି:

''ନିଶି ଦିଶି ଠିଆ ହୋଇଛ ମୁଣ୍ଡରେ ଧରି ଜଟ,
ଛୋଟ ପିଲାଟି ମନେ ପଡ଼େ କି ଆହେ ପ୍ରାଚୀନ ବଟ ।''

ପିଲାଟି ଅତ୍ୟନ୍ତ ଧୀର ସ୍ୱଭାବର ଥିଲା । କିନ୍ତୁ ନିଜର ଚତୁଷ୍ପାର୍ଶ୍ୱରେ ଥିବା ପ୍ରକୃତି ଏପରିକି ଯେକୌଣସି ସାମାନ୍ୟ ଜିନିଷ ବିଷୟରେ ଜାଣିବା ପାଇଁ ତା'ର ମନରେ ଥିଲା ଅସୀମ କୌତୂହଳ । ଏଇ କାରଣରୁ ତା'କୁ 'ଭୃତ୍ୟରାଜକତନ୍ତ୍ର'ର କଠୋରତା ଭିତରେ ରଖାଯାଇଥିଲା । ''ସେଇ ବାଲ୍ୟ ସ୍ମୃତି ଅନେକ ସମୟରେ ମନେ ପକାଇଦିଏ, ଏକ ରହସ୍ୟମୟ ଭାବହିଁ ଜୀବନ ଓ ଜଗତକୁ ପୂର୍ଣ୍ଣକରି ରଖିଥିଲା ।..... ସତେ ଯେପରିକି ପ୍ରକୃତି ନିଜର ହାତ ମୁଠାକରି ସହାସ୍ୟ ବଦନରେ ପଚାରୁଥିଲା 'ଜାଣ, ମୋ ପାଖରେ କ'ଣ ଅଛି?' ଆଉ କିଛି ହିଁ ଅସମ୍ଭବ ମନେ ହେଉନଥିଲା ।''

ଆବଦ୍ଧ ବାଲ୍ୟାବସ୍ଥାର ଯନ୍ତ୍ରଣାଦାୟକ ଅନୁଭୂତି ତାଙ୍କ ଜୀବନରେ ଗଭୀର ରେଖାପାତ କରିଥିଲା ଓ ପରବର୍ତ୍ତୀ ସମୟରେ ଏକ ନୂତନ ଶିକ୍ଷା ଚିନ୍ତାକୁ ରୂପ ଦେଇଥିଲା । ଘର ଓ ବିଦ୍ୟାଳୟର ସୀମା ପାର ହୋଇ ମାନବ ଓ ପ୍ରକୃତିର ଏଇ ବିଶାଳ ଓ ବିଚିତ୍ର ଜଗତକୁ ଜାଣିବାର ଅତ୍ୟନ୍ତ କୌତୂହଳ ପିଲାଟି ମନରେ 'ଆତ୍ମାର ସେଇ ଅସୀମ ପ୍ରତି ଚିର ଆକର୍ଷଣ'ର ପ୍ରତୀକ ଭାବରେ ଦେଖାଦେଇଥିଲା । 1911ରେ ତାଙ୍କ ରଚିତ ଡ଼ାକଘର (ପରେ Post office ନାମରେ ଇଂରାଜୀରେ ପ୍ରକାଶିତ) ନାଟକର ଅମଲ୍ ଚରିତ୍ର ମାଧ୍ୟମରେ ସେ ଏଇ ଉଦ୍‌ବେଳନକୁ ନାଟ୍ୟରୂପ ଦେଇଛନ୍ତି । କୋମଳମତି ସମ୍ବେଦନଶୀଳ ବାଳକଟିଏ ଅମଲ୍ ସବୁବେଳେ ଏକ ଅନ୍ଧକାର ଘରେ ନିଜ ଶେଯରେ ପଡ଼ିରହିଛି କାରଣ ତା'ର ଉଦ୍‌ବିଗ୍ନ ଅଭିଭାବକ ଓ ଅଜ୍ଞ ପାରିବାରିକ ଡ଼ାକ୍ତର ଭୟକରୁଛନ୍ତି ଯେ ସେ ବାହାରକୁ ଯାଇ ବହିର୍ଜଗତର ସଂସ୍ପର୍ଶରେ ଆସିଲେ ନାନା ରୋଗ ତା'ଦେହରେ ପ୍ରବେଶ କରିଯିବ । ନିଜର ରୋଗଶଯ୍ୟାରୁ ଅମଲ୍ ବାହାର ରାସ୍ତାରେ ଜୀବନ ଯାତ୍ରା ଦେଖୁଥାଏ ଓ ସେଥିରେ ନିଜକୁ ସାମିଲ କରିବା ପାଇଁ ଇଚ୍ଛା କରୁଥାଏ । ଗାଁର ପୋଷ୍ଟମ୍ୟାନ୍‌ଟି ତା'କୁ ଥଟ୍ଟା କରି କହୁଥାଏ ରାଜାଙ୍କଠାରୁ ତା'ପାଖକୁ ଚିଠି ଆଣିଦେବ । ସେଇଆଶାରେ ରହି ଅମଲ୍ ଶେଷ ନିଃଶ୍ୱାସ ତ୍ୟାଗ କରିଛି । ଠିକ୍ ତା'ର ଆଖି ବୁଜି ହେଲାବେଳକୁ ହେରାଲ୍‌ଡ଼୍ ପତ୍ରିକାରେ ରାଜାଙ୍କ ଆଗମନ ଘୋଷିତ ହୋଇଛି । ମୃତ୍ୟୁ ଆଣି ଦେଇଛି ମୁକ୍ତି । ଆଉ ସରଳ ବିଶ୍ୱାସ ତା'ପାଇଁ ହୋଇଛି ଅନ୍ତିମ ପୁରସ୍କାର ।

କିନ୍ତୁ ବାଳକ ରବୀନ୍ଦ୍ର ଥିଲେ ଅମଲ୍ ଠାରୁ ଅଧିକ ସମର୍ଥ । ପିତାମାତା ଓ ପରିବାରର ଅବହେଳା ଓ ଚାକର ବାକରଙ୍କର ଅତ୍ୟାଚାରକୁ ଅତିକ୍ରମ କରି ସେ, ଆପଣାକୁ ଗଢ଼ି ତୋଳିଲେ । ଫଳତଃ ଏସବୁ ତାଙ୍କର କ୍ରମବିକାଶ ପଥରେ ବାଧାସୃଷ୍ଟି କରିପାରିଲା ନାହିଁ । ସେ ପ୍ରଥମେ ଶୁଣିଥିବା ଶିଶୁ ସଂଗୀତର ସୁର ତାଙ୍କ ଅନ୍ତରକୁ ଅଧୀର କରିଥିଲା । ତାହାଥିଲା ବଙ୍ଗଳାରେ ଏକ ସାଧାରଣ ଦୋପଦୀ (ଛଡ଼ା), ଯାହାର ଅର୍ଥ ଥିଲା ''ବର୍ଷା ପଡ଼େ, ପତ୍ରଥରେ'', କିନ୍ତୁ ତାଙ୍କ ପାଇଁ ଏହାଥିଲା

କବିତା ଯାଦୁକରୀର ପ୍ରଥମ ସ୍ପର୍ଶ । ପରେ ଏହାକୁ ସେ ବର୍ଣ୍ଣନା କରିଛନ୍ତି ଆଦିକବିର ପ୍ରଥମ କାବ୍ୟମୂର୍ତ୍ତି ଭାବରେ । ''ବର୍ତ୍ତମାନ ବି ଯେତେବେଳେ ସେ ଦିନର ଆନନ୍ଦ ମୋ ମନକୁ ଆସେ, ମୁଁ ବୁଝିପାରେ କବିତାରେ ଯତିପାତ ଓ ଛନ୍ଦର କେତେ ପ୍ରୟୋଜନ । ଏହା ଅଛି ବୋଲି କଥାଟା ଶେଷ ହୋଇବି ଶେଷ ହୁଏ ନାହିଁ । ବକ୍ତବ୍ୟ ଶେଷ ହେଲେ ମଧ୍ୟ ତାହାର ଝଂକାର ରହିଥାଏ । ଛନ୍ଦ ଘେନି କାନ ଓ ମନ ସଙ୍ଗେ ଖେଳ ଚାଲିଥାଏ । ଏହିପରି ବାରମ୍ବାର ସେଦିନ ମୋର ସମଗ୍ର ଚୈତନ୍ୟ ଭିତରେ ବର୍ଷା ପଡ଼ିବାକୁ ଓ ପତ୍ର ଥରିବାକୁ ଲାଗିଲା ।''

ନିର୍ଦ୍ଧାରିତ ସମୟ ପୂର୍ବରୁ ତାଙ୍କର ସ୍କୁଲ ଯିବା ଆରମ୍ଭ ହୋଇଥିଲା । ପ୍ରାଥମିକ ଲେଖାପଢ଼ା ଶିକ୍ଷା ଦେବା ପାଇଁ ଘରେ ଟିଉଟରଙ୍କୁ ନିଯୁକ୍ତି ଦିଆଗଲା । କିନ୍ତୁ ଏ ସବୁ ଆୟୋଜନ ବେଶୀଦିନ ଗଲା ନାହିଁ । ଯେତେବେଳେ ସେ ଦେଖିଲେ ତାଙ୍କ ବଡ଼ ଭାଇ ଓ ଆଉ ଜଣେ ବଡ଼ ଭଣଜା ଟଣା ଗାଡ଼ିରେ ସ୍କୁଲକୁ ଯାଉଛନ୍ତି, ସେ ବି ସ୍କୁଲ ଯିବା ପାଇଁ କାନ୍ଦିଲେ । ଟିଉଟର ଉତ୍ୟକ୍ତ ହୋଇ ତାଙ୍କୁ ଜୋରରେ ଚାପୁଡ଼ାଏ ଦେଇ କହିଲେ, ''ବର୍ତ୍ତମାନ ସ୍କୁଲ ଯିବା ପାଇଁ ଯେତିକି କାନ୍ଦୁଛୁ, ପରେ ନଯିବା ପାଇଁ ୟାଠୁ ବେଶୀ କାନ୍ଦିବୁ ।'' ତାପରେ ସେ ନିଜ ବାଟରେ ଗଲେ । କିନ୍ତୁ ଏତେ ବଡ଼ ଅବ୍ୟର୍ଥ ଭବିଷ୍ୟତବାଣୀ ଜୀବନରେ ଆଉ କେବେ ଶୁଣି ନଥିଲେ ।

ସେ ପ୍ରଥମରେ ଯେଉଁ ସ୍କୁଲକୁ ଗଲେ ତାହା ଥିଲା 'ଓରୀଏଣ୍ଟାଲ ସେମିନାରୀ' । ସେଠି କ'ଣ ଶିକ୍ଷାଲାଭ କରିଥିଲେ ତାହା ସ୍ମରଣ କରିବା ତାଙ୍କ ପକ୍ଷେ ପରେ ଆଉ ସମ୍ଭବ ହୋଇନି । କିନ୍ତୁ ଛାତ୍ରମାନଙ୍କ ଭିତରେ ଶିକ୍ଷାର ଅଭ୍ୟାସ କରାଇବା ପାଇଁ ନାନାପ୍ରକାର ଦଣ୍ଡ ଦେବାର ଯେଉଁ ସବୁ ନୂତନ କୌଶଳ ସେଠି ପ୍ରଚଳିତ ଥିଲା, ତାହାର ସ୍ପଷ୍ଟ ଚିହ୍ନ ତାଙ୍କ ଦେହ ଓ ମନରେ ଅଙ୍କିତ ହୋଇଯାଇଥିଲା । ଘରକୁ ଫେରି ମନରେ ଆସୁଥିବା କ୍ରୋଧ ଓ ଭୟକୁ ପ୍ରକାଶ କରୁଥିଲେ ଝରକାର ନିର୍ଜୀବ କାଠ ରେଲିଂ ଗୁଡ଼ିକୁ ମୂକଛାତ୍ର ବୋଲି ଭାବି ବେତରେ ମାଡ଼ ଦେଇ, ପରେ ଏହାକୁ ଦାର୍ଶନିକ ଭଙ୍ଗୀରେ ସେ କହିଛନ୍ତି,''ମୁଁ ସେଇଦିନ ଠାରୁ ଉପଲବ୍ଧି କରିଛି ସ୍ୱଭାବ କିପରି ବସ୍ତୁ ଅପେକ୍ଷା ସହଜ ଲଭ୍ୟ । ମୋ ଶିକ୍ଷକମାନଙ୍କର ଧୈର୍ଯ୍ୟ ହୀନତା, କ୍ଷଣକୋପ, ପକ୍ଷପାତିତା ଓ ଅବିଚାର ପ୍ରଭୃତି ଅନ୍ୟାନ୍ୟ ଶିକ୍ଷଣୀୟ ବିଷୟ ଠାରୁ ମୁଁ ସହଜରେ ଆୟତ୍ତ କରିଥିଲି । କିନ୍ତୁ ଏତିକି ସାନ୍ତ୍ୱନା ଥିଲା ଯେ, କୌଣସି ସଚେତନ ପ୍ରାଣୀ ଉପରେ ଏଇ ବର୍ବରତା ପ୍ରୟୋଗ କରିବା ପାଇଁ ସେତେବେଳେ ମୋର ଶକ୍ତି ନଥିଲା ।''

ଠିକ୍ ତା' ପରେ ସାତବର୍ଷ ହେଲାବେଳକୁ ସେ ଭର୍ତ୍ତି ହେଲେ 'ନରମାଲ ସ୍କୁଲ'ରେ । ଏହି ସ୍କୁଲ ଥିଲା ସେତେବେଳର ବ୍ରିଟିଶ୍ ଢାଞ୍ଚାରେ ପରିଚାଳିତ ଆଦର୍ଶ ସ୍କୁଲ । ଏଇ ସ୍କୁଲ ବିଷୟରେ କେବଳ ଦୁଇଟି କଥା ତାଙ୍କ ସ୍ମୃତିରେ ରହିଥିଲା । ତାହା ହେଲା ତାଙ୍କ ମନକୁ ସ୍ପର୍ଶ କରିଥିବା ଜଣେ ଶିକ୍ଷକଙ୍କର ଫମ୍ପା ଭାଷାଡ଼ମ୍ବର ଓ ସ୍କୁଲ ଆରମ୍ଭ ପୂର୍ବରୁ ବାଧ୍ୟତାମୂଳକ ଭାବେ ବୋଲା ଯାଉଥିବା ଏକ ଇଂରାଜୀ ସମୂହ ସଂଗୀତ । ତାହାଥିଲା,''ଦୈନନ୍ଦିନ କାର୍ଯ୍ୟକ୍ରମରେ ଆନନ୍ଦମୟ ଉପାଦାନଟିଏ ଯୋଡ଼ିଦେବାର ପ୍ରୟାସ'' । ବଂଗାଳୀ ଛାତ୍ରମାନେ ସେଥିରେ ବ୍ୟବହୃତ ଇଂରାଜୀ ଶବ୍ଦର ଅର୍ଥ ଓ ସଂଗୀତଟିର ଅପରିଚିତ ରାଗ ବୁଝିପାରୁ ନଥିଲେ । ପରବର୍ତ୍ତୀ ଜୀବନରେ ରବୀନ୍ଦ୍ରନାଥ ଏହାର ଯେଉଁ ଗୋଟିଏ ଧାଡ଼ି ମନେ ପକାଇପାରିଥିଲେ ତାହା ଏହିପରି କିଛି ଉଚ୍ଚାରଣ 'କଲୋକୀ ପୁଲୋକୀ ସିଂଗିଲ ମେଲାଲିଂ ମେଲାଲିଂ ମେଲାଲିଂ ।' ଅନେକ ଭାବି ସେ ଧାଡ଼ିଟିର ଆଂଶିକ ସଂଶୋଧନ କରିଥିଲେ । ସେଥିରେ ମୌଳିକ ଶବ୍ଦ ବୋଧହୁଏ ଥିଲା 'ଫୁଲ୍ ଅଫ୍ ଗ୍ଲି, ସିଙ୍ଗିଙ୍ଗ

ମେରିଲି, ମେରିଲି, ମେରିଲି' କିନ୍ତୁ 'କଲୋଳୀ' ଶବ୍ଦଟି ଯେ କେଉଁ ଶବ୍ଦର ରୂପାନ୍ତର ତାହା ସେ ଖୋଜି ପାଇ ନଥିଲେ ।

ଆଠ ବର୍ଷ ବୟସ ବେଳେ ସେ ପ୍ରଥମେ ପଦ୍ୟ ରଚନା କଲେ । ତାଙ୍କ ଠାରୁ ଛଅବର୍ଷ ବଡ଼ ଜଣେ ଜ୍ଞାତିଭାଇ ତାଙ୍କୁ କବିତା ରଚନା ଅତି ସହଜ କାମ କହି କବିତା ରଚନା ପାଇଁ ପ୍ରବର୍ତ୍ତାଇଥିଲେ । ଶବ୍ଦଗୁଡ଼ିକୁ ଏକ ଚତୁର୍ଦ୍ଦଶପଦୀ ଛାଞ୍ଚରେ ଢ଼ାଳିଲେ ତାହା କବିତା ରୂପ ଧାରଣ କରିବ । ଏହା ବୁଝି ବାଳକ ରବୀନ୍ଦ୍ର ଜନପ୍ରିୟ ବଙ୍ଗଳା ପୟାର ଛନ୍ଦରେ ପ୍ରଥମ କବିତାଟି ଗାରେଇଲେ । "ତତ୍କ୍ଷଣାତ୍ ଚତୁର୍ଦ୍ଦଶପଦୀ କବିତାର ପଦ୍ମ ଫୁଟି ଉଠିଲା । ଏପରିକି ମଧୁମକ୍ଷିକା ଗଣ ତାର ଚତୁପାର୍ଶ୍ୱରେ ଘୂରିବାକୁ ଲାଗିଲେ" । କିନ୍ତୁ କାହିଁକି କେଜାଣି ସେଇ ବାଳକ କବି ହଠାତ୍ ଚିନ୍ତିତ ହୋଇପଡ଼ିଲେ । କବିତା କ'ଣ ତା'ହେଲେ ଶବ୍ଦର ଏକ ପୁଲକିତ ପ୍ରୟୋଗ ବିଧିଠାରୁ ଅଧିକ କିଛି ନୁହେଁ? ପରନ୍ତୁ ତାହା ଥିଲା ଏକ ପ୍ରମତ୍ତ ଅନୁଭୂତି । ଗୋଟିଏ ନୀଳ ରଙ୍ଗର ଖାତା ସଂଗ୍ରହ କରି ସେ ସେଥିରେ କବିତା ଲେଖା ଆରମ୍ଭ କରିଦେଲେ । "ନବାଙ୍କୁରିତ ଶୃଙ୍ଗଯୁଗଳ ଘେନି ତରୁଣ ମୃଗଶାବକ ଯେପରି ଏଠି ସେଠି ତାଡୁଥାଏ ଠିକ୍ ସେହିପରି ମୋର କବିତା କଳିକା ନେଇ ମୁଁ ମାତି ଉଠିଲି ।" ସେ ସମୟରେ ତାଙ୍କର ସାଙ୍ଗସାଥୀମାନେ ଏକଥାକୁ ସଂପୂର୍ଣ୍ଣ ଅସମ୍ଭବ ବା ଅସାଧାରଣ ମନେ କରୁଥିଲେ । କିନ୍ତୁ ଦିନେ ସେ ତାଙ୍କର ଗୋଟିଏ ମର୍ମଭେଦୀ କବିତା ଆବୃତ୍ତି କଲେ । ତା'ର ବିଷୟ ଥିଲା, ଜଣେ ପଦ୍ମତୋଳିବାକୁ ହାତବଢ଼ାଉଛି । କିନ୍ତୁ ତା'ରି ହାତରେ ଉଠୁଥିବା ତରଙ୍ଗରେ ପଦ୍ମ ଘୁଞ୍ଚି ଘୁଞ୍ଚି ଯାଉଛି । ପଦ୍ମ ପାଖରେ ସେ କେବେ ପହଞ୍ଚିପାରୁନାହିଁ ।" ଏଇ କବିତାଟି ଶୁଣି ବୟୋଜ୍ୟେଷ୍ଠ ମାନେ କହିଲେ "ନିଃସନ୍ଦେହରେ ବାଳକଟିର ସୃଷ୍ଟି ପାଇଁ ପ୍ରେରଣା ଅଛି ।"

ରବୀନ୍ଦ୍ର ପିତାଙ୍କର ସାନ୍ନିଧ ଓ ମାତୃସ୍ନେହ ଅତି କମ୍ ପାଇଥିଲେ ମଧ ତାଙ୍କର ଶିକ୍ଷା ଏଥିପାଇଁ କୌଣସିପ୍ରକାରେ ଅବହେଳିତ ହୋଇନଥିଲା । ସାରାଦିନ ପଢ଼ା କାର୍ଯ୍ୟକ୍ରମରେ ଭରି ରହୁଥିଲା । ରାତି ନପାହୁଣୁ ଉଠି ସେ ଜଣେ ନାମୀ ପେଶାଦାର କଣା ପହିଲମାନ୍‌ଙ୍କଠାରୁ କୁସ୍ତି ଶିକ୍ଷା କରୁଥିଲେ । ଏହା ଶେଷ ହେଉ ନହେଉଣୁ ଆସି ପହଞ୍ଚୁଥିଲେ ଜଣେ ମେଡ଼ିକାଲ କଲେଜ ଛାତ୍ର । ତାଙ୍କ କାମ ଥିଲା ମନୁଷ୍ୟର ଅସ୍ଥି ଚିହ୍ନାଇବା ଶିକ୍ଷା ଦେବା । ଘର କାନ୍ଥରେ ମଣିଷର ପୂର୍ଣ୍ଣ କଙ୍କାଳଟିଏ ଟଙ୍ଗା ହୋଇ ରହିଥିଲା । ତା'କୁ ଦେଖି ସେ ବିଭିନ୍ନ ହାଡ଼ର ଦାନ୍ତ ଭଙ୍ଗା କଠିନ ଲାଟିନ୍ ଭାଷାର ନାମସବୁ ମୁଖସ୍ଥ କରି ମନେ ରଖୁଥିଲେ । (କଂକାଳଟିର ଅଦ୍ଭୁତ ସ୍ମୃତି ପରବର୍ତ୍ତୀ ସମୟରେ ତାଙ୍କର ଏକ ରହସ୍ୟମୟ ରୋମାଂଚ୍‌କର କ୍ଷୁଦ୍ରଗଳ୍ପରେ ଅନୁରୂପିତ ହୋଇଥିଲା ।) ଠିକ୍ ସକାଳ ସାତଟା ବେଳେ ଗଣିତ ଶିକ୍ଷକ ଆସୁଥିଲେ ଓ ତାଙ୍କୁ ସ୍ଲେଟ ଧରି ପାଟୀଗଣିତ, ବୀଜଗଣିତ ଓ ଜ୍ୟାମିତି (ରେଖା ଗଣିତ)ର ଅନୁଶୀଳନ କଷିବାକୁ ହେଉଥିଲା । ବେଳେବେଳେ ସରଳ ପରୀକ୍ଷା ଓ ଉଦାହରଣ ସହ ପଢ଼ା ହେଉଥିଲା ପ୍ରାକୃତ ବିଜ୍ଞାନ । ତା'ପରେ ଚାଲୁଥିଲା ବଙ୍ଗଳା ଓ ସଂସ୍କୃତ ଶିକ୍ଷା । ସାଢ଼େ ନ'ଟା ବେଳେ ଚାକର ତାଙ୍କ ପାଇଁ ଆଣି ଦେଉଥିଲା ଭାତ, ଡ଼ାଲି ଓ ମାଛ ତରକାରୀ ଥିବା ଏକା ପ୍ରକାର ଖାଦ୍ୟ । କେବେକେବେ ଏହା ସ୍ୱାଦହୀନ ଲାଗୁଥିଲା । ଏସବୁ ସାରି ଦଶଟାରେ ତାଙ୍କୁ ସ୍କୁଲ ଯିବାକୁ ହେଉଥିଲା ।

ଅପରାହ୍ନ ସାଢ଼େ ଚାରିଟାରେ ସ୍କୁଲରୁ ଫେରି ସେ ଦେଖୁଥିଲେ ବ୍ୟାୟାମ ଶିକ୍ଷକ ତାଙ୍କୁ ଅପେକ୍ଷା କରି ବସିଛନ୍ତି । ତାଙ୍କଠାରୁ ଏକଘଣ୍ଟା ବ୍ୟାୟାମ ଶିକ୍ଷା ଗ୍ରହଣ କରିବାକୁ ହେଉଥିଲା ।

ଠିକ୍ ତା'ପରେ ଆସି ପହଞ୍ଚୁଥିଲେ ଡ୍ରଇଂ ମାଷ୍ଟର । ପୁଣି ସଂଧ୍ୟା ହେବା ପରେ ଆସୁଥିଲେ ଇଂରାଜୀ ଶିକ୍ଷକ । ଲଣ୍ଠନ ଆଲୁଅରେ ପଢ଼ା ଚାଲିଥିଲା ବେଳେ ସେ ଢୁଳଉଥିଲେ ଓ ଯାହା ପଢୁଥିଲେ ତା'ଠୁ ବେଶୀ ଛାଡ଼ିଯାଉଥିଲେ । ଏସବୁ କଷ୍ଟକର କଥା ମନେ ପକାଇ କବି ତାଙ୍କ 'ଜୀବନସ୍ମୃତି'ରେ ଲେଖିଛନ୍ତି, "ଅଗ୍ନିର ଉଦ୍‌ଭାବନ ମନୁଷ୍ୟର ସବୁଠାରୁ ବଡ଼ ଉଦ୍‌ଭାବନ ବୋଲି ଶାସ୍ତ୍ରରେ କୁହାଯାଇଛି । ମୁଁ କଥାଟାର ପ୍ରତିବାଦ କରୁନାହିଁ । କିନ୍ତୁ ସଂଧ୍ୟା ବେଳେ ପକ୍ଷୀମାନେ ଯେ ଆଲୁଅ ଜଳାଇ ପାରନ୍ତି ନାହିଁ, ଏହା ପକ୍ଷୀ ଶାବକମାନଙ୍କ ପକ୍ଷେ ପରମ ସୌଭାଗ୍ୟ ବୋଲି ମୁଁ ମନେ କରେ । ତେଣୁ ସେମାନେ ଯେ ପ୍ରାତ କାଳରୁ ଉଠି ଭାଷା ଶିକ୍ଷା ଦିଅନ୍ତି ଓ ମନର ଆନନ୍ଦରେ ଶାବକ ତାହା ଶିଖି ଥାଆନ୍ତି ।"

ବାଳକ ରବୀନ୍ଦ୍ରଙ୍କ ଖାଇବା କଥା ଯେଉଁ ଚାକର ବୁଝୁଥିଲା ତା'ନାଁ ଥିଲା ବ୍ରଜେଶ୍ୱର । ତାଙ୍କ ଖାଇବାରୁ ସେ ନିଜପାଇଁ ବେଶ୍ କିଛି ଅଂଶ କାଢ଼ି ରଖି ଦେଉଥିଲା । କ୍ଷୁଧାତୁର ପିଲାଟି ସାମନାରେ ଖାଦ୍ୟ ଧରି ରୁକ୍ଷକଣ୍ଠରେ ପଚାରୁଥାଏ 'ଆଉ କଣ କିଛି ଦରକାର'? ଏଇ ପଚାରିବା ଭଙ୍ଗୀରୁ ସେ କି ଉତ୍ତର ଚାହୁଁଥିଲା ଜାଣିପାରି ସେ ପ୍ରାୟତଃ ନାହିଁ କରୁଥିଲେ । ଦ୍ୱିତୀୟ ଥର ସେ ଆଉ ପଚାରୁ ନଥିଲା । ଯାହାହେଉ ଏପ୍ରକାର ଖାଦ୍ୟରେ ତାଙ୍କର କ୍ଷୁଧା ମେଣ୍ଟୁ ନଥିଲେ ବି ଶରୀର ଗଠନ ପାଇଁ ଏହା ଠିକ୍ ଥିଲା । "ନିଶ୍ଚିତ ଭାବେ ଯେଉଁମାନେ ପ୍ରଚୁର ଖାଦ୍ୟ ପାଉଥିଲେ ସେମାନଙ୍କ ଠାରୁ ମୁଁ କୌଣସି ମତେ ଦୁର୍ବଳ ନଥିଲି । ବରଂ ଶକ୍ତ ଥିଲି । ଯଦି କେବେ ସ୍କୁଲ ନଯିବା ପାଇଁ ଜରୁରୀ ପ୍ରୟୋଜନ ବୋଧ ହେଉଥିଲା, ମୋର ଶରୀର ଏତେ ସୁସ୍ଥ ଥିଲା ଯେ ଭଲ ବା ମନ୍ଦ, କୌଣସି ଉପାୟରେ ମୁଁ ଅସୁସ୍ଥ ହୋଇପାରୁ ନଥିଲି । ମୋର ଜାମା ଯୋତା ଯାହା ଭିଜାଇ ଆସିଲେ ବି ମତେ ଆଦୌ ଥଣ୍ଡା ଧରୁନଥିଲା । ଯେଉଁ ଅଭିଭାବକ ମାନେ ସେମାନଙ୍କ ପିଲାଙ୍କୁ ଖୁବ୍ ସ୍ୱାସ୍ଥ୍ୟବାନ୍ ରଖିବାକୁ ଚାହାନ୍ତି, ଯାହାଫଳରେ ସେମାନେ ସ୍କୁଲ ଯିବାରୁ କେବେ ରକ୍ଷା ପାଇବେନି, ମୁଁ ସେମାନଙ୍କୁ ବ୍ରଜେଶ୍ୱର ଭଳି ଚାକରଟିଏ ଖୋଜିବା ପାଇଁ କୁହେ । ଯିଏକି କେବଳ ଖାଇବା ଖର୍ଚ୍ଚ ନୁହେଁ ଡ଼ାକ୍ତରି ଖର୍ଚ୍ଚ ବି କମାଇ ଦେଇପାରେ ।"

ଇତି ମଧ୍ୟରେ ସେଇ ନୀଳଖାତାଟି କବିତାରେ ପୂର୍ଣ୍ଣ ହୋଇ ଉଠୁଥିଲା । କବିତା ରଚନାରେ ତାଙ୍କର ଖ୍ୟାତି ନର୍ମାଲ ସ୍କୁଲ ମାଷ୍ଟରଙ୍କ କାନରେ ପଡ଼ିଲା । ଦିନେ ଜଣେମାଷ୍ଟର ରବୀନ୍ଦ୍ରଙ୍କୁ ଡ଼ାକାଇ ନୈତିକତା ବିଷୟରେ କବିତାଟିଏ ଲେଖିବା ପାଇଁ କହିଲେ । ପର ଦିନ ସେ ଏପରି କବିତା ଟିଏ ଲେଖିନେଇ ସାରା କ୍ଲାସ ସାମନାରେ ଆବୃତ୍ତି କଲେ । "ଏହାର ଏକମାତ୍ର ପ୍ରଶଂସା ଓ ପୁରସ୍କାର ଥିଲା ଯେ କବିତାଟି କେଉଁଆଡ଼େ ହଜିଗଲା ।" ଲେଖକ ପରେ ମନେ ପକାଇଛନ୍ତି, ତାଙ୍କ ଶ୍ରେଣୀ ଉପରେ କବିତାଟିର ନୈତିକ ପ୍ରଭାବ କେବଳ ନୈତିକତା ଠାରୁ ଦୂରେଇ ରହିଲା ବରଂ ତାହା କେବଳ ଈର୍ଷା ଓ ଅବିଶ୍ୱାସ ବଢ଼ାଇଲା । ସେମାନେ ପରେ କହିଥିଲେ, "କବିତାଟି ଚୋରିକରି ଲେଖା ହୋଇଛି ।"

1872-73 ଶୀତକାଳରେ ରବୀନ୍ଦ୍ରଙ୍କ ବୟସ ଏଗାର ବର୍ଷ ନ'ମାସ ବେଳେ ମହର୍ଷି ନିଜେ ତାଙ୍କର ସାନ ଦୁଇପୁଅ ସୋମେନ୍ଦ୍ର ଓ ରବୀନ୍ଦ୍ର ଆଉ ନାତି ସତ୍ୟର ଉପନୟନ କାର୍ଯ୍ୟ ସମାପନ କଲେ । ତିନି ବାଳକଙ୍କୁ ମୁଣ୍ଡିତ କରି କାନରେ ସୁନା କୁଣ୍ଡଳ ପିନ୍ଧା ଗଲା । ସେମାନଙ୍କୁ ଘରର ତିନି ମହଲା ଉପରେ ତିନି ଦିନ ପାଇଁ ଜୀବନ ଓ ଜଗତର ରହସ୍ୟ ସଂପର୍କରେ ଧ୍ୟାନ କରିବାକୁ ବନ୍ଦ କରି ରଖାଗଲା । ଏଇ ସଦ୍ୟ ଦ୍ୱିଜ ତିନିହେଁ ପରସ୍ପରର ଲଣ୍ଡାମୁଣ୍ଡକୁ ମରାମରି ହୋଇ କର୍ଣ୍ଣ

କୁଣ୍ଡଳକୁ ଟଣାଟଣି ହୋଇ ଖେଳ କୌତୁକରେ ଚାକରମାନଙ୍କୁ ଭୟ ଦେଖାଉଥିଲେ । କିନ୍ତୁ ତାଙ୍କୁ ଜପ କରିବା ପାଇଁ କୁହାଯାଇଥିବା ଗାୟତ୍ରୀ ମନ୍ତ୍ର ବାଳକ ରବୀନ୍ଦ୍ରଙ୍କ ମନକୁ ଆଲୋଡ଼ିତ କରିଥିଲା । ଏଇ ବୈଦିକ ମନ୍ତ୍ରର ସ୍ୱର ଧ୍ୱନି ତାଙ୍କ ମନରେ ଛନ୍ଦ ପ୍ରତି ଅନୁରାଗ ଓ ରହସ୍ୟମୟ ଏକାତ୍ମତାର ଆବାହନ କରିଥିଲା । ଗାୟତ୍ରୀ ତାଙ୍କର ଆଜୀବନ ନିଜର ହୋଇ ରହିଲା । ଯଜ୍ଞୋପବୀତ ପରିହାର କରିବାର ବହୁକାଳ ପରେ ମଧ୍ୟ ଏଇ ଗାୟତ୍ରୀ ମନ୍ତ୍ରରୁ ସେ ଏକ ଧ୍ୟାନମୟ ଦୃଷ୍ଟି ଓ ଆତ୍ମଶକ୍ତି ପାଉଥିଲେ ।

କିନ୍ତୁ ତାଙ୍କର ସେଇ ଲଣ୍ଡାମୁଣ୍ଡ କିଛି ଦିନ ପାଇଁ ତାଙ୍କୁ କମ୍ ଅସୁବିଧାରେ ପକାଇ ନଥିଲା । ସେତେବେଳେ ସେ ଉପନୟନ ପରେ ବେଙ୍ଗଲ ଏକାଡ଼େମୀ ଇଂରାଜୀ ସ୍କୁଲରେ ପଢ଼ିବାପାଇଁ ଯାଇଥିଲେ, ତାଙ୍କର ଆଙ୍ଗଲୋ ଇଣ୍ଡିଆନ୍ ସହପାଠୀମାନେ ତାଙ୍କୁ ଏଥିପାଇଁ ଥଟ୍ଟା କରୁଥିଲେ । କାନରୁ କୁଣ୍ଡଳ ସେ କାଢ଼ି ରଖିଦେଇଥିଲେ ସିନା ମୁଣ୍ଡର ବାଳତ ଇଚ୍ଛା ଅନୁସାରେ ବଢ଼ାଇପାରି ନଥିଲେ । ଏମିତି ରବୀନ୍ଦ୍ରନାଥ ଖୁବ୍ ଚିନ୍ତିତ ହୋଇଥିଲା ବେଳେ ହଠାତ୍ ଦୈବକ୍ରମେ ସେ ରକ୍ଷାପାଇଗଲେ, ଯେତେବେଳେ ବାପା ଡାକି କହିଲେ ତାଙ୍କ ସହିତ ହିମାଳୟ ଯିବା ପାଇଁ । ରବୀନ୍ଦ୍ରଙ୍କ ଆନନ୍ଦ କହିଲେ ନସରେ । ଆଗରେ ମହର୍ଷି ନଥିଲେ ସେ ନାଚି ନାଚି ଅଧୀର ହୋଇ ପଡ଼ିଥାନ୍ତେ । ଏପରି ସେ କିଛିଦିନ ଆନନ୍ଦରେ ବିହ୍ୱଳ ହୋଇଉଠିଲେ । ତାଙ୍କ ପାଇଁ ନୂଆ ସୁଟ୍ ତିଆରି ହେଲା । ସୁନା ଜରି ଦିଆ ଟୋପିଟିଏ ବି ଥିଲା । ଯା'କୁ ପିନ୍ଧି ସେ ବାପାଙ୍କ ସହିତ ବାହାରିଲେ ଜୀବନର ପ୍ରଥମ ଦୁଃସାହସିକ ଯାତ୍ରାରେ ।

ତାଙ୍କର ପ୍ରଥମ ଯାତ୍ରା ବିରାମ ଘଟିଲା ଶାନ୍ତିନିକେତନରେ । ଯେଉଁ ଶାନ୍ତିନିକେତନ ଆଜି ଜଗତ ବିଖ୍ୟାତ ସେ ସମୟରେ ତା ନାଁ ପର୍ଯ୍ୟନ୍ତ ଥିଲା ସଂପୂର୍ଣ୍ଣ ଅଜଣା । ସେତେବେଳେ ଏଇ ଛୋଟ ବାଳକ ଜାଣି ନଥିଲା ଆଜି ସେ ଯେଉଁ ଜାଗାରେ ପାଦ ଦେଉଛି ତାହା ତାଙ୍କ ଜୀବନ ସଙ୍ଗେ ଏତେ ବେଶୀ ଓତଃପ୍ରୋତ ଭାବରେ ଜଡ଼ିତ ହୋଇଉଠିବ । ଆଉ ସାରା ପୃଥିବୀରେ ଖ୍ୟାତ ହେବ ତାଙ୍କର ସୁମହାନ ସୃଷ୍ଟିଶୀଳ ଚେତନାର ବାସ୍ତବ ଭୂମି ଭାବରେ । ରବୀନ୍ଦ୍ରଙ୍କ ଜନ୍ମ ପରେ ପରେ ମହର୍ଷି କଲିକତାର ପଶ୍ଚିମ ଦିଗରେ ଶହେ ମାଇଲ ଦୂରରେ ଥିବା ତାଙ୍କର ଜଣେ ବଂଧୁଙ୍କର ଗାଁ ଖମାରକୁ ବୁଲି ଯାଇଥିଲେ । ବୋଲପୁର ଥିଲା ସେଇ ସ୍ଥାନର ପାଖ ରେଳ ଷ୍ଟେସନ । ବୋଲପୁରରେ ଓହ୍ଲାଇ ସେ ଗୋଟେ ପାଲିଙ୍କିରେ ସେଠାକୁ ଗଲେ । ଗଲାବେଳେ ଦେଖିଲେ ପଶ୍ଚିମ ସୀମାନ୍ତ ପର୍ଯ୍ୟନ୍ତ ଦେଖାଯାଉଥିବା ଟାଙ୍ଗର ଭୂଇଁ ଓ ସୀମାନ୍ତରେ କେତୋଟି ସାରିବନ୍ଧ ତାଳଗଛ । ସୂର୍ଯ୍ୟାସ୍ତର ଦୃଶ୍ୟଦେଖି ମହର୍ଷି ମୁଗ୍ଧ ହୋଇଯାଇଥିଲେ । ଦୁଇଟି ଛାତିମ୍ (ସପ୍ତପର୍ଣ୍ଣୀ) ବୃକ୍ଷ ତଳେ ମହର୍ଷି ତାଙ୍କର ସାଂଧ ପ୍ରାର୍ଥନାରେ ବସିଲେ । ଉପାସନାରୁ ଉଠିଲା ବେଳକୁ ସେ ଠିକ୍ କରି ନେଇଥିଲେ ଯେ ଏଇ ଜାଗାଟି ହିଁ ହେବ ତାଙ୍କ ସାଧନାର ପୀଠସ୍ଥଳୀ । ଅବିଳମ୍ବେ ସେ ସେଇ ଜାଗାଟିକୁ କିଣି ନେଲେ ଓ ସେଠି ଘରଟିଏ ତିଆରି କଲେ । ବଗିଚା କଲେ ଓ ତା'ର ନାମକରଣ କଲେ 'ଶାନ୍ତିନିକେତନ' ଯାହାର ପ୍ରକୃତ ଅର୍ଥ ହେଲା ଶାନ୍ତିର ଆବାସ ।

ପିତାପୁତ୍ର ଯାତ୍ରାର ପ୍ରଥମ କେତେଦିନ ସେଇଠି କଟାଇଲେ । ଯେଉଁ ପ୍ରକୃତିକୁ ରବୀନ୍ଦ୍ରନାଥ ବହୁତ ଭଲପାଉଥିଲେ ସେଇ ମୁକ୍ତ ପ୍ରକୃତି କୋଳରେ ସ୍ୱାଧୀନ ଭାବରେ ଅବାଧରେ ବୁଲିବାର ପ୍ରଥମ ଅଭିଜ୍ଞତା ସେ ଲାଭ କଲେ ଏଠି । ଆନନ୍ଦରେ ଅଧୀର ହୋଇ ପଡ଼ିଲେ । ଅବଶ୍ୟ ପିତା ତାଙ୍କୁ ନିଜ ଇଚ୍ଛା ଅନୁସାରେ ପୂରାପୂରି ଛାଡ଼ି ଦେଇନଥିଲେ । ସଂସ୍କୃତ, ବଙ୍ଗଳା ଓ ଇଂରାଜୀ

ସାହିତ୍ୟରୁ ବାଛି ବାଛି ଭଲ ଅଂଶମାନ ଦୁହେଁ ମିଶି ପଢୁଥିଲେ । ସଂଧ୍ୟାରେ ତାଙ୍କୁ ପାଖରେ ବସାଇ ବାପା ତାଙ୍କର ପ୍ରିୟ ପ୍ରାର୍ଥନା ସଂଗୀତ ଗାନ କରୁଥିଲେ । ରାତିରେ ଯେତେବେଳେ ଭାରତର ନିର୍ମଳ ଆକାଶ ତାରାରେ ଭରିଯାଉଥିଲା ସେ ପୁଅଙ୍କୁ ଜ୍ୟୋତିର୍ବିଦ୍ୟା ଶିକ୍ଷା ଦେଉଥିଲେ । ପୁଅଙ୍କ ମନରେ ଆତ୍ମବିଶ୍ୱାସ ଓ ଦାୟିତ୍ୱବୋଧ ଜାଗ୍ରତ କରିବା ପାଇଁ ସେ ତାଙ୍କ ହାତରେ କିଛି ପଇସା ଦେଲେ ଓ ପ୍ରତିଦିନର ଖର୍ଚ୍ଚ ହିସାବ ରଖିବାକୁ କହିଲେ । ଏପରିକି ତାଙ୍କ ଦାମୀ ସୁନା ହାତଘଡ଼ିଟିର ଚାବି ଦେବା ଭାର ଶିଶୁ ପୁତ୍ରଙ୍କ ହାତରେ ଛାଡ଼ିଲେ । ପୁଅ ଏମିତି ଭାବରେ ଘଣ୍ଟାରେ ଚାବି ଦେଲେ ଯେ ଶେଷରେ ଘଣ୍ଟାଟିକୁ କଲିକତା ମରାମତି ପାଇଁ ପଠାଇବାକୁ ହେଲା । କିନ୍ତୁ ମହର୍ଷି ଏଥିରେ ବିରକ୍ତ ହୋଇ ନଥିଲେ ବା ପୁଅଙ୍କୁ ଦୋଷ ଦେଇନଥିଲେ ।

ଏଇଠି ଗୋଟିଏ ତରୁଣ ନାରିକେଳ ବୃକ୍ଷ ମୂଳରେ ଗଡ଼ି ରବୀନ୍ଦ୍ରନାଥ ନିଜର ପ୍ରଥମ ଐତିହାସିକ କାବ୍ୟନାଟିକା ରଚନା କରିଥିଲେ । ଦିଲ୍ଲୀର ଶେଷ ହିନ୍ଦୁ ରାଜା ଦୁଃସାହସୀ ଯୋଦ୍ଧା ପୃଥ୍ୱୀରାଜଙ୍କ ପରାଜୟର କାହାଣୀ ଏହାର ବିଷୟ ବସ୍ତୁ ଥିଲା । ଏଇ ନାଟିକାଟି କେବେ ପ୍ରକାଶ ପାଇ ନଥିଲା । ତା'ର ପାଣ୍ଡୁଲିପି କେଉଁଆଡ଼େ ହଜିଯାଇଥିଲା । "ଶ୍ରେଷ୍ଠ ବୀରତ୍ୱ ସତ୍ତ୍ୱେ ବି ଆଶୁ ମୃତ୍ୟୁରୁ ନିଜକୁ ରକ୍ଷା କରିପାରି ନଥିଲେ ।" ଏହା ମନେ ପକାଇଛନ୍ତି ପରେ ଲେଖକ, ଯାହା ତାଙ୍କୁ ଲେଖିବା ପାଇଁ ଆନ୍ଦୋଳିତ କରିଥିଲା ।

ଶାନ୍ତିନିକେତନରୁ ପିତାପୁତ୍ର ପଶ୍ଚିମ ହିମାଳୟ ଅଭିମୁଖେ ଯାତ୍ରା କଲେ । ବାଟରେ ଅନେକ ସ୍ଥାନ ଦେଖିଲେ । ଶିଖ୍‌ମାନଙ୍କର ତୀର୍ଥ କ୍ଷେତ୍ର ଅମୃତସରରେ କିଛିଦିନ ଅଟକିଲେ । ମହର୍ଷି ଥିଲେ ଶିଖ୍ ଧର୍ମର ପ୍ରଶଂସକ । ସେ ନିୟମିତ ପୁଅକୁ ସାଙ୍ଗରେ ଧରି ସ୍ୱର୍ଣ୍ଣ ମନ୍ଦିର ଦର୍ଶନ କରିବାକୁ ଯାଉଥିଲେ । ଶିଖ୍‌ମାନଙ୍କର ପ୍ରାର୍ଥନା ସଭାରେ ଯୋଗ ଦେଉଥିଲେ । ଏହା ପିଲାଟି ମନରେ ଅନ୍ୟ ଧର୍ମ ପ୍ରତି ସହାନୁଭୂତିଶିଳତା ସୃଷ୍ଟି କରିଥିଲା, ଯାହା ପରବର୍ତ୍ତୀ ସମୟରେ ବହୁ ପ୍ରସାରିତ ହୋଇପାରିଲା ।

ହିମାଳୟର ପାଦଦେଶରେ ପହଞ୍ଚିଲା ବେଳକୁ ଏପ୍ରିଲ ମାସ ହୋଇଯାଇଥିଲା । ଏହାଥିଲା ସମତଳ ଭୂମିରେ ଗ୍ରୀଷ୍ମ କିନ୍ତୁ ପାହାଡ଼ରେ ବସନ୍ତ କାଳ । ସେମାନଙ୍କର ଲକ୍ଷ୍ୟସ୍ଥଳ ଥିଲା ଡ଼େଲହାଉସି । ସମୁଦ୍ର ପଉନରୁ ସାତହଜାର ଫୁଟ ଉଚ୍ଚରେ ଡ଼େଲହାଉସି ଥିଲା କେତେଗୁଡ଼ିଏ ପ୍ରାସାଦର ସମାହାର । ପାହାଡ଼ ଧାରର ପାଖେ ପାଖେ ଥିଲା ଦୀର୍ଘ ସୁନ୍ଦର ଦେବଦାରୁ ଶ୍ରେଣୀ । ଚାରିଆଡ଼େ ବାସନ୍ତୀ ପୁଷ୍ପର ରାଜୁତି । ଏସବୁ ଫୁଲର ନାଁ ସେ ଜାଣି ନଥିଲେ କି ଏପରି ଫୁଲର ସମାରୋହ କେବେ ଦେଖି ନଥିଲେ । ପର୍ବତର ଚୂଡ଼ା ଥିଲା ବରଫାବୃତ ଓ ତଳକୁ ଚାହିଁଲେ ଦେଖାଯାଉଥିଲା ସର୍ପିଳ ଗତିରେ ଉପରକୁ ଉଠିଯାଇଥିବା ପଥଶ୍ରେଣୀ । ସ୍ଥାନେ ସ୍ଥାନେ ଦେଖାଯାଉଥିଲା ଅତିଶୟ ଦୀର୍ଘ ତରୁଶ୍ରେଣୀ ପରିବେଷ୍ଟିତ ଗିରିଖାତ । ସେଇ ଛାୟା ଶୀତଳ ଗିରିଖାତରୁ ଝରି ପଡୁଥିଲା ଛୋଟ ଛୋଟ ଗିରି ଝରଣା । ଠିକ୍ ଯେମିତି ସୁଦୂର ଅତୀତର ଧ୍ୟାନମଗ୍ନ କେଉଁ ଏକ ଋଷିଙ୍କ ପାଦତଳେ ଖେଳୁଥିବା ଅଲିଅଳି କନ୍ୟାଟିଏ । ଏଗାର ବର୍ଷର ଏଇ କୌତୁହଳୀ ବାଳକର ମନ ମଧ୍ୟରେ କାଳିଦାସଙ୍କ ଆତ୍ମା ସେଠି ସତେକି ଶିହରଣ ସୃଷ୍ଟି କରୁଥିଲା ।

ପାହାଡ଼ ଚୂଡ଼ାରେ ବାକ୍ରୋଟା ନାମକ ଜାଗାରେ ତାଙ୍କର କୁଟୀରରେ ସେମାନେ ଶେଷରେ ପହଞ୍ଚିଲେ । ନିଜ ଆଖି ଆଗରେ ହିମାଳୟର ଏଇ ଗାମ୍ଭୀର୍ଯ୍ୟପୂର୍ଣ୍ଣ ସୁନ୍ଦର ପରିବେଶରେ ମନଇଚ୍ଛା ବୁଲି ସୁନ୍ଦର ଦୃଶ୍ୟ ଦେଖିବା ପାଇଁ ପିଲାଟି ଏଠି ସ୍ୱାଧୀନତା ପାଇଲା । ହାତରେ ଲୁହା ଗେବ

ଦିଆହୋଇଥିବା ଲାଠିଟିଏ ଧରି ସେ ଶୃଙ୍ଗକୁ ଶୃଙ୍ଗ ବୁଲିଲେ । ବାପା ତାଙ୍କୁ ପାଦକୁ ପାଦ ଜଗୁ ନଥିଲେ । ଏ କଥା ସ୍ମରଣ କରି ଶେଷ ବୟସରେ ମହର୍ଷିଙ୍କର ଏଇ ସକୃତଜ୍ଞ ପୁତ୍ର ଲେଖିଛନ୍ତି- "ପିତା ଆମର ସ୍ୱାଧୀନତା ପଥରେ କେବେ ବାଧା ହୋଇ ଠିଆ ହେଉନଥିଲେ । ତାଙ୍କ ରୁଚି ଓ ବିଚାରର ବହିର୍ଭୂତ କେତେ କାମ ମୁଁ ବାରମ୍ବାର କରିଛି । ତାଙ୍କର ପଦଟିଏ ନିଷେଧ ବାଣୀ ମତେ ଏଥିରୁ ନିବୃତ କରିପାରିଥା'ନ୍ତା । କିନ୍ତୁ ସେ ଧୈର୍ଯ୍ୟର ସହିତ ଅପେକ୍ଷା କରୁଥିଲେ ଯେପରି ମୋ ନିଜ ଅନ୍ତର ଭିତରୁ ଏହି ଗର୍ହିତ କାର୍ଯ୍ୟରୁ ବିରତ ହେବାର ଆହ୍ୱାନ ଆସେ । ସେ ଜାଣିଥିଲେ, ଯେ କୌଣସି କଥାକୁ ଭଲପାଇବା ବ୍ୟତୀତ କେବଳ ତା ସହିତ ପରିଚିତିରେ କିଛି ନଥିଏ । ଉଚିତ୍ ବା ସଠିକ୍ କଥାକୁ କେବଳ ନିଷ୍କ୍ରିୟ ଭାବେ ଗ୍ରହଣ କରିବାରେ ସେ ସନ୍ତୁଷ୍ଟ ହେଉନଥିଲେ । ସେ ଚାହୁଁଥିଲେ ଆମେ ଯେପରି ସତ୍ୟକୁ ହୃଦୟର ଅନ୍ତରତମ ପ୍ରଦେଶରେ ସ୍ଥାନ ଦେଉ । ଆହୁରି ସେ ଜାଣିଥିଲେ ସତ୍ୟକୁ ଛାଡ଼ି ଦୂରରେ ରହିଲେ ବି ଦିନେ ନା ଦିନେ ତାହା ଖୋଜିମିଳିବ । କିନ୍ତୁ ଶିଶୁକୁ ଜୋର ଜବରଦସ୍ତ କରି ବା ଅନ୍ଧ ଭାବରେ ବାହାରୁ ଚାପ ପକାଇ ବାଧ କଲେ ସତ୍ୟର ପଥ ରୁଦ୍ଧ ହୋଇଯିବ ।"

ସବୁ କିଛି କିନ୍ତୁ କେବଳ କୌତୂହଳ ବା ମଜାର କଥା ନଥିଲା । ପିତାଙ୍କର ଉଦାରତା ବିଷୟରେ ତାଙ୍କ ପୁଅ ଯେତେ ପ୍ରଶଂସା କଲେ ବି ମହର୍ଷି କାମ ଆଦାୟ କରିବା ଓ ଶୃଙ୍ଖଳା ରକ୍ଷା ଦିଗରେ କଠୋର ଥିଲେ । ସୂର୍ଯ୍ୟୋଦୟ ପୂର୍ବରୁ ପୁଅକୁ ଉଠାଇ ସେ ସଂସ୍କୃତ ଶବ୍ଦରୂପ ଶିଖାଉଥିଲେ । ଦେବେନ୍ଦ୍ରନାଥ ନିଜ ଆତ୍ମଜୀବନୀରେ ଲେଖିଛନ୍ତି, "କମ୍ବଳର ଉଷ୍ମତା ଛାଡ଼ି ଏଇ ଶୀତୁଆ ସକାଳୁ ଉଠିବା ଯେ କି କଷ୍ଟକର ।" ସଂସ୍କୃତ ଶିକ୍ଷାପରେ ତାଙ୍କୁ ବାପା ଗିଲାସେ ଦୁଧ ପିଆଉଥିଲେ । ତା'ପରେ ଉପନିଷଦ୍‌ର ମନ୍ତ୍ର ଗାନ କରି ଶୁଣାଉଥିଲେ । ପିତାଙ୍କ ମନ୍ତ୍ରୋଚ୍ଚାରଣର ଉଦାର ଗମ୍ଭୀର ଧ୍ୱନି ତାଙ୍କୁ ମୁଗ୍ଧ କରିଦେଉଥିଲା । ସୂର୍ଯ୍ୟ ପୂର୍ବାକାଶର ଶିଖର ଛୁଇଁବା ପୂର୍ବରୁ ସେମାନଙ୍କ ପ୍ରଭାତୀ ଯାତ୍ରା ଆରମ୍ଭ ହୋଇଯାଉଥିଲା । ଫେରିବା ପରେ ଇଂରାଜୀ ପଢ଼ା, ତା ପରେ ହିମଶୀତଳ ଜଳରେ ସ୍ନାନ । ସଂଧ୍ୟାରେ ଏହିପରି ପଢ଼ା ଚାଲୁଥିଲା ।

ଚାରିମାସ ଏପରି ସ୍କୁଲ ଓ ଘରର ଅବସାଦକର ରୁଟିନ୍ ବାହାରେ ବାପାଙ୍କ ସାଙ୍ଗରେ କଟିଥିଲା । ଏହାହିଁ ଥିଲା ତାଙ୍କ ଶୈଶବ ଜୀବନର ସବୁଠାରୁ ଆନନ୍ଦ ଦାୟକ ଦିନ, ମହାର୍ଘ ଅଭିଜ୍ଞତା ଅର୍ଜନ ଓ ଶିକ୍ଷାଗ୍ରହଣର ସମୟ । ଏହାର ଫଳ ସ୍ୱରୂପ ସେ ଯେତେବେଳେ କଲିକତା ଫେରିଲେ ସେ ଆଉ ଶିଶୁଟିଏ ହୋଇ ନଥିଲେ ।

# ମୁକୁଳିତ କବି

*ଧାଇଁବୁଲେ ମୁହିଁ କସ୍ତୁରୀମୃଗ ସମ*
*ପାଗଳ ପରାଏ ଆପଣା ଗନ୍ଧେ ମମ ।*

ଜଣେ ବାଳକବୀର ଭଳି ଏକ ଦୁଃସାହସିକ ଅଭିଯାନରୁ ରବୀନ୍ଦ୍ର ଘରକୁ ଫେରିଲେ । ଆଜିର ମଟରଗାଡ଼ି ଓ ଉଡ଼ାଜାହାଜ ଯୁଗରେ ହିମାଳୟ ଯାତ୍ରାର ମହତ୍ତ୍ୱ ଅକଳ୍ପନୀୟ । ସେତେବେଳେ ତାହା ଥିଲା ଏକ ସୁଦୂରର ସ୍ୱପ୍ନରାଜ୍ୟ । ଦେବତାଙ୍କ ବାସଭୂମି । ପୁରାଣରେ ପଢ଼ିଥିବା ଦେବତା ଓ ଋଷିମାନଙ୍କର ତାହାଥିଲା ବିହାର ସ୍ଥଳୀ । ମହୀୟାନ୍ ମହର୍ଷିଙ୍କ ସାଙ୍ଗରେ ସେଇ ମହାନ୍ ରାଜ୍ୟରେ ବୁଲି ଆସିଥିବାରୁ ପରିବାର ଭିତରେ ବାଳକଟିର ସମ୍ମାନ ବଢ଼ିଯାଇଥିଲା । ସେ ଆଉ ଚାକରମାନଙ୍କ ଶାସନରେ ରହିଲା ନାହିଁ । ସ୍ଥାନ ପାଇଲା ଅନ୍ଦର ମହଲରେ । ମା ପୁଅର ଅଦ୍ଭୁତ କ୍ଷମତା ପାଇଁ ଗୌରବ ଅନୁଭବ କରୁଥିଲେ । ମା ଓ ଅନ୍ୟ ମହିଳାମାନେ ତା'ଠାରୁ ଏ ଦୁଃସାହସିକ ଯାତ୍ରା କଥା ଶୁଣିବା ପାଇଁ ଉତ୍ସୁକ ହେଉଥିଲେ ।

ନବବଧୂ ରୂପେ ବଡ଼ଭାଇ ଜ୍ୟୋତିରିନ୍ଦ୍ର ନାଥଙ୍କ ପତ୍ନୀ କାଦମ୍ବରୀ ଦେବୀ ତାଙ୍କର "ମୃଣାଳ ବାହୁରେ ସ୍ୱର୍ଣ୍ଣବଳା ପିନ୍ଧି" ଘରେ ପାଦ ଦେବା ଦିନଠାରୁ ଅନ୍ତଃପୁର ରବୀନ୍ଦ୍ରଙ୍କ ପାଖରେ ଅଧିକ ଆକର୍ଷଣୀୟ ହୋଇଉଠିଲା । ତାଙ୍କ ବୟସ ରବୀନ୍ଦ୍ରଙ୍କ ଠାରୁ ଥିଲା ଅଳ୍ପ ବେଶୀ । ରବୀନ୍ଦ୍ର ତାଙ୍କୁ ଖେଳ ସାଥୀ ରୂପେ ପାଇବାକୁ ଆକୁଳ ହେଉଥିଲେ । କବିଙ୍କ ଭାଷାରେ: "ମୁଁ ତାଙ୍କ ଠାରୁ ନିରାପଦ ଦୂରତାରେ ରହି ଘୂରି ବୁଲୁଥିଲି । କିନ୍ତୁ ପାଖକୁ ଯିବାକୁ ସାହସ କରୁନଥିଲି ।" ସେ ଜଣେ ଆଗନ୍ତୁକା ଯିଏ ଘରର ସମସ୍ତଙ୍କ ସହିତ ମିଶି ଏକ ହୋଇଯିବାକୁ ଚାହୁଁଥିଲେ । ଆଗରୁ ଜାଣି ନଥିଲେ ବି ସେ ଯେ ନିଜର ଏ ଭାବନା ରବୀନ୍ଦ୍ରଙ୍କୁ କୌତୂହଳୀ କରୁଥିଲା ଓ ତାଙ୍କର ବନ୍ଧୁ ହେବା ପାଇଁ ରବୀନ୍ଦ୍ରଙ୍କୁ ଆକାଂକ୍ଷିତ କରିଥିଲା । ସେ ତାଙ୍କ ପାଖରେ ବୁଲୁଥିଲା ବେଳେ ସାନନାନୀ ଦେଖିଲେ କଟାକ୍ଷ କରି କହୁଥିଲେ 'ତମେ ପୁଅ ପିଲାମାନେ ଏଠି କାହିଁକି? ଯାଅ ବାହାରକୁ' । ଅଭିମାନ ଓ ହତାଶାରେ ସେ ଯେମିତିକି ବିଚଳିତ ହୋଇଯାଉଥିଲେ ।

ସେଦିନର ଅବସ୍ଥା ଏବେ ସବୁ ବଦଳି ଯାଇଛି । ସେଦିନର ଅନାକାଂକ୍ଷିତ ଅନୁପ୍ରବେଶକାରୀ ଆଜି ଅନ୍ତଃପୁରରେ ଜଣେ ଆନନ୍ଦପ୍ରଦ ଅତିଥି । ସମସ୍ତେ ଚାହୁଁଥିଲେ ତାଙ୍କ ପାଖରୁ ଶୁଣିବାକୁ ତାଙ୍କର ସେହି ଭ୍ରମଣକାହାଣୀ । ଆଉ ବାଳକ ଅଭିଯାତ୍ରୀଟି ଏଠି ସେଠି କଳ୍ପନାର ରଙ୍ଗବୋଳି ଅତି ନିପୁଣ ଭାବରେ ତା'ର ଭ୍ରମଣ କାହାଣୀ ବର୍ଣ୍ଣନା କରିବାକୁ ହେଳା କରୁନଥିଲା । "ମୁଁ କହିପାରିବି କି ଯେ ଏଥିରେ ମତେ ଅନେକ ମୁଣ୍ଡ ଖଟାଇବାକୁ ପଡୁନଥିଲା"- ସେ ପରେ ସ୍ମରଣ କରି ଲେଖିଛନ୍ତି । ସଂଧ୍ୟା ବେଳେ ଖୋଲା ଆକାଶ ତଳେ ଛାତଉପରେ ମା' ଙ୍କର ଆସର

ଯେତେବେଳେ ବସୁଥିଲା ସେଠି ସମସ୍ତଙ୍କର ଆକର୍ଷଣର କେନ୍ଦ୍ର ହୋଇଉଠୁଥିଲେ ରବୀନ୍ଦ୍ର । ସେଠି ସେ ଗପ କହୁଥିଲେ, କବିତା ଆବୃତ୍ତି କରୁଥିଲେ, ଆକାଶର ଗ୍ରହ ନକ୍ଷତ୍ରଙ୍କ ବିଷୟରେ ଜ୍ଞାନର ଭଣ୍ଡାର ଯାହା ସେ ପିତାଙ୍କ ପାଖରୁ ଆହରଣ କରିଥିଲେ ତାହା ଅଜାଡ଼ି ଦେଇ ଶ୍ରୋତାମଣ୍ଡଳୀକୁ ଆଶ୍ଚର୍ଯ୍ୟ କରିଦେଉଥିଲେ । ଯେଉଁଦିନ ତାଙ୍କ ମୁହଁରୁ ରାମାୟଣର ଶ୍ଳୋକ ଶୁଣାଗଲା ସେଦିନ ସମସ୍ତେ ପ୍ରଶଂସାରେ ଶତମୁଖ ହୋଇ ଉଠିଲେ । ନାରୀମାନେ କୃତ୍ତିବାସଙ୍କ ବଙ୍ଗଳା ରାମାୟଣ ସିନା ପଢ଼ିଥିଲେ ମୂଳ ସଂସ୍କୃତ ରାମାୟଣ ସେମାନଙ୍କ ପାଇଁ ଥିଲା ଦୁରୂହ ବିଷୟ । ପଣ୍ଡିତ ଲୋକଙ୍କ ବ୍ୟତୀତ ଆଉ କାହାରି ପ୍ରବେଶ ନଥିଲା । ମା କହୁଥିଲେ 'ରବି ! ସୁନାଟା ପରା ତୁ ଆମକୁ ରାମାୟଣ ଶୁଣା ।' କିନ୍ତୁ ଏମିତି କଅଁଳେଇ କହିବା ଦରକାର ନଥିଲା । ଏଇ ଅଦ୍ଭୁତ ମେଧାବୀ ବାଳକଟି ନିଜର ଶ୍ରୋତାମଣ୍ଡଳୀକୁ ଚକିତ କରିଦେବା ପାଇଁ ଅତ୍ୟନ୍ତ ଆଗ୍ରହୀ ଥିଲା କେବଳ ସେଇ ନବବଧୂ ମୁହଁରୁ ଟିକିଏ ପ୍ରଶଂସା ଶୁଣିବା ପାଇଁ ।

ମନେ ମନେ ସେ ଭାବୁଥିଲା ଅନ୍ତଃପୁରରେ ଏଇ ପ୍ରବେଶ ଓ ସମ୍ମାନ ତାକୁ ସ୍କୁଲ ଯିବାରୁ ଛୁଟି କରିଦେବ । କିନ୍ତୁ ତାହା ହେଲା ନାହିଁ । ଘରର ବଡ଼ମାନେ ତା'ର ପଢ଼ା ପ୍ରତି ବେଶ୍ ଧ୍ୟାନ ଦେଉଥିଲେ, ବେଙ୍ଗଲ ଏକାଡ଼େମୀକୁ ଯାଇ ସେ ଯେମିତି ନିଷ୍ଠାର ସହ ପଢ଼ନ୍ତି ତାହାର ବ୍ୟବସ୍ଥା କରିଥିଲେ, ଆଉ ସଂସ୍କୃତ ଓ ବଙ୍ଗଳା ପଢ଼ାଇବା ପାଇଁ ଦୁଇଜଣ ଗୃହଶିକ୍ଷକ ନିଯୁକ୍ତ କରିଥିଲେ । ସେ ଦୁଇଜଣ ଶିକ୍ଷକ ଅନୁଭବ କଲେ ଘୋଡ଼ାକୁ ପାଣି ପାଖକୁ ନେବା ସହଜ କିନ୍ତୁ ପାଣି ପିଆଇବା କଠିନ । ତେଣୁ ସେମାନେ ବ୍ୟାକରଣର କଠୋର ପଥରେ ଛାତ୍ରଟିକୁ ନନେଇ ସିଧା ଶ୍ରେଷ୍ଠ କାବ୍ୟ ଗ୍ରନ୍ଥ ସବୁ ପଢ଼ାଇବାକୁ ଆରମ୍ଭ କଲେ । ସଂସ୍କୃତ ଶିକ୍ଷକ 'ଶକୁନ୍ତଳା' ପଢ଼ାଇଲେ ଓ ବଙ୍ଗଳା ଶିକ୍ଷକ ପଢ଼ାଇଲେ 'ମ୍ୟାକ୍‌ବେଥ୍' । ଏଇ ଚାହାଳି ଚୋର ପିଲାଟିକୁ ପଢ଼ାଇବାର ଗୋଟିଏ ସହଜ ଉପାୟ ବଙ୍ଗଳା ଶିକ୍ଷକ ଶୀଘ୍ର ଆବିଷ୍କାର କରିପକାଇଲେ । ସେ 'ମ୍ୟାକ୍‌ବେଥ୍' ନାଟକରୁ ଗୋଟିଏ ଦୁଇଟି ଦୃଶ୍ୟ ପଢ଼ି ରବୀନ୍ଦ୍ରଙ୍କୁ ବୁଝାଇ ଦିଅନ୍ତି । ତା'ପରେ ବଙ୍ଗଳାରେ ତାହା ଲେଖି ନ ସାରିବା ଯାଏଁ ଘରେ ତାଙ୍କୁ ବନ୍ଦ୍ କରିଦିଅନ୍ତି । ଏପରି ହୋଇ ସାରା ନାଟକଟି ବଙ୍ଗଳା କବିତାରେ ଅନୁବାଦ ହୋଇଗଲା । ଏଇ ହେଲା ବାଳକ ରବୀନ୍ଦ୍ରଙ୍କର ମହାନ୍ ଇଂରାଜୀ ନାଟ୍ୟକାରଙ୍କ ପ୍ରତି ପ୍ରଥମ ଶ୍ରଦ୍ଧାଞ୍ଜଳି । ଦୁର୍ଭାଗ୍ୟକୁ ପାଣ୍ଡୁଲିପିଟି ରହିଲା ନାହିଁ । କେବଳ ତା'ର ପ୍ରଥମ ଅଂଶ ଯାହା ସାତ ବର୍ଷ ପରେ 1880ରେ ସାହିତ୍ୟ ପତ୍ରିକା ଭାରତୀରେ ପ୍ରକାଶିତ ହୋଇଥିଲା ତାହା ଦେଖିବାକୁ ମିଳେ । ଏହି ମର୍ମାନୁବାଦରୁ ତରୁଣ କବିଙ୍କର ବଙ୍ଗଳା ଭାଷା, ଛନ୍ଦ ଓ ବିଶେଷ କରି କଥିତ ଭାଷା ଉପରେ କିପରି ଆଶ୍ଚର୍ଯ୍ୟଜନକ ଦକ୍ଷତା ଥିଲା ତାହାର ନିଦର୍ଶନ ମିଳେ ।

କିନ୍ତୁ ବଙ୍ଗଳା ଏକାଡ଼େମୀକୁ ପଢ଼ିବାକୁ ଯାଇ ରବିଙ୍କର ଦୁଃଖର ସୀମା ନଥିଲା । ସମଗ୍ର ପରିବେଶ ଥିଲା 'ଇଙ୍ଗ୍ ଭାରତୀୟ' । ପିଲାମାନେ ଫମ୍ପା ଇଂରାଜୀ ଗାଳି ସବୁ ଶିଖୁଥିଲେ । ଆଉ ଶିକ୍ଷକମାନେ ମୂକ ଛାତ୍ରଙ୍କ ଉପରେ ପାଠସବୁ ଯେପରିକି ଟେକା ଫୋପାଡ଼ିଲା ପରି ଲଦି ଦେଉଥିଲେ । ସ୍କୁଲ ପଢ଼ାଦିନର ଏଇ ଅସହନୀୟ ଦୁଃଖ ଭିତରେ ରବୀନ୍ଦ୍ର ତାଙ୍କର ଦୀର୍ଘ କବିତା 'ଅଭିଳାଷ' ରଚନା କରିଥିଲେ । ବର୍ଷକ ପରେ ପାରିବାରିକ ପତ୍ରିକା 'ତତ୍ତ୍ୱବୋଧିନୀ'ରେ ଏହା ପ୍ରକାଶିତ ହୋଇଥିଲା । ଏଥିରେ କିନ୍ତୁ ନାଁ ଛପା ଯାଇନଥିଲା । ତଳେ ପାଦଟୀକାରେ ଲେଖାଥିଲା ଜଣେ ବାରବର୍ଷର ବାଳକଦ୍ୱାରା ରଚିତ ।

ଅଳ୍ପ କିଛି ଦିନ ପରେ ସେ ପୁଣିଥରେ ସ୍କୁଲ ବଦଳାଇ ସେଣ୍ଟ୍ ଜାଭିଅରସ୍‌ରେ ଭର୍ତ୍ତିହେଲେ ।

କିନ୍ତୁ କିଛି ଅଧିକ ଫଳ ହେଲା ନାହିଁ । ଏହାର ଶିକ୍ଷା ବ୍ୟବସ୍ଥା ପୂର୍ବ ସ୍କୁଲ ଗୁଡ଼ିକ ପରି ଥିଲା ନିରୁତ୍ସାହକର ଓ ଗତାନୁଗତିକ, ଆଉ ପରିବେଶ ମଧ୍ୟ ଧର୍ମୀୟ ନିୟମ ପାଳନ ନାଁରେ ନିଶ୍ଚଳ ଓ ନିରାନନ୍ଦମୟ । ପରିଶେଷରେ 1875ରେ ଚଉଦ ବର୍ଷ ବୟସରେ ରବୀନ୍ଦ୍ର ପୁରା ସ୍କୁଲଯିବା ବନ୍ଦ କରିଦେଲେ । 'ନିତ୍ୟ ଆବର୍ତ୍ତିତ ଘଣା' ରୂପକ ସ୍କୁଲ , ଯାହାକୁ ସେ 'ବିଚ୍ଛିନ୍ନ ଜେଲଖାନା ଓ ଡ଼ାକ୍ତରଖାନାର ଏକ ମିଶ୍ରଣ' ରୂପେ ବର୍ଣ୍ଣନା କରିଥିଲେ, ସେଥିରେ ଆଉ ଅଧିକ ପେଶି ହେବା ପାଇଁ ପରିବାର ଆଉ କୌଣସି ପ୍ରକାର ଚାପ ତାଙ୍କୁ ବାଧ କରିପାରି ନଥିଲା । ଅଭିଭାବକମାନେ ତାଙ୍କ ଉପରେ ଭବିଷ୍ୟତ ପାଇଁ ଆଶା ଛାଡ଼ି ଦେଇଥିଲେ, ଏପରିକି ତାଙ୍କୁ ଗାଳିଦେବା ବି ବନ୍ଦ କରିଦେଇଥିଲେ ।

କିନ୍ତୁ ସେଇ ସ୍କୁଲ ନଯିବା ପିଲାଟି କେବଳ ଅଳସୁଆ ହୋଇ ସମୟ ଅତିବାହିତ କରୁନଥିଲା । ଜନ୍ମରୁ ସେ ଥିଲା ସରସ୍ୱତୀ ଓ କଳାର ଉପାସକ । ଯଦିଓ ଅନ୍ୟ କେଉଁ ପୂଜାରୀ ମାଧ୍ୟମରେ ସେ ସରସ୍ୱତୀଙ୍କ ପାଖକୁ ଯିବାକୁ ଚାହୁଁନଥିଲା; କିନ୍ତୁ ଆପଣାର ଆତ୍ମିକ ଅର୍ଘ୍ୟ ଘେନି ନିଜ ବାଟରେ ସରସ୍ୱତୀଙ୍କର ବନ୍ଦନା କରିବାକୁ ଚାହୁଁଥିଲା । ଏହିପରି ସ୍ୱାଧୀନ ଜ୍ଞାନପିପାସୁ ବାଳକଟି ପାଇଁ ତାଙ୍କ ପରିବାରର ପରିବେଶ ଥିଲା ଅତ୍ୟନ୍ତ ଉପଯୋଗୀ ଓ ଉତ୍ସାହପ୍ରଦ । କବି, ପଣ୍ଡିତ, ସଂଗୀତଜ୍ଞ, ଦାର୍ଶନିକ, ଚିତ୍ରଶିଳ୍ପୀ, ସମାଜ ସଂସ୍କାରକ- ଏପରି ଅସାଧାରଣ ଓ ପ୍ରତିଭା ସମ୍ପନ୍ନ ବ୍ୟକ୍ତି ତାଙ୍କ ପରିବାର ଭିତରେ ଅନେକେ ଥିଲେ ଓ ବାହାରୁ ମଧ୍ୟ ଅନେକେ ଆସୁଥିଲେ । ତାଙ୍କ ଘର ଭିତରେ ନାଟକ ରଚିତ ଓ ଅଭିନିତ ହେଉଥିଲା । ଚତୁର୍ଦ୍ଦିଗରେ ସଂଗୀତ ପୂରି ରହିଥିଲା । ସେତେବେଳେ ବଙ୍ଗ ଦେଶରେ ନବଜାଗରଣର ସୂତ୍ରପାତ ହୋଇଥାଏ । ନୂଆ ନୂଆ ବହି, କବିତା, କ୍ରମିକ ଉପନ୍ୟାସ ଓ ବିଦେଶୀ ସାହିତ୍ୟର ଅନୁବାଦ ପ୍ରକାଶ କରୁଥିବା ପତ୍ରିକା ସବୁ ଅଭୂତପୂର୍ବ ଜନପ୍ରିୟତା ଲାଭ କରୁଥିଲା । ତରୁଣ ରବୀନ୍ଦ୍ର ତାଙ୍କ ହାତରେ ଯାହା ପଡୁଥିଲା ବହୁଳ ଭାବରେ ପଢୁଥିଲେ ଓ ବଡ଼ମାନଙ୍କର ରଚନା ଆଲୋଚନାକୁ ମନ ଦେଇ ଶୁଣୁଥିଲେ ।

ବୁଦ୍ଧିଜୀବୀମାନଙ୍କ ଭିତରେ ନବଚେତନାର ଉଦ୍‌ବର୍ତ୍ତନ କ୍ରମେ ଜାତୀୟତାବାଦ ଭାବରେ ଦେଖାଦେଉଥିଲା ସେ ସମୟରେ । 1867ରେ 'ହିନ୍ଦୁମେଳା' ନାମକ ଏକ ସାଂସ୍କୃତିକ ତଥା ରାଜନୈତିକ ସଂଗଠନର ବାର୍ଷିକୋତ୍ସବରେ ଏହି ଜାତୀୟ ଚେତନା ପ୍ରଥମେ ପ୍ରକାଶ ପାଇଥିଲା । ଏହାଥିଲା ପ୍ରକୃତରେ ଅଠର ବର୍ଷପରେ ପ୍ରତିଷ୍ଠା ହୋଇଥିବା 'ଭାରତୀୟ ଜାତୀୟ କଂଗ୍ରେସ୍'ର ପ୍ରଥମ ବଙ୍ଗ ସଂସ୍କରଣ । ସେହି ସମୟର ବଙ୍ଗ ଦେଶରେ ଅନ୍ୟସବୁ ପ୍ରଗତିଶୀଳ ଆନ୍ଦୋଳନ ପରି ଏଇ ସଂଗଠନ ମଧ୍ୟ ଠାକୁର ପରିବାରର ପୃଷ୍ଠପୋଷକତାରେ ଗଢ଼ିଉଠିଥିଲା । 1876 ଫେବୃଆରୀ ମାସରେ ଏହାର ଏକ ବାର୍ଷିକ ଅଧିବେଶନରେ ଚଉଦ ବର୍ଷ ବୟସ୍କ ତରୁଣ ରବୀନ୍ଦ୍ର ଗୋଟିଏ ଜାତୀୟତାବୋଧ କବିତା ଆବୃତ୍ତି କରିଥିଲେ । କବିତାଟି ସେତେବେଳର 'ଇଙ୍ଗ୍-ବଙ୍ଗଳା' ସାପ୍ତାହିକୀ 'ଅମୃତବଜାର' ପତ୍ରିକାରେ ପ୍ରକାଶ ପାଇଲା । ଏହା କେବଳ ପାଠକମାନଙ୍କ ପାଇଁ ତାଙ୍କର ପ୍ରଥମ ଆତ୍ମପ୍ରକାଶ ନଥିଲା ଏଥିରେ ପ୍ରଥମ କରି ରଚୟିତା ଭାବରେ ରବୀନ୍ଦ୍ରଙ୍କ ନାଁ ପ୍ରକାଶ ପାଇଥିଲା । ଏଇ ସଫଳତାରେ ଉତ୍ସାହିତ ହୋଇ ସେ 'ପ୍ରକୃତିର ଖେଦ' ଶୀର୍ଷକ ଆଉ ଏକ କବିତା ଜନସାଧାରଣଙ୍କ ଭିତରେ ଆବୃତ୍ତି କରିଥିଲେ । ସେଇ ବର୍ଷ ମାର୍ଚ୍ଚ ମାସ ଆଠ ତାରିଖରେ ତାଙ୍କ ମା ଶାରଦା ଦେବୀଙ୍କ ପରଲୋକ ହୋଇଗଲା । ସେତେବେଳକୁ ରବୀନ୍ଦ୍ରଙ୍କ ବୟସ ମାତ୍ର ତେରବର୍ଷ ଦଶମାସ ।

ଏହା ଥିଲା ମୃତ୍ୟୁ ସହିତ ରବୀନ୍ଦ୍ରଙ୍କର ପ୍ରଥମ ପରିଚିତି । ପରିବାରର ଏଇ ମୁଖ୍ୟ ମହିଳାଙ୍କର ପରଲୋକରେ ସମସ୍ତେ ଦୁଃଖରେ ଭାଙ୍ଗି ପଡ଼ିଥିବେ । ଦୁର୍ଘଟଣାଟି କିନ୍ତୁ ରବୀନ୍ଦ୍ରଙ୍କ ମନରେ କୌଣସି ରେଖାପାତ କରିପାରି ନଥିଲା । କାରଣ ପ୍ରଥମତଃ ମା' ଓ ପୁଅଙ୍କ ଭିତରେ ସେପରି କୌଣସି ପ୍ରାଣୋଚ୍ଛଳ ଅଭୁଲା ସ୍ନେହ ନଥିଲା । ଦ୍ୱିତୀୟତଃ ବଡ଼ଭାଇ ଜ୍ୟୋତିରିନ୍ଦ୍ରନାଥ ଓ ତାଙ୍କ ସୁନ୍ଦରୀ ପତ୍ନୀ କାଦମ୍ବରୀ ଦେବୀ (କବିଙ୍କର ପୂର୍ବ କଥିତ ନୂଆ ଭାଉଜ) ରବୀନ୍ଦ୍ରଙ୍କ ଉପରେ ସ୍ନେହମମତା ଢ଼ାଳିଦେଇଥିଲେ ଓ ମାତୃହରା ବାଳକଟିକୁ ଏତେ ଆପଣାର କରିଦେଇଥିଲେ ଯାହା ପୂର୍ବରୁ ସେ କେବେ କାହାଠାରୁ ପାଇନଥିଲେ ।

ସୌଭାଗ୍ୟ କ୍ରମେ ରବୀନ୍ଦ୍ର ଏଇ ତରୁଣ ଓ ଭାବପ୍ରବଣ ବୟସରେ ଜଣେ ବଡ଼ଭାଇଙ୍କୁ ପାଇଥିଲେ ଯିଏ ଥିଲେ ତାଙ୍କ ପାଇଁ ବନ୍ଧୁ ଓ ପଥପ୍ରଦର୍ଶକ । ସେ ତାଙ୍କର ମୁକୁଳିତ ଅଥଚ ବିଶୃଙ୍ଖଳିତ ପ୍ରତିଭାକୁ ଗଢ଼ିତୋଳିଥିଲେ । ଆଉ ପାଇଥିଲେ ଜଣେ ନୂଆ ଭାଉଜଙ୍କୁ ଯିଏ କେବଳ ତାଙ୍କର ଖେଳସାଥୀ ନଥିଲେ, ଥିଲେ ଅଭିଭାବକ । କେଉଁ ଏକ ଦୂରାଗତ ଦେବକନ୍ୟାପରି ଆସି ସେ ତାଙ୍କ ମା' ଙ୍କ ସ୍ଥାନ ପୂରଣ କେବଳ କରିନଥିଲେ, ବରଂ ତାଙ୍କ ଠାରୁ ଢ଼େର୍‌ବେଶୀ ହୋଇପାରିଥିଲେ । ରବୀନ୍ଦ୍ରଙ୍କ ଆଦ୍ୟ ତରୁଣ ବୟସର ସବୁ ଉଚ୍ଛୃଙ୍ଖଳତାକୁ ଆତ୍ମସାତ୍ କରି ସେ ତାଙ୍କୁ ନବଜୀବନ ଦେଇଥିଲେ । ତାଙ୍କର ବି କଣ୍ଢେଇ ଖେଳ ଖେଳିବାର ବୟସ ଥିଲା । କଣ୍ଢେଇଙ୍କର ବାହାଘର ଖେଳରେ ଭୋଜିଖାଇବା ପାଇଁ ସେ ତାଙ୍କର ସାନ ଦିଅରଙ୍କୁ ନିମନ୍ତ୍ରଣ କରୁଥିଲେ । ସେ ରନ୍ଧାକାର୍ଯ୍ୟରେ ଖୁବ୍ ପାରଦର୍ଶୀ ଥିଲେ ଓ ଦିଅରଙ୍କୁ ଏପରି ଭଲଖାଦ୍ୟ ସବୁ ଖାଇବାକୁ ମିଳୁଥିଲା ଯାହା ପୂର୍ବରୁ ବ୍ରଜେଶ୍ୱରର ରୋଷେଇରେ ଜମା ନଥିଲା ।

ଘରକରଣାରେ ତାଙ୍କୁ ସାହାଯ୍ୟ କରିବା ପାଇଁ କାଦମ୍ବରୀ ଦେବୀ ରବୀନ୍ଦ୍ରଙ୍କୁ ଅଭ୍ୟସ୍ତ କରାଇଥିଲେ । ଗୁଆ କାଟିବା ଓ ଆଚାର ପାଇଁ ସରୁ ଆମ୍ବଖଣ୍ଡକୁ ଶୁଖାଇବା ପ୍ରଭୃତି କାର୍ଯ୍ୟରେ ସେ ସାହାଯ୍ୟ କରୁଥିଲେ । ରବୀନ୍ଦ୍ରଙ୍କ ପ୍ରତି ତାଙ୍କର ଅବାରିତ ସ୍ନେହ ଥିଲା । ସତ ବା ମିଛ ହେଉ ପଛେ ବିଫଳତାରେ ସେ ତାଙ୍କୁ ଥଟ୍ଟା କରୁଥିଲେ ଓ ଗାଳି ଦେଉଥିଲେ । ନିଜର ସାମର୍ଥ୍ୟ ଘେନି ସେ ଯେପରି ଅହଂକାରୀ ହୋଇ ନଉଠନ୍ତି ସେଥିପ୍ରତି ସେ ତାଙ୍କୁ ସଚେତନ କରାଇ ଦେଉଥିଲେ । ରବୀନ୍ଦ୍ର ଯେତେବେଳେ ନିଜର ନୂଆ ଲେଖା ତାଙ୍କୁ ଶୁଣାଉଥିଲେ, ସେ ଖାଲି ସ୍ମିତହସି ମନ୍ତବ୍ୟ ଦେଉଥିଲେ- 'ଅନ୍ୟକବିମାନେ କିପରି ଆହୁରି ଭଲ ଲେଖୁଛନ୍ତି ।' ସେ କେବଳ କବିଙ୍କର ସୂକ୍ଷ୍ମ ଗୁଆକଟାକୁ ପ୍ରଶଂସା କରୁଥିଲେ । କବି ସ୍ମରଣ କରି ଲେଖୁଛନ୍ତି: ''ମୋର ଅନ୍ୟ କୌଣସି ଗୁଣ ଅଛି ବୋଲି ସେ କେବେ ସ୍ୱୀକାର କରୁନଥିଲେ । ଏପରିକି ମୋର ବାଜେ ଚେହେରା ପାଇଁ ଭଗବାନଙ୍କ ଉପରେ ମତେ ରଗାଉଥିଲେ ।'' ଯେତେବେଳେ ଆପଣାର ସଫଳତାରେ ରବୀନ୍ଦ୍ର ଉତ୍‌ଫୁଲ୍ଲ ହୋଇ ଉଠୁଥିଲେ ସେ ତାଙ୍କୁ ''ମନ୍ଦଃ କବି ଯଶପ୍ରାର୍ଥୀ ଗମିଷ୍ୟାମୌପହାସ୍ୟତାମ୍'' ସଂସ୍କୃତ ଉକ୍ତିଟି ମନେ ପକାଇ ଦେଉଥିଲେ । ଏଇଭଳି ସେ ସର୍ବଦା ତାଙ୍କ ଅଭିବୃଦ୍ଧିରେ ଶ୍ରେଷ୍ଠତା ଆଶା କରୁଥିଲେ ଓ ସେହି ଦିଗରେ ତାଙ୍କୁ ଉତ୍ସାହିତ କରୁଥିଲେ । ସବୁ କ୍ଷେତ୍ରରେ ଭାଉଜଙ୍କର ବାହାବା ପାଇବା ଥିଲା କବିଙ୍କର ସେତେବେଳର ଏକମାତ୍ର ଅଭିଳାଷ ।

କାଦମ୍ବରୀ ଦେବୀ ପ୍ରକୃତରେ ନିଜେ ଜଣେ ସାହିତ୍ୟ ଓ ସଂଗୀତ ପ୍ରେମୀ ମହିଳା ଥିଲେ । ଏ ଦିଗରେ ତାଙ୍କର ସୂକ୍ଷ୍ମ ଅବବୋଧ ଥିଲା । ସେ ହିଁ ପ୍ରଥମେ ରବୀନ୍ଦ୍ରଙ୍କୁ ସମସାମୟିକ ଗୀତିକାର ବିହାରୀଲାଲ ଚକ୍ରବର୍ତ୍ତୀଙ୍କ ସଙ୍ଗୀତର ସ୍ୱାଦ ଚଖାଇଥିଲେ । ରବୀନ୍ଦ୍ରଙ୍କୁ କ୍ରମଶଃ ତାହା ଭଲ ଲାଗିଲା ।

ଆହୁରି ମଧ୍ୟ ବଡ଼ଭାଇ ଦ୍ୱିଜେନ୍ଦ୍ରନାଥଙ୍କ ସଦ୍ୟ ପ୍ରକାଶିତ 'ସ୍ୱପ୍ନ ପ୍ରୟାଣ' କାବ୍ୟଗ୍ରନ୍ଥର ରସାସ୍ୱାଦନରେ ତାଙ୍କ ସହିତ ସେ ଭାଗ ନେଉଥିଲେ । ଛନ୍ଦ ଓ ରୂପକ ପ୍ରୟୋଗରେ କାବ୍ୟଟି ଥିଲା ଅପରୂପ । ରବୀନ୍ଦ୍ରନାଥଙ୍କ ନିଜ ଭାଷାରେ କହିଲେ,: ''ଏହାର ରମଣୀୟତା ମୋ ହୃଦୟର ପ୍ରତ୍ୟେକଟି ତନ୍ତୁରେ ଜଡ଼ିତ ହୋଇ ରହିଥିଲା ।'' ସେତେବେଳେ ସାହିତ୍ୟ ପତ୍ରିକା ''ବଙ୍ଗ ଦର୍ଶନ''ରେ ବଙ୍କିମ ଚାଟାର୍ଜୀଙ୍କର ଉପନ୍ୟାସ ସବୁ କ୍ରମାନ୍ୱୟରେ ପ୍ରକାଶ ପାଉଥିଲା । ବଙ୍ଗାଳି ହୃଦୟରେ ଝଡ଼ ଉଠୁଥାଏ । ବଙ୍ଗ ଦର୍ଶନ ଆସିଗଲେ ଘରେଘରେ ଆଉ ମଧ୍ୟାହ୍ନ ବେଳର ବିଶ୍ରାମ ରହୁ ନଥିଲା । ମୋର ସୌଭାଗ୍ୟଯେ ମତେ ଟଣାଟଣି କରି ପଢ଼ିବାକୁ ପଡୁନଥିଲା । କାରଣ ମୁଁ ଭଲ ପଢ଼ିଶୁଣାଇ ପାରୁ ଥିଲି । ନିଜେ ପଢ଼ିବା ଅପେକ୍ଷା ମୋ ପଢ଼ା ଶୁଣିବାଟା ଭାଉଜଙ୍କୁ ବେଶୀ ଭଲ ଲାଗୁଥିଲା । ସେ ସମୟରେ ବିଜୁଳି ପଂଖା ନଥିଲା । କିନ୍ତୁ ପଢୁ ପଢୁ ଭାଉଜଙ୍କ ହାତ ପଙ୍ଖା ପବନରୁ ଅଧେ ପାଇବାର ସୁବିଧା ହେଉଥିଲା । ଏହିପରି ମାତୃହରା ବାଳକ ଓ ସନ୍ତାନହୀନା ଭାଉଜଙ୍କ ଭିତରେ ଏକ ନିବିଡ଼ ବନ୍ଧୁତା ଓ ସ୍ନେହ ଗଢ଼ି ଉଠିଥିଲା ଯାହା ଆଦ୍ୟ ତାରୁଣ୍ୟର ସବୁ ଉଶୃଙ୍ଖଳତାକୁ ଉପଶମ କରି ତାଙ୍କ ଭିତରେ ଏକ ଆତ୍ମତୃପ୍ତି ଓ ଆତ୍ମମଗ୍ନ ଭାବ ଆଣି ଦେଇଥିଲା ଓ ତାଙ୍କର ବିକ୍ଷିପ୍ତ ପ୍ରତିଭାକୁ ସଂହତ ରୂପ ଦେଇପାରିଥିଲା ।

କାଦମ୍ବରୀ ଦେବୀ ରବୀନ୍ଦ୍ରଙ୍କୁ ଆଦର ଯତ୍ନ କରି ଆବେଗୋଷ୍ଣ ଅନୁପ୍ରେରଣା ଯୋଗାଉଥିଲା ବେଳେ ତାଙ୍କ ସ୍ୱାମୀ ଜ୍ୟୋତିରିନ୍ଦ୍ରନାଥ ଏଇ ଅସ୍ପଷ୍ଟ ଓ ଅନୁଦ୍‌ଘାଟିତ ପ୍ରତିଭାର ସ୍ଫୁରଣ ପାଇଁ ପ୍ରଥମ କରି ପ୍ରୟୋଜନୀୟ ନିୟମ ଓ ଶୃଙ୍ଖଳା ଶିଖାଉଥିଲେ । ସୃଷ୍ଟିଶୀଳତାର ଶୀର୍ଷ ସୋପାନରେ ଥାଇ ଜୋତିରିନ୍ଦ୍ରନାଥ ରବୀନ୍ଦ୍ରଙ୍କୁ ନିଜର କରି ନିଜ କଳା କର୍ମଶାଳାର ଶିକ୍ଷାର୍ଥୀ କରିଥିଲେ । ନିଜେ ପିଆନୋ ବଜାଇଲା ବେଳେ ରବୀନ୍ଦ୍ରଙ୍କୁ ଗୀତ ଗାଇବାକୁ କହୁଥିଲେ । ସଂଗୀତ ଲେଖି ସେ ସାନଭାଇକୁ ସ୍ୱର ସଂଯୋଜନା ପାଇଁ ଦେଉଥିଲେ । ନିଜ ନାଟକର ପାଣ୍ଡୁଲିପି ପଢ଼ି ସେ ରବୀନ୍ଦ୍ରଙ୍କର ଅଭିମତ ଚାହୁଁଥିଲେ । ଏପରିକି ତାଙ୍କ ଲେଖା ସେଥିରେ ଯୋଡ଼ି ସେ ତାଙ୍କୁ ଉତ୍ସାହିତ କରୁଥିଲେ । ନାଟକ ଗୁଡ଼ିକୁ ମଞ୍ଚସ୍ଥ କରିଲା ବେଳେ ସେ ରବୀନ୍ଦ୍ରଙ୍କୁ ଅଭିନୟ କରିବାକୁ କହୁଥିଲେ । ବୌଦ୍ଧିକ ଆଲୋଚ଼ନା ବା ସାହିତ୍ୟ ସୃଷ୍ଟି ସଂପର୍କରେ ନିଜର ସ୍ୱାଧୀନମତ ଦେବାପାଇଁ ସେ ରବୀନ୍ଦ୍ରଙ୍କୁ ସର୍ବଦା ଆହ୍ୱାନ କରୁଥିଲେ । ଉଭୟଙ୍କ ଭିତରେ ଥିବା ବୟସର ପାର୍ଥକ୍ୟ ସେଥିରେ ଆଦୌ ବାଧା ସୃଷ୍ଟି କରୁ ନଥିଲା । ବାଲ୍ୟାବସ୍ଥାରେ ଏଇ ଅବଦମିତ ବର୍ଷ ଗୁଡ଼ିକରେ ତାଙ୍କର ଅଭାବବୋଧକୁ ଏପ୍ରକାର ସୁସ୍ଥ ଓ ପ୍ରେରଣାପ୍ରଦ ସାନିଧ୍ୟ ଭିତରେ ରବୀନ୍ଦ୍ର ଅତିକ୍ରମ କରିଯାଇଥିଲେ ।

ଏ କଥା କୃତଜ୍ଞ ଚିତ୍ତରେ ସ୍ମରଣ କରି ସାନଭାଇ ଲେଖିଛନ୍ତି: ''ସେହି ସମୟରେ ଏଭଳି ବନ୍ଧନ ମୁକ୍ତି ପାଇନଥିଲେ ମୋର ଚିରଜୀବନ ଗୋଟେ ପଙ୍ଗୁତା ରହିଯାଇଥାନ୍ତା । କ୍ଷମତାଶାଳୀ ମାନେ ସର୍ବଦା ସ୍ୱାଧୀନତାର ଅପବ୍ୟବହାର ମାନ ଦେଖାଇ ସ୍ୱାଧୀନତାକୁ ଖର୍ବ କରିବାର ଚେଷ୍ଟା କରିଥାନ୍ତି, କିନ୍ତୁ ସ୍ୱାଧୀନତାର ଅପବ୍ୟୟର ଅଧିକାର ନଥିଲେ ତାହାକୁ ସ୍ୱାଧୀନତା କୁହାଯାଇ ପାରେନା । ଅପବ୍ୟୟ ଦ୍ୱାରା ସଦ୍‌ବ୍ୟୟର ଯେଉଁ ଶିକ୍ଷାମିଳେ ତାହାହିଁ ପ୍ରକୃତ ଶିକ୍ଷା । ଅନ୍ତତଃ ମୁଁ ଜୋରଦେଇ ଏକଥା କହିପାରେ ଯେ, ସ୍ୱାଧୀନତା ଦ୍ୱାରା ଯେଉଁ ସବୁ ଉତ୍‌ପାତ ଘଟାଇଛି ତାହାହିଁ ମତେ ଉତ୍ପାତ ନିବାରଣ ସ୍ଥାନରେ ପହଞ୍ଚାଇ ଦେଇପାରିଛି । ଶାସନ, ପୀଡ଼ନ, କାନମୋଡ଼ା ଓ କାନରେ ମନ୍ତ୍ର ଫୁଙ୍କା- ଏହିପରି ନାନାଭାବରେ ମତେ ଯାହା ସବୁ ଦିଆଯାଇଥିଲା ମୁଁ ତାହା କିଛି ହିଁ ନିଜର କରିପାରିନି । ଯେତେବେଳେ ଯାଏଁ ମୁଁ ମୋ ଭିତରେ ଆତ୍ମମୁକ୍ତି ପାଇପାରି ନାହିଁ

ସେତେବେଳେ ଯାଏଁ ନିଷ୍ଫଳ ବେଦନା ଛଡ଼ା ଆଉକିଛି ମତେ ମିଳିନାହିଁ ।''

ଶିକ୍ଷାର୍ଥୀ ଜୀବନ ତାଙ୍କର କେବଳ ସାହିତ୍ୟ କର୍ମରେ ସୀମିତ ନଥିଲା । ଉତ୍ତରପୂର୍ବ ବଙ୍ଗର ଶିଲାଇଦହରେ ଅବସ୍ଥିତ ପାରିବାରିକ ଜମିଦାରୀ ଖମାରକୁ ବୁଲିବାକୁ ଗଲାବେଳେ ଜ୍ୟୋତିରିନ୍ଦ୍ର ନାଥ ସାନଭାଇଙ୍କୁ ସାଙ୍ଗରେ ନେଇଯାଉଥିଲେ । ତାଙ୍କୁ ଘୋଡ଼ାଚଢ଼ିବା ଶିଖାଉଥିଲେ । ବାଘଶିକାର ବେଳେ ମଧ୍ୟ ସେ ବଡ଼ଭାଇଙ୍କ ସାଙ୍ଗରେ ଯାଉଥିଲେ । ରବୀନ୍ଦ୍ରନାଥ ବର୍ଣ୍ଣନା କରି ଲେଖିଛନ୍ତି: ''ଘନ ଜଙ୍ଗଲ । ସେଇ ଜଙ୍ଗଲର ଛାୟା ଆଲୋକ ଭିତରେ ବାଘ ତ ଆଦୌ ଆଖିରେ ପଡିବାକୁ ଚାହେଁନି । ମୋଟା ବାଉଁଶଟିଏ ଗଛରେ ଲଗାଇ ସିଡ଼ିଭଳି କରାଯାଇଥାଏ । ଜ୍ୟୋତିଦାଦା ବନ୍ଧୁକ ହାତରେ ଧରି ଉପରକୁ ଉଠିଲେ । ମୁଁ ପାଦରେ ଜୋତା ବି ପିନ୍ଧିନି ଯେ ବାଘ ଗୋଡ଼ାଇଲେ ତାକୁ ସେଇଥିରେ ପିଟିବି । ବିଶ୍ୱନାଥ (ସାଙ୍ଗରେ ଥିବା ଶିକାରୀ,) ଇସାରା କରି ଦେଖାଇଲା । ଜ୍ୟୋତିଦାଦା କିଛି ସମୟ କିଛି ହିଁ ଦେଖିପାରିଲେନି । ଚଷମାଲଗା ଆଖିରେ ଅନେକସମୟ ଦେଖିବା ପରେ ଘଞ୍ଚବୁଦା ଭିତରୁ ସେ ବାଘ ଦେହର ଦାଗ ଦେଖିବାକୁ ପାଇଲେ ଓ ଗୁଳିମାରିଲେ । ଦେବାତ୍ ସେଇଟା ତାର ଦଣ୍ଡକୁ ଭେଦ କଲା । ସେ ଆଉ ଉଠିପାରିଲାନି । କାଠିକୁଟା ଯାହା ପାଖରେ ପାଇଲା ତାକୁ ରାମ୍ପୁଡ଼ି ଝାମ୍ପୁଡ଼ି ଲାଂଜ ପିଟି ଗର୍ଜିବାକୁ ଲାଗିଲା । ଭାବି ଦେଖିଲେ ସନ୍ଦେହ ହୁଏ, ମରିବା ପାଇଁ ଏତେ ସମୟ ଅପେକ୍ଷା କରି ରହିବା ବାଘର ପ୍ରକୃତି ନୁହେଁ ବୋଲି ଜଣାଅଛି । ଗତ ରାତିରେ ତା ଖାଇବାରେ କେହି ଅଫିମ ମିଶାଇ ଦେଇନିତ! ତା ନହେଲେ ଏତେ ନିଦ କାହିଁକି?''

ଏହିପରି ଗଭୀର ସ୍ନେହ ଓ ଅନୁପ୍ରେରଣାର ଉଷ୍ଣ ଆବେଶ ଭିତରେ ରବୀନ୍ଦ୍ରଙ୍କର କବିତ୍ୱର ଧାରାପ୍ରାଣ ପ୍ରାଚୁର୍ଯ୍ୟ ଲାଭ କରି ଚାଲିଲା । ସେ ମାତ୍ର ଚଉଦ ବର୍ଷର ହୋଇଥିଲା ବେଳେ ଆଠ ସର୍ଗ ବିଶିଷ୍ଟ 1600 ଧାଡ଼ିରୁ ବେଶୀ ତାଙ୍କର ପ୍ରଥମ ଦୀର୍ଘ କବିତା 'ଜ୍ଞାନାଙ୍କୁର' ସାହିତ୍ୟ ପତ୍ରିକାରେ ପ୍ରକାଶ ପାଇଲା । କାବ୍ୟଟିର ନାଁ ଥିଲା 'ବନଫୁଲ' । କଥାବସ୍ତୁ ଥିଲା ହିମାଳୟର କୌଣସି ନିର୍ଜନ ନିବାସରେ ବାପାଙ୍କ ସହିତ ବାସ କରୁଥିବା କମଳା ନାମ୍ନୀ ଗୋଟିଏ ତରୁଣୀର କାହାଣୀ । ଶକୁନ୍ତଳାଙ୍କ ପରି ତାର ସଙ୍ଗୀ ଥିଲେ ବନ୍ୟପ୍ରାଣୀ ଓ ତରୁଶ୍ରେଣୀ । ମିରାଣ୍ଡା ପରି ନିଜ ବାପାଙ୍କ ଛଡ଼ା ଅନ୍ୟ କୌଣସି ମନୁଷ୍ୟକୁ ଦେଖିବାର ସୁଯୋଗ ସେ ପାଇ ନଥିଲା । ବାପାଙ୍କ ମୃତ୍ୟୁ ପରେ ସେ ହୋଇଯାଇଥିଲା ସଂପୂର୍ଣ୍ଣ ଅନାଥିନୀ ଓ ନିରାଶ୍ରୟା । ଦିନେ ଜଣେ ପଥିକ ସେହି ବାଟରେ ଯାଉ ଯାଉ କମଳାର କୋମଳ ରୂପରେ ଆକର୍ଷିତ ହୋଇ ତାକୁ ଘେନିଯାଇ ବିବାହ କଲେ । କିନ୍ତୁ ମାନବ ସମାଜର ନୀତି ନିୟମ ମାନି ଚାଲିବା କମଳା ପକ୍ଷେ ଦୁର୍ବିସହ ଥିଲା । ସେ ସର୍ବଦା ତା'ର ପ୍ରିୟ ଆରଣ୍ୟକ ପ୍ରକୃତିକୁ ଝୁରିବାକୁ ଲାଗିଲା । ଯାହାହେଉ କିଛିଦିନ ପରେ ତା ସ୍ୱାମୀଙ୍କ ବନ୍ଧୁ ଜଣେ ସୁଦର୍ଶନ ଯୁବକବି ନୀରଦଙ୍କ ପ୍ରତି ସେ ଅନୁରାଗିଣୀ ହୋଇ ଉଠିଲା । ଏପରିକି ନିଜର ଅଜ୍ଞାନରେ ଦିନେ ସେ ତାକୁ ପ୍ରେମାକାଂକ୍ଷା ଜଣାଇଲା । ନୀରଦବି ଗୋପନରେ ତା ପ୍ରତି ଦୁର୍ବଳଥିଲା । କିନ୍ତୁ ହଠାତ୍ ତାଠାରୁ ଏପରି ଖୋଲାଖୋଲି ଶୁଣିବା ପରେ ଭୀତ ହୋଇ ଉଠିଲା ଓ ପଳାଇଗଲା । କମଳାର ସ୍ୱାମୀ ପୂର୍ବରୁ ନୀରଦକୁ ସନ୍ଦେହ ଦୃଷ୍ଟିରେ ଦେଖୁଥିଲା । ପରିଶେଷରେ ନୀରଦ ତା ହାତରେ ମୃତ୍ୟୁବରଣ କଲା । ନୀରଦର ମୃତ୍ୟୁରେ ଭଗ୍ନହୃଦୟା କମଳା ସ୍ୱାମୀ ପରିବାର ପରିତ୍ୟାଗ କରି ନୀରଦର ମର ଶରୀରକୁ ଧରି ବିଳାପ କଲା । ତାକୁ ସମାଧି ଦେଲାପରେ ତାର ପ୍ରଥମ ଅବାସ ସେଇ ଅରଣ୍ୟାବୃତ ନିର୍ଜନ ନିବାସକୁ ଶାନ୍ତି ଚାହିଁ ଫେରି ଆସିଲା । କିନ୍ତୁ ମାନବ

ପ୍ରେମର ସ୍ୱାଦ ଚାଖିବା ପରେ ଏଇ ନିର୍ଜନତା ତାର ଅସହ୍ୟ ହୋଇ ଉଠିଲା ଓ ଶେଷରେ ସେ ଏକ ବରଫ ଶୃଙ୍ଗ ଉପରୁ ନିମ୍ନ ନଦୀବକ୍ଷକୁ ଝାମ୍ପ ଦେଲା । ନଦୀର ତରଙ୍ଗାୟିତ ବକ୍ଷ ଜନନୀ ବାହୁ ପ୍ରସାରଣ କଲା ଭଳି ତାକୁ କୋଳରେ ଧରି ନେଲା । ବୃନ୍ତଚ୍ୟୁତ ହୋଇ ବନ ପୁଷ୍ପଟି ଏହିପରି ଅକାଳରେ ଝରିପଡିଲା ।

ରବୀନ୍ଦ୍ରଙ୍କର ଆଗ୍ରହର ଦିଗ୍‌ବଳୟ କ୍ରମଶଃ ପ୍ରସାରିତ ହୋଇ ଉଠୁଥିଲା । ରାଜନାରାୟଣ ବୋଷ ଓ ନିଜ ବଡଭାଇ ଜ୍ୟୋତିରିନ୍ଦ୍ରନାଥଙ୍କ ପ୍ରତିଷ୍ଠିତ ସଂଜୀବନୀ ସଭା ନାମକ ଏକ ଗୋପନ ଅନୁଷ୍ଠାନର ସେ ସଦସ୍ୟ ହେଲେ । ଅନୁଷ୍ଠାନଟି ମାଜିନୀଙ୍କ ଆଦର୍ଶରେ ପରିଚାଳିତ ଥିଲା ଓ ତାର ଉଦ୍ଦେଶ୍ୟ ଥିଲା ଭାରତର ଉଦାରତାବାଦୀ ରାଜନୈତିକ ବ୍ୟବସ୍ଥାର ପ୍ରଚଳନ । ଏହାର ବୈଠକସବୁ କଲିକତାର କୌଣସି ଏକ ଦୁର୍ଗମ୍ୟ ଗଳିରେ ଗୋଟିଏ ପୁରାତନ କୋଠାରେ ବସୁଥିଲା ଓ ସଭାର ବିବରଣୀକୁ ଗୁପ୍ତ ରଖାଯାଉଥିଲା । ''ବସ୍ତୁତଃ, ତା' ଭିତରେ ଏଇ ଗୋପନୀୟତା ହିଁ କେବଳ ଭୟଙ୍କର ଥିଲା । କିନ୍ତୁ ଆମ କାର୍ଯ୍ୟ ବା କଥାରେ ସରକାର ବା ଜନସାଧାରଣଙ୍କର ଭୟ ନଥିଲା । ଜ୍ୟୋତିରିନ୍ଦ୍ରନାଥ ଥିଲେ ଆଶାତୀତ ଭାବେ ଭାବପ୍ରବଣ । ଅଦ୍ଭୁତ କଳ୍ପନା ପ୍ରବଣତା ଘେନି ବେଳେ ବେଳେ ସେ ଏଭଳି ଦୁଃସାହିକ କାର୍ଯ୍ୟ କରୁଥିଲେ ଯାହାର ପରିଣତି ଥିଲା ଅଚିନ୍ତନୀୟ । ଏପରି ଦୁଃସାହସିକ କାର୍ଯ୍ୟରେ ତାଂକର ଭାଗ୍ୟୋଦୟ ହୋଇ ନଥିଲା କି ସେ ନିଜର ଲକ୍ଷ୍ୟପୂରଣ କରିପାରି ନଥିଲେ ସତ, କିନ୍ତୁ ଏସବୁ ତାଂକର ଅନୁଜଙ୍କ ବହୁମୁଖୀ ସୃଷ୍ଟିପ୍ରବଣତାକୁ ପ୍ରଚୋଦିତ କରିଥିଲା । ଏପରିକି ଜାତୀୟମୁକ୍ତି ସଂଗ୍ରାମ ପାଇଁ ତାଂକର ଆପ୍ରାଣ ସହଯୋଗ ମଧ୍ୟ ତାଂକୁ ଆଲୋଡ଼ିତ କରିଥିଲା ।

1877 ମସିହାର ପ୍ରଥମ ଦିନରେ ଭାରତର ନୂତନ ଭାଇସ୍‌ରାୟ ଲର୍ଡ ଲିଟନ୍ ଦିଲ୍ଲୀରେ ଏକ ଦରବାର ବୈଠକ ଆହ୍ୱାନକରି ମୋଗଲ ସମ୍ରାଟ ମାନଙ୍କର ଗୌରବଗାଥା ସହିତ ଭାରତର ନୂତନ ସାମ୍ରାଜ୍ଞୀ ମହାରାଣୀ ଭିକ୍‌ଟୋରିଆଙ୍କ ମର୍ଯ୍ୟାଦା ବର୍ଣ୍ଣନା କରି ଭାରତୀୟଙ୍କ ମନରେ ତାଂକ ପ୍ରତି ଶ୍ରଦ୍ଧା ଜନ୍ମାଇବାର ଚେଷ୍ଟା କରିଥିଲେ । ସେଇବର୍ଷ ଭୟଙ୍କର ଦୁର୍ଭିକ୍ଷର କରାଳ ଆଘାତରେ ଗ୍ରାମାଞ୍ଚଳ ସବୁ କଂକାଳମୟ ହୋଇ ଯାଇଥିଲା । ଏଇ ଦୁଇ ଘଟଣାର ବିରୋଧାଭାସକୁ ନେଇ ରବୀନ୍ଦ୍ର ଗୋଟିଏ ବ୍ୟଙ୍ଗ କବିତା ରଚନା କରି ସେଇ ବର୍ଷର ହିନ୍ଦୁମେଳାରେ ପାଠ କରିଥିଲେ ।

ସେଇ ସମୟରେ ଜ୍ୟୋତିରିନ୍ଦ୍ରନାଥ 'ଭାରତୀ' ନାମରେ ଏକ ସାହିତ୍ୟ ପତ୍ରିକା ପ୍ରକାଶ ଆରମ୍ଭ କଲେ । ବଡ଼ଭାଇ ଦ୍ୱିଜେନ୍ଦ୍ରନାଥଙ୍କୁ ପତ୍ରିକାଟିର ସଂପାଦକ ଭାବରେ ରଖାଗଲା । ତାଂକର ସବୁ କାର୍ଯ୍ୟପରି ପତ୍ରିକାଟି ମଧ୍ୟ ତତ୍‌କାଳୀନ ବଙ୍ଗ ସାହିତ୍ୟରେ ଏକ ନବପରୀକ୍ଷାର ସନ୍ତକ ବହନ କରିଥିଲା । ରବୀନ୍ଦ୍ରଙ୍କ ହାତରେ ଏବେ ଗୋଟିଏ ପାରିବାରିକ ପ୍ରକାଶ ମାଧ୍ୟମ ଜୁଟିଲା । କିଛି ଗୋଟିଏ ଲେଖିବା ପାଇଁ ତାଂକରି ଟିକିଏ ପ୍ରେରଣା ଦରକାର ଥିଲା । ଏବେ ସୃଷ୍ଟିର ଝରଣା ଛୁଟିବାକୁ ଆରମ୍ଭ କଲା । କୌଣସି ବାଧାବନ୍ଧ ନମାନି ଫେଣ ଫୋଟକାରେ ଆପଣାକୁ ଅଜାଡି ଦେଲା । ତାଂକରି ପ୍ରଥମ ଗଳ୍ପ 'ଭିକାରିଣୀ', ଅସଂପୂର୍ଣ୍ଣ ଉପନ୍ୟାସ 'କରୁଣା', ମୁକ୍ତଛନ୍ଦରେ ରଚିତ ଏକ ଐତିହାସିକ ନାଟକ 'ରୁଦ୍ରଚଣ୍ଡ' ଓ ଏକ ବର୍ଣ୍ଣନାତ୍ମକ କାବ୍ୟ 'କବି କାହିଣୀ', କିଛି ଆଳଂକାରିକ ଗୀତି, ଅନେକ କବିତା, ବହୁ ପ୍ରବନ୍ଧ, ପାଶ୍ଚାତ୍ୟ ସାହିତ୍ୟର ଆଲୋଚନା ଓ ଅନୁବାଦ- ଏପରି ବିଭିନ୍ନ ଲେଖା ଅବାରିତ ଭାବରେ ତାଂକ ଲେଖନୀରୁ ଝରି ଚାଲିଲା । ଏଇସବୁ ଅନାୟାସ ସୃଷ୍ଟିର କିୟଦଂଶ ସେ ପରବର୍ତ୍ତୀ ପରିଣତ ବୟସରେ ତାଙ୍କ ସଂକଳନରୁ ଅବାନ୍ତର ଭାବି ବାଦ ଦେଇଛନ୍ତି ।

ଏ ବିଷୟରେ ନିଜେ ଲେଖିଛନ୍ତି : ''ମନ ଭିତରେ ଆଉ କିଛି ନ ଥିଲା, କେବଳ ତପ୍ତ ବାଷ୍ପ । ସେଇ ବାଷ୍ପଭରା ବୁଦ୍‌ବୁଦ୍ ଓ ଆବେଗର ଫେନିଳତା ଅଳସ କଳ୍ପନାର ଆବର୍ତ୍ତରେ ନିରର୍ଥକ ଭାବେ ଘୁରି ବୁଲୁଥିଲା । କେବଳ ଟକ୍ ଟକ୍ କରି ଫୁଟିବା ଓ ଫାଟି ପଡ଼ିବା । ଲକ୍ଷ୍ୟହୀନ ସେଥିରେ ରୂପ ସୃଷ୍ଟି ନଥିଲା, କେବଳ ଗତିର ଚାଂଚଲ୍ୟଥିଲା ।''

ଏପରି ଆତ୍ମ ସମୀକ୍ଷା ଯେତେବେଳେ ସେ ଲେଖିଥିଲେ ସେତେବେଳେକୁ ଶବ୍ଦ ଓ ରଚନା ବିନ୍ୟାସରେ ତାଙ୍କର ପ୍ରଭୂତ ଦକ୍ଷତା ଆସିଯାଇଥିଲା । ତେଣୁ ପ୍ରଥମ ପର୍ଯ୍ୟାୟର ଏଇ ରଚନାଭିତରୁ କେତେକରେ ଅନ୍ତର୍ନିହିତ ସାରବତ୍ତା ରହିଥିଲା ଓ କୁହେଳିକାଛନ୍ନ ଅସ୍ପଷ୍ଟ ଭାବକୁ ରୂପଦେବା ପାଇଁ ଯେଉଁ ପ୍ରୟାସ ନିହିତ ଥିଲା ସେଥିରୁ ତାଂକ ବିକାଶୋନ୍ମୁଖୀ ପ୍ରତିଭାର ଇଙ୍ଗିତ ସଂଗେ ସଂଗେ ବଙ୍ଗସାହିତ୍ୟରେ ଏପରି ଏକ ଆକୁଳ ବ୍ୟବସ୍ଥାର ସୂଚନା ମିଳୁଥିଲା ଯେଉଁଠି ପୁରାତନ ଭାବ ଓ ରୂପରୁ ଅପସରି ଯାଇ ତାଂକ ସୃଷ୍ଟି ପ୍ରାଚୁର୍ଯ୍ୟର ନୂତନତା ଆଡକୁ ସମସ୍ତେ ଚାହିଁରହିଥିଲେ ।

ତରୁଣ କବି ଆପଣାର ଏକ ନିର୍ଦ୍ଦିଷ୍ଟ ରଚନାରୀତି ଆବିଷ୍କାର କରିବା ପୂର୍ବରୁ ନିଜର ଅପରିସ୍ଫୁଟତାର ଛାୟାମୂର୍ତ୍ତି ପଛରେ ଦୌଡୁଥିଲେ । 'କବି କାହିଣୀ' କାବ୍ୟଟି ସେଇ ବୟସରେ କବିଙ୍କର ଆତ୍ମମୁକ୍ତିର ଓ ଆତ୍ମାନୁସନ୍ଧାନର କାହାଣୀ ।

ଜଣେ କବିଙ୍କର ଆଦର୍ଶ ମୟ ଶୈଶବର ବର୍ଣ୍ଣନା ବହନ କରି କାବ୍ୟଟିର ଆରମ୍ଭ । କବି ପ୍ରକୃତି କୋଳରେ ବଢ଼ନ୍ତି । ପ୍ରକୃତି ତାଂକ ପାଖରେ ଏକାଧାରାରେ ଜନନୀ ଓ ବଂଧୁ । ବୟସ ବଢ଼ିବା ସଂଗେ ସଂଗେ କବି ଅନୁଭବ କରନ୍ତି ଯେ ପ୍ରକୃତି କେବଳ ନିରନ୍ତର ସୂକ୍ଷ୍ମ ଅନୁଧ୍ୟାନ ବଳରେ ଜାଣିହେବ । ଏହିପରି ପ୍ରକୃତି ପ୍ରେମ ଓ ତାର ରୂପଧ୍ୟାନ ଭିତରେ ସୁଖର ଦିନ ଅତିବାହିତ ହେଉଥିଲା ବେଳେ ହଠାତ୍ ତରୁଣ କବି ପ୍ରାଣରେ ଏକ କ୍ରମବର୍ଦ୍ଧିଷ୍ଣୁ ଅଭାବବୋଧ ଓ ମନୁଷ୍ୟ ପ୍ରେମ ତଥା ବନ୍ଧୁତା ପାଇଁ ସ୍ପର୍ଶକାତରତା ଦେଖାଦେଲା । ''ମାନୁଷେର ମନ ଚାହେ ମାନୁଷେରଇ ମନ''- ମାନବ ହୃଦୟ ମନୁଷ୍ୟର ପ୍ରେମ ଓ ବଂଧୁତା ପାଇଁ ଚିର ଉଦ୍‌ବେଳିତ ହୁଏ । ଏପରି କ୍ଷୁଧିତ ପ୍ରାଣରେ ଥରେ ଅରଣ୍ୟରେ ବୁଲୁ ବୁଲୁ ସେ ଜଣେ କୁମାରୀ କନ୍ୟାକୁ ଦେଖି ତା ପ୍ରେମରେ ପଡ଼ିଗଲେ । ନାଁ ତାର ନଳିନୀ ଏଇ ନାଁଟି ରବୀନ୍ଦ୍ରନାଥଙ୍କର ପ୍ରିୟ ନାଁ ହୋଇ ରହିଯାଇଥିଲା । ସେ ଦୁହେଁ ଏକାଠି ବାସ କଲେ । ପ୍ରଥମରୁ କବି ଖୁବ୍ ଖୁସି ଥିଲେ କିନ୍ତୁ ପରେ ତାଂକ ଭିତରେ ବୈଚିତ୍ର୍ୟହୀନ ପ୍ରେମ ଓ ସାଧାରଣ ସୁଖପ୍ରତି ଅନାସ୍ଥା ଜନ୍ମିଲା । ସେ କ୍ରମେ ଚିନ୍ତିତ ଓ ଅଶାନ୍ତ ହୋଇ ଉଠିଲେ ଓ ନଳିନୀକୁ ଛାଡି ଏଇ ବିଚିତ୍ର ମାନବ ସମାଜ ଭିତରେ ତାଂକର ଅଜଣା କଥାକୁ ଖୋଜି ବୁଲିଲେ । ଶେଷରେ ଯେତେବେଳେ ସେଇମିତି ଅତୃପ୍ତ ହୃଦୟରେ ଫେରିଲେ ଦେଖିଲେ ନଳିନୀ ତାଙ୍କ ଅନୁପସ୍ଥିତିରେ ରୋଗ ଶଯ୍ୟାରେ କଷ୍ଟ ଭୋଗୁଛି । ତା ପରେ ସେ ଅନୁଭବ କଲେ ତାଂକ ଭିତରେ ପ୍ରେମ ମରି ଯାଇନାହିଁ । ସେ ସର୍ବତ୍ର ଏଇ ଭଲପାଇବାକୁ ହିଁ ଖୋଜିବୁଲୁଥିଲେ । କିନ୍ତୁ ଆଉ ସମୟ ନ ଥିଲା । ନଳିନୀ ଇହଧାମରୁ ଚାଲିଗଲା ଓ କବିଙ୍କୁ ବିଶ୍ୱପ୍ରେମର ଧାରାରେ ଦାର୍ଶନିକ ଦିଗ ଖୋଜିବାକୁ ଛାଡିଦେଇ ଗଲା ।

ଏଇ ଦୀର୍ଘ କାବ୍ୟଟିରେ ରବୀନ୍ଦ୍ରଙ୍କର ଇଂରାଜୀ ରୋମାଣ୍ଟିକ୍ କବିତା ଅଧ୍ୟୟନର ନିଦର୍ଶନ ଫୁଟି ଉଠୁଥିଲା ବେଳେ ସେଇ ସମୟର ଅନ୍ୟ ଏକ ଗୀତିରଚନା ସଂକଳନ 'ଭାନୁସିଂହ ଠାକୁରେର ପଦାବଳୀ'ରେ ସଂପୂର୍ଣ୍ଣ ଭିନ୍ନ ଦୃଷ୍ଟିର ପରିଚୟ ମିଳୁଥିଲା । ରବୀନ୍ଦ୍ର କାବ୍ୟପ୍ରତିଭାର ବିକାଶରେ ମୁଖ୍ୟତଃ ତିନୋଟି ଧାରାର ପ୍ରଭାବର ସ୍ୱରୂପ ଲକ୍ଷ୍ୟ କରାଯାଏ- ସଂସ୍କୃତ ସାହିତ୍ୟ, ମଧ୍ୟଯୁଗୀୟ

ବୈଷ୍ଣବ କାବ୍ୟ ଓ ପାଶ୍ଚାତ୍ୟ ସାହିତ୍ୟ । ତିନୋଟି ନଦୀର ମିଳନ କ୍ଷେତ୍ର ଯେପରି ଭାରତବର୍ଷରେ ତୀର୍ଥ ପାଲଟି ଯାଇଛି ସେହିପରି ଉପରୋକ୍ତ ତିନୋଟି ଭିନ୍ନ ସ୍ରୋତ ଏକତ୍ରିତ ଓ ସମନ୍ୱିତ ହୋଇ ରବୀନ୍ଦ୍ରକାବ୍ୟ ସରଣୀକୁ ଏକ ଅଦ୍ଭୁତ ରସତୀର୍ଥରେ ପରିଣତ କରିଥିଲା । ଏଇ ବାଳକ କବିଙ୍କ ମନକୁ ବୈଷ୍ଣବୀୟ ଧର୍ମକାବ୍ୟ ସବୁ କିପରି ଗଭୀର ଭାବରେ ପ୍ରଭାବିତ କରିଥିଲା 'ଭାନୁସିଂହ ଠାକୁରେର୍ ପଦାବଳୀ' ତାର ସାକ୍ଷ୍ୟ ବହନ କରିଛି । ରବୀନ୍ଦ୍ରଙ୍କ ବୟସ ଯେତେବେଳେ ମାତ୍ର ବାରବର୍ଷ ବୈଷ୍ଣବ ପଦାବଳୀ ପ୍ରଥମେ ବଙ୍ଗଳାରେ ସଂକଳିତ ଓ ପ୍ରକାଶିତ ହୋଇ ତାଙ୍କ ହାତକୁ ଆସିଲା । ଏଇ ପଦ ଗୁଡିକର ଗୀତିମୟ ପ୍ରକାଶ ଭଙ୍ଗୀ, ଛନ୍ଦ ମାଧୁର୍ଯ୍ୟ ଓ ଚିତ୍ରାତ୍ମକ ପ୍ରତ୍ୟକ୍ଷତା ତାଙ୍କୁ ବିହ୍ୱଳିତ କରିଥିଲା । ଏଥିରେ ଥିବା ଧର୍ମଦର୍ଶନକୁ ସେ କେତେଦୂର ବୁଝିଥିଲେ କହିବା କଷ୍ଟ । କିନ୍ତୁ ମାନବଦେବତାର ଉପାସନା ଉପରେ ଆଧାରିତ ଏହାର ପ୍ରତୀକାତ୍ମକ ଭାବକୁ ଗ୍ରହଣ କରିପାରି ନଥିଲେ ବି ଏହାର ଗଭୀର ଅନ୍ତର୍ମୁଖୀ ମାନବତାବାଦକୁ ସେ ପ୍ରାଣଭରି ଭଲ ପାଇଥିଲେ । କବିହିଁ କବିଙ୍କୁ ବୁଝନ୍ତି; ଯେତେବେଳେ ତତ୍ତ୍ୱଦର୍ଶୀମାନେ ଭାଁ ବୁଲୁଥାନ୍ତି ।

ଷୋଳବର୍ଷ ବୟସ ହେଲା ବେଳକୁ ତାଙ୍କର ଇଚ୍ଛା ହେଉଥାଏ ନିଜର ଅପରିପକ୍ୱ ଅସ୍ପଷ୍ଟ ଭାବକୁ ଏପରି ଭାବେ ପ୍ରକଟ କରନ୍ତେ ଯାହା ବିଷୟ ବସ୍ତୁକୁ ଅତିକ୍ରମ କରି କେବଳ ତାଙ୍କର ପ୍ରାଣଛୁଆଁ ଅନୁଭବକୁ ପ୍ରକାଶ କରନ୍ତା । ଦିନେ ମେଘୁଆ ମଧ୍ୟାହ୍ନର ଛାୟାଘନ ଅବକାଶର ଆନନ୍ଦରେ ଘରେ ଖଟଉପରେ ଏକା ଏକା ଶୋଇ ଗୋଟିଏ ସ୍ଲେଟ୍‌ରେ ଏଇ ଗୀତିଗୁଚ୍ଛର ପ୍ରଥମ ପଦଟି ମଧ୍ୟଯୁଗୀୟ କାବ୍ୟର ଆଲଂକାରିକ ଭାଷାରେ ଲେଖିଲେ ''ଗହନ କୁସୁମ କୁଂଜ ମାଝେ''........

''ଗହନ କୁସୁମ କୁଂଜ ଦୋଳଇ
ମୃଦୁଳ ମଧୁର ବଂଶୀ ସ୍ୱନେ
ଭୟ ଲୋକଲଜ୍ଜା ସବୁ ଭୁଲିଯାଇ
ଆସ ଗୋ ସଜନୀ ଆସ କାନନେ''

ପ୍ରାଚୀନ କବିମାନଙ୍କ ପରି ଶେଷ ପଦରେ ରଚୟିତାର ନାମଟିକୁ ସେ ଯୋଡ଼ିଦେଇଥିଲେ । ତାହା ତାଙ୍କ ନିଜ ନାଁ ରବି ବା ସୂର୍ଯ୍ୟର ପ୍ରତିଶବ୍ଦ । ଏହି ଗୀତିରଚନା ଗୁଡିକ ପ୍ରଥମେ 'ଭାରତୀ' ପତ୍ରିକାରେ ପ୍ରକାଶ ପାଇଲା । ତରୁଣ କବି ରବୀନ୍ଦ୍ରନାଥ ଏହାର ଏକ ଅଗ୍ରଲେଖରେ ବ୍ରାହ୍ମ ସମାଜ ଗ୍ରନ୍ଥାଗାରରୁ ପ୍ରାପ୍ତ ପଞ୍ଚଦଶ ଶତାବ୍ଦୀର ଏକ ପୋଥି ବୋଲି ଏହାକୁ ଦର୍ଶାଇଥିଲେ ।

ଏପରି କଥା ବହୁ ପାଠକଙ୍କ ମନରେ କୌତୁହଳ ସୃଷ୍ଟି କରିଥିଲା । ରବୀନ୍ଦ୍ରନାଥ ନିଜର ଜୀବନ ସ୍ମୃତିରେ ବର୍ଣ୍ଣନା କରିଛନ୍ତି କିପରି ନିଶୀକାନ୍ତ ଚାଟାର୍ଜୀ ବୋଲି ଜଣେ ଗବେଷକ ଜର୍ମାନୀରେ ରହି ଭାରତୀୟ ଗୀତିକାବ୍ୟ ଓ ୟୁରୋପୀୟ ଗୀତିକବିତାର ତୁଳନାତ୍ମକ ଆଲୋଚନା କରି ନିବନ୍ଧ ଲେଖୁଥିଲା ବେଳେ ଭାରତୀ ପତ୍ରିକାରେ 'ଭାନୁସିଂହ ଠାକୁରେର୍ ପଦାବଳୀ' ପଢ଼ି ତାଙ୍କ ନିବନ୍ଧରେ ପଞ୍ଚଦଶ ଶତାବ୍ଦୀର କବି ଭାନୁସିଂହଙ୍କୁ ଗୀତି ରଚୟିତା ଭାବରେ ଉଚ୍ଚସ୍ଥାନ ଦେଇଥିଲେ । ଏହି ଆଦ୍ୟଗୀତି ରଚନାଗୁଡିକରେ ଏପ୍ରକାର ସାହିତ୍ୟିକ ଠକାମି ବ୍ୟତୀତ ଏପରି କିଛି ଶାଶ୍ୱତ ଭାବ ରହିଥିଲା ଯେଉଁଥିପାଇଁ ପରିଣତ ବୟସରେ କବି ତାଙ୍କର ଏ ସମୟର ଲେଖାଗୁଡିକ ମଧ୍ୟରୁ କେବଳ ଏହାକୁ ରଚନାବଳିରେ ଅନ୍ତର୍ଭୁକ୍ତ କରିବାକୁ ଚାହିଁଥିଲେ ।

ବାଳକ ରବୀନ୍ଦ୍ରଙ୍କର ଦ୍ରୁତ ଅଭିବୃଦ୍ଧି ଘଟୁଥିଲା । ସେ ଖୁବ୍ କର୍ମପ୍ରବଣ ଓ ସୃଷ୍ଟିକ୍ଷମଥିଲେ । ତଥାପି ମହର୍ଷି ଓ ପରିବାରର ଅନ୍ୟବଡ଼ମାନେ ତାଙ୍କର ଭବିଷ୍ୟତ ପାଇଁ ଚିନ୍ତିତ ଥିଲେ । କେବଳ

ସାହିତ୍ୟ ରଚନା କରିବା ସେ ଯୁଗରେ ଏକ ନିର୍ଦ୍ଦିଷ୍ଟ ବୃତ୍ତି ଭାବରେ ଗଣ୍ୟ ହେଉ ନଥିଲା । ତେଣୁ ଏଇ ସଚେତନ ବାଳକଟି ଭିତରେ ଲୁଚି ରହିଥିବା ସାମର୍ଥ୍ୟକୁ କୌଣସି ସମ୍ମାନଜନକ କାର୍ଯ୍ୟରେ ଲଗାଇବା ପାଇଁ ପରିବାରର ସମସ୍ତେ ଚିନ୍ତିତ ଥିଲେ । ବଡ଼ଭାଇ ସତ୍ୟେନ୍ଦ୍ରନାଥ ରବୀନ୍ଦ୍ରଙ୍କୁ ସାଙ୍ଗରେ ଇଂଲଣ୍ଡ ନେଇଯିବା ପାଇଁ ମହର୍ଷିଙ୍କୁ ପ୍ରସ୍ତାବ ଦେଲେ । (ସେ ଛୁଟିରେ ଇଂଲଣ୍ଡ ଯାଉଥିଲେ, ତାଙ୍କ ପତ୍ନୀ ଓ ପିଲାମାନେ ପୂର୍ବରୁ ଯାଇ ସାରିଥିଲେ ।) ତାଙ୍କର ଉଦ୍ଦେଶ୍ୟଥିଲା ସେଠି ରଖି ରବୀନ୍ଦ୍ରଙ୍କୁ ତାଙ୍କ ଭଳି ସିଭିଲ୍ ସରଭେଣ୍ଟ ଅଥବା ବାରିଷ୍ଟର୍ ଏପରି କିଛି ଗୋଟିଏ ହେବା ପାଇଁ ପଢ଼ିବାର ସୁଯୋଗ ଦେବା । ସେ ସମୟରେ ଭାରତରେ ବାରିଷ୍ଟର ଗୋଷ୍ଠୀର ଯଥେଷ୍ଟ ମର୍ଯ୍ୟାଦା ଥିଲା । ପିତାଙ୍କ ସମ୍ମତିପାଇ ରବୀନ୍ଦ୍ରନାଥ ଭାଇଙ୍କ ସହିତ ଅହମ୍ମଦାବାଦ୍ ଗଲେ । ଭାଇ ସେଠି ଜିଲ୍ଲା ଜଜ୍ ଥାଆନ୍ତି । କିଛି ମାସ ଇଂଲଣ୍ଡରେ ପଢିଥିବା ଭାଇଙ୍କ ସହିତ ରହି ଆବଶ୍ୟକୀୟ ପ୍ରାରମ୍ଭିକ ରୀତିନୀତି ଓ ଇଂରାଜୀ ଭାଷା ବ୍ୟବହାର ଶିଖି ପାରିବେ । ପଶ୍ଚିମ ଭାରତକୁ ଏହି ଯାତ୍ରା ଥିଲା ରବୀନ୍ଦ୍ରନାଥଙ୍କର ବଙ୍ଗଦେଶ ବାହାରେ ଦ୍ୱିତୀୟ ଅଭିଯାତ୍ରା ।

ଶାହୀବାଗ୍‌ର ଯେଉଁ ବଙ୍ଗଳାରେ ଭାଇଙ୍କ ସହିତ ସେ ରହୁଥିଲେ ତାହାଥିଲା ସପ୍ତଦଶ ଶତାବ୍ଦୀରେ ପ୍ରିନ୍‌ସ ଖୁରାମ୍‌ଙ୍କ (ପରେ ତାଜ୍ ମହଲ ନିର୍ମାତା ଶାହାଜାହାନ୍) ନିର୍ମିତ ପ୍ରାସାଦ । ତାର ମୁକ୍ତ ଅଳିନ୍ଦ ସାବରମତୀ ନଦୀ ଆଡକୁ ମୁହଁକରି ରହିଥିଲା । ସତ୍ୟେନ୍ଦ୍ରନାଥଙ୍କ ଗ୍ରନ୍ଥାଗାରରେ ଉଭୟ ଇଂରାଜୀ ଓ ସଂସ୍କୃତ ଭାଷାର ବିପୁଳ ଗ୍ରନ୍ଥ ସମ୍ଭାର ଥିଲା । ଏକୁଟିଆ ବାଳକ ରବୀନ୍ଦ୍ର ସେଠି ପ୍ରଚୁର ଇଂରାଜୀ ସାହିତ୍ୟ ଓ ଇଂରାଜୀ ମାଧ୍ୟମରେ ୟୁରୋପୀୟ ସାହିତ୍ୟ ପଢ଼ିବାର ସୁଯୋଗ ପାଇଲେ । ଏଇ ସମୟରେ 'ଭାରତୀ' ପତ୍ରିକାକୁ ଦେଇଥିବା ଲେଖାଗୁଡିକରେ ତାଙ୍କର ବିସ୍ତୃତ ଓ ଗଭୀର ଅଧ୍ୟୟନର ପରିଚୟ ମିଳେ । ଏଗୁଡିକ ମଧ୍ୟରୁ ସାକ୍‌ସନ ଓ ଆଙ୍ଗଲୋ ସାକସନ୍ ସାହିତ୍ୟ, ଆଙ୍ଗଲୋ ନରମାନ୍ ସାହିତ୍ୟ, ପେଟ୍ରାର୍କ ଓ ଲାଭରା, ଦାନ୍ତେ ଓ ତାଙ୍କ ସାହିତ୍ୟ, ଗ୍ୟେଟେ, ଚାଟାର୍‌ଟନ୍ ପ୍ରଭୃତି ଲେଖା ପ୍ରଧାନ । ୟୁରୋପୀୟ କବିମାନଙ୍କର ରଚନାରୁ ମଧ୍ୟ ସେ ସୁନ୍ଦର ଭାବେ ଅନୁବାଦ କରି ସେମାନଙ୍କ ସମ୍ପର୍କରେ ଲିଖିତ ପ୍ରବନ୍ଧରେ ଅବତାରଣା କରିଥିଲେ । ଏପରି ସାହିତ୍ୟ ଚର୍ଚ୍ଚା ବ୍ୟତୀତ ସେ ସେଇ ସମୟରେ ବିଭିନ୍ନ ବିଷୟରେ ଅନେକ ଗୁଡିଏ କୌତୁକ ଓ ପ୍ରେରଣାପ୍ରଦ ଲଳିତ ନିବନ୍ଧ ରଚନା କରିଥିଲେ । ତାଙ୍କର ଏଇ ପ୍ରାରମ୍ଭିକ ଗଦ୍ୟରଚନାର ସ୍ୱରୂପ ପରବର୍ତ୍ତୀ ସମୟରେ କବିଯଶର ଛାୟାରେ ଆଚ୍ଛନ୍ନ ହୋଇ ପଡ଼ିଥିଲେ ମଧ୍ୟ ସେଥିରୁ ତାଙ୍କର ଆଦ୍ୟରଚନାରୀତି ଓ ଚତୁପାର୍ଶ୍ୱର ବାସ୍ତବ ପୃଥିବୀ ବିଷୟରେ ଗଭୀର ସଚେତନତାର ପରିଚୟ ମିଳେ, ଯାହା ତାଙ୍କର ଅଧିକ ପରିଚିତ ଓ ପ୍ରସିଦ୍ଧ କାବ୍ୟରଚନା ଭିତରୁ ମିଳେ ନାହିଁ । ନିମ୍ନରେ ଏହି ପ୍ରବନ୍ଧର ବିଭିନ୍ନ ଅଂଶରୁ କିଛି ଅନୁବାଦ ଦିଆଗଲା ।

''ପ୍ରକୃତରେ ଗରିବ ପରି ଦେଖା ଯାଉଥିବା ଖୁବ୍‌କମ୍ ଧନୀଲୋକ ଅଛନ୍ତି । ଆଉ ମୁଁ ମୋର ସୁନେଲି ବୋତାମ ଦେଖାଇ ଗରିବ ବୋଲାଉଛି । ଯେଉଁଦିନ ପ୍ରକୃତରେ ବୋତାମର ଅସଲ ପିତଳ ରୂପ ଦେଖାଇବି ସେଦିନ ସତରେ ଧନୀ ହୋଇ ପାରିବି ।''

''ସେମାନେ ପ୍ରେମକୁ ଅନ୍ଧ କହନ୍ତି । ତାହେଲେ କ'ଣ ଦୂରଦୃଷ୍ଟି ଅନ୍ଧତ୍ୱର ଲକ୍ଷଣ ? ପ୍ରେମତ ଦୃଷ୍ଟିକୁ ତୀକ୍ଷ୍ଣ କରେ ଓ ବୋଧଶକ୍ତିକୁ ବିସ୍ତୃତ କରେ ।''

''ବନ୍ଧୁତା ଓ ପ୍ରେମ ଭିତରେ ପାର୍ଥକ୍ୟ ହେଉଛି ପ୍ରଥମଟି ଦୁଇ ଜଣ ଓ ଜଗତକୁ ବୁଝାଉଥିବା ବେଳେ ଦ୍ୱିତୀୟଟି ଦୁଇଜଣଙ୍କୁ ହିଁ ଜଗତ ବୋଲି ବୁଝାଏ । ବନ୍ଧୁତାରେ ଏକ ଯୁକ୍ତ ଏକ ହୋଇ

ତିନି ହୁଏ କିନ୍ତୁ ପ୍ରେମରେ ଏକ ସହିତ ଏକ ମିଶି ଏକ ହିଁ ହୋଇଯାଏ ।''

''ନିଜ ଭିତରେ ବାନ୍ଧି ହୋଇ ରହିବାର ଅନ୍ୟନାମ ଯନ୍ତ୍ରଣା । ତେଣୁ ସୁନ୍ଦର ଦୃଶ୍ୟ ଆମ ନିଜଠାରୁ ଆମକୁ ଦୂରେଇ ନେଇ ଆମ ଭିତରେ ଆନନ୍ଦ ଆଣେ ।''

''କେତେ ଲୋକ କହନ୍ତି ନାରୀ ଠିକ୍ ଶୂନ୍ ଭଳି । ସଂଖ୍ୟା (ପୁରୁଷ)ର ଡାହାଣ ପାଖରେ ରହିଲେ ସେ ତାକୁ ଦଶଗୁଣିତ ଶକ୍ତି ଦିଏ । କିନ୍ତୁ ଯେଉଁ ଦୁର୍ଭାଗା ବ୍ୟକ୍ତିଟି ତା'ର ଅପର ପାର୍ଶ୍ୱରେ ରହିଯାଏ ନାରୀଟି ତାକୁ ତାହାରି ଏକ କ୍ଷୁଦ୍ର ଅଂଶରେ ବିଭକ୍ତ କରିଦିଏ । କହିବା ଅନାବଶ୍ୟକ ଏଭଳି ଯେଉଁମାନେ ନାରୀ ଜାତିପ୍ରତି କୁତ୍ସାରଟନା କରନ୍ତି ମୁଁ ତାଙ୍କ ସହିତ ଏକମତ ନୁହେଁ ।''

''ପୂର୍ବଜମାନେ କହୁଥିଲେ ବିନୟ ହେଉଛି ନାରୀର ଶ୍ରେଷ୍ଠ ଅଳଂକାର । କିନ୍ତୁ ନାରୀମାନେ ସେ ଯୁଗରେ ଏତେ ଅଳଂକାରରେ ମଣ୍ଡିତ ହୋଇ ରହୁଥିଲେ ଯେ ଏଥିପାଇଁ ଆଉ ସ୍ଥାନ ନ ଥିଲା ।''

ଅହମଦାବାଦ୍‌ରେ ସେ ମାତ୍ର ଚାରିମାସ ରହିଥିଲେ ମଧ୍ୟ ଏହାଥିଲା ତାଙ୍କର ମାନସିକ ବିକାଶର ପ୍ରକୃଷ୍ଟ ସମୟ । ଏଇଠି ସେ ପ୍ରଥମେ ନିଜ ଗୀତର ସ୍ୱରଲିପି ରଚନା କରିଥିଲେ । ଏସବୁ ରଚନା ଥିଲା ଏକାସାଂଗରେ ସାହିତ୍ୟ ଓ ସଙ୍ଗୀତମୟ । କେତେବେଳେ ପ୍ରଥମେ ପଦ ଆସୁଥିଲା ଓ ସ୍ୱର ତା ପଛେ ପଛେ ଅନୁସରଣ କରୁଥିଲା । ଆଉ କେତେବେଳେ ଓଲଟା । ପୁଣି ଆଉ କେବେ ଦୁହେଁ ହାତଧରାଧରି ହୋଇ ମିଳିମିଶି ଆସୁଥିଲେ । ଏଥିରୁ ଯେଉଁ ସୃଷ୍ଟି ଆନନ୍ଦ ମିଳିଥିଲ ତାହା ତାଙ୍କର ଜୀବନର ଶେଷ ପର୍ଯ୍ୟନ୍ତ ରହିଥିଲା ।ଦୁଇ ହଜାରରୁ ଅଧିକ ଗୀତ ସେ ରଚନା କରିଛନ୍ତି । 'ରବୀନ୍ଦ୍ର ସଂଗୀତ' ଭାବରେ ସୁପରିଚିତ ଏଇ ଗୀତସବୁ ବଙ୍ଗଳାରେ ତାଙ୍କ କବିତାଠାରୁ ମଧ୍ୟ ବେଶୀ ଜନପ୍ରିୟ । ଅହମଦାବାଦ୍‌ରେ ହିଁ ସେ ତାଙ୍କର ଅନ୍ୟତମ ଉଲ୍ଲେଖଯୋଗ୍ୟ ଗଳ୍ପ 'ଯୁଧିତପାଷାଣ'ର କଳ୍ପନା କରିଥିଲେ ଯାହା ପରେ ରଚିତ ହେଲା । ସେ ଯେଉଁଘରେ ରହୁଥିଲେ ସେଠି ପାଷାଣସବୁ ଅତୀତରେ ଆଭିଜାତ୍ୟ ଓ ଭୋଗବିଳାସର ମୂକସାକ୍ଷୀ ପରି ଠିଆ ହୋଇଥିଲେ । ସତେ ଆରବ୍ୟ ରାତ୍ରିର ସୁରଭି ପରି । ସେଠାରେ ମୁକ୍ତ ଭ୍ରମଣର ସୁଯୋଗ ଓ ଆମୋଦ ପ୍ରମୋଦ ତାଙ୍କ ମନକୁ ପୂର୍ବସ୍ମୃତିରେ ଆଲୋଡିତ କରିଥିଲା । ''ଅହମଦାବାଦରେ ମୁଁ ପ୍ରଥମେ ଅନୁଭବ କଲି ଯେ ଇତିହାସ ତା'ର ଗୌରବମୟ ଅତୀତ ଆଡକୁ ମୁହଁ ଫେରାଇ ଠିଆ ହୋଇଛି । ଶାହିବାଗ୍ ଆଜି ଠିଆ ହୋଇଛି ନିଷ୍କଳ ହୋଇ । ଭୁଲିଯାଇଥିବା ଗପପରି, ରଙ୍ଗତାର ଧୂସର, ତା'ର ସେଇସବୁ ବିଚିତ୍ର କଳଧ୍ୱନି ଆଜି ନାହିଁ, ମଉଳି ଯାଇଛି ସେଠି ଦିନର ଲାବଣ୍ୟ ଓ ରାତି ହରାଇଛି ତାର ମାଧୁର୍ଯ୍ୟ ।''

ଅହମଦାବାଦ୍‌ରେ କିଛି ମାସ ରହିବା ପରେ ତାଙ୍କ ଭାଇ ମନେକରିଲେ ରବୀନ୍ଦ୍ର ଯଦି କୌଣସି ଏକ ଆଧୁନିକ ପରିବାର ଭିତରେ ରୁହନ୍ତି ଯେଉଁଠି ସେ ଇଂରାଜୀ କଥୋପକଥନ ଭଲରେ ଶିଖି ପାରିବେ ଓ ପାଶ୍ଚାତ୍ୟ ରୀତିନୀତିରେ ଅଭ୍ୟସ୍ତ ଝିଅମାନଙ୍କ ଗହଣରେ ନିଜକୁ ସହଜ ସ୍ୱାଭାବିକ ଭାବେ ଚଳାଇ ପାରିବେ ତାହେଲେ ତାଂକର ଇଂଲଣ୍ଡ ଯାତ୍ରାର ପ୍ରସ୍ତୁତି ଭଲରେ ହୋଇ ପାରିବ । ତାଙ୍କର ଜଣେ ମରାଠି ବଂଧୁଙ୍କ ପରିବାରରେ ରହିବା ପାଇଁ ସେ ରବୀନ୍ଦ୍ରଙ୍କୁ ବମ୍ବେ ପଠାଇଲେ । ମରାଠି ବଂଧୁ ଡଃ ଆତ୍ମାରାମ୍ ପାଣ୍ଡୁରଙ୍ଗ ତରଖୁଦ୍ ଥିଲେ ଜଣେ ନାମୀ ଡାକ୍ତର ଓ ଆଧୁନିକ ଦୃଷ୍ଟିସଂପନ୍ନ ସମାଜ ସଂସ୍କାରକ । ସେଇପରିବାରର ଜଣେ ସୁନ୍ଦରୀ ବିଲାତ ଫେରନ୍ତା ମାର୍ଜିତ ରୁଚିସଂପନ୍ନା ତରୁଣୀ କନ୍ୟା ଉପରେ ନ୍ୟସ୍ତ ହେଲା ରବୀନ୍ଦ୍ରଙ୍କୁ ପଢ଼ାଇବାର ଦାୟିତ୍ୱ । ଏଇ କନ୍ୟା ଆନ୍ନା (ପୂରାନାଁ ଅନ୍ନପୂର୍ଣ୍ଣା) ଥିଲେ ରବୀନ୍ଦ୍ରଙ୍କ ଠାରୁ ବୟସରେ ସାମାନ୍ୟ ବଡ । ଶିକ୍ଷୟତ୍ରୀ

ପଢ଼ାଇବାରେ ଯେତିକି ଆନନ୍ଦ ପାଉଥିଲେ ଛାତ୍ର ସେତିକି ଉପଭୋଗ କରୁଥିଲେ । ସେଠାରେ ଦୁଇମାସ ରହିବା ଭିତରେ ସେ କେତେ କଣ ଶିଖିଛନ୍ତି ଆମେ ଜାଣି ନାହୁଁ, କିନ୍ତୁ ଶିକ୍ଷୟତ୍ରୀ ଓ ଛାତ୍ରଙ୍କ ଭିତରେ ଏକ ମଧୁର ଅନ୍ତରଙ୍ଗତା ଗଢ଼ିଉଠିଥିଲା ଯାହା ରବୀନ୍ଦ୍ରଙ୍କ ସ୍ମୃତିରେ ଚିର ଉଜ୍ଜ୍ୱଳ ହୋଇ ରହିଥିଲା ।

ଏହି ଘଟଣାକୁ ମନେ ପକାଇ ଅଶୀବର୍ଷ ବୟସରେ ରବୀନ୍ଦ୍ରନାଥ ଲେଖିଛନ୍ତି; ''ମୋ ଶିକ୍ଷାଥିଲା ସାମାନ୍ୟ । ମତେ ହେଳା କରିଲେ ତାଙ୍କୁ ଦୋଷ ଦେଇ ହୁଅନ୍ତା ନାହିଁ । ସେ କିନ୍ତୁ ତାହା କରି ନାହାନ୍ତି । ପୋଥିଗତ ବିଦ୍ୟା ଦେଖାଇବା ଭଳି ପୁଞ୍ଜି ମୋର ନଥିଲା । ସେଥିପାଇଁ ସୁବିଧା ପାଇବା ମାତ୍ରେ ଜଣାଇ ଦେଇଥିଲି ଯେ ମୁଁ କବିତା ଲେଖିପାରେ । ଆଦୃତ ହେବା ପାଇଁ ଏହାଥିଲା ମୋର ଏକମାତ୍ର ମୂଳଧନ । ମୋର କାବ୍ୟ ଐଶ୍ୱର୍ଯ୍ୟର କଥା ଯେତେବେଳେ ତାଂକୁ କହିଲି ସେ ତାକୁ ସନ୍ଦେହାତ୍ମକ ଦୃଷ୍ଟିରେ ପରଖ କରି ନଥିଲେ ବରଂ ବିନା ଦ୍ୱନ୍ଦରେ ମାନି ନେଇଥିଲେ । କବିଙ୍କଠୁ ନିଜର ଗୋଟିଏ ବିଶେଷ ନାମ ସେ ଚାହିଁବସିଲେ । ବାଛି ଦେଲି ତାଙ୍କ ପାଇଁ ନାଁ ଟିଏ ଯାହା ତାଙ୍କୁ ଖୁବ୍ ଭଲ ଲାଗିଥିଲା । ଇଚ୍ଛା କଲି ମୋ କବିତାର ଛନ୍ଦରେ ସେଇ ନାଁଟିକୁ ଯୋଡି ଦେବାପାଇଁ । ତାଙ୍କ ପାଇଁ ରଚିତ ମୋର ଗୋଟିଏ କବିତାରେ ଗୁନ୍ଥି ଦେଲି ସେଇ ନାଁଟିକୁ । ପ୍ରଭାତର ଭୈରବୀ ରାଗିଣୀରେ ମୋଠୁ ସେ ଶୁଣିଲେ ସେଇ ଗୀତଟି ।'' କହିଲେ, ''କବି ତମ ଗୀତ ଶୁଣିଲେ ମୁଁ ବୋଧହୁଏ ମୋର ମୃତ୍ୟୁଶଯ୍ୟାରୁ ବି ପ୍ରାଣ ପାଇ ଉଠି ବସିବି ।'' ଏଥିରୁ ବୁଝାଯିବ ଝିଅମାନେ ଯାହାକୁ ଆଦର ଜଣାଇବାକୁ ଚାହାନ୍ତି ତାଂକ କଥା କିପରି ଟିକିଏ ମଧୁର କରି ବଢ଼େଇ କହନ୍ତି । କେବଳ ମାତ୍ର ଖୁସୀ କରାଇବାର ପୁଲକରେ ହିଁ ସେମାନେ ଏହା କରନ୍ତି । ମନେ ପଡୁଛି ତାଙ୍କରି ମୁହଁରୁ ପ୍ରଥମେ ଶୁଣିଥିଲି ମୋର ରୂପର ପ୍ରଶଂସା । ପ୍ରଶଂସା ଥିଲା ମୃଦୁଳ ଓ ପ୍ରାଣସ୍ପର୍ଶୀ ଯେପରି ମତେ ଥରେ ବାଧ କରି କହିଥିଲେ, 'ମୋର ଗୋଟିଏ କଥା ରଖିବାକୁ ହେବ- ତମେ ଆଉ କେବେ ଦାଢ଼ି ରଖିବନି । ତମ ମୁହଁର ସୌନ୍ଦର୍ଯ୍ୟ ଯେମିତି ଦାଢ଼ିରେ ଢ଼ାଙ୍କି ହୋଇ ନଯାଏ ।' ଆଜି ସମସ୍ତେ ଭାବିବେ ତାଙ୍କର ସେଇ କଥା ମୁଁ ମାନି ନାହିଁ । ମୋ ମୁହଁରେ ସେଇ ଅବାଧତା ପ୍ରକାଶ ପାଇବା ପୂର୍ବରୁ ତାଙ୍କର ମୃତ୍ୟୁ ହୋଇଥିଲା ।''

କବି ତାଙ୍କର ନାଁ ଦେଇଥିଲେ ନଳିନୀ-ପୂର୍ବ ପ୍ରକାଶିତ ତାଙ୍କ ରଚନା ବର୍ଣ୍ଣନାତ୍ମକ କବିତା 'କବି କାହିଣୀ'ର କାଳ୍ପନିକ ନାୟିକାର ନାମ । ରବୀନ୍ଦ୍ର ଏଇ କବିତା ତାଙ୍କୁ ପଢ଼ି ଶୁଣାଉଥିଲେ ଓ ତାଙ୍କ ପାଇଁ ଏହାକୁ ଇଂରାଜୀରେ ଅନୁବାଦ କରିଥିଲେ । କବିଙ୍କର ବହୁ କବିତାର ସେ ପ୍ରେରଣାଥିଲେ, ଯେଉଁଠି କବି ନଳିନୀ ନାଁଟି ଆନନ୍ଦର ସହ ଉଚ୍ଚାରଣ କରିଛନ୍ତି । ସେମାନଙ୍କ ବଂଧୁତା ବିଷୟରେ ଆଉ ବେଶୀକିଛି ଜଣାନାହିଁ । ବୋଧହୁଏ ଅଳ୍ପ କିଛି ଦିନ ପରେ ତାଙ୍କର ଜଣେ ସ୍କଟିସ୍ ଲୋକଙ୍କ ସହ ବିବାହ ହୋଇଥିଲା । ତା ପରେ ଅଳ୍ପ ଦିନ ପରେ ତାଙ୍କର ମୃତ୍ୟୁ ଘଟିଥିଲା । କିନ୍ତୁ କବି ତାଙ୍କୁ କେବେ ଭୁଲି ନଥିଲେ । ପରବର୍ତ୍ତୀ ଜୀବନରେ ତାଙ୍କ ବିଷୟରେ ବର୍ଣ୍ଣନା କରିବା ବେଳେ କବିଙ୍କର ତାଂକ ପ୍ରତି ଅଶେଷ ଶ୍ରଦ୍ଧା ଓ ଆନ୍ତରିକତାର ସ୍ୱାକ୍ଷର ସ୍ପଷ୍ଟ ହୋଇ ଉଠୁଥିଲା ।

# ହୃଦୟାରଣ୍ୟ

***ବିସ୍ତୃତ ଅରଣ୍ୟ ଏକ ନାମ ତା ହୃଦୟ***
***ଚତୁର୍ଦ୍ଦିଗେ ଅନ୍ତହୀନ ଅଙ୍କାବଙ୍କା ପଥ***
***ସେଠି ମୁଁ ଯେ ହୁଏ ପଥହରା ।***

1878 ସେପ୍ଟେମ୍ବର ମାସରେ ବଡ଼ଭାଇ ସତ୍ୟେନ୍ଦ୍ରନାଥଙ୍କ ସହ ରବୀନ୍ଦ୍ର ଇଂଲଣ୍ଡ ଅଭିମୁଖେ ଜଳଯାତ୍ରା ଆରମ୍ଭ କଲେ । ବମ୍ବେର ରହଣି କାଳରେ ସୁନ୍ଦରୀ ଶିକ୍ଷୟିତ୍ରୀଙ୍କ ସାନିଧ ଓ ସୁଖାନୁଭୂତିକୁ ଛାଡି ବ୍ୟର୍ଥ ହୃଦୟରେ ସେ ଜାହାଜରେ ବସିଲେ । ତା ଛଡା ତାଙ୍କର ମନେପଡୁଥିଲା କଲିକତା ଘରେ ଥିବା ଭାଉଜଙ୍କ କଥା ।- ଏଇ ଭାବ ପ୍ରବଣ ସ୍ମୃତି ତାଂକ ମନରେ ଆନନ୍ଦ ଓ ବେଦନାର ସମ୍ମିଶ୍ରିତ ଭାବ ସୃଷ୍ଟି କରୁଥିଲା । ତାଙ୍କ ଜୀବନରେ ଏ ପର୍ଯ୍ୟନ୍ତ ସଂଚିତ ସବୁ ସୁଖ ସଂପଦକୁ ସେ ପଛରେ ପକାଇ ଯାଉଥାନ୍ତି । ଅନିଶ୍ଚିତ ଭବିଷ୍ୟତ ଆଗରେ ପଡିରହିଛି । ସଜୀବତା ହୀନ ଟାଙ୍ଗରା ଭୂଇଁପରି ମନେ ହେଉଥିବା ଦନ୍ତରା ପାଠ ଆଡକୁ ପୁଣି ତାଙ୍କୁ ମୁହାଁଇବାକୁ ପଡିବ ।

ଭାଗ୍ୟତଃ ଘରକୁ ଲେଖା ଚିଠି ସବୁ ତାଙ୍କର ଅକ୍ଷୁଣ୍ଣ ଅଛି । ଏଥିରେ ତରୁଣ ମନର ସୌଖୀନ୍ ପଣିଆ ଓ କଞ୍ଚାବୟସର ବାହାଦୁରି ଭାବ ପ୍ରକାଶ ପାଉଥିଲା । ପରବର୍ତ୍ତୀ ସମୟରେ ସେ ଏପରି ସବୁ ଲେଖିଥିଲେ ବୋଲି ବିସ୍ମିତ ଓ ଦୁଃଖିତ ହେଉଥିଲେ । ଯାହାହେଉ, ଏ ଚିଠି ଗୁଡିକରେ ଗତ ଶତାବ୍ଦୀର ସପ୍ତମ ଦଶକରେ ପ୍ରଚଳିତ ଇଂରେଜ ଜୀବନଧାରା ଓ ସାମାଜିକତାର ଏକ ସୂକ୍ଷ୍ମ ଆକଳନ ଦେଖିବାକୁ ମିଳେ । ପୁଣି କଥିତ ଭାଷାରେ ଲିଖିତ ବଙ୍ଗଳା ସାହିତ୍ୟିକ ଗଦ୍ୟର ଆଦ୍ୟ ସ୍ୱରୂପ ଭାବରେ ଏହାର ଐତିହାସିକ ମୂଲ୍ୟ ଅନସ୍ୱୀକାର୍ଯ୍ୟ । ପରିଣତ ବୟସରେ ଏହା ଯେ କବିଙ୍କୁ ତାରୁଣ୍ୟର ଏକ ବାହୁଲ୍ୟ ମନେ ହୋଇଥିଲା, ତାର କାରଣ ସେତେବେଳକୁ ସେ ଏହା ଯୁବ ପ୍ରାଣର ଅକୃତ୍ରିମ ଆନନ୍ଦ ଓ ଉନ୍ମାଦନାକୁ ଅତିକ୍ରମ କରି ଯାଇଥିଲେ । ଏଇ ଚିଠିଗୁଡିକ ପ୍ରଥମେ 'ଭାରତୀ' ପତ୍ରିକାରେ ପ୍ରକାଶିତ ହୋଇ ପରେ ''ଇଉରୋପ ପ୍ରବାସୀର ପତ୍ର'' ନାମରେ ସଂକଳିତ ହୋଇଥିଲା ।

ଏହାଥିଲା ରବୀନ୍ଦ୍ରନାଥଙ୍କର ପ୍ରଥମ ସମୁଦ୍ର ଯାତ୍ରା । ଏଥିରେ ସେ ପୂର୍ବରୁ ଅଭ୍ୟସ୍ତ ନ ଥିଲେ । ସମୁଦ୍ରକୁ ନେଇ ତାଙ୍କର ଅନୁଭୂତି ଓ ବର୍ଣ୍ଣନା ଥିଲା କ୍ଲ୍ପ୍ତ । ପରିତପ୍ତ ହୋଇ ସେ କହିଥିଲେ ''ଏହାର ଐଶ୍ୱର୍ଯ୍ୟ ସଂପର୍କରେ ବାଲ୍ମୀକିଙ୍କ ଠାରୁ ଆରମ୍ଭ କରି ବାଇରନଙ୍କ ପର୍ଯ୍ୟନ୍ତ ବିଶ୍ୱର ବହୁ ବିଶିଷ୍ଟ କବି ଯେପରି ଶତମୁଖ' ସେ ତାହାର ଅଂଶୀଦାର ହୋଇ ପାରି ନଥିଲେ । ଜାହାଜ ଯାଇ ଏଡେନ୍‌ରେ ପହଞ୍ଚିବା ପରେ ସେ ସ୍ୱସ୍ତିରେ ନିଶ୍ୱାସ ମାରିଲେ, ଯାତ୍ରୀମାନଙ୍କ ସାଙ୍ଗେ ମିଶି ସେମାନଙ୍କ

ବିଷୟରେ ବର୍ଣ୍ଣନା କରିବାର ସୁଯୋଗ ପାଇଥିଲେ । ''ଜାହାଜ ଭିତରେ ନାରୀଙ୍କର ଅଭାବ ନଥିଲା କିନ୍ତୁ ଜଣେ ହେଲେ ସୁଶ୍ରୀ ବା ତରୁଣୀ ନଥିବାରୁ ଭଦ୍ର ବ୍ୟକ୍ତିମାନେ ଖୁସୀ ହୋଇ ପାରୁନଥିଲେ ।'' ବ୍ରିନ୍ଦିସିରୁ ଦୁଇଭାଇ ଟ୍ରେନ୍‌ରେ ପ୍ୟାରିସ୍ ଗଲେ । ତାଙ୍କ ରୁଚିକୁ ଚାହିଁ ପ୍ୟାରିସ୍ ଥିଲା ଅତ୍ୟନ୍ତ ସମ୍ଭ୍ରାନ୍ତ ଓ ଉତ୍କଟ । ସେ ସେଠି ପ୍ରଥମେ ଆରାମ ଦାୟକ ଟର୍କିସ ସ୍ନାନ ଉପଭୋଗ କରିଥିଲେ । ଇଜିପ୍ଟରେ ଧୂଳିଧୂସରିତ ହୋଇ ସେମାନେ ଏଭଳି ଏକ ଭଲସ୍ନାନ ଚାହୁଁଥିଲେ । ''ଟରକିସ୍ ବାଥଥିଲା ଠିକ୍ ଜଣଙ୍କର ଶରୀରକୁ ଧୋବାହାତରେ ସଫା କଲା ପରି ।'' ଶେଷରେ ସେମାନେ ଲଣ୍ଡନରେ ପହଞ୍ଚିଲେ । ରବୀନ୍ଦ୍ରନାଥ ଲେଖିଛନ୍ତି- ''ଏପରି ଅନ୍ଧାରୁଆ ସହର ମୁଁ ଆଗରୁ କେବେ ଦେଖି ନଥିଲି । ଧୂଆଁଳିଆ, ଘନ କୁହେଳିରେ ଆଚ୍ଛନ୍ନ ଓ ଭିଜା ଭିଜା ପାଗ, ସମସ୍ତେ ସେଠି ବ୍ୟସ୍ତ ଓ ବିବ୍ରତ ।''

ବିଟ୍ରେନ୍‌ରେ ସେ ଭାଇଙ୍କ ପରିବାର ସହ ଖୁସିରେ ରହିଲେ । ସତ୍ୟେନ୍ଦ୍ରନାଥଙ୍କ ପତ୍ନୀଖୁବ୍ ସ୍ନେହଶୀଳା ଥିଲେ । ତାଙ୍କର ଦୁଇ ପୁଅ ଝିଅ ଯଥା-କ୍ରମେ ଛଅ ଓ ପାଞ୍ଚ ବର୍ଷ ବୟସର ସୁରେନ୍ ଓ ଇନ୍ଦିରା ତରୁଣ ଓ ସୌମ୍ୟକକାଙ୍କ ସହିତ ଖୁବ୍ ମଜା କରୁଥିଲେ । କିନ୍ତୁ କଲିକତା ଭଳି ବ୍ରିଟେନ୍‌ରେ ଆଉ ଏକ ଘରୁଆ ପରିବେଶରେ ତାଂକୁ ରହିବା ପାଇଁ ଇଂଲଣ୍ଡ ଅଣାଯାଇନଥିଲା । ତେଣୁ ଶୀଘ୍ର ତାଙ୍କୁ ଗୋଟିଏ ପବ୍ଲିକ୍ ସ୍କୁଲରେ ଭର୍ତ୍ତି କରାଗଲା । ''ମୋ କଥା ସବୁ ବୁଝି ପରୀକ୍ଷା କରି ହେଡମାଷ୍ଟର ପ୍ରଥମେ କହିଥିଲେ 'କି ପ୍ରତ୍ୟୁତ୍ପନ୍ନମତି' ତୁମର ।''

ବ୍ରିଟେନ୍‌ରେ ଘରେ ତାଙ୍କ ସାଙ୍ଗରେ ଖେଳିବା ପାଇଁ ପିଲାମାନେ ଥିଲେ । ବାହାରେ ସଂଧ୍ୟାବେଳେ ଭାଇ ଓ ଭାଉଜଙ୍କ ସାଙ୍ଗରେ ବଂଧୁ ମାନଙ୍କ ଘରେ ନିମନ୍ତ୍ରଣ ଭୋଜି ଓ ବେଲେ ନାଚ ପ୍ରଭୃତି ସହ ସାମାଜିକ ଜୀବନ ବଡ଼ ଆମୋଦଦାୟକ ଥିଲା । ଏ ସବୁକୁ ନିରୀକ୍ଷଣ କରି ବୁଝିବାର ସୂକ୍ଷ୍ମ ଦୃଷ୍ଟି ପିଲାଟିର ଥିଲା, ତେଣୁ ଘରକୁ ଲେଖା ତାଙ୍କର ବହୁ ପତ୍ରରେ ସେ ଯାହା ଦେଖୁଥିଲେ ବର୍ଣ୍ଣନା କରୁଥିଲେ ।

''ଏଠି ସବୁ ସାହି ଗଳିରେ ପାନଶାଳା, କିନ୍ତୁ ବହି ଦୋକାନଟିଏ ବିରଳ ।''

''ଝିଅମାନେ ପିଆନୋ ବଜାନ୍ତି ଓ ଗୀତ ଗାଆନ୍ତି, ନିଆଁ ପାଖରେ ବସି ଉପନ୍ୟାସ ପଢ଼ନ୍ତି । ପରିଦର୍ଶକମାନଙ୍କୁ ଖୁସି କରାଇ ପାରନ୍ତି ଓ ବଂଧୁତ୍ୱପୂର୍ଣ୍ଣ ବ୍ୟବହାର ତଥା ପ୍ରଶଂସା କରିବାରେ ଆନନ୍ଦ ପାଆନ୍ତି ।'' ''ଏଠା ଲୋକଙ୍କ ଧାରଣା ଯେପରିକି ଏଠାକୁ ଆସିବା ପୂର୍ବରୁ ମୁଁ ସଭ୍ୟତା ବିଷୟରେ କିଛି ଜାଣିନଥିଲି । ଏଇ ସେଇ ଦିନ ଡଃ-ଙ୍କ ଭାଇ ମତେ କ୍ୟାମେରା କ'ଣ ବୁଝାଉଥିଲେ, ଆଉ ଦିନେ ସଂଧ୍ୟା ଆସରରେ ମିସ୍ - ପଚାରିଲେ ମୁଁ ଆଗରୁ ପିଆନୋ ଦେଖିଥିଲି କି ନାହିଁ ? ସକାଳ ଛଅଟା ବେଳେ ଉଠି ମୁଁ ଥଣ୍ଡା ପାଣିରେ ଗାଧଉଛି, ଏହା ଶୁଣିବା ଲୋକଙ୍କ ପାଇଁ ଏକ ମଜା କଥା ।''

''ଯାହା ହେଉ ଏଠାକାର ଘରଦ୍ୱାର ବେଶ୍ ପରିଷ୍କାର, ଘରେ ପ୍ରବେଶ କଲେ ଟିକିଏ ଧୂଳି ଅଳନ୍ଧୁ ଦେଖିବାକୁ ମିଳେନି । ତଳ ମେଜିଆ ସବୁ ଭଲଭାବେ ପୋଛା ହୋଇଥାଏ । ଆସବାବ ପତ୍ର ସଫା ଚିକ୍ ଚିକ୍ କରୁଥାଏ । ସେମାନଙ୍କର ପରିଷ୍କାର ଜ୍ଞାନ ଆମ ପରିଷ୍କାର ଜ୍ଞାନଠାରୁ ଭିନ୍ନ । ଆମ ଘରେ ଆମେ ପିକଦାନୀ ରଖିବାକୁ ଖରାପ ଭାବୁନାହୁଁ, କିନ୍ତୁ ଏଠି ଲୋକ ଅଧିକ କଫ ସର୍ଦ୍ଦିରେ ଆକ୍ରାନ୍ତ ହେଉଥିଲେ ବି ରୁମାଲରେ ଛେପ, କଫ ପୋଛି ତା'କୁ ପକେଟରେ ରଖିଥାଆନ୍ତି କିନ୍ତୁ ଘରେ ଅଶୋଭନୀୟ ଦେଖାଯିବ ବୋଲି ପିକଦାନୀ ରଖନ୍ତି ନାହିଁ । ଅନେକ

ଲୋକଙ୍କୁ ସାର୍ଟର ସମ୍ମୁଖଭାଗ ଓ ହାତ ପାଖ ଖୋଲା ହୋଇ ଯାଇପାରେ । ତାହା କେବଳ ସବୁ ବେଳେ ସଫାହୋଇ ଯୋଡିଦିଆ ହେଉଥାଏ । ପୂରା ପରିଚ୍ଛଦ ସଫା କରିବା ଦରକାର ହୁଏ ନାହିଁ । ମହିଳା ମାନେ ନିଜର ସୌନ୍ଦର୍ଯ୍ୟ ଦିଗରେ ଯଥେଷ୍ଟ ସଚେତନ, କିନ୍ତୁ ସେମାନେ କେବଳ ମୁହଁ, ହାତ ଧୋଇଥାନ୍ତି । ପୂରା ଗାଧୋଇବା ହୁଏନି । ଅନେକଙ୍କ ଘରେ ଗାଧୁଆ ଘର ନାହିଁ ।'' ''ଏ ଦେଶର ନାରୀ ଓ ଆମ ଦେଶର ନାରୀଙ୍କ ଚାଲିଚଳନରେ ଅନେକ ପାର୍ଥକ୍ୟ ଥିବା ସତ୍ତ୍ୱେ ଉଭୟଙ୍କୁ ନିଜନିଜ ଢାଞ୍ଚାରେ ସମାଜ ଶିକ୍ଷା ଦେଇଥାଏ କେବଳ ଉଚ୍ଚତମ ମୂଲ୍ୟ ଆହରଣ ପାଇଁ- ଏଯା ହିଁ ଉଭୟ ଦେଶର ନାରୀ ଭିତରେ ଏକମାତ୍ର ସମାନ ଭାବ ।'' ସେ ଯାହାହେଉ ବ୍ରିଟେନ୍‌ରେ ସେ ବେଶୀ ଦିନ ରହିପାରିଲେନି । ତାଙ୍କ ବଡଭାଇ ଭାବିଲେ ଯଦି ରବୀନ୍ଦ୍ରଙ୍କୁ ଏଇ ବିଦେଶରେ ଶିକ୍ଷାଲାଭରୁ କିଛି ଉନ୍ନତିର ପଥ ଧରିବାକୁ ହେବ ତେବେ ତାଙ୍କୁ ଏକୁଲା ରହି ନିଜକୁ ଚଳାଇବାକୁ ପଡିବ । ତେଣୁ ତାଙ୍କୁ ଲଣ୍ଡନ ପଠାଇଦେଲେ । ସେ ଯାଇ ପ୍ରଥମେ ରିଜେଣ୍ଟ ପାର୍କ ସାମନା ଗୋଟେ ଲଜିଂରେ ରହିଲେ । ଶୀତକାଳ, ପାର୍କର ବୃକ୍ଷସବୁ ପତ୍ରହୀନ, ହାଡ଼ଥରା ଶୀତ ସାଙ୍ଗକୁ ଅନ୍ଧାରୁଆ ମେଘାଚ୍ଛନ୍ନ ପାଗ ତାଙ୍କୁ ଅତିଷ୍ଠ ଲାଗୁଥାଏ । ମନେ ହେଉଥାଏ ସତେ ଯେପରିକି ପ୍ରକୃତିର ରୂପ ଏଠି ମଳିନ, ମନମରା ହୋଇ ରହିଛି ପ୍ରକୃତି । ଆକାଶ ମେଘାଚ୍ଛନ୍ନ ଓ ଭାରାକ୍ରାନ୍ତ, ଦିବାଲୋକ ''ମୃତ ମଣିଷର ଆଖି ପରି'' ଜ୍ୟୋତିହୀନ ।

ଲଣ୍ଡନରେ ସେ ନିଜକୁ ନିଃସଙ୍ଗ ଅନୁଭବ କଲେ । କାହାକୁ ସେଠି ସେ ଜାଣି ନଥିଲେ । ଜଣେ ଟିଉଟର ତାଙ୍କୁ ଲାଟିନ୍ ପଢ଼ାଇବା ପାଇଁ ଆସିଲେ, ସେ ଉତ୍ତମ ମଣିଷ, କିନ୍ତୁ ଥିଲେ ଟିକିଏ ଆଉପାଗଳା । ଗୋଟିଏ ନିର୍ଦ୍ଦିଷ୍ଟ ଧାରଣାର ସେ ବଶବର୍ତ୍ତୀ ଥିଲେ ଯେ- ପୃଥିବୀରେ ପ୍ରତି ଯୁଗରେ ଭିନ୍ନ ଭିନ୍ନ ଦେଶରେ ମାନବ ସମାଜରେ ଗୋଟିଏ ନିର୍ଦ୍ଦିଷ୍ଟ ଭାବର ଆବିର୍ଭାବ ଘଟିଥାଏ । ଅବଶ୍ୟ ସଭ୍ୟତାର ତାରତମ୍ୟ ଅନୁସାରେ ସେଇ ଭାବର ରୂପାନ୍ତର ହୋଇଥାଏ । ଏଇ ବିଷୟ ଗବେଷଣାରେ ଏପରି ନିବିଷ୍ଟ ଥିଲେ ଯେ ଛାତ୍ରଙ୍କ ପାଇଁ ତାଙ୍କର ସମୟ ପ୍ରାୟ ନଥିଲା । ତେଣୁ ଏଇ ଲାଟିନ୍ ପଢ଼ାର ଛଳନା ମାତ୍ର ରବୀନ୍ଦ୍ରଙ୍କର ଲଜିଂ ପରିବର୍ତ୍ତନ ପର୍ଯ୍ୟନ୍ତ ଚାଲିଥିଲା । ତେଣୁ ସେଠୁ ବିଦାୟ ନେଲା ବେଳେ ଟିଉଟରଙ୍କୁ ତାଂଙ୍କର ପାଉଣା ଦେବାକୁ ଚାହିଁଲାରୁ ସେଇ ସାଧୁ ଟିଉଟର ପାଉଣା ନେବାକୁ ରାଜିହେଲେନି, କହିଲେ ''ମୁଁ ତମର ସମୟ ନଷ୍ଟ କରିବା ଛଡା ଅଧିକ କିଛି କରିନାହିଁ ।'' ବହୁ କଷ୍ଟରେ ବୁଝାଇ ସୁଝାଇ ତାଙ୍କୁ ପାଉଣା ନେବାକୁ ରାଜି କରାଯାଇଥିଲା । ଏଇ ଅନ୍ଧାରୁଆ ନିର୍ଜନ ଲଜିଂରୁ ଜଣେ କୋଚ୍‌ଙ୍କ ଘରକୁ ପେଇଙ୍ଗ୍‌ଗେଷ୍ଟ ହୋଇ ରବୀନ୍ଦ୍ରନାଥ ଗଲେ । ବୃତ୍ତିଜୀବୀ କୋଚ ଶ୍ରୀଯୁକ୍ତ ବାର୍କାର ପୂର୍ବ ଲ୍ୟାଟିନ୍ ଟିଉଟରଙ୍କ ଭଳି ନୈରାଶ୍ୟବାଦୀ ନଥିଲେ, କିନ୍ତୁ ଥିଲେ ଟିକିଏ ଭିନ୍ନ ଧରଣର ବ୍ୟକ୍ତି । ତାଙ୍କ ପରିବାରର ସଦସ୍ୟ ଥିଲେ ତାଙ୍କର ସରଳା ପତ୍ନୀ ଓ ଗୋଟେ ପୋଷା କୁକୁର । ବାର୍କାର ଯେତେବେଳେ ପତ୍ନୀଙ୍କ ଉପରେ ରାଗୁଥିଲେ, ବିଚରା କୁକୁରଟିକୁ ନିସ୍ତୁକମାଡ଼ ଦେଉଥିଲେ । ସର୍ବଦା ସେ ବିଷଣ୍ଣ ଦେଖା ଯାଉଥିଲେ । ସ୍ୱାମୀ ସ୍ତ୍ରୀଙ୍କ ଭିତରେ କ୍ୱଚିତ୍ ବାକ୍ୟ ବିନିମୟ ହେଉଥିଲା । ଖାଇବା ସମୟରେ ସେ ଦୁହେଁ ଗମ୍ଭୀର ହୋଇ ବସୁଥିଲେ । ଅତିଥିଙ୍କ ପକ୍ଷେ ଏ ବ୍ୟବହାର ଥିଲା ଅସହ୍ୟ ଓ ଅସ୍ୱସ୍ତିକର । ଖାଇଲା ବେଳେ ବାର୍କାରଙ୍କର ଯଦି ଦ୍ୱିତୀୟଥର କିଛି ନେବା ଦରକାର ହେଉଥିଲା ସେ କହୁ ଥିଲେ 'ଆଉ ଟିକେ ଆଳୁ,' (ପ୍ଲିଜ୍ ଶବ୍ଦଟି ଅଶ୍ରାବ୍ୟ ରହିଯାଉଥିଲା ।) ଶ୍ରୀମତୀ ବାର୍କାର କହୁଥିଲେ ''ମୁଁ ଚାହେଁ ତୁମେ ଆଉଟିକେ ବିନୀତ ହୁଅ ।'' ''କିନ୍ତୁ ମୁଁ ତ ପ୍ଲିଜ୍ କହିଛି'' ବାର୍କାର କହୁଥିଲେ ''ମୁଁ ଶୁଣି ନାହିଁ,'' ପତ୍ନୀ ଉତ୍ତର ଦେଉଥିଲେ ।

''ତା ମୋର ଦୋଷ ନୁହେଁ ।'' ତା ପରେ କଥାବାର୍ତ୍ତା ବନ୍ଦ । ଶ୍ରୀମତୀ ବାର୍କାର କିନ୍ତୁ ଏ ଯୁବକ ଅତିଥିଙ୍କ ନିକଟରେ ଖୁବ୍ ସ୍ନେହଶୀଳା ଓ ସହୃଦୟା ଥିଲେ । ଅନେକ ସମୟରେ ତାଙ୍କ ସହିତ ବସି ଗପୁଥିଲେ । କିନ୍ତୁ ଅତିଥିଙ୍କୁ ଏ ପରିବେଶ ଏକାନ୍ତ ଅସହ୍ୟ ବୋଧ ହେଉଥିଲା ।

ସେଠୁ ମୁକ୍ତି ପାଇବା ପାଇଁ ରବୀନ୍ଦ୍ରଙ୍କର ସୁଯୋଗ ଆସିଲା ଯେତେବେଳେ ସତ୍ୟେନ୍ଦ୍ରନାଥଙ୍କ ପତ୍ନୀ ତାଙ୍କ ପରିବାର ସହ ଡେଭୋନ୍‌ରେ ରହିବା ପାଇଁ ତାଙ୍କୁ ଚିଠି ଲେଖି ଡକାଇଲେ । ସେଠି ସେମାନେ ଛୁଟି କଟାଇବା ପାଇଁ ଛୋଟ ଘରଟିଏ ନେଇଥାନ୍ତି । ଚିଠି ପାଇ ସେ ସେଠାକୁ ଚାଲିଗଲେ । ମୁକ୍ତ ପ୍ରାଙ୍ଗଣରେ ତାଙ୍କ ପୁଅ ଝିଅଙ୍କ ସହିତ ଖେଳିବାର ସୁଯୋଗ ମିଳିଲା । ଡେଭୋନ୍ ସହରର ଦିଗ୍‌ଦୃଶ୍ୟର ଛବି ଥିଲା ଅତି ମନୋରମ । ସେ ସେଠି ମନଭରି ଉପଭୋଗ କରୁଥାନ୍ତି । ତଥାପି ତାଙ୍କ ଭିତରୁ କାହିଁକି କବିତାର ଧାରା ଉତ୍ସାରିତ ହେଉନି, ତାହା ତାଙ୍କୁ ଆଶ୍ଚର୍ଯ୍ୟ ଲାଗୁଥାଏ । କାବ୍ୟ ସାଧନାରେ ଅବହେଳା କରୁଥିବାରୁ ସେ ନିଜକୁ ଅପରାଧୀ ଭାବୁଥିଲେ । ତେଣୁ ଦିନେ କବିରଭାଗ୍ୟକୁ ସଫଳ କରିବାର ଅଭୀପ୍‌ସା ନେଇ ସେ ବସିରହିଲେ ନିର୍ଜନ ସମୁଦ୍ର ବେଳାର ଏକ ପଥର ଉପରେ । କବିତାଟିଏ ଲେଖି ତା'ର ନାମ କରଣ କଲେ 'ଭଗ୍ନତରୀ' । ସେ କଥା ସ୍ମରଣ କରି କବି ଲେଖିଛନ୍ତି ''ଯଦି ସେ ଦିନ ସେଇଟିକୁ ସମୁଦ୍ରରେ ଫିଙ୍ଗି ଦେଇଥାନ୍ତି ତାହାହେଲେ ହୁଏତ ଆଜି ତାହାକୁ ଅତି ଭଲ ରଚନା ଭାବିଥାନ୍ତି ।''

ଖୁସିଦିନର ଛୁଟି ସରିଗଲା । ଇଂଲଣ୍ଡ ଫେରି ଆସି ରବୀନ୍ଦ୍ରନାଥ ଲଣ୍ଡନ ବିଶ୍ୱବିଦ୍ୟାଳୟରେ ଯୋଗ ଦେଲେ । କ୍ଲାସରେ ହେନରୀ ଶୋର୍‌ଲେଙ୍କ ଇଂରାଜୀ ସାହିତ୍ୟ ବିଷୟରେ ବକ୍ତୃତା ଶୁଣିଲେ । ତାଙ୍କଠାରୁ ସେ ରିଲିଜିଓ ମେଡିସି ଓ ସେକ୍‌ସିପିଅରଙ୍କ ନାଟକ ସବୁ ପଢ଼ିଲେ ଓ ପ୍ରଫେସରଙ୍କର ଅଧ୍ୟାପନାରେ ଖୁବ୍ ଅଭିଭୂତ ହୋଇଗଲେ । କିନ୍ତୁ ବିଶ୍ୱବିଦ୍ୟାଳୟର ଶିକ୍ଷା ତିନିମାସରୁ ବେଶୀ ଦିନ ରହିଲା ନାହିଁ । ଏଇ ଲଣ୍ଡନ ରହଣି କାଳରେ ସେ ବ୍ରିଟିଶ୍ ପାର୍ଲାମେଣ୍ଟ ଯାଇ ଗ୍ଲାଡ୍‌ଷ୍ଟୋନ୍ ଓ ଜନ୍ ବ୍ରାଇଟ୍‌ଙ୍କ ଆଇରିସୀୟ ଆଭ୍ୟନ୍ତରୀଣ ଆଇନ୍ ବିଷୟରେ ବକ୍ତୃତା ଶୁଣିଥିଲେ ।

ଟର୍କୀରୁ ଫେରିବା ପରେ ରବୀନ୍ଦ୍ରଙ୍କର ଲଣ୍ଡନ ରହଣି ଖୁବ୍ ଆନନ୍ଦ ଦାୟକ ହୋଇଥିଲା । ଏଇ ସମୟରେ ଡକ୍‌ଟର ସ୍କଟ୍ ନାମକ ଜଣେ ଭଦ୍ର ବ୍ୟକ୍ତିଙ୍କ ବନ୍ଧୁତ୍ୱ ପୂର୍ଣ୍ଣ ପରିବାରର ଅତିଥିଭାବରେ ରହିବାର ସୁଯୋଗ ସେ ପାଇଥିଲେ । ପ୍ରଥମେ ସେଠି ପହଞ୍ଚି ସେ ଦେଖିଲେ ସେଇ ଶୁଭ୍ର କେଶ ଡକ୍‌ଟର, ତାଂକ ପତ୍ନୀ ଓ ବଡଝିଅ ଅଛନ୍ତି । ସାନ ଦୁଇଝିଅ ଜଣେ କଳା ଲୋକ ସେମାନଙ୍କ ଘରକୁ ଆସୁଛି ଶୁଣି, ଜଣେ ବଂଧୁଙ୍କ ଘରେ ରହିବା ପାଇଁ ପଳାଇ ଯାଇଥିଲେ । ଆଗନ୍ତୁକ କ୍ଷତିକାରକ ନୁହଁନ୍ତି, ସଂପୂର୍ଣ୍ଣ ଭଦ୍ର ଓ ଭଲ ଲୋକ ବୋଲି ପ୍ରତିଶ୍ରୁତି ପାଇବାପରେ ଯାଇ ସେମାନେ ଘରକୁ ଫେରିଥିଲେ । କିନ୍ତୁ କିଛି ଦିନ ଭିତରେ ସେ ପରିବାରରେ ସମସ୍ତଙ୍କର ପ୍ରିୟ ପାତ୍ର ହୋଇଯାଇଥିଲେ । ଏପରିକି ପୋଷାକୁକୁରଟାବି ତାଙ୍କ ସହିତ ଥରେ ନଖେଳିଲେ ଖାଉନଥିଲା । ଶ୍ରୀମତୀ ସ୍କଟ୍ ତାଙ୍କୁ ପୁଅ ଭଳି ସ୍ନେହ କରୁଥିଲେ । ନିଜ ମାଙ୍କଠାରୁ ସେ ଯେତିକି ମମତା ପାଇନଥିଲେ ତା' ଠାରୁ ବେଶୀ ଏଠି ପାଇବାରେ ସମର୍ଥ ହେଲେ । ପତି ଓ ପରିବାର ପାଇଁ ତାଙ୍କର ଉତ୍ସର୍ଗୀକୃତ କର୍ତ୍ତବ୍ୟ ରବୀନ୍ଦ୍ରଙ୍କୁ ଅଭିଭୂତ କରିଥିଲା । ଝିଅମାନଙ୍କର ବି ତାଙ୍କ ପ୍ରତି ଅନୁରାଗ କ୍ରମଶଃ ବଢ଼ିଚାଲିଲା । ବିଶେଷ କରି ତାଙ୍କର ସମବୟସୀ ସାନଝିଅଟି ତାଙ୍କ ପ୍ରତି ବେଶୀ ଅନୁରକ୍ତ ଥିଲା । ସେ ନିଜେ ଗୀତଗାଇପାରୁଥିଲା ଓ ପିଆନୋ ବଜାଇ ପାରୁଥିଲା ଓ ରବୀନ୍ଦ୍ରଙ୍କୁ ବହୁ ଇଂରାଜୀ ଓ ଆଇରିସ୍ ସଂଗୀତ ଶିଖାଇଥିଲା ।

ଇଂରାଜୀ ସମାଜ ବିଶେଷ କରି ସେଠାର ନାରୀ ମାନଙ୍କର ଭୂମିକା ବିଷୟରେ ପୂର୍ବରୁ ରବୀନ୍ଦ୍ରଙ୍କର ଯେଉଁ ତାସଲ୍ୟକର ଧାରଣାଥିଲା, ତାହା ବର୍ତ୍ତମାନ ବଦଳିଗଲା । ପ୍ରଥାମୁକ୍ତ ସମାଜରେ ବାସକରୁଥିବା ନାରୀମାନଙ୍କର ଚାରିତ୍ରିକ ଦୃଢ଼ତା ଓ ଆକର୍ଷଣୀୟ ଭାବକୁ ସେ ପ୍ରକୃତରେ ପସନ୍ଦ କରିବାକୁ ଆରମ୍ଭ କଲେ । ସେହି ସମୟରେ ସେ ଘରକୁ ଲେଖିଥିବା ତାଙ୍କର ଚିଠିଗୁଡ଼ିକରେ ଏଇ ଅନୁରକ୍ତ ଭାବକୁ ଏପରି ଭାବରେ ପ୍ରକାଶ କରିଥିଲେ ଯେ ଘରର ବଡ଼ମାନେ ଏ ସବୁ ପଢ଼ି ଭାବିଥିଲେ ବଡ଼ଭାଇ ଫେରିଆସିବା ପରେ ଏହି ଅହେତୁକ ଭାବପ୍ରବଣ ବାଳକଟିକୁ ଇଂଲଣ୍ଡରେ ଛାଡ଼ିବା ଉଚିତ ହେବନାହିଁ । ତେଣୁ ଭାରତରୁ ଅଲଂଘନୀୟ ଆଦେଶ ଗଲା ଯେ ଶିକ୍ଷା ଯଥାସମ୍ଭବ ସୀମିତ କରି ଭାଇଙ୍କ ସାଙ୍ଗରେ ତାଙ୍କୁ ଫେରି ଆସିବାକୁ ପଡ଼ିବ ।

ତରୁଣ ରବୀନ୍ଦ୍ର ଏଇ ସମ୍ବାଦ ପାଇ ଖୁସି ହୋଇଥିଲେ ନା ତାଙ୍କ ମନ ଭାଙ୍ଗିଯାଇଥିଲା ଜଣାନାହିଁ । ସେ କିନ୍ତୁ ନିଜ ସ୍ମୃତିକଥାରେ ଲେଖିଛନ୍ତି ଘରକୁ ଫେରିବା ଶୁଣି ଅତ୍ୟନ୍ତ ଆନନ୍ଦିତ ହୋଇଯାଇଥିଲେ । ''ମୋ ଦେଶର ଆଲୋକ, ତାର ଖୋଲା ଆକାଶ ମୋତେ ନୀରବରେ ହାତଠାରି ଡ଼ାକୁଥିଲା ।'' ପ୍ରକୃତରେ ଏହା ତାଙ୍କର ସୃଷ୍ଟିଶୀଳତା ଦୃଷ୍ଟିରୁ ନିପଟ ସତକଥା ଥିଲା । ବିଦେଶରେ ସେ ସେଦିଗରୁ ଜଣାଅଧିକେ ସ୍ଥାଣୁ ହୋଇ ପଡିଥିଲେ, ନିଜ ଭିତରେ ଯେଉଁ ସୃଷ୍ଟି ପ୍ରେରଣା ଜାଗ୍ରତ କରିବା ପାଇଁ ତାଙ୍କୁ ବହୁ ସମୟରେ ଆୟାସ କରିବାକୁ ପଡୁଥିଲା, ତାହା ଘରକୁ ଫେରିଲା ମାତ୍ରେ ସ୍ୱତଃ ପ୍ରକାଶିତ ହେବାକୁ ଆରମ୍ଭ କଲା । କିନ୍ତୁ ଅନ୍ୟ ଦିଗରେ ସେଠି ସେ ଯେଉଁ ପରିବେଶ ଓ ବଂଧୁତାର ମୋହରେ ବାନ୍ଧି ହୋଇପଡି ଥିଲେ ସେସବୁ ହଠାତ୍ ପରିତ୍ୟାଗ କରିବା ତାଙ୍କ ପକ୍ଷରେ ଦୁଃଖଦାୟକ ଥିଲା । ''ଶ୍ରୀମତୀ ସ୍କଟ୍ ମୋର ହାତ ଧରି କାନ୍ଦି ପକାଇଥିଲେ । କହିଲେ ଯଦି ଏତେ ଶୀଘ୍ର ଫେରି ଯିବାର ଥିଲା ତମେ କାହିଁକି ଆମ ପାଖକୁ ଆସୁଥିଲ ?'' କିନ୍ତୁ ତାଙ୍କ କନ୍ୟାମାନେ କଣ କହିଥିଲେ ତାହା ସେ ଉଲ୍ଲେଖ କରିନାହାନ୍ତି । ମାତ୍ର 'ଭାରତୀ'ରେ ପ୍ରକାଶିତ ସେ ସମୟରେ ଗୋଟିଏ କବିତାରେ ତାଙ୍କ ଅନୁଭବର ବର୍ଣ୍ଣନା ମିଳେ । ନିମ୍ନରେ ସେଇ ''ଦୁଦିନ'' (ଦୁଇଦିନ) କବିତାଟିର ଅନୁବାଦ ଲକ୍ଷ୍ୟଣୀୟ ।

ଶୀତ କାଳ ଆଗମନେ ନିହାର ପଡୁଛି ଘନେ
ଶୀର୍ଣ୍ଣ ବୃକ୍ଷଶାଖା ସବୁ ଫୁଲ-ପତ୍ରହୀନ
ମୃତ ପ୍ରାୟ ପୃଥିବୀର ବଦନ ଉପରେ
ବିଷାଦେ ପ୍ରକୃତିମାତା ଶୁଭ୍ର ବାଷ୍ପ ଜାଲେ ବନ୍ଧା
କୁଜ୍ଝଟିକା ବସନକୁ ଦେଇ ଅଛି ଟାଣି ।
ପଶ୍ଚିମକୁ ଗଲେ ରବି, ସ୍ତବ୍ଧ ସଂଧ୍ୟା ବେଳ ।
ବିଦେଶେ ଆସିଛି ଶ୍ରାନ୍ତ ପଥିକ ଏକଲା
ରହିଛି ଦି ଦିନ ।
ଏବେବି ରହିଛି ଶୀତ ବିହଙ୍ଗ ଗାଏନା ଗୀତ
ଏବେତ ଝଡୁଛି ପତ୍ର ପଡୁଛି ତୁହିନ ।
ବସନ୍ତର ପ୍ରାଣ ଭରା ଚୁମ୍ବନ ପରଶେ
ସର୍ବ ଅଙ୍ଗ ଶୀହରୁଛି ପୁଲକେ ଆକୁଳ ଛାତି
ମୃତ ଶଯ୍ୟା ଛାଡି ଧରା ଜାଗେନି ହରଷେ

ଦିନେ ଦୁଇଦିନ ଏଠି କଟିଗଲା ଶେଷେ
ପୁଣିତ ଉଠିଲି ଏବେ ଯିବାକୁ ସ୍ୱଦେଶେ
ଏଇ ଯେ ଫେରାଇ ମୁଖ ଚାଲିଲି ପୂରୁବ
ଆଉ କିରେ ଏ ଜୀବନେ ଫେରି ଆସି ହେବ
କେତେ ମୁଖ ଦେଖି ଅଛି, ଦେଖିବିକି ଆଉ
ଘଟଣା ଘଟିବ କେତେ ବରଷ ବରଷ ଶତେ ବଂଚି ଥାଉ ଥାଉ
ହୁଏତ ବା ଦିନେ କେଉଁ ଅତିଦୂର ଦେଶେ
ଆସୁଅଛି ସଂଧ୍ୟା ହୋଇ ବତାସ ଯାଉଛି ବହି
ଏକୁଟିଆ ନଦୀ ଧାରେ ରହିଅଛି ବସି
ହୁ ହୁ କରି ସହସା ଏ ହୃଦୟ ଉଠିବ
ସହସା ଏ ମେଘାଚ୍ଛନ୍ନ ସ୍ମୃତି ଉଜ୍ଜ୍ୱଳିବ
ଗୋଟିଏ ଅସ୍ଫୁଟ ରେଖା ସହସା ଦେବ କି ଦେଖା
ଗୋଟିଏ ମୁଖର ଛବି ଉଠିବ କି ଜାଗି
ଗୋଟିଏ ଗୀତର ପଂକ୍ତି ପଡିବତ ମନେ
ଗୋଟେ ଯୋଡେ ସୁର ତା'ର ଜାଗିବ ସ୍ମରଣେ
ଅବଶେଷେ ଏକାଥରେ ସହସା ସବଳେ
ବିସ୍ମୃତିର ବନ୍ଧସବୁ ଭାଙ୍ଗି ଗଲାବେଳେ
ସେ ଦିନର କଥା ସବୁ ବନ୍ୟାପରି
ଏକାଥରେ ବିପ୍ଲାବିତ କରିବେ ଏପରି
ଶତଫୁଲ ଦଳେ ଗଢ଼ା ସେଇ ତା' ବଦନ
ସପନରେ ପ୍ରତିନିଶି ହୃଦୟେ ଦିଶିବ ଆସି
ଆସିବ ଆଲୁଳ କେଶେ ଆକୁଳ ନୟନେ
ସେଇ ମୁଖ ମୋର ସଙ୍ଗୀ ହୋଇବ ବିଜନେ
ନିଶୀଥର ଅନ୍ଧକାର ଆକାଶ ପଟରେ
ନକ୍ଷତ୍ର ଓ ଗ୍ରହ ପରି ଉଠିବ ଫୁଟିରେ
ଧୀରେଧୀରେ ରେଖାରେଖା ସେଇ ମୁହଁ ସତେ
ନିଃଶବ୍ଦରେ ଚାହିଁବ କି ମତେ
ଚମକି ଉଠିବି ଜାଗି ଶୁଣି ନିଦ ଘୋରେ
ଯିବ ତେବେ? ଯିବ ? ସେଇ ଭଙ୍ଗା ଭଙ୍ଗା ସ୍ୱରେ ।''

ସତର ମାସ ବିଦେଶରେ କଟାଇ ବଡ ଭାଇ ଓ ତାଙ୍କ ପରିବାର ସହିତ ରବୀନ୍ଦ୍ରନାଥ ଫେବୃୟାରୀ ୧୮୮୦ ରେ ଘରକୁ ଫେରିଲେ । ଶୂନ୍ୟ ହସ୍ତରେ ତାଙ୍କୁ ଫେରିବାକୁ ପଡିଲା କୌଣସି ଶିକ୍ଷାଗତ ଡିଗ୍ରୀ ବା ସମ୍ମାନ ନ ଆଣି । କେବଳ ଇଂଲଣ୍ଡରେ ଲେଖା ଆରମ୍ଭ କରିଥିବା 'ଭଗ୍ନ ହୃଦୟ' ନାମକ ଗୋଟିଏ ଦୀର୍ଘ କାବ୍ୟ ନାଟିକାର ଅସଂପୂର୍ଣ୍ଣ ପାଣ୍ଡୁଲିପି ସେ ସାଂଗରେ ଆଣିଥିଲେ । ସେ ବମ୍ୱେରେ ପହଞ୍ଚିବା ବେଳକୁ ଆନ୍ନା ସେଠି ଥିଲେ କି ନାହିଁ, ସେ ତାଙ୍କୁ ଭେଟିଥିଲେ କି ଭେଟିବା

ପାଇଁ ଚେଷ୍ଟା କରିଥିଲେ କି ନାହିଁ ସେ କଥା କାହାକୁ ଜଣା ନାହିଁ । ଏ ବିଷୟରେ ତାଙ୍କର ନିରବତା ଜୀବନୀକାର ମାନଙ୍କୁ ବିଚଳିତ କରିଛି ।

ନାଟ୍ୟରୂପ ଦିଆଯାଇ ଥିଲେ ମଧ୍ୟ 'ଭଗ୍ନ ହୃଦୟ' ମୁଖ୍ୟତଃ 34 ସର୍ଗ ବା ଦୃଶ୍ୟ ଓ ଚାରିହଜାର ଧାଡି ସମ୍ବଳିତ ଗୀତିମୟ କାବ୍ୟ ଶିଳ୍ପର ଏକ ଦୀର୍ଘ କାରିଗରୀ । ଏହାର କଥାବସ୍ତୁ ଥିଲା ଅତ୍ୟନ୍ତ କ୍ଷୀଣ ଓ ପୂର୍ବ ରଚିତ ବର୍ଣ୍ଣନାତ୍ମକ କବିତା ଗୁଡିକର ପୁନରାବୃତ୍ତି । ଏଥିରେ ତରୁଣ ସ୍ୱପ୍ନବିଭୋର କବିଙ୍କର ଅପ୍ରତିହତ କବିତ୍ୱ ପ୍ରକାଶ ପାଇଛି । ଅପରର ଭଗ୍ନ ହୃଦୟ ଦେଖି କବି ନିଜେ ହିଁ ଜାଣିପାରୁ ନାହାନ୍ତି ସିଏ କଣ ଚାହାଁନ୍ତି । ପିଲା ଦିନରୁ ତାଙ୍କର ବାନ୍ଧବୀ ମୂରାଲା ତାଙ୍କୁ ଗଭୀର ଭାବରେ ଭଲ ପାଉ ଥିଲା । କବି ଯଦିଓ ତାର ବଂଧୁତାର ମୂଲ୍ୟ ବୁଝୁଥିଲେ ଓ ନିଜର ଦୁଃଖକୁ ତା ସହିତ ଭାଗ କରୁଥିଲେ କିନ୍ତୁ ତାଙ୍କ ପ୍ରତି ଝିଅଟିର ଭଲପାଇବା ଦେଖି ସେ ବିଚଳିତ ହୋଇଥିଲେ । ''ମୁଁ ତ କିଛି ହଜାଇ ଦେଇ ନାହିଁ, ତଥାପି ମୁଁ କଣ ଖୋଜୁଛି ? ମୁଁ ତ କିଛି ଚାହେଁ ନାହିଁ, ତଥାପି ମୁଁ କାହା ପଛରେ ଗୋଡାଉଛି ? ଯେତେବେଳେ ଆଶା ହିଁ ନଥିଲା ସେତେବେଳେ କାହିଁକି ଏ ହତାଶା ? କେହି ଯଦି ଆଘାତ ଦେଇନାହିଁ ତେବେ କାହିଁକି ଏ ଯନ୍ତ୍ରଣା ।'' ସେ ପଥ ପ୍ରାନ୍ତରରେ ଗୋଟିଏ ସୁନ୍ଦର ବାଳିକାକୁ ଦେଖିଲେ ଓ ଭାବି ବସିଲେ ଯେ ସେ ତାକୁ ଭଲ ପାଉଛନ୍ତି- ନାଁ ଟି ତାର ନଳିନୀ, ଯେଉଁ ନାଁଟି ତରୁଣ ରବୀନ୍ଦ୍ରଙ୍କ କଳ୍ପନାକୁ ସଦା ଆଚ୍ଛନ୍ନ କରିଛି । କିନ୍ତୁ ନଳିନୀ ଥିଲା ଜଣେ 'ବେଲେ ଡ଼େମ୍‌ସାନସ୍ ମରସି' ଯିଏ କି ନିଜ ହୃଦୟ ନ ଦେଇ ଅନ୍ୟର ହୃଦୟ ସହିତ ଖେଳିବାକୁ ଭଲପାଉଥିଲା । ନିରାଶ କବି ଖୋଜି ବୁଲୁଛନ୍ତି । ଶେଷରେ ଫେରିଆସି ଯେତେବେଳେ ମୂରାଲାକୁ ମୃତ୍ୟୁ ଶଯ୍ୟାରେ ଦେଖିଛନ୍ତି ସେତେବେଳେ ଅନୁଭବ କରିଛନ୍ତି ତାକୁ ହିଁ ସେ ଚିରକାଳ ଭଲପାଉଥିଲେ । କିନ୍ତୁ ସମୟ ଅତିକ୍ରାନ୍ତ ହୋଇଯାଇଛି । କାବ୍ୟ ନାଟିକା ଟିରେ ଆହୁରି ଅନେକ ଚରିତ୍ର ଅଛନ୍ତି, ସେମାନେ ସମସ୍ତେ ପରସ୍ପରର ହୃଦୟ ଭାଙ୍ଗିବାରେ ଯତ୍ନଶୀଳ । ସବୁ ପୂର୍ବପରି ସାଧାରଣ, ସେଥିରୁ କେତେକ ଦାର୍ଶନିକ ଯେପରି ମୂରାଲା ଶେଷରେ ଆବିଷ୍କାର କରେ ''ଯାର କିଛି ନାହିଁ ତାର ସବୁ ଅଛି । ବାସହୀନ ଲୋକଟିଏ ସାରା ବିଶ୍ୱକୁ ନିଜର କରିପାରେ । ବଂଧୁହୀନ ପାଇଁ କେହି ଆଗନ୍ତୁକ ନାହାନ୍ତି ।'' କିନ୍ତୁ ଟ୍ରାଜେଡି ବା ଦର୍ଶନ କୌଣସିଟା ବାସ୍ତବ ନୁହେଁ । କବି ଯାହାସବୁ ପ୍ରକାଶ କରିବାକୁ ପ୍ରୟାସ କରିଛନ୍ତି ସେ ସବୁ ଅନୁଭବ କରିବା ଏଇ ତରୁଣ କବିଙ୍କ ପାଖରେ ଅସମ୍ଭବ । ତଥାପି ଏଥିରେ ତାଂକର କାବ୍ୟ ପ୍ରତିଭାର ଐଶ୍ୱର୍ଯ୍ୟ ପ୍ରକାଶିତ ଓ କାବ୍ୟ ନାଟିକାଟିରେ ଏହି ଭଳି କିଛି ସୁନ୍ଦର ଗୀତିପଂକ୍ତି ସଂଯୋଜିତ ଯାହା କାବ୍ୟର ଆଙ୍ଗିକ ଗଠନରେ କବିଙ୍କ ଦକ୍ଷତାର ପ୍ରମାଣ ଦିଏ ।

କାବ୍ୟ ନାଟିକାଟି ପରବର୍ତ୍ତୀ ସମୟରେ କବିଙ୍କର ରଚନାବଳୀରେ ସ୍ଥାନ ପାଇ ନଥିଲେ ମଧ୍ୟ ପ୍ରଥମ ପ୍ରକାଶ କାଳରେ ଏହା ବଙ୍ଗ କବିତାରେ ସହଜ ଗୀତିମୟତା ଓ ରୋମାଣ୍ଟିକ୍ ଆବେଗ ପ୍ରବଣତାର ନୂତନତା ପାଇଁ କବିଙ୍କୁ ଯଥେଷ୍ଟ ସୁନାମ ଆଣିଦେଇଥିଲା । ତ୍ରିପୁରାର ମହାରାଜା ନିଜ ମୁଖ୍ୟମନ୍ତ୍ରୀଙ୍କୁ ପଠାଇ ତରୁଣ କବିଙ୍କର ଏହି ସଫଳତା ପାଇଁ ଅଭିନନ୍ଦନ ଜଣାଇଥିଲେ । ପରିଣତ ବୟସରେ ଅତୀତର ଏଇ ଆବେଗ ପ୍ରବଣ ଦୀର୍ଘ କବିତା ରଚନାକୁ ମନେ ପକାଇ କବି ଯେତେ ଆଶ୍ଚର୍ଯ୍ୟ ହୋଇଥିଲେ ତାହା ଅପେକ୍ଷା ବେଶୀ ଆଶ୍ଚର୍ଯ୍ୟ ହୋଇଥିଲେ ଯେ ଅନ୍ୟମାନେ ବି ଏହାକୁ ଗୋଟିଏ ଉତ୍ତମ ସୃଷ୍ଟି ଭାବରେ ଗ୍ରହଣ କରିଥିଲେ । ''ମଜାର କଥା ହେଲା ଏହା ଯେ, ମୁଁ କେବଳ ସେତେବେଳେ ଅଠର ବର୍ଷର ଥିଲି ତା ନୁହେଁ ମୋ ଚାରି ପାଖରେ ଥିବା

ଅନ୍ୟ ସମସ୍ତେ ବି ଅଠର ବର୍ଷ ପରି ମନେ ହେଉଥିଲେ ।''

ଯାହାହେଉ ବିଦେଶରୁ ବିଦାୟ ବେଳାର ସବୁ ଦୁଃଖ ଘେନି ଆସିଥିବା ଏଇ ଭଗ୍ନହୃଦୟ କବି ଘରକୁ ଫେରିବା ପରେ ପୂର୍ବ ଅପେକ୍ଷା ଅଧିକ ଖୁସି ଓ ମୁକ୍ତମନା ହୋଇ ଉଠିଲେ । ଏହା ପରେ ଗୀତ ରଚନାରେ କବି ଆତ୍ମନିୟୋଗ କଲେ ଓ ତାଙ୍କର ପ୍ରଥମ ଗୀତିନାଟ୍ୟ ''ବାଲ୍ମୀକି ପ୍ରତିଭା'' ରଚନା କଲେ । ଏହା ବିଷୟରେ କବି ସଚେତନ କରାଇଥିଲେ ଯେ ଏହା କେବଳ ପଢ଼ିବା ପାଇଁ ନୁହେଁ, ମଞ୍ଚ ଉପରୁ ଦେଖିବା ଓ ଶୁଣିବା ପାଇଁ । ଭାରତର ଆଦି ମହାକବି ରାମାୟଣର ରଚୟିତାଙ୍କର ଅତୀତ ଦସ୍ୟୁ ଜୀବନର କିମ୍ବଦନ୍ତୀ ଉପରେ ଆଶ୍ରିତ ଥିଲା ଏହାର ବିଷୟ ବସ୍ତୁ । ରବୀନ୍ଦ୍ରନାଥଙ୍କର କଥାରେ ପକ୍ଷୀଟିର ଆର୍ତ୍ତସ୍ୱର ଦସ୍ୟୁ ଦଳପତିଙ୍କୁ ବିଚଳିତ କରିନଥିଲା, କରିଥିଲା ଗୋଟିଏ ଭୟାର୍ତ୍ତ ବାଳିକାର ଆକୁଳ କ୍ରନ୍ଦନ ଧ୍ୱନି, ଯାହାକୁ ଦସ୍ୟୁର ଅନୁଚର ମାନେ ମା କାଳୀଙ୍କୁ ସନ୍ତୋଷ କରିବା ପାଇଁ ବଳି ଦେବାକୁ ନେଉଥିଲେ । କରୁଣାରେ ବିଗଳିତ ହୋଇ ବାଲ୍ମୀକି ବାଳିକାଟିକୁ ଉଦ୍ଧାର କରିଥିଲେ । ଦସ୍ୟୁ ଦଳକୁ ଭାଙ୍ଗିଦେଇ ନିଜର ପ୍ରକୃତ ବୃତ୍ତି ଖୋଜି ବୁଲିଲେ । ତା ପରେ ସ୍ୱୟଂ ସରସ୍ୱତୀ ତାଙ୍କ ସାମନାରେ ଉଭାହୋଇ କହିଲେ ଯେ ସେ ହିଁ ବାଳିକାର ଛଦ୍ମ ବେଶରେ ତାଙ୍କ ହୃଦୟରେ ମାନବିକତା ଆଣିବା ପାଇଁ ଦେଖା ଦେଇଥିଲେ । ସରସ୍ୱତୀ ତାଙ୍କୁ ସଂଗୀତର ଆଶିଷ ଦେଇ କହିଲେ ''ଯେଉଁ କରୁଣ ସଂଗୀତ ତମ କଠିନ ହୃଦୟକୁ ତରଳାଇ ଦେଇପାରିଲା ତାହା ତୁମ କଣ୍ଠରୁ ନିସୃତ ହୋଇ ଅଗଣିତ ହୃଦୟକୁ ମାଧୁର୍ଯ୍ୟ ମଣ୍ଡିତ କରୁ । ତମର ସ୍ୱର ସ୍ଥାନେ ସ୍ଥାନେ ଧ୍ୱନିତ ହେଉ ଓ ବହୁ କବି ଆପଣାର ସୃଷ୍ଟିରେ ତାକୁ ପ୍ରତିଧ୍ୱନିତ କରନ୍ତୁ ।''

'ବାଲ୍ମୀକି ପ୍ରତିଭା' ର ପ୍ରଧାନ ବୈଶିଷ୍ଟ୍ୟ ତା'ର ନାଟ୍ୟଗତ ଆବେଗ ବା କାବ୍ୟିକ ମର୍ଯ୍ୟାଦାରେ ନୁହେଁ, କେବଳ ତାର ସାଂଗୀତିକ ଉଦ୍‌ଭାବନରେ ହିଁ ନିହିତ । ଏହି ନାଟକରେ ରବୀନ୍ଦ୍ରନାଥ ଭାରତୀୟ ସଂଗୀତର ଗତାନୁଗତିକ ନୈଷ୍ଠିକ ପରଂପରା ବିରୋଧରେ ପ୍ରଥମେ ସ୍ୱର ଉତ୍ତୋଳନ କରିଥିଲେ । ସାହିତ୍ୟ କ୍ଷେତ୍ରରେ ସେ ଯାହା କରୁଥିଲେ ଏବେ ତାହା ସଂଗୀତ ପାଇଁ କରିବାକୁ ଚାହିଁଲେ । ଶାସ୍ତ୍ରୀୟ ଓ ଲୋକ ସଂଗୀତ ଉଭୟର ମର୍ଯ୍ୟାଦାକୁ ଅତୁଟ ରଖି ସେ ନିଜର ଆବଶ୍ୟକତା ଅନୁଯାୟୀ ଉପାଦାନ ସଂଗ୍ରହ କରୁଥିଲେ, ଏପରିକି ପାଶ୍ଚାତ୍ୟ ସଂଗୀତରୁ ଉପାଦାନ ଆହରଣ କରିବାକୁ ଅସମୀଚୀନ ମନେ କରୁ ନଥିଲେ । କିନ୍ତୁ ଯାହା ଅଳ୍ପ କିଛି ସେ ଅନ୍ୟମାନଙ୍କରୁ ଆହରଣ କରୁଥିଲେ ତାକୁ ନିପୁଣ ଭାବରେ ନିଜର କରିନେଇଥିଲେ । ଆବ୍‌ଷ୍ଟ୍ରାକଟ ସଂଗୀତରେ କୌଣସି ନୂତନ ଧାରାର ପ୍ରବର୍ତ୍ତନ ପାଇଁ ତାଙ୍କର ଆଗ୍ରହ ନ ଥିଲା । ସଂଗୀତ ରଚନା କ୍ଷେତ୍ରରେ ଶାସ୍ତ୍ରୀୟ ଓ ଲୋକ ଶବ୍ଦାବଳୀ ଭିତରେ ଥିବା ଭେଦ ରେଖାକୁ ସେ ଘୁଞ୍ଚାଇ ଦେଇଥିଲେ । ତାଙ୍କ ସଂଗୀତ ସବୁ ତାଙ୍କର କାବ୍ୟ ଭାଷା ସହିତ ଏପରି ଭାବରେ ଅଙ୍ଗାଙ୍ଗୀଭାବେ ଜଡିତ ହୋଇ ରହିଛି ଯେ ସେଥିରୁ ସଂଗୀତର ସ୍ୱର ଓ କବିତାର ଭାବକୁ ଅଲଗା କରିବା ପ୍ରାୟତଃ ଅସମ୍ଭବ । ଏଥିରୁ ପ୍ରତ୍ୟେକଟି ଅପରକୁ ଉଦ୍ଦୀପିତ ଓ ଅଭିବ୍ୟକ୍ତ କରିଥାଏ । ଏଣୁ ରବୀନ୍ଦ୍ରଙ୍କ ଗୀତରଚନାରେ ଶବ୍ଦର ସାଙ୍ଗୀତିକ ଧ୍ୱନିକୁ ନ ବୁଝିଲେ ତାଙ୍କର ସଂଗୀତକୁ ସଂପୂର୍ଣ୍ଣ ଉପଭୋଗ କରିହୁଏ ନାହିଁ ।

ଇଂଲଣ୍ଡ ରହଣି କାଳରେ ସେ ୟୁରୋପୀୟ ରାଗ ସଂଗୀତ ଶୁଣୁଥିଲେ ଓ ଧୀରେ ଧୀରେ ତାହାର ମାଧୁର୍ଯ୍ୟ ବୁଝିବାକୁ ଆରମ୍ଭ କରିଥିଲେ । ''ତାହାର ବିବିଧତା, ପ୍ରାଚୁର୍ଯ୍ୟ, ତାହାର ଜୀବନ ସାଗରରେ ତରଙ୍ଗଲୀଳା ଓ ଅବିରାମ ଗତିଚାଞ୍ଚଲ୍ୟ ଉପରେ ଆଲୋକଛାୟାର ଅସରନ୍ତି ଢେଉଢେଉକା ପ୍ରକଂପନ'' ପ୍ରଭୃତି ରୋମାଣ୍ଟିକ୍ ଭାବକୁ ସେ ବେଶୀ ପସନ୍ଦ କରୁଥିଲେ । ହରବାର୍ଟ

ସ୍ପେନ୍‌ସାର ରଚିତ 'ଦି ଓରିଜିନ୍ ଆଏଣ୍ଡ ଫଙ୍କସନ୍ ଅଫ୍ ମ୍ୟୁଜିକ୍' ଗ୍ରନ୍ଥରେ ସିଏ ପଢ଼ିଥିଲେ ଯେ ଆବେଗ ହିଁ ସାଧାରଣ କଥାକୁ ରାଗରେ ଅନୁରଞ୍ଜିତ କରିଥାଏ । ''କଥା ବାର୍ତ୍ତାରେ ଆନୁଷଙ୍ଗିକ ସ୍ୱରର ଉତ୍‌କର୍ଷ ସାଧନ କରି ମଣିଷ ସଂଗୀତ ପାଇଛି-'' ''ସ୍ପେନସର୍‌ଙ୍କ ଏହି କଥାଟି ମୋ ମନକୁ ଛୁଇଁଥିଲା । ଭାବିଥିଲି ଏଇ ମତ ଅନୁସାରେ ନାନାଭାବକୁ ଗୀତ ମାଧ୍ୟମରେ ଆବୃତ୍ତିଧର୍ମୀ ଅଭିନୟ କଲେ ହେବନି କାହିଁକି ?'' ''ବାଲ୍ମୀକି ପ୍ରତିଭା'ରେ ସେ ଏଥିପାଇଁ ପ୍ରଥମ ପ୍ରୟାସ କଲେ ଓ ନାଟିକାଟିର ମଞ୍ଚ ସଫଳତା ଯୋଗୁଁ ଖୁବ୍ ଉତ୍ସାହିତ ହେଲେ । ଏଥିରେ ସେ ନିଜେ ବାଲ୍ମୀକି ହେଲେ ଓ ତାଙ୍କର ଝିଆରୀ ପ୍ରତିଭା ସେଇ ଦସ୍ୟୁ ନାୟକଠୁ ରକ୍ଷା ପାଇଥିବା ବାଳିକାର ଅଭିନୟ କଲେ । (ଏଇ ଭଳି ଭାବରେ ନାଟିକାଟିର ନାଁରେ ପ୍ରତିଭା ଶବ୍ଦ ଯୋଡା ଯିବାର ସ୍ୱଳ୍ପ ସମ୍ଭାବନା ଥାଇପାରେ ।) ଏଇ ନାଟିକାଟିର ସଫଳତାରେ ଉତ୍ସାହିତ ହୋଇ ସେ ଆଉ ଗୋଟିଏ ଗୀତିନାଟ୍ୟ ରଚନା କଲେ । ଏଇ ନାଟିକାଟି ଏକା ଛାଞ୍ଚରେ ରାମାୟଣର ପ୍ରାଚୀନ କିଂବଦନ୍ତୀ ଉପରେ ଆଧାରିତ ହୋଇଥିଲା । ନାଁ ତାର ଥିଲା 'କାଳମୃଗୟା' । ଏଇ ନାଟିକାଟି ମଧ ସଫଳ ଭାବରେ ପ୍ରଯୋଜିତ ହୋଇଥିଲା ଓ କବି ନିଜେ ଏଥିରେ ଅନ୍ଧମୁନି ଅଭିନୟ କରିଥିଲେ ।

ମାତ୍ର ଭବିଷ୍ୟତରେ ଆଉ ଏକ ମହତ୍ତର ସୃଷ୍ଟିପାଇଁ ଭାବର ପରିପକ୍ୱ ମୁହୂର୍ତ୍ତକୁ କବି ଅପେକ୍ଷା କରୁଥିଲେ । ଜ୍ୟୋତିରିନ୍ଦ୍ରନାଥ ଓ ତାଂକ ପତ୍ନୀ କଲିକତା ଛାଡି ଭ୍ରମଣରେ ବାହାରିଲେ । ରବୀନ୍ଦ୍ର ସେମାନଙ୍କ ସହ ଯାଇ ପାରିଲେ ନାହିଁ । ନିର୍ଜନରେ ବିମର୍ଷ ଚିତ୍ତରେ ରହୁଥିଲେ । ଭାଇଙ୍କର ସାନିଧ ଓ ଭାଉଜଙ୍କର ଆନ୍ତରିକ ସ୍ନେହକୁ ସେ ଝୁରୁଥିଲେ । ବିଦେଶରୁ କୌଣସି ଶିକ୍ଷାଗତ ଯୋଗ୍ୟତା ନ ପାଇ ତାଙ୍କର ଏହିପରି ବିଫଳ ପ୍ରତ୍ୟାବର୍ତ୍ତନ ହେତୁ ପରିବାରର ଅନେକେ ଅସନ୍ତୁଷ୍ଟ ଥିଲେ ଓ ତାଙ୍କୁ ଅପଦାର୍ଥ ବୋଲି ମନେ କରୁଥିଲେ । ଏ ପରି ନିଃସଙ୍ଗତା ଓ ଅବସାଦକୁ ସେ ମନରୁ ଦୂରୀଭୂତ କରିବା ପାଇଁ କାହାକୁ ସନ୍ତୁଷ୍ଟ କରିବାକୁ ନୁହେଁ ଆପଣାକୁ ପ୍ରକାଶ କରିବାକୁ କେବଳ ଚାହୁଁଥିଲେ । ଏତିକିବେଳେ ଏହି ଭାବରୁ ସୃଷ୍ଟି ହୋଇଥିବା କବିତାରାଜି ପରବର୍ତ୍ତୀ ସମୟରେ ''ସଂଧ୍ୟା ସଂଗୀତ'' ନାମରେ ପ୍ରକାଶିତ ହେଲା । ଏହା ରବୀନ୍ଦ୍ର ପ୍ରତିଭାର ପ୍ରଥମ ଅଭ୍ରାନ୍ତ ସ୍ୱାକ୍ଷର ବହନ କରିଥିଲା । ସେ ଆପଣାର ନିଜସ୍ୱ ରଚନା ଶୈଳୀ ଆବିଷ୍କାର କଲେ ଓ ଆପଣା ମନର ଆନନ୍ଦରେ ଲେଖିଚାଲିଲେ । ପୂର୍ବର ଛନ୍ଦ ମୋହ ଆଉ ନଥିଲା । ଯେପରି ସେ ଲେଖିଲେ ତାହାହିଁ ତାଙ୍କର ନିଜସ୍ୱ ହୋଇଗଲା । ''ନଦୀ ଯେପରି ସରଳ ଧାରାରେ ପ୍ରବାହିତ ହୁଏ ନାହିଁ, ମୋର ଛନ୍ଦ ଠିକ୍ ସେହିପରି ଅଙ୍କାବଙ୍କା ହୋଇ ନାନା ମୂର୍ତ୍ତି ଧାରଣ କରି ଚାଲିବାକୁ ଲାଗିଲା । ପୂର୍ବରୁ ଏହାକୁ ଅପରାଧ ଭାବେ ଗ୍ରହଣ କରୁଥିଲି, କିନ୍ତୁ ବର୍ତ୍ତମାନ ଏଥିରେ ଲେଶମାତ୍ର ସଂକୋଚ ନଥିଲା । ସ୍ୱାଧୀନତା ଆପଣାକୁ ପ୍ରଥମ ପ୍ରଚାର କରିବା ସମୟରେ ନିୟମ ଭଙ୍ଗକରେ ତା ପରେ ଆପଣା ହାତରେ ସେ ନିୟମ ଗଢ଼ିତୋଳେ, ସେତିକି ବେଳେ ହିଁ ସେ ଯଥାର୍ଥ ନିଜର ଅଧୀନ ହୋଇଥାଏ ?''

ଏଇ କବିତା ଗୁଚ୍ଛଟି ପାଠକ ମହଲରେ ଖୁବ୍ ଆଦୃତ ହୋଇଥିଲା । ପ୍ରକୃତରେ ବଙ୍ଗଳା ସାହିତ୍ୟ ଆକାଶରେ ଗୋଟେ ନୂଆ ଜ୍ୟୋତିଷ୍କର ଆବିର୍ଭାବ ହୋଇଥିଲା । କବି ନିଜର ଜୀବନ ସ୍ମୃତିରେ ବର୍ଣ୍ଣନା କରିଛନ୍ତି ଥରେ ଗୋଟିଏ ପରିଣୟ ଭୋଜିରେ ସୁପ୍ରସିଦ୍ଧ ଔପନ୍ୟାସିକ ବଙ୍କିମଚନ୍ଦ୍ରଙ୍କୁ ଫୁଲମାଳ ଦିଆଗଲା ବେଳେ ସେ ନିଜ ଗଳାରୁ ମାଳଟି ନେଇ ତରୁଣ ରବୀନ୍ଦ୍ରଙ୍କୁ ପିନ୍ଧାଇ ଦେଇ କହିଥିଲେ ''ରମେଶ, ୟାଙ୍କୁ ଫୁଲମାଳ ଦିଅ, ତୁମେ କ'ଣ 'ସଂଧ୍ୟା ସଂଗୀତ' ପଢ଼ିନାହଁ କି ?''

ଏହି କବିତା ଗୁଡିକ ଥିଲା ସଂପୂର୍ଣ୍ଣ ଆତ୍ମକେନ୍ଦ୍ରିକ ବ୍ୟକ୍ତିନିଷ୍ଠ ଓ ଅବସାଦ ଭରା ଆବେଗୋଷ୍ଣ

କଳ୍ପନାରେ ପୂର୍ଣ୍ଣ । କେତେକ କବିତାର ଶୀର୍ଷକ ଏଇ ଭାବର ଦ୍ୟୋତକ ଥିଲା-'ତାରକାର ଆତ୍ମହତ୍ୟା'' 'ଆଶାରେ ନୈରାଶ୍ୟ,' 'ଆନନ୍ଦର ଅବସାନ,' 'ଦୁଃଖର ନିମନ୍ତ୍ରଣ,' 'ଅସହ୍ୟ ପ୍ରେମ' ପ୍ରଭୃତି ଏହାର ଦୃଷ୍ଟାନ୍ତ । ତରୁଣ କବି ସେତେବେଳେ ଦୁଃଖକୁ ଭଲ ପାଉଥିଲେ ଓ ଏହାରି ଭିତରେ ଆନନ୍ଦ ବେଦନାର ତିକ୍ତ ମଧୁର ଅନୁଭୂତି ଆହରଣ କରୁଥିଲେ । 'ସଂଧ୍ୟା ସଂଗୀତ' ନାମଟି ଥିଲା ଏକ ଅବସାଦକର ମନୋଭାବର ପରିଚାୟକ ଓ ଅବଚେତନିକ ଭାବରେ ଏହା ତାଂକର ପ୍ରଥମ ସୃଷ୍ଟିଶୀଳ ପର୍ଯ୍ୟାୟର ସୂର୍ଯ୍ୟାସ୍ତକୁ ସୂଚିତ କରୁଥିଲା । କବିଙ୍କ ଭାଷାରେ, ଯେଉଁ ପର୍ଯ୍ୟାୟରେ ''ନିଜ ଅନୁଭୂତିର ଅମ୍ଳଜାନ ଦେଇ ସୃଷ୍ଟିର ଜ୍ୱଳନ୍ତ ଶିଖାକୁ ତେଜିବାରେ ମୁଁ ବ୍ୟସ୍ତ ଥିଲି ।'' କିନ୍ତୁ ନୂତନ ସୂର୍ଯ୍ୟୋଦୟ ପାଇଁ ଅପେକ୍ଷା ଥିଲା ।

ପ୍ରଥମ କବିତାଟି ଯଥାର୍ଥତଃ ଥିଲା ସଂଧ୍ୟାର ସମ୍ବୋଧନ ଗୀତି, ଜଣେ ଏକାକିନୀ ରହସ୍ୟମୟୀ କାମିନୀର କଥା ଏଥିରେ ରୂପ ପାଇଥିଲା । ତୁମୁଳ ଅନ୍ଧକାର ଛାୟାଭିତରୁ ତାର ଅବନତ ମୁଖର ଅଧଃଭାଗ ଓ ଆଲୁଳାୟିତ କେଶପାଶ ଦେଖାଯାଉଥିଲା । ''ଆପଣା ମନରେ କ'ଣ ତୁମେ ଗୁଣୁ ଗୁଣୁ କରି ଗାଉଛ, ଦିନ ପରେ ଦିନ ମୁଁ ଏହାକୁ ଶୁଣିଛି କିନ୍ତୁ ଏହାର ଭାବ ବା ରାଗ କିଛି ହିଁ ବୁଝି ପାରିନାହିଁ'' । ଏଇ ଛାୟା ମୂର୍ତ୍ତି ସହିତ ତାଙ୍କର ଏକ ଅଦ୍ଭୂତ ଆତ୍ମୀୟତା ସେ ଅନୁଭବ କରିଛନ୍ତି ଯାହାକୁ ଅନ୍ୟସବୁ କବିତାରେ ସେ ବର୍ଣ୍ଣନା କରିଛନ୍ତି । ଆଉ ଗୋଟିଏ କବିତାରେ ଆତ୍ମବିଲୟ ଆଡକୁ ପତିତ ତାରକାର ଦୁର୍ଭାଗ୍ୟ ପ୍ରତି ସେ ସମବେଦନା ଜଣାଇଛନ୍ତି । ଅନ୍ୟ ଏକ କବିତାରେ ତାଙ୍କୁ ଏକାକୀ ଛାଡି ଯାଇଥିବାରୁ ଭାଉଜଙ୍କ ପ୍ରତି ସେ ନିଜର ଆବେଗ ଭରା ଅଭିମାନ ପ୍ରକାଶ କରିଥିଲେ । ''ସେ ଚାଲିଯାଇଛନ୍ତି, ଆଉ କି କଥା ଅଛି କହିବାର, ସେମାନେ ଚାଲିଗଲେ, ଆଉ କି ଗୀତ ଅଛି ଗାଇବାର, ମାତ୍ର ହୃଦୟ ଭିତରେ ଅଣୁରଣିତ ହେଉଛି, ସେମାନେ ଚାଲିଗଲେ, ଭଗ୍ନ ହୃଦୟକୁ ପଛରେ ପକାଇ ।'' ସେମାନେ ଗଲେ ସାଙ୍ଗରେ ଘେନି ଗଲେ ଯେତେ ସବୁ ଫୁଲ, ପକ୍ଷୀ ଓ ଦିନକୁ ଉଜ୍ଜ୍ୱଳ କରୁଥିବା ଆଲୋକ ସବୁକୁ, ଜୀର୍ଣ୍ଣ ମଳିନ ବସ୍ତ୍ରଟି ପରି ମତେ ଛାଡି ଗଲେ ।'' (ଏହା କବିଙ୍କର ମୂଳକଥାର ଅନୁବାଦ ନୁହେଁ, କେବଳ ମାତ୍ର ତାଙ୍କର ସେ ସମୟର ମନୋଭାବ ଓ ସୃଷ୍ଟି ଚେତନାକୁ ସୂଚିତ କରିବା ପାଇଁ ଅକୁଳନ ଶବ୍ଦରେ ସଂକ୍ଷିପ୍ତ ସାରାଂଶ ।)

ଏହି ବହିର ଉତ୍ସର୍ଗ କବିତାଟି ପ୍ରଥମରୁ ନ ରହି ଶେଷରେ ଅଛି । ପ୍ରଥମ କବିତାରେ ସଂଧ୍ୟାର ଯେଉଁ ଅସ୍ପଷ୍ଟ ଓ ରହସ୍ୟପୂର୍ଣ୍ଣ ଭାବଟି ସୂଚିତ ହୋଇଥିଲା ତାହା ଏଠି ପରିଚିତ ଓ ସାକାର ହୋଇ ଉଠିଛି । ''ବହୁ ଦିନ ପୂର୍ବେ, ଯେବେ ମୁଁ ପିଲାଟିଏ ଥିଲି, ତୁମେ ତୁମ ମମତା ପାଶରେ ମତେ ବାନ୍ଧି ରଖିଥିଲ, ଯେମିତି ସଂଧ୍ୟା ତା'ର ଶାନ୍ତିର କୋଳରେ ଧରିତ୍ରିକୁ କୋଳାଗ୍ରତ କରେ । ସଂଧ୍ୟାର ସେଇ ଯାଦୁ କାରୀଭାବ ତୁମକୁ କ'ଣ ସେ ଶିଖାଇ ଥିଲା କି ? ତୁମେ ମୋ ହୃଦୟକୁ ନିରେଖିବା ମାତ୍ରେ ନକ୍ଷତ୍ର ସବୁ ଉଜ୍ଜ୍ୱଳି ଉଠିଲେ । ମୋ ଭିତରର ଗୁପ୍ତ ଧନ ସବୁକୁ ତୁମେ ମତେ ଚିହ୍ନାଇ ଦେଲ । ନିଜେ ଗୀତ ନ ଗାଇ, ମତେ ହିଁ ଦେଇଗଲ ସବୁ ଗୀତ ।''

ଏଇ କବିତା ଗୁଚ୍ଛରେ ପ୍ରକାଶିତ କବିଙ୍କର ବିଷାଦ ବୋଧ, ମାର୍ମିକ ଓ ଯୁବୋଚିତ ଥିଲା । କିନ୍ତୁ ଏଥିରେ ଅମନଯୋଗ ଓ ଆକ୍ରାନ୍ତ ହେବାର କୌଣସି ଚିହ୍ନ ନାହିଁ । ପରିଣତ ବୟସରେ ଏଥିର କେତୋଟି କବିତା ପାଇଁ କବି ସଂକୋଚବୋଧ କରୁଥିଲେ ଓ ତାଙ୍କ ରଚନାବଳିରୁ ବାଦ ଦେବାକୁ ଚାହୁଁଥିଲେ । ଅତିଶୟ ଦୁର୍ବଳତା ଦୋଷ ଦୁଷ୍ଟ କବିତା ଗୁଡିକ ସ୍ୱପକ୍ଷରେ ଯୁକ୍ତି ଦଉଥିଲେ ।

ଜୀବନ ସ୍ମୃତିରେ ସେ ଲେଖିଛନ୍ତି , ''ଦୃଷ୍ଟି ଶକ୍ତି ଭଲ ଥିବା ବ୍ୟକ୍ତି କୌଣସି ଯୁବକଙ୍କୁ ଚଷମା ପିନ୍ଧିବାର ଦେଖିଲେ ଥଟ୍ଟା କରେ ଏବଂ ଭାବେ ସିଏ ଯେପରିକି ଚଷମାକୁ ଅଳଙ୍କାର ଭଳି ପିନ୍ଧୁଛି ।''

ବ୍ୟର୍ଥ ଓ ହତାଶ ରବୀନ୍ଦ୍ର ହିମାଳୟ ପ୍ରବାସୀ ପିତାଙ୍କୁ ଚିଠି ଲେଖିଲେ ତାଙ୍କୁ ପୁଣି ଥରେ ଇଂଲଣ୍ଡ ଯିବାକୁ ଅନୁମତି ଦେବାପାଇଁ । ଅନୁମତି ମିଳିଲା ଓ ଏପ୍ରିଲ 1881 ରେ ପୁତୁରାଙ୍କୁ ସାଙ୍ଗରେ ନେଇ ଦ୍ୱିତୀୟଥର ସେ ବିଲାତ ଯାତ୍ରା କଲେ । ଯାତ୍ରାର ପୂର୍ବ ସଂଧ୍ୟାରେ କଲିକତାରେ 'ସଂଗୀତ ଓ ଅନୁଭବ' ଶୀର୍ଷକ ସଂଗୀତରେ ତତ୍ତ୍ୱ ଓ ନିଜ ରଚନାର ଦୃଷ୍ଟାନ୍ତ ଦେଇ ବକ୍ତୃତା ଦେଇଥିଲେ । ଏହା ତାଙ୍କର ପ୍ରଥମ ସାଧାରଣ ବକ୍ତୃତା ଥିଲା । ବହୁ ଉଦାହରଣ ମାଧ୍ୟମରେ ଏଥିରେ ସେ ବୁଝାଇବାକୁ ଚେଷ୍ଟା କରିଥିଲେ ଯେଉଁ ଭାବକୁ ପ୍ରକାଶ କରିବାରେ ଶବ୍ଦ ବିଫଳ ହୁଏ ତାହାକୁ ବ୍ୟକ୍ତ କରିବା ସ୍ୱର ଓ ସଂଗୀତର କାର୍ଯ୍ୟ । ନିଜର କୋଷ ଭିତରୁ ମୁକ୍ତହୋଇ ଜନସାଧାରଣଙ୍କର ଦୃଷ୍ଟି ଆକର୍ଷଣ କରୁଥିଲେ । ସେହି ସମୟରେ ତାଙ୍କର ଗୋଟିଏ ତାର୍କିକ ପ୍ରବନ୍ଧ ''ଡେଥ୍ ଟ୍ରାଫିକ୍ ଇନ୍ ଚାଇନା' ପ୍ରକାଶ ପାଇଥାଏ । ସେଥିରେ ସେ ବ୍ରିଟେନକୁ ସେ ଦେଶର ଅଫିମ କାରବାର ପାଇଁ ଭର୍ତ୍ସନା କରିଥିଲେ । ଦେଶର ସୀମା ପାରହୋଇ ବିଶ୍ୱର ଯେ କୌଣସି ସ୍ଥାନରେ ଯେଉଁଠି ମାନବିକ ଅନାଚାର ଘଟୁଥିଲା ତାହା ବିରୁଦ୍ଧରେ ସେ ସ୍ୱର ଟୋଳୁଥିଲେ । ପ୍ରଗାଢ଼ ଆତ୍ମନିଷ୍ଠତା ଓ ବହିର୍ବିଶ୍ୱ ସହିତ ତାଙ୍କର ମାନବବାଦୀ ଘନିଷ୍ଠତା  ଏଇ ଦ୍ୱୈତଧାରା ଶୈଶବରୁ ମୃତ୍ୟୁ ପର୍ଯ୍ୟନ୍ତ ତାଙ୍କ ବ୍ୟକ୍ତିତ୍ୱର ଏକ ବିଶେଷ ଗୁଣ ଥିଲା ।

ଦ୍ୱିତୀୟଥର ଇଂଲଣ୍ଡ ଯାତ୍ରା କରିବାରେ ସଂପୂର୍ଣ୍ଣ ଭାବରେ ବିଫଳ ହୋଇଥିଲେ । ଯେଉଁ ପୁତୁରା ତାଙ୍କ ସହିତ ଯାଉଥିଲେ ସେ କିଛି ଦିନ ପୂର୍ବରୁ ବିବାହ କରିଥାଆନ୍ତି, ଜାହାଜ କଲିକତା ଛାଡିବା ମାତ୍ରେ ସେ ନିଜ ନବବଧୂ ପାଇଁ ବ୍ୟାକୁଳଥିଲେ, ପୁଣି ସମୁଦ୍ର ଯାତ୍ରା ତାଙ୍କୁ ଅସହ୍ୟ ଲାଗୁଥିଲା । ଜାହାଜ ମାଡ୍ରାସ ପହଞ୍ଚିବା ବେଳକୁ ସେ ଘରକୁ ଫେରି ଆସିବା ପାଇଁ ଅଧୀର ହୋଇ ଉଠିଥିଲେ । କିନ୍ତୁ ମହର୍ଷିଙ୍କ ସାମନା ହବାପାଇଁ ତାଙ୍କର ସାହାସ ନଥିଲା । ତେଣୁ ସେ ତାଙ୍କର ଭଗ୍ନ ହୃଦୟର ହତାଶାକୁ ସମବେଦନା ଜଣାଇ ତାଙ୍କୁ ଆବଶ୍ୟକୀୟ ନୈତିକ ସାହାସ ଦବାପାଇଁ ତରୁଣ କକାଙ୍କୁ ଅନୁରୋଧ କରିଥିଲେ । କକା ସଂଗେ ସଂଗେ ତାଙ୍କ କଥାରେ ରାଜି ହୋଇଗଲେ- ପୂର୍ଣ୍ଣତଃ ସମବେଦନା ପାଇଁ କିମ୍ବା ସେ ମଧ୍ୟ ତାଙ୍କ ହୃଦୟକୁ ପଛରେ ପକାଇ ଯାଇଥିବାରୁ- ସେ କଥା ଜଣାନାହିଁ । କିନ୍ତୁ ପରିଣାମର ଗୁରୁତ୍ୱ ବୁଝି ସିଧା ସିଧା ମଶୋରୀରେ ଥିବା ପିତାଙ୍କ ପାଖକୁ ଯାଇଥିଲେ । ''ବଡ ଭୟରେ ତାଙ୍କ ପାଖରେ ଯାଇ ଠିଆ ହେଲି, କିନ୍ତୁ ସେ ଟିକିଏ ହେଲେ ବିରକ୍ତ ହେଲେ ନାହିଁ, ବରଂ ଖୁସି ଦେଖାଯାଉଥିଲେ । ବୋଧ ହୁଏ ସେ ମନେ କରିଥିଲେ ଏଇ ଫେରିଆସିବା ମୋ ପକ୍ଷେ ମଙ୍ଗଳକର ଓ ଏହା ଭିତରେ ଇଶ୍ୱରଙ୍କର ଆଶୀର୍ବାଦ ନିହିତ ଅଛି ।''

ମଶୋରୀରୁ ସେ ତାଙ୍କ ବଡ ଭାଇ ଜ୍ୟୋତିରିନ୍ଦ୍ରନାଥ  ଓ ତାଙ୍କ ପତ୍ନୀ ରହୁଥିବା ଜାଗାକୁ ଗଲେ । ଚନ୍ଦନ ନଗରରେ ଗଙ୍ଗାକୂଳର ଏକ ଭିଲାରେ ସେମାନେ ରହୁଥିଲେ । ସେଠାରେ ସେ ଖୁସିରେ କେତେଦିନ କଟାଇଲେ । କବିଙ୍କ ଭାଷାରେ ଦିନଗୁଡିକ ଥିଲା ''ସେଇ ଆଳସ୍ୟ ଓ ଆନନ୍ଦରେ ଅନିର୍ବଚନୀୟ, ବିଷାଦ ଓ ବ୍ୟାକୁଳତାର ଜଡିତ କଳଧ୍ୱନି କରୁଣ ଦିବାରାତ୍ରି ।'' ଭିଲାଟି ମୋରାନ୍ ବଗିଚା ନାଁରେ ପରିଚିତ ଥିଲା । ଏହା ଥିଲା ଏକ ବିଶାଳ ପ୍ରଶସ୍ତ ପ୍ରାସାଦ । ନଦୀକୂଳ ପର୍ଯ୍ୟନ୍ତ ପ୍ରସାରିତ ଥିଲା ତା'ର ପ୍ରସ୍ତର ପାବଚ୍ଛ । ଅଳିନ୍ଦ ସବୁ ନଦୀକୂଳ ଆଡକୁ ମୁହଁକରି ରହିଥିଲା । ପ୍ରାୟ ସଂଧ୍ୟାରେ ତିନିହେଁ ମିଶି ନୌକା ବିହାର କରି କଟାଉଥିଲେ । ରବୀନ୍ଦ୍ର ସଂଗୀତ

ଗାନକରୁଥିଲେ ଓ ଜ୍ୟୋତିରିନ୍ଦ୍ରନାଥ ଭାଓଲିନ୍ ବଜାଉଥିଲେ । ଏଠି ରବୀନ୍ଦ୍ରନାଥ ବଙ୍ଗର ନଦୀ ଜୀବନର ମାଧୁର୍ଯ୍ୟ ପ୍ରଥମେ ଅନୁଭବ କଲେ ଯାହା ତାଙ୍କ ରଚନାକୁ କ୍ରମଶଃ ପ୍ରଭାବିତ କରିଥିଲା । ତାଙ୍କର ପ୍ରଥମ ଉପନ୍ୟାସ 'ବୋଉ ଠାକୁରାଣୀର୍ ହାଟ' ମଧ୍ୟ ଏଇଠି ସେ ଲେଖିଥିଲେ ।

କବିତା ଓ ସାହିତ୍ୟକ ପ୍ରବନ୍ଧ ରଚନା କ୍ଷେତ୍ରରେ ଏଇ ତରୁଣ କବି ନିଜର ସତ୍ତା ଖୋଜି ପାଇ ସାରିଥିଲେ ଓ ଆତ୍ମ ପ୍ରତିଭାର ପ୍ରକାଶ ପାଇଁ ନିଜସ୍ୱ ଶୈଳୀ ଆବିଷ୍କାର କରିସାରିଥିଲେ ମଧ୍ୟ କଥା ସାହିତ୍ୟରେ ସେ ସେ ପର୍ଯ୍ୟନ୍ତ ନିଜର ଦିଗ ଖୋଜି ପାଇନଥାନ୍ତି । ଏଇ ପ୍ରଥମ ଉପନ୍ୟାସଟି ଥିଲା ଗୋଟିଏ ଐତିହାସିକ ମେଲୋଡ୍ରାମା, କିନ୍ତୁ ତାଙ୍କ ପୂର୍ବସୂରୀ ବଙ୍କିମଚନ୍ଦ୍ରଙ୍କ ଲୋକପ୍ରିୟ ଶୈଳୀରେ ଏହା ରଚିତ ହୋଇଥିଲା । ଏହା ପ୍ରକାଶ ପାଇବା ସଂଗେସଂଗେ ସେଇ ପ୍ରବୃଦ୍ଧ ଓ ପ୍ରସିଦ୍ଧ ଔପନ୍ୟାସିକ କବିଙ୍କୁ ସଫଳତା ପାଇଁ ଅଭିନନ୍ଦନ ଜଣାଇଥିଲେ । ଉପନ୍ୟାସଟିର କଥାବସ୍ତୁର ସାରମର୍ମ ଓ ନାମକରଣର ଯଥାର୍ଥତା ଏଇପରି ଭାବରେ କୁହାଯାଇପାରେ, ଜଣେ ପରାକ୍ରମୀ ଅଥଚ ନିର୍ଦ୍ଦୟ ରାଜା ତାଙ୍କ ରାଜ୍ୟର ଦୁଃଖୀ ପ୍ରଜାଙ୍କ ପ୍ରତି ନିଜପୁଅ ଦେଖାଉଥିବା ଅନୁକମ୍ପାକୁ ପ୍ରତିରୋଧ କରନ୍ତି । ପରିଶେଷରେ ରାଜପୁତ୍ର ନିର୍ବାସିତ ହୁଅନ୍ତି । ବାରଣାସୀ ଯିବା ବେଳେ ସେ ନିଜ ଭଉଣୀକୁ ସାଂଗରେ ଘେନି ଯାଆନ୍ତି ତାଙ୍କ ସ୍ୱାମୀଙ୍କ ରାଜ୍ୟକୁ । ସେଠି ପହଞ୍ଚି ସେମାନେ ଜାଣନ୍ତି ଯେ ଭଉଣୀଙ୍କ ସ୍ୱାମୀ ଅନ୍ୟ ଏକ ପତ୍ନୀ ଗ୍ରହଣ କରି ସାରିଛନ୍ତି । ତେଣୁ ନିରାଶ ଭଉଣୀ ଭାଇଙ୍କ ନିର୍ବାସନରେ ସାଥୀ ହୁଅନ୍ତି । ଯେଉଁ ସ୍ଥାନରୁ ସେମାନେ ତାଙ୍କ ନୌକା ଅଟକାଇଥିଲେ ସେଇ ସ୍ଥାନଟି ଏ ପର୍ଯ୍ୟନ୍ତ ବୋଉଠାକୁରାଣୀର ହାଟ ନାମରେ ଖ୍ୟାତ ।

କଥା ସାହିତ୍ୟ ଭାବରେ ବହିଟି ସେପରି କିଛି ଉଚ୍ଚକୋଟୀର ନଥିଲା । କିନ୍ତୁ କବିଙ୍କର ସୃଷ୍ଟିଜୀବନର କ୍ରମବିକାଶ ଦେଖାଇବା ପାଇଁ ତାର ଐତିହାସିକ ଗୁରୁତ୍ୱ ରହିଛି । ଏହାଥିଲା ସତେ ଯେପରିକି ଗୋଟିଏ କ୍ଷୁଦ୍ର ନର୍ସରି ଯେଉଁଠାରୁ ଚାରାଗଛ ବିଭିନ୍ନ ସ୍ଥାନକୁ ଯାଇ ସୁନ୍ଦର ଫୁଲ ଫୁଟାଇ ପାରିଛି । ବହୁ ପରିସ୍ଥିତି ଓ ଚରିତ୍ର ଏଥିରେ ଦେଖିବାକୁ ମିଳେ ଯାହା ପରବର୍ତ୍ତୀ ସମୟରେ କବିଙ୍କର ନାଟକ ଗୁଡିକରେ ରୂପ ପାଇଛି । ପ୍ରଜାପାଳନରେ ବିମୁଖ ଜଣେ ରାଜା, ପିତାଙ୍କ ଅନୀତିରେ ବିଦ୍ରୋହ କରୁଥିବା ରାଜପୁତ୍ର, ଜଣେ ବୃଦ୍ଧ ସରଳ ଅଥଚ ଆମୋଦପ୍ରିୟ ନିରୀହ ମନେ ହେଉଥିଲେ ମଧ୍ୟ ଅନ୍ତର୍ନିହିତ ପ୍ରଜ୍ଞାବାନ ଓ ମାନବିକତାବାଦୀ ବ୍ୟକ୍ତି ଯାହାଙ୍କ ମୁଖରେ ଲେଖକଙ୍କର ଜୀବନ ଦର୍ଶନ ବ୍ୟକ୍ତ ହୋଇଛି ଆଉ ଯୁବତୀ ନାରୀ ପ୍ରେମରେ ହେଉ କି ଘୃଣାରେ ହେଉ, ସେମାନେ ସଦା ଚଞ୍ଚଳ ଓ ପୁରୁଷ ଚରିତ୍ରମାନଙ୍କ ଠାରୁ ଅଧିକ ଜୀବନ୍ତ ।

ଗଙ୍ଗା ନଦୀ କୂଳର ସେଇ ଭିଲାରେ ଗ୍ରାମ୍ୟ ପରିବେଶରେ ଛୁଟି କଟାଇ ଦୁଇଭାଇ ଓ କାଦମ୍ବରୀ ଦେବୀ କଲିକତା ଫେରିଲେ । ତାଙ୍କର ଜୋଡାସାଙ୍କୋର ପୁରୁଣା ଘରକୁ ନଯାଇ ସେମାନେ ଏବେର ମ୍ୟୁଜିୟମ୍ ପାଖ ସ୍ୟାଡାର ଷ୍ଟ୍ରିଟ୍‌ରେ ଘର ନେଇ ରହିଲେ । କୋଳାହଳମୟୀ ମହାନଗରୀର ମଧ୍ୟ ଭାଗରେ ଅବସ୍ଥିତ ଏଇ କ୍ଷୁଦ୍ର ଘରଟିରେ ତରୁଣ କବିଙ୍କ ମନରେ ପ୍ରଥମେ ଆଧ୍ୟାତ୍ମିକ ଅନୁଭବ ଆସିଥିଲା । ତାହା ଏତେ ପ୍ରଗାଢ଼ ଓ ପ୍ରାଞ୍ଜଳ ଥିଲା ଯେ କବିଙ୍କର ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ତାହା କବିଙ୍କୁ ଆଲୋଡ଼ିତ କରିଥିଲା । ଶେଷ ବୟସରେ ସେ ତାଙ୍କର ''ଜୀବନ ସ୍ମୃତି''ରେ ଓ ପରେ ''ଦି ରିଲିଜନ୍ ଅଫ୍ ମ୍ୟାନ୍'' ଗ୍ରନ୍ଥରେ ଏକଥା ବର୍ଣ୍ଣନା କରିଥିଲେ । ଦିନେ ପ୍ରତ୍ୟୁଷରୁ ଘରର ବାରଣ୍ଡାରେ ଠିଆ ହୋଇ ସାହି ଉପକଣ୍ଠର ବୃକ୍ଷଶାଖା ଉହାଡରୁ ସେ ସୂର୍ଯ୍ୟୋଦୟ ଦେଖୁଥାନ୍ତି । କବିଙ୍କ ଭାଷାରେ ''ଚାହିଁରହି ହଠାତ୍ ଗୋଟିଏ ମୁହୂର୍ତ୍ତ ମଧ୍ୟରେ ମୋ ଆଖି ସାମ୍ନାରୁ

ଯେପରିକି ଗୋଟେ ପରଦା ଘୁଞ୍ଚିଗଲା । ଦେଖିଲି ଅପରୂପ ମହିମାରେ ବିଶ୍ୱସଂସାର ସମାଚ୍ଛନ୍ନ । ଆନନ୍ଦ ଓ ସୌନ୍ଦର୍ଯ୍ୟରେ ସର୍ବତ୍ର ତରଙ୍ଗିତ ।'' ଯେଉଁ ଦୁଃଖ ଓ କାଳିମା ତାଙ୍କ ଚେତନାକୁ ଅବସନ୍ନ କରିଥିଲା ତାହା ଦୂର ହୋଇ ଜଗତର ସର୍ବତ୍ର ଆନନ୍ଦ ରୂପକୁ ସେ ଦେଖିପାରିଲେ । କବିଙ୍କର ହୃଦୟ ସ୍ତରେ ସ୍ତରେ ଯେଉଁ ବିଷାଦର ଆଚ୍ଛାଦନ ଘୋଡେଇ ହୋଇ ରହିଥିଲା ତାହାକୁ ଭେଦ କରି ଗୋଟିଏ ନିମିଷରେ ତାଙ୍କର ହୃଦୟ ଭିତରେ ବିଶ୍ୱର ଆଲୋକ ବିଚ୍ଛୁରିତ ହୋଇଗଲା । ସେଇ ସୁନ୍ଦର ମୁହୂର୍ତ୍ତରୁ କେହି କିଛି ତାଙ୍କ ପାଖରେ ଆଉ କ୍ଷୁଦ୍ର ହୋଇ ରହିଲେ ନାହିଁ । କବିଙ୍କ ଭାଷାରେ ''ସବୁ ବ୍ୟକ୍ତି ଓ ବସ୍ତୁ ଉପରେ ଘୋଡେଇ ହୋଇ ରହିଥିବା ତଥା କଥିତ ଅନ୍ଧ ପରଦା ଦୂର ହୋଇ ଗଲା ଓ ସେ ସବୁର ମହତ୍ୱ ମୋ ମନରେ ମହନୀୟ ହୋଇ ଉଠିଲା ।''

ଏହି ଅପୂର୍ବ ଅନୁଭୂତି କବିଙ୍କୁ ଏପରି ଏକ ଅବଚେତନିକ ଅବସ୍ଥାକୁ ଘେନି ଯାଇଥିଲା ଯେଉଁଠି ସେ ବିଶ୍ୱର ସକଳ ବସ୍ତୁକୁ କେବଳ ଚକ୍ଷୁ ବା କର୍ଣ୍ଣ ଦେଇ ଦେଖୁ ଶୁଣୁ ନଥିଲେ ମାତ୍ର ତାଙ୍କର ସତ୍ତା ଦେଇ ଅନୁଭବ କରୁଥିଲେ । ଆଉ ଏହା ଥିଲା ତାଙ୍କ ପାଇଁ ଏକ ଅଶେଷ ବିସ୍ମୟ । ଏ ପ୍ରକାର ଅବସ୍ଥା ଭିତରେ ସେ ଯେଉଁ ଚାରିଦିନ ରହିଥିଲେ ସେତେବେଳେ ସେ ଅଧ୍ୟାତ୍ମିକ ଆଲୋଡ଼ନର ଏପରି ଏକ ଉଚ୍ଚତାରେ ପହଞ୍ଚିଥିଲେ ଯେଉଁଠି ସକଳ ବସ୍ତୁ ତାଙ୍କୁ ଅଧିକ ପ୍ରାଞ୍ଜଳ ଓ ବର୍ଣ୍ଣିଳ, ଅଧିକ ସୁନ୍ଦର ଓ ବାସ୍ତବ ଓ ଅଧିକ ଆନନ୍ଦପ୍ରଦ ମନେ ହେଉଥିଲା । ଚତୁର୍ଥ ଦିନ ଶେଷରେ ଏହି ଅସାଧାରଣ ଉତ୍ତେଜିତ ଅବସ୍ଥା ଅପସରି ଯାଇଥିଲା ଓ ଇତି ମଧ୍ୟରେ ରବୀନ୍ଦ୍ରନାଥ ''ଅପ୍ରାପ୍ତ ବୟସର ସୀମା'' ପାର ହୋଇ ଯାଇଥିଲେ । ପୂର୍ବରୁ ସତ୍ୟର ଆଲୋକ ରଶ୍ମି କ୍ୱଚିତ ତାଙ୍କୁ ସ୍ପର୍ଶ କରିଥିଲା, ସେଠି କେବଳ ଛାୟା ଜଗତର କ୍ରୀଡା ଚାଲିଥିଲା । ଏବେ ସେସବୁ ରହିଲା ନାହିଁ । ସେ ସୀମା ଟପି ଯାଇଥିଲେ କିନ୍ତୁ ଅନ୍ୟ ଦିଗନ୍ତରେ ପହଞ୍ଚିବା ପାଇଁ ଆହୁରି ଅନେକ ସମୟ ବାକିଥିଲା, ବହୁ ବାଧା ଅତିକ୍ରମ କରିବାକୁ ପଡିଥିଲା ।

# ଅନ୍ୱେଷଣ

*ଆଲୋକ, ଆହା କେଉଁଠି ସେ ଯେ ଆଲୋକ ?*

ଯେଉଁ ଦିନ ଏଇ ସ୍ମରଣୀୟ ଅନୁଭୂତି ଲାଭକଲେ ରବୀନ୍ଦ୍ରନାଥ ସେଦିନ ରଚନା କରିଥିଲେ 'ନିର୍ଝରର ସ୍ୱପ୍ନଭଙ୍ଗ' କବିତା । କୁହାଯାଇପରେ ସେଇ ଦିନ ଠାରୁ ତାଙ୍କର ବୟଃପ୍ରାପ୍ତ କବି ଜୀବନ ଆରମ୍ଭ ହୋଇଥିଲା । ତାଙ୍କ ନିଜ କଥାରେ ''ଏଇ କବିତାଟି ଅନ୍ତରରୁ ଉତ୍ସାରିତ ହୋଇ ଆସିଥିଲା, ଠିକ୍ ଯେମିତି ଗୋଟିଏ ଝରଣା । ହିମାଳୟର ବରଫାଚ୍ଛାଦିତ ଗୁମ୍ଫା ଭଳି ତାଙ୍କ ହୃଦୟ ଅସ୍ପଷ୍ଟ କୁହେଳିକାରେ ବନ୍ଧ ହୋଇ ପଡ଼ିଥିଲା । ହଠାତ୍ ସେଇ ଜଡ଼ତା ଭେଦକରି ସୂର୍ଯ୍ୟ କିରଣ ତା' ଭିତରକୁ ଯେପରି ପଶି ସମସ୍ତ ବରଫକୁ ତରଳାଇ ଦେଲା । ଆବଦ୍ଧ ଜଳରାଶି ମୁକ୍ତି ଲାଭ କରି ପ୍ରସ୍ତର ଶଯ୍ୟାରେ ଆଘାତ ଖାଇ କଳନାଦିନୀ ଝରଣା ହୋଇ ବହିଗଲା । ଏଇ କବିତା ଯେମିତିକି ନୃତ୍ୟ ଭିତରେ ଆତ୍ମ ମୁକ୍ତିର ସଂଗୀତଗାନ କରୁଥିଲା । ଏଇ ଭାବବିହ୍ୱଳ ଆବେଶ କବି ଯେମିତିକି ପୃଥିବୀର ଆଶ୍ଚର୍ଯ୍ୟ ସୌନ୍ଦର୍ଯ୍ୟ ସବୁରୁ ଆବିଷ୍କାର କଲେ ଜୀବନର ଆନନ୍ଦ । ଏଇ ସମୟରେ ସେ ଅନେକ ଗୁଡିଏ କବିତା ରଚନା କରିଥିଲେ । ଯାହାପରେ, 'ପ୍ରଭାତ ସଂଗୀତ' ନାମରେ ପ୍ରକାଶିତ ହୋଇଥିଲା ।

ଏଇ ଗୀତି କବିତା ଗୁଡ଼ିକ ତାଙ୍କର ପୂର୍ବ କବିତା ତୁଳନାରେ ଅନେକ ଉଚ୍ଚକୋଟୀର ଥିଲା । ଏଥିରେ ଯେ କବିଙ୍କର କେବଳ ସୂକ୍ଷ୍ମଭାବ ଓ କଳ୍ପନାର ପରିଚୟ ମିଳେ ତାହା ନୁହେଁ ଭାଷା ଓ ଛନ୍ଦ ଉପରେ ତାଙ୍କର ପ୍ରଭୁତ୍ୱର ନିଦର୍ଶନ ମିଳେ । ବହିଟିର ପ୍ରଥମ କବିତାଟିରେ କବି ଆତ୍ମ ସମୀକ୍ଷା କରି ଲେଖିଛନ୍ତି ଏ ପର୍ଯ୍ୟନ୍ତ ସେ ରୁଗ୍‌ଣ କଳ୍ପନାର ଛାୟାଚ୍ଛନ୍ନ ଜଗତ ଭିତରେ ଯେପରିକି ନିଜକୁ ବନ୍ଦୀ କରି ରଖିଥିଲେ, ଯେମିତି ଫୁଲ ଭିତରେ ବନ୍ଦୀ ହୋଇ ରହି କୀଟ ସେହି ଫୁଲକୁ କ୍ଷତ ବିକ୍ଷତ କରେ । ଅନ୍ୟ ଏକ କବିତାରେ ସେ ନିଜ ଜୀବନର ବର୍ଣ୍ଣନା ଦେଇଛନ୍ତି । କେମିତି ଶିଶୁ ଭାବରେ ସେ ପ୍ରକୃତିକୁ ମନପ୍ରାଣ ଦେଇ ଭଲ ପାଉଥିଲେ । ପରେ କେମିତି ତାଙ୍କ ହୃଦୟ ଗହନ କାନ୍ତାର ଭିତରେ ହଜି ଯାଇଥିଲା ଏବଂ ପ୍ରକୃତି ତା'ର ସମସ୍ତ ଆନନ୍ଦମୟ ସତ୍ତା ହରାଇଥିଲା । ଯେମିତି ସେ ତାଙ୍କର ପୂର୍ବଧାର ଖୋଜି ପାଇଲେ ଓ ତାହା ଆହୁରି ବିସ୍ତୃତ ହୋଇଗଲା । ଏମିତି କବିତା ପରେ କବିତାରେ ସେ ତାଙ୍କର ଏଇ ନୂତନ ବିଶ୍ୱାସର ପ୍ରତିଫଳନ ଘଟାଇ ଚାଲିଲେ ଠିକ୍ ଧର୍ମାନ୍ତରିତ ବ୍ୟକ୍ତିର ଉତ୍ସାହ ନେଇ ଓ ପରିଶେଷରେ ଯେମିତିକି ତାଙ୍କର ଏଇ ଯୌବନ ଚେତନା ପରିଣତ ହୋଇଥିଲା ଏକ ବିଷାଦ ବୋଧରେ ଓ ତା'ର ପ୍ରତିଫଳନ ଘଟିଛି 'ସଂଧ୍ୟା ସଂଗୀତ'ରେ ।

ବଙ୍ଗଳା କବିତାରେ ଆଗରୁ ଭାଷା ଓ ଛନ୍ଦର ଯେଉଁ ଧାର ଫିଟି ନଥିଲା ଏଇ କବିତା ଗୁଡିକ ଭିତର ଦେଇ ତାହାର ମୌଳିକ ଅଭିନବ ପରିପ୍ରକାଶ ଘଟିଲା । ପ୍ରତି କବିତାରେ ଯେ କେବଳ ଏଇ ନୂତନ ଆନନ୍ଦର ବିଚ୍ଛୁରଣ ଘଟିଥିଲା ତାହାନୁହେଁ, କେତେ କବିତାର ଭାବ ପଞ୍ଜର ଏଭଳି ଭାବରେ ସୁଗଠିତ ହୋଇଥିଲା ଯାହା ପରବର୍ତ୍ତୀ କାଳରେ ତାଙ୍କ କବିତାରେ ଅନୁଭବ, କଳ୍ପନା, ଛନ୍ଦ ଓ ସାଂଗୀତିକତାର ସୁନ୍ଦର ସମନ୍ୱୟ ଆଣିଥିଲା । ତାହାଥିଲା ମହତ୍ କାବ୍ୟ ରଚନାର ଅଦ୍ଭୁତ ନିଦର୍ଶନ ।

କଲିକତାର ଛୋଟ ଗଳି ରାସ୍ତାର ଶବ୍ଦ ଭିତରେ ଯଦି ଏଇ ତରୁଣ ଜଣକ ଏତେ ଆନନ୍ଦ ପାଉଥାନ୍ତି, ତେବେ ହିମାଳୟ ଗଲେ ସେ କେତେ ଆନନ୍ଦ ନ ପାଇବେ । ସେ ତାଙ୍କର ଭାଇ ଓ ଭାଉଜଙ୍କ ସହିତ ଦାର୍ଜିଲିଂ ଗଲେ । ଦେଖିଲେ ହିମାଳୟର ଦ୍ୱିତୀୟ ଉଚ୍ଚତମ ଶୃଙ୍ଗ କାଞ୍ଚନଜଂଘାର ଅଦ୍ଭୁତ ଦୃଶ୍ୟ, ''ମାତ୍ର ସାଡାର ଷ୍ଟ୍ରିଟ୍‌ର ସେଇ ଛୋଟ ଘରଟିରେ ପ୍ରକୃତ ବିଜୟ ନିହିତ ଥିଲା । ପାହାଡ ଉପରକୁ ଉଠି ଯେତେବେଳେ ମୁଁ ଚାରିଆଡ଼କୁ ଚାହିଁଲି, ହଠାତ୍ ଜାଣିଲି ମୁଁ ନୂତନ ଦୃଷ୍ଟି ହରାଇଛି । ମୁଁ ଯେତେବେଳେ ରତ୍ନକୁ ପ୍ରଶଂସା କରିବାକୁ ଯାଉଥିଲି, ହଠାତ୍ ରତ୍ନ ପେଡିର ଘୋଡଣୀ ବନ୍ଦ ହୋଇଗଲା । ମୁଁ ଚାହିଁ ରହିଲି ବିସ୍ମୟ ଦୃଷ୍ଟିରେ ।''

କୁଆଡ଼େ ଗଲା ସେଇ ସୌନ୍ଦର୍ଯ୍ୟ ଯାହା ସେଦିନ କବିଙ୍କୁ ଏକାବେଳେ ମୁଗ୍ଧ କରିଥିଲା । କ'ଣ ଅବା ଏହାର ଗୋପନ ରହସ୍ୟ । କବି କଳ୍ପନା କରୁଥିଲେ ଯେ ସେ ଯେଉଁ ଦୃଶ୍ୟ ଦେଖୁଛନ୍ତି ବା ଯେଉଁ ସଂଗୀତ ଶୁଣୁଛନ୍ତି ତାହା ହେଉଛି ବିଶ୍ୱବ୍ରହ୍ମାଣ୍ଡର ହୃଦୟର ସ୍ପନ୍ଦନ । ଏଇ ଧାରଣା ସେ ବିଶଦ ଓ କାବ୍ୟିକ ଭାବରେ ପ୍ରକାଶ କରିଥିଲେ ଦାର୍ଜିଲିଂରେ ରଚିତ 'ପ୍ରତିଧ୍ୱନି' କବିତାରେ । ଏଇ କବିତା ଓ ଏପରି ଆଉ କେତେକ କବିତା ଯାହା ସେଇ ସମୟରେ ସେ ଲେଖିଥିଲେ ସେ ସବୁ ସମୀକ୍ଷକମାନଙ୍କ ପାଖରେ ଏପର୍ଯ୍ୟନ୍ତ ନିହାତି ଦୁର୍ବୋଧ । ଏଇ କବିତାଗୁଡ଼ିକ ପ୍ରକାଶ ହେବାପରେ ଦୁଇ ଜଣ ବଂଧୁ କବିତା ଗୁଡିକର ପ୍ରକୃତ ଅର୍ଥ ପ୍ରକାଶ ପାଇଁ ବାଜି ରଖିଥିଲେ । ''କିନ୍ତୁ ଶେଷ ପର୍ଯ୍ୟନ୍ତ ମୁଁ ସାନ୍ତ୍ୱନା ପାଇଥିଲି ଯେ ସେମାନେ ଯେତେବେଳେ ମୋ ପାଖକୁ ଆସିଥିଲେ ସେଇ କବିତାର ସଠିକ୍ ଅର୍ଥ ପ୍ରକାଶ ପାଇଁ ମୁଁ ଅସମର୍ଥ ଥିଲି ତେଣୁ ସେ ଦୁହିଁଙ୍କୁ କାହାରିକି ଅର୍ଥ ହାରିବାକୁ ପଡିନଥିଲା'' ।

କବିତାକୁ ଶିରାରେ ଶିରାରେ ବୁଝିବାକୁ ଯେଉଁମାନେ ଚେଷ୍ଟା କରନ୍ତି ସେମାନଙ୍କ ବିଷୟରେ କହିବାକୁ ଯାଇ କବି ଆତ୍ମଜୀବନୀରେ ଲେଖିଛନ୍ତି, '' କିନ୍ତୁ କେହି କ'ଣ କିଛି ବିଷୟ ବୁଝାଇବାକୁ କବିତା ରଚନା କରନ୍ତି ? ଅନ୍ତରରେ ଯାହା ଜଣେ ଅନୁଭବ କରେ, ତାହାର ବର୍ହିପ୍ରକାଶ ଘଟେ କବିତାରେ । ତେଣୁ ଜଣେ କବିତା ଶୁଣିଯଦି କହନ୍ତି ବୁଝି ପାରିଲେ ନାହିଁ, ମୁଁ ନିରବ ରହେ । ଯଦି ଜଣେ ଫୁଲଟିଏ ଶୁଙ୍ଘି କହେ ବୁଝି ପାରିଲିନି, ତାଙ୍କୁ କହିବାକୁ ହେବ ଏଥିରେ କିଛି ବୁଝିବାର ନାହିଁ, ଏହା କେବଳ ଏକ ସୁରଭି । କବିଙ୍କ ପକ୍ଷେ ଶବ୍ଦର ଅର୍ଥ ଖୋଜିବା ହିଁ କଠିନ । ତେଣୁ କବିମାନେ ଶବ୍ଦକୁ ନାନା ପ୍ରକାର ବଙ୍କେଇ ଘୂରେଇ ଛନ୍ଦ ଭିତରେ ବାନ୍ଧି ରଖିଛନ୍ତି ଯେମିତିକି ତା'ର ଅର୍ଥ କେହି ଖୋଜିବେ ନାହିଁ, ତାରି ଭିତରେ ଥିବା ଅନୁଭବ କେବଳ ବୁଝି ହେବ'' ।

ଏହି ବହିଟିର ଆଉ ଦୁଇଟି କବିତାରେ କବିଙ୍କର ପ୍ରିୟ ଜୀବନ ଦର୍ଶନ ପ୍ରକାଶିତ । ଜୀବନ ଚଳମାନ ଓ ନବ ନବ ରୂପରେ ପ୍ରକାଶିତ ହୁଏ । ମୃତ୍ୟୁ କେବଳ ଜୀବନକୁ ନୂତନ ଜୀବନ ଆଣିଦିଏ । ଏଇ କବିତା ଦୁଇଟିର ନା ହେଉଛି 'ଅନନ୍ତ ଜୀବନ' ଓ 'ଅନନ୍ତ ମରଣ' । ମୃତ୍ୟୁ ଜୀବନକୁ ପୂର୍ଣ୍ଣତା

ଦାନ କରେ । ମୃତ୍ୟୁ କେବେ ମରେନାହିଁ । କବିଙ୍କ ଭାଷାରେ "ପ୍ରତିବର୍ଷ ମୁଁ ବଂଚେ ଓ ମରେ ମଧ୍ୟ" । ଆଉ ଗୋଟିଏ ଦୀର୍ଘ କବିତାରେ ରବୀନ୍ଦ୍ରନାଥଙ୍କର ଦାର୍ଶନିକ ଚିନ୍ତାଧାରା ପ୍ରକାଶିତ ହେଇଛି । ହିନ୍ଦୁ ପୁରାଣର କଳ୍ପନାକୁ ଆଧୁନିକ ପଦାର୍ଥ ବିଦ୍ୟାର ବିଶ୍ୱ ଜାଗତିକ ଧାରଣା ସହିତ ଯୋଡି ଦେଇଛନ୍ତି ଏବଂ ବ୍ୟଞ୍ଜନା ଫୁଟାଇଛନ୍ତି ଯେପରିକି ଗୋଟିକ ପରେ ଗୋଟିଏ ବିଶ୍ୱ ବ୍ରହ୍ମାଣ୍ଡର ସୃଷ୍ଟି ଓ ବିଲୟ ହେଉଛି । ଏଇ ବିରାଟ ଶୂନ୍ୟତା ଭିତରେ ସୀମାହୀନ, ସମୟହୀନ, ଆଲୋକ ହୀନ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କର ଅବସ୍ଥାନ ।

ହଠାତ୍ ତାଙ୍କର ଆନନେତ୍ର ଫିଟେ ଏବଂ ସେ ଆଦିମ ସୃଷ୍ଟିର ସ୍ତୋତ୍ର ଉଚ୍ଚାରଣ କରନ୍ତି । ଏହି ଶୂନ୍ୟ ଜ୍ୱଳନ୍ତ ନିହାରିକା ଓ ଘୂର୍ଣ୍ଣାୟମାନ ଆଲୋକପିଣ୍ଡରେ ପୂର୍ଣ୍ଣ ହୋଇଥାଏ । ତା ପରେ ପାଳନକର୍ତ୍ତା ବିଷ୍ଣୁ ତାଙ୍କର ଶଙ୍ଖଧ୍ୱନି କରନ୍ତି । ଫେରିଆସେ ବିଶ୍ୱ ସୃଷ୍ଟିର ଶୃଙ୍ଖଳା, ପୃଥିବୀ ଶୀତଳ ହୁଏ, ଜୀବନ ପରିପୂର୍ଣ୍ଣ ହୋଇଉଠେ ଓ ସୌନ୍ଦର୍ଯ୍ୟ ଜନ୍ମ ନିଏ ହୃଦୟକୁ ଆନନ୍ଦରେ ପରିପୂର୍ଣ୍ଣ କରିବାପାଇଁ । ସୃଷ୍ଟିର ପ୍ରକ୍ରିୟାରେ ଅନନ୍ତ କାଳ ଧରି ଘୂରିଘୂରି ଶେଷରେ ପୃଥିବୀ ଆସି ପ୍ରଳୟକାରୀ ଶିବଙ୍କ ପାଖରେ ପ୍ରଳୟର ଶାନ୍ତି କାମନା କରେ । ଶିବ ତାଙ୍କର ତୃତୀୟ ନୟନରୁ ଅଗ୍ନି ଉଦ୍‌ଗୀରଣ କରନ୍ତି । ସବୁ ଗ୍ରହ, ନକ୍ଷତ୍ର, ସୃଷ୍ଟି ପଲକମାତ୍ରେ କୁଆଡେ ଉଭେଇ ଯାଅନ୍ତି ଏବଂ ସକଳ ସୃଷ୍ଟିର ପୂର୍ଣ୍ଣତା ବିଲୟ ହୋଇ ଶୂନ୍ୟରେ ପରିଣତ ହୁଏ ମହାକାଳର ଚିତାଗ୍ନିରେ । ପୁଣି ଧ୍ୟାନମଗ୍ନ ବ୍ରହ୍ମାଙ୍କ ଆଖି ମୁଦି ହୋଇଯାଏ ।

କଲିକତାରେ ରବୀନ୍ଦ୍ରନାଥଙ୍କର ଗୋଟିଏ ପ୍ରାଥମିକ ଉଦ୍ୟମ ଥିଲା ତାଙ୍କ ଭାଇ ଜ୍ୟୋତିରିନ୍ଦ୍ରନାଥଙ୍କୁ ବଙ୍ଗଳା ସାହିତ୍ୟ ଏକାଡେମୀ ଗଠନରେ ସହାୟତା କରିବା, ବଙ୍ଗଳା ଭାଷାକୁ ଯୁଗୋପଯୋଗୀ କରିବା, ବିଶେଷ କରି ବୈଜ୍ଞାନିକ ଭାବ ପ୍ରକାଶ ସମର୍ଥ କରି ଗଢିବା । ଉଭୟ ଭାଇ ଲାଗି ସାରସ୍ୱତ ପରିଷଦ ଗଢିଲେ । ବହୁ ସାହିତ୍ୟିକଙ୍କୁ ନିମନ୍ତ୍ରଣ କଲେ । ସେମାନଙ୍କ ମଧ୍ୟରେ ଜଣେ ଥିଲେ ବଙ୍କିମ ଚନ୍ଦ୍ର ଚାଟାର୍ଜୀ । ସେ କାଳର ଶ୍ରେଷ୍ଠ ସଂସ୍କାରକ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କୁ ଏଥିରେ ଯୋଗ ଦେବା ପାଇଁ କହିଲାରୁ ସେ କହିଥିଲେ "ମୋର ଉପଦେଶ ହେଉଛି, ଆମ ମାନଙ୍କୁ ଛାଡିଦିଅ । ଆମ ଭଳି ବଡ ଲୋକ ଯେଉଁଠି ଏକାଠି ହେବେ ସେଠି କିଛି ହେବ ନାହିଁ" । ତାଙ୍କର ଏଇ ସତର୍କ ବାଣୀ ଅତୀତ ଓ ବର୍ତ୍ତମାନ ପାଇଁ ସର୍ବଦା ପ୍ରଯୁଜ୍ୟ । ସେତେବେଳେ ଏହା ପ୍ରମାଣିତ ହୋଇଥିଲା । ଏକାଡେମୀ ଉତ୍ତମ ଭାବେ ଆରମ୍ଭ ହୋଇ କିଛି ଦିନ ପରେ ଭାଙ୍ଗିଗଲା ।

1883 ଗ୍ରୀଷ୍ମ ଋତୁରେ ଦୁଇ ଭାଇ କାଦମ୍ବରୀ ଦେବୀଙ୍କୁ ଘେନି ଭାରତର ଦକ୍ଷିଣ ପଶ୍ଚିମ ସମୁଦ୍ର ତୀରରେ ଲବଙ୍ଗ ଓ ଚନ୍ଦନର ଦେଶ କରୁଆରକୁ ଯାଇଥିଲେ । ତାଙ୍କ ବଡଭାଇ ସତ୍ୟେନ୍ଦ୍ରନାଥ ଥିଲେ ସେଠି ଜିଲ୍ଲା ମାଜିଷ୍ଟ୍ରେଟ୍ । ଏଠି ରବୀନ୍ଦ୍ରନାଥ ଖୁବ୍ ଆନନ୍ଦ ଓ ମୁକ୍ତ ଭାବରେ କିଛି ଦିନ କଟାଇଥିଲେ । ସତ୍ୟେନ୍ଦ୍ରନାଥଙ୍କ ଯେଉଁ ପୁଅ ଝିଅ ଦୁଇଜଣ ବ୍ରିଟେନ୍‌ରେ ରବୀନ୍ଦ୍ରନାଥଙ୍କର ଖେଳ ସାଥୀ ଥିଲେ ସେମାନଙ୍କ ସଂଗରେ ତାଙ୍କର ଦିନ ଖୁସିରେ କଟିଲା । ତାଙ୍କର ପ୍ରଥମ ସୁପ୍ରସିଦ୍ଧ ଗୀତିନାଟ୍ୟ "ପ୍ରକୃତିର ପ୍ରତିଶୋଧ" ସେଠି ରବୀନ୍ଦ୍ର ରଚନା କରିଥିଲେ । ପରେ ତାହା 'ସନ୍ୟାସୀ' ନାମରେ ଇଂରାଜୀରେ ଅନୂଦିତ ହୋଇଥିଲା । ଏଥିରେ ଜୀବନ ଓ ଆତ୍ମା, ସତ୍ୟ ଓ ସୌନ୍ଦର୍ଯ୍ୟ, ପ୍ରେମ ଓ ବିବେକ ଭିତରେ ଥିବା ଚିରନ୍ତନ ଦ୍ୱନ୍ଦ ବର୍ଣ୍ଣିତ ହୋଇଛି । ନାଟକର ଆରମ୍ଭରେ ଦେଖାଯାଏ ଗୁମ୍ଫା ମୁଖରେ ଦଣ୍ଡାୟମାନ ସନ୍ନ୍ୟାସୀଙ୍କୁ । ପଞ୍ଚସ୍ତରୀ ପଂକ୍ତିରେ ସେ ନିଜର ମୁକ୍ତି କଥା ଘୋଷଣା କରିଛନ୍ତି । ଜୀବନର ମାୟାମୋହ ଆକର୍ଷଣର ପ୍ରତିବାଦ କରିଛନ୍ତି ସେ । "ମୁଁ ଆଜି ଚାଖୁଛି

ସେଇ ଶିବର ଆନନ୍ଦ ଯେତେବେଳେ ଅସୀମ ଶୂନ୍ୟରୁ ଜନ୍ମ ହୋଇଥିବା ସୃଷ୍ଟିକୁ ସଂପୂର୍ଣ୍ଣ ଧ୍ୱଂସ କରିଦେଇ ନିଜର ଅଜେୟ ଶକ୍ତିରେ ବିଭୋର ହୋଇ ବସିଥିଲେ ।'' ଆତ୍ମଜ୍ଞାନର ଚିତାଗ୍ନିରେ ତାଙ୍କର ସମସ୍ତ ଇନ୍ଦ୍ରିୟକୁ ଭସ୍ମୀଭୂତ କରି ସେ ଭାବୁଥିଲେ କେବେ ସୁଖର ଝଲକ ତାଙ୍କୁ ଦୁଃଖର ଅନ୍ଧକାର ଭିତରକୁ ନେଇଯାଇ ପାରିବ ନାହିଁ । ସେ ଏବେ ଗର୍ବୋନ୍ନତ ପଦକ୍ଷେପରେ ସମସ୍ତ ପୃଥିବୀ ଭ୍ରମଣ କରି ହତଭାଗ୍ୟ ନିର୍ବୋଧ ମଣିଷକୁ ଦୟାର କଣିକା ବାଣ୍ଟିବେ ।

ସେ ପାଖରେ ଗୋଟିଏ ସହରକୁ ଯାଇଥିଲା ବେଳେ ଦେଖିଲେ ଅଛବ ଛୋଟ ଝିଅଟିଏ ମା ବାପାଙ୍କୁ ହରାଇଛି । ମନ୍ଦିର ପୁରୋହିତ ଓ ଅନ୍ୟ ସମସ୍ତେ ତାକୁ ଦୂର୍‌ଦୂର୍ ହେଉଛନ୍ତି । ଅସହାୟ ହତାଶ ସେ ଝିଅଟି ସନ୍ନ୍ୟାସୀଙ୍କୁ ଜାବୁଡି ଧରିଛି । ପ୍ରେମ, ଦୟା, ଯାହାକୁ ବହୁଦିନ ଧରି ସେ ଘୃଣାକରି ଆସୁଥିଲେ ତାହା ସନ୍ନ୍ୟାସୀଙ୍କ ଚିତ୍ତକୁ ଆନ୍ଦୋଳିତ କରିଛି । ସେ ଭିତ ଚକିତ ହୋଇଛନ୍ତି । ଏଇଥିପାଇଁ ଯେ ସେ ଜଣେ ମଣିଷ ହୋଇଯାଇଛନ୍ତି । ଅସହାୟ ବାଳିକାଟିଠାରୁ ସେ ପଳାୟନ କରିଛନ୍ତି । ପଳାୟନରେ ରକ୍ଷା କାହିଁ ? ସେ ପୁଣି ସେଇ ବାଳିକା ପାଖକୁ ଆସି ଦେଖିଛନ୍ତି ସେ ମୃତ । ତାଙ୍କ ଅନୁଭବରେ ମୃତ୍ୟୁ ରଖିଯାଇଛି ଏକ ଅଲିଭା ସ୍ୱାକ୍ଷର । ''କ୍ଷୁଦ୍ର ମଧ୍ୟରେ ମହତକୁ ଦେଖିବାକୁ ପଡିବ । ରୂପର ସୀମା ଭିତରେ ଅସୀମକୁ । ପ୍ରେମ ଭିତରେ ଆତ୍ମାର ଚରନ୍ତନ ମୁକ୍ତିକୁ ଖୋଜିବାକୁ ପଡିବ ।''

ଏଇ ଗୀତିନାଟ୍ୟଟିରେ ଅନେକ ଚରିତ୍ର ଅଛନ୍ତି । ସବୁ ସାକାର ହୋଇପାରି ନାହାନ୍ତି । ସେମାନେ ହେଉଛନ୍ତି ପଥିକ, ଦେଖଣା ହାରୀ, ନାମଧାମ ଶୂନ୍ୟ ବ୍ୟକ୍ତି-ରାଜପଥରେ ଅଥବା ଗାଁ ଦାଣ୍ଡରେ ସବୁ ଦିନ ଯେଉଁମାନଙ୍କୁ ଦେଖିବାକୁ ମିଳେ । ରବୀନ୍ଦ୍ରନାଥଙ୍କ ନାଟକର ଏଇ ଗୋଟିଏ ଦିଗ ଆମେ ପୂର୍ବରୁ ଲକ୍ଷ୍ୟ କରିଛୁ । ଯେତେ କିଛି ଘଟଣ ଅଘଟଣ ଘଟି ଯାଉନା କାହିଁକି ଜୀବନ ଚଳମାନ । ସେ ଏକଥା ସବୁବେଳେ ତାଙ୍କର ଦର୍ଶକମାନଙ୍କୁ ମନେ ପକାଇ ଦେବାକୁ ଚାହାଁନ୍ତି । ଏଇ ଚରିତ୍ରଙ୍କ ମୁହଁରେ ସେ ଦେଇଛନ୍ତି ଲୌକିକ ଭାଷା,-ଯେପରି ସେକ୍‌ସପିଅରଙ୍କ କେତେକ ଅମସୃଣ ଚରିତ୍ରଙ୍କ ମୁହଁରେ ଅଚଂଛା ଭାଷା ଆମେ ଦେଖିବାକୁ ପାଉ । ମୁଖ୍ୟ ନାୟକଙ୍କ ମୁହଁରେ ଉଚ୍ଚାରିତ ଭବ୍ୟ କବିତା ଓ ଉଚ୍ଚଚିନ୍ତାର ଭାରରୁ ଦର୍ଶକଙ୍କୁ ସ୍ୱସ୍ତି ଦେବାହିଁ ଏହାର ଉଦ୍ଦେଶ୍ୟ ।

ଗ୍ରୀଷ୍ମ ଓ ବର୍ଷା ଋତୁ କୋରୁଆରରେ କଟାଇ ସମସ୍ତେ କଲିକତା ଫେରିଲେ । ଶରତଋତୁ ସେମାନେ କଟାଇଲେ ଚୌରଙ୍ଗୀ ପାଖରେ ଥିବା ଏକ ବଗିଚା ଘରେ । ସେ କାଳରେ ଆଜି କାଲିକା ପରି ସେପରି କିଛି ଘରଦ୍ୱାର ନଥିଲା । ଏଇ ଘରଟି ପାଖରେ ଗୋଟିଏ ବସ୍ତି ଥିଲା । ଏଥିରେ ଗରୀବ ଶ୍ରମିକମାନେ ଝୁପୁଡି ବାନ୍ଧି ରହିଥିଲେ । ନିଜ କୋଠରୀର ଝରକା ପାଖରେ ବସି ଏଇ ଜନଗହଳି ବସ୍ତିଟିରେ ପ୍ରତିଦିନ ଅଭିନୀତ ହେଉଥିବା ଜୀବନର ନାଟକ ଓ ତାର ନାୟକ ନାୟିକା ପୁରୁଷ ନାରୀଙ୍କ କର୍ମମୟ ଜୀବନ ଓ ଶିଶୁଙ୍କର ଖେଳ କୋଳାହଳ ସେ ଦେଖୁଥିଲେ । ''ଏସବୁ ମୋ ପାଇଁ ଥିଲା ଜୀବନ୍ତ କାହାଣୀ ।'' ଶିଳ୍ପୀର ଚକ୍ଷୁ ସହିତ ଯୋଗ ହୋଇଥିଲା କବିର ଆନନ୍ଦ । ''ବିଚିତ୍ର ଦୃଷ୍ଟି ଯେମିତିକି ମତେ ସେତେବେଳେ ଆଚ୍ଛନ୍ନକରି ରଖିଥିଲା'' । ତାଙ୍କର ଆଖି ଯାହା ଦେଖୁଥିଲା ତାକୁ ମନ ଦେଇ କଳ୍ପନା କରିବା ପାଇଁ ଓ ମନ ଯାହା କଳ୍ପନା କରୁଥିଲା ତାକୁ ଆଖି ଦେଇ ଦେଖିବା ପାଇଁ ତାଙ୍କର କୌତୁହଳ ଜାଗ୍ରତ ହୋଇଥିଲା । ଏହି ସମୟରେ ସେ ଯେଉଁ ସବୁ କବିତା ରଚନା କରିଥିଲେ ତାହାର ଯଶୋପଯୁକ୍ତ ନାଁ 'ଛବି ଓ ଗାନ' ଦେଇ ପ୍ରକାଶ କରିଥିଲେ । ଏହି ସମୟର କବିଙ୍କର ମାନସ ଲୋକର ସ୍ମରଣୀୟ ଛବି ଏହି କବିତା ଗୁଡିକରେ ଫୁଟି ଉଠିଛି ।

ସେ ଦେଖୁଥିଲେ, ବୁଝୁଥିଲେ ଓ ବ୍ୟକ୍ତ କରୁଥିଲେ । ପ୍ରତି ମୁହୂର୍ତ୍ତରେ ଯେପରିକି ଜଣେ ଶିଳ୍ପୀ ନୂତନ ଭାବରେ ତୂଳି ଚଳାଇ ତାଙ୍କର କଳାକୌଶଳର ଉନ୍ନତି ସାଧନ କରୁଥିଲେ ।

ସବୁ କବିତା ଛବି ହୋଇଉଠିନି । ପୁଣି ସବୁ କବିତା ଏକପ୍ରକାର ବି ନୁହେଁ । ଦୃଷ୍ଟାନ୍ତ ସ୍ୱରୂପ 'ରାହୁର ପ୍ରେମ' କବିତାଟିକୁ ନିଆଯାଇପାରେ । ଏହାର ଅର୍ଦ୍ଧେକ ପ୍ରତୀକାତ୍ମକ ଓ ଅର୍ଦ୍ଧେକ ଆଧାତ୍ମିକ ଓ କିଛି ଅଂଶ ରୂପକାତ୍ମକ । ବାହାରର ଦୃଶ୍ୟ ନୁହେଁ ତାଙ୍କ ନିଜମନର ଗହନ ଅନ୍ଧକାର ଭିତରେ ଖେଳୁଥିବା ଘୂର୍ଣ୍ଣନକୁ ଏଥିରେ ଦେଖିବାକୁ ମିଳେ । ବହିଟିର ସମସ୍ତ କବିତା ଭିତରେ ଏଇ କବିତାଟି ସବୁଠାରୁ ଶକ୍ତିଶାଳୀ, ସାନ୍ଦ୍ର ଓ ହୃଦୟସ୍ପର୍ଶୀ । ଏଥିରେ ପ୍ରଣୟଲିପ୍ସୁ ଅସୁର ରାହୁ ଚନ୍ଦ୍ରର ଚିରନ୍ତନ ପ୍ରଣୟକୁ ନିପୀଡିତ କରିଛି ! ପ୍ରଣୟର ଲୋଭାତୁର, ଐନ୍ଦ୍ରିକ ବିଭାବ ସବୁ ଯାହା କବିମାନଙ୍କ ପାଖରେ ଛାୟାଭଳିଥାଏ ଏଠି ତାହା ସାକାର ହୋଇଉଠିଛି । ଏଇ ତରୁଣ କବି ଜୀବନ ବିଷୟରେ ପ୍ରତ୍ୟକ୍ଷ ଭାବରେ ଯାହା ଦେଖିଥାନ୍ତୁ କି ନାହିଁ ସେ ପ୍ରେମ କ'ଣ ଜାଣିଥିଲେ । ପ୍ରେମ କେବଳ ସରଳ ଓ ମହତ୍ ନୁହେଁ- ତା' ଭିତରେ ରହିଛି ଦୁଃଖ ଓ ନିପୀଡନ । ଏଇ କବିତାରେ ତାର ଯର୍ଥାଥ ପ୍ରମାଣ ରହିଛି । ମୂଳ କବିତାର ଛନ୍ଦ ଓ ଗତିଶୀଳତା ଫୁଟାଇବା ସମ୍ଭବ ନୁହେଁ । ତଥାପି ତାର କିଛି ଅଂଶର ପଦ୍ୟାନୁବାଦ ଦିଆଗଲା । ଏଥିରେ ପ୍ରୟେଡ଼ୀୟ ପ୍ରେମ ପ୍ଲାଟୋନିକ୍ ପ୍ରେମକୁ ଆହ୍ୱାନ ଦେଉଛି ।

ଶୁଣିଛି ମତେ ଭଲ ଲାଗେନାହିଁ
ଲାଗିଲା ନାହିଁ ବା ତୋରେ
କଠିନ ବନ୍ଧନେ ଚରଣ ବେଢ଼ାଇ
ଚିରକାଳ ତୋତେ ଧରିରଖିଥାଏ
ଲୌହ ଶୃଙ୍ଖଳର ଡୋରେ ।
ତହିଁତ ମୋର ବନ୍ଦୀ ଅଭାଗିନୀ
ବାନ୍ଧିଅଛି କାରାଗାରେ,
ପ୍ରାଣର ଶୃଙ୍ଖଳ ଦେଇଛି ପ୍ରାଣରେ
ଦେଖି କିଏ ଖୋଲିପାରେ ?
ଜଗତ ମଝିରେ ଯେଉଁଠି ବୁଲିବୁ
ଯେଉଁଠି ବସିବୁ ଅବା ଠିଆ ହେବୁ
ବସନ୍ତ ଶୀତରେ ଦିନ ଅବା ରାତେ
ସାଙ୍ଗେ ସାଙ୍ଗେ ତୋର ବାଜୁଥିବ ସତେ
ଏ ପାଷାଣ ପ୍ରାଣ ଅନନ୍ତ ଶୃଙ୍ଖଳ
ଚରଣ ବାନ୍ଧିଣ ଧରେ ।
ଥରେ ପାଇଁ ତତେ ଦେଖିଛି ଯେବେଠୁ
କିପରି ଛାଡିବୁ ମୋରେ ।
ଚାହଁ ବା ନ ଚାହଁ, ଡାକ ବା ନ ଡାକ
ପାଖରେ ମୋହର ଥାଅବା ନ ଥାଅ
ଯିବି ସାଙ୍ଗେ ସାଙ୍ଗେ, ପଛରେ ପଛରେ

ଥିବ ଦେହେ ଦେହ ମିଶି
ଏ ବିଷାଦ ଘୋର, ଏ ଅନ୍ଧାର ମୁହଁ
ହତାଶ ନିଃଶ୍ୱାସ, ଏଇ ଭଙ୍ଗା ବୁକୁ
ଭଙ୍ଗା ବାଦ୍ୟ ସମ ବାଜିବ କେବଳ
ସାଥେ ସାଥେ ଦିବା ନିଶି ।
ଅନନ୍ତ କାଳର ସଙ୍ଗୀ ମୁହିଁ ତୋର
ଘେରିଥାଏ ତୋର ଛାୟା-
ହସ ଅବା କାନ୍ଦ ଭିତରେ ମୁଁ ଥାଏ
ଦେଖିବାକୁ ପାଏ କେବେ ବା ପାଖରେ
କେବେ ସମ୍ମୁଖରେ କେବେ ବା ପଛରେ
ମୋହର ଅନ୍ଧାର କାୟା ।
ଗଭୀର ନିଶୀଥେ ଏକାକୀ ଯେବେ ମୁଁ
ବାସିବି ମିଳନ ପ୍ରାଣେ
ଚମକି ଉଠିଣ ଦେଖିବି ତଟସ୍ଥେ
ମୁଁ ରହିଅଛି ବସି ତୋ ପାଖରେ
ଚାହିଁ ତୋର ମୁଖପାନେ ।

ଏମିତି ତାଙ୍କର କବିତା ସଙ୍ଗେ ସଙ୍ଗେ ଗଦ୍ୟ ଲେଖାବି ଚାଲିଲା- ସାମାଜିକ ଓ ରାଜନୈତିକ ସମସ୍ୟା ଉପରେ ବିତର୍କ ଲେଖା ଓ ସାହିତ୍ୟ ସଂପର୍କିତ ତାତ୍ତ୍ୱିକ ପ୍ରବନ୍ଧ ସେ ରଚନା କରୁଥିଲେ । ଏ ସବୁ ଥିଲା ରବୀନ୍ଦ୍ରନାଥଙ୍କ ପାଇଁ ଆନନ୍ଦ ଓ ବନ୍ଧୁବିହୀନ ସୃଷ୍ଟିଶୀଳ ଦିନ । ସେ କୌଣସି ଦାୟିତ୍ୱ ନେଇ ନଥିଲେ । ସେ ପ୍ରିୟଜନଙ୍କ ସହିତ ରହୁଥିଲେ ଓ ପ୍ରତିଦିନ ତାଙ୍କର ସର୍ଜନ ଶକ୍ତି କିପରି ବଢ଼ି ଉଠୁଥିଲା ତାହା ସେ ଅନୁଭବ କରୁଥିଲେ । ବାହାରୁ ମନେ ହେଉଥିଲା ସେ ଅଳସ ଜୀବନ କଟାଉଛନ୍ତି କିନ୍ତୁ ସେ ପ୍ରଚୁର ସୃଷ୍ଟି କରୁଥିଲେ । ପୂର୍ବର ବିଷାଦ ଭାବନା, ଅଜ୍ଞାନ କ୍ଷୁଧାରେ ନିପୀଡିତ ହୃଦୟର ବେଦନା ସ୍ଥାନରେ ଦେଖାଦେଇଥିଲା ବଳିଷ୍ଠ ସୁସ୍ଥ ଭାବଧାରା । ସେ ଯେମିତିକି ଜଗତ ଜୀବନକୁ ପ୍ରାଣପୂର୍ଣ୍ଣ ଭାବରେ ଉପଭୋଗ କରିବାକୁ ଆଗେଇ ଆସିଥିଲେ ଯାହା ଥିଲା ତାଙ୍କ ଚରିତ୍ରର ଏକ ସ୍ୱାଭାବିକ ଗୁଣ ।

କିନ୍ତୁ କ୍ରୁର ଭାଗ୍ୟ ଫାଶ ବିଛାଇ ଚାଲିଥିଲା ଓ ତାଙ୍କର ଏଇ ବନ୍ଧନହୀନ ଉଚ୍ଛଳ ଆନନ୍ଦର ଦିନ ହୋଇଗଲା ସୀମିତ । ତାଙ୍କ ଭାଇ ଜ୍ୟୋତିରିନ୍ଦ୍ରନାଥ ନିଜର ବ୍ୟବସାୟ ଉଦ୍ୟମରେ ମାତିଉଠିଥିଲେ ଓ ଘର ଜମିଦାରୀ କଥା କିଛି ବୁଝି ନଥିଲେ । ମହର୍ଷି ହୋଇଉଠିଥିଲେ ସଂସାର ପ୍ରତି ବୀତସ୍ପୃହା ଯଦିବା ଅଜ୍ଞାତ ଐଶ୍ୱରିକ ଦୃଷ୍ଟିଭଳି ତାଙ୍କର ଦୃଷ୍ଟି ସବୁକଥା ପ୍ରତି ସଜାଗ ଥିଲା । ସେ ସ୍ଥିର କଲେ ବର୍ତ୍ତମାନ ସାନ ପୁଅକୁ ପରିବାରର ରଥର ଦଉଡିରେ ଯୋଡି ଦେବାକୁ ପଡ଼ିବ । ଯଦି ମହର୍ଷି ନିଜେ ସ୍ୱର୍ଗ ଓ ମର୍ତ୍ତ୍ୟ ଦୁଇ ଭୂମିରେ ବିଚରଣ କରିପାରନ୍ତି ରବୀନ୍ଦ୍ରନାଥ ଯେ ତାଙ୍କର କବିତା ଓ ପରିବାର ଜମିଦାରୀ ବୁଝିପାରିବେ ନାହିଁ ଏପରି ଭାବିବାର କୌଣସି ହେତୁ ନଥିଲା ଅମଣିଆ ଘୋଡାକୁ ଗାଡିରେ ଯୋଚିବା ପୂର୍ବରୁ ତାକୁ ମଣେଇବାକୁ ପଡ଼େ । ତେଣୁ ଠିକ୍ ହେଲା ଏଇ ଯୁବକଟି ପାଇଁ ଉପଯୁକ୍ତ ବଧୂ ଖୋଜିବାକୁ ପଡିବ ।

ସେ କାଳେ ରୀତି ଅନୁସାରେ ପରିବାରର ମହିଳାମାନେ ସବୁଠାରୁ ସାନ ପୁଅଟି ପାଇଁ ବଧୂ ଖୋଜିବା ପାଇଁ ଲାଗି ପଡିଲେ । କିନ୍ତୁ ଯାହାକୁ ଚାହିଁବେ ତାକୁ ବାଛିବାରେ ସେମାନଙ୍କର ସ୍ୱାଧୀନତା ନଥିଲା । ଧର୍ମ ଦିଗରେ ମହର୍ଷି ଉଦାର ଥିଲେ କିନ୍ତୁ ସାମାଜିକତା ଦିଗରୁ ସେ ଥିଲେ ରକ୍ଷଣଶୀଳ । ଝିଅଟି ବ୍ରାହ୍ମଣ ଘରର ହେବା ଦରକାର । ସେ କାଳର ଛୋଟ ଜସୋର ସହରରେ ଅଳ୍ପ କେତୋଟି ପିରାଲ୍ଲୀ ବ୍ରାହ୍ମଣ ପରିବାର ରହୁଥିଲେ । ବେଣୀ ମାଧବ ରାୟ ଚୌଧୁରୀ ଠାକୁର ଜମିଦାରୀର କର୍ମଚାରୀ ଥିଲେ । ତାଙ୍କରି ଏଗାର ବର୍ଷର ଝିଅ ବଧୂଭାବେ ବଛା ହେଲେ ।

ଠାକୁର ପରିବାର ତୁଳନାରେ ଏମାନେ ଥିଲେ  ଏକାନ୍ତ ନିର୍ଧନ । ଝିଅର ସୌନ୍ଦର୍ଯ୍ୟ ଯାହା ଥାଉ, ସେ ଥିଲା ନିରକ୍ଷରା । ଇତିହାସରେ ଏପରି ବିଦ୍ରୂପ ଦେଖିବାକୁ ମିଳେ । ଏ ଯୁଗର ସବୁଠାରୁ ରୋମାଣ୍ଟିକ୍ ପୁରୁଷଙ୍କ ପାଇଁ ଏପରି ଗୋଟିଏ ଅନ୍‌ରୋମାଣ୍ଟିକ୍ ବିବାହର ବ୍ୟବସ୍ଥା ହେଲା । ଅବଶ୍ୟ ରବୀନ୍ଦ୍ର ନାଥ କୌଣସି ଉଚ୍ଚମାନ ନ କରି ଏହାକୁ ଗ୍ରହଣ କରି ଯିବାରେ କିଛି ଆଶ୍ଚର୍ଯ୍ୟ ନଥିଲା । ସାହିତ୍ୟ କ୍ଷେତ୍ରରେ ନୂତନ ନୂତନ ପରୀକ୍ଷା କରିବାରେ ରବୀନ୍ଦ୍ରନାଥଙ୍କର ଉଦଗ୍ର ବ୍ୟକ୍ତିତ୍ୱ ଦେଖିବାକୁ ମିଳୁଥିଲେ ସୁଦ୍ଧା ସେ ଥିଲେ ବାପାଙ୍କର ଏକମାତ୍ର ଅନୁଗତ ପୁତ୍ର । ବାପାଙ୍କର ବ୍ୟକ୍ତିତ୍ୱ ତାଙ୍କୁ ଏପରି ମୋହାଚ୍ଛନ୍ନ କରିରଖିଥିଲା; ମହର୍ଷି ଯେ ଭୁଲ୍ କରିପାରନ୍ତି ତାହା ସେ କେବେ ଭାବିପାରୁ ନଥିଲେ ।

ଏପରି ଆଣ୍ଟି କ୍ଲାଇମାକ୍‌ସ ଘଟିଯିବା ପରେ ବି ମହର୍ଷି ଯେମିତି ଏକ ତରଫା ଓ ଅହେତୁକ ଭାବରେ ସିଦ୍ଧାନ୍ତସବୁ ନେଉଥିଲେ ଏ ଦିଗରେ ରବୀନ୍ଦ୍ରନାଥ ମଧ୍ୟ ଊଣା ନଥିଲେ । ଏଇ ସାମାନ୍ୟ ବଧୂ ହୋଇଉଠିଥିଲେ ଅନନ୍ୟା ପତ୍ନୀ । ପ୍ରକୃତରେ ଏଇଭଳି ଜଣେ ପତ୍ନୀଙ୍କ ପ୍ରୟୋଜନ ଥିଲା । ରବୀନ୍ଦ୍ରନାଥ ନିଜେ ଜଣେ ବିଶୁଦ୍ଧ ରୋମାଣ୍ଟିକ୍ ଥିଲେ ବି ତାଙ୍କର ପ୍ରୟୋଜନ ଥିଲା ଏଭଳି ଜଣେ ପତ୍ନୀ ଯିଏ ତାଙ୍କୁ ଏ ଦିଗରେ ଅଧିକ ଉତ୍ସାହ ନଦେଇ ବରଂ ଲଗାମ୍ ଦେବା ଦରକାର ଥିଲା । ଯଦି ସେ କେବଳ ସୁନ୍ଦରୀଙ୍କୁ ବିବାହ ହୋଇଥାନ୍ତେ ସେ ତାଙ୍କୁ ବିରକ୍ତ କରିଥାନ୍ତେ । କିନ୍ତୁ ଏଇ ପତ୍ନୀ ଯେପରି ଭାବରେ ତାଙ୍କୁ ଆଦର ଓ ଯତ୍ନରେ ନିରବଚ୍ଛିନ୍ନଭାବେ ବାନ୍ଧିରଖିଥିଲେ ଏଥିରେ ତାଙ୍କର ପ୍ରତିଭାର ଲାଳନ ଘଟିଥିଲା ।

କୁମାରୀ ନାଁ ଥିଲା ଭବତାରିଣୀ । ଏହା ବଡ ପୁରୁଣା କାଳିଆ ମନେ ହେଉଥିଲା । ଅବଶ୍ୟ ଆଜିକାଲି ଭଳି ଏଇ ନାଁକୁ ନେଇ ପରିହାସ କରିବା ଯୁଗ ସେତେବେଳେ ନଥିଲା । ରବୀନ୍ଦ୍ରନାଥ ନିଜ ସ୍ତ୍ରୀଙ୍କ ନାଁ ରଖିଲେ ମୃଣାଳିନୀ । ଏଇ ପରିଣୟରେ ପ୍ରୀତିର ଅର୍ଘ୍ୟ ସ୍ୱରୂପ ଏଇ ନାମଟି ଦେବା ବ୍ୟତୀତ ତାଙ୍କର ଅଧିକ କିଛି ଅବଦାନ ନଥିଲା । ନଳିନୀ ନାଁ ଟି ଥିଲା ତାଙ୍କର ପ୍ରିୟ । ଏଇ ନାମ ସହିତ ତାହା ମିଶିଯାଇଥିଲା । ବସ୍ତୁତଃ  ସେଇ ନାମରେ ଆଉ ଗୋଟିଏ ଗୀତିନାଟ୍ୟ ରବୀନ୍ଦ୍ରନାଥ ରଚନା କରୁଥିଲେ । ନଳିନୀ ନାମ୍ନୀ ଜଣେ ସୁନ୍ଦରୀ ଓ ହୃଦୟବତୀ ଝିଅ ସହିତ ତାଙ୍କର ଆଦ୍ୟ ଯୌବନରେ ଯେଉଁ ପ୍ରଣୟାନୁଭୂତି ଘଟିଥିଲା ଏଇ ଗୀତିନାଟ୍ୟଟି ତାହାକୁ ଘେନି ରଚିତ । କଥାଥିଲା ପରିବାରର ସମସ୍ତେ ଏଥିରେ ଅଭିନୟ କରିବେ ଓ ନିଜ ନିଜ ଅଂଶ ରଚନା କରିବେ । ଏହି ଆମୋଦ ଦାୟକ ପରୀକ୍ଷା ମୌଳିକ ଥିଲା, ଶେଷରେ ରବୀନ୍ଦ୍ରନାଥ ନିଜେ ନାଟକଟିକୁ ସଂପୂର୍ଣ୍ଣ କରିଥିଲେ ।

କିନ୍ତୁ ଏଇ ନାଟକଟି ଅଭିନୀତ ହେବାପୂର୍ବରୁ ଗୋଟାଏ ଦୁର୍ଯୋଗ ଘଟିଲା । ରବୀନ୍ଦ୍ରନାଥଙ୍କ ଅତ୍ୟନ୍ତ ଆଦରର ଭାଉଜ କାଦମ୍ବିନୀ ଦେବୀ 1884 ଏପ୍ରିଲ ମାସରେ ଅକସ୍ମାତ୍ ଆତ୍ମହତ୍ୟା କଲେ ।

ତାଙ୍କର ବୟସ ମାତ୍ର ପଚିଶ ହୋଇଥିଲା । ଏପରି ଆତ୍ମହତ୍ୟା ସେ କାହିଁକି କଲେ, କେହି ଜାଣି ପାରିଲେ ନାହିଁ । ଏଇ ରହସ୍ୟ ଯଦି ପରିବାରର କେହି ଜାଣିଥିବେ, ସେମାନେ ଆଜି ନାହାଁନ୍ତି । ତେଣୁ କୌଣସି ଅନୁମାନ ବୃଥା ।

ଏଇ ଦୁଃଖ ରବୀନ୍ଦ୍ରଙ୍କୁ ବଡ଼ ଆଘାତ ଦେଲା, ଏଇ ଦୁର୍ଘଟଣା ମୃତ୍ୟୁର ବିଭୀଷିକାଇ ପ୍ରଥମ ଅନୁଭବ ଦେଲା । ପୂର୍ବରୁ ମା ମରିଥିଲେ । ସେତେବେଳେ ସେ ଶିଶୁ, ତାର ପ୍ରଭାବ ତାଙ୍କ ମନରେ ସେପରି ପଡ଼ିନଥିଲା, କାରଣ ମାତୃସ୍ନେହ ସ୍ଥାନରେ ସେ ପାଇଥିଲେ ଭାଉଜଙ୍କର ଅଯାଚିତ ସ୍ନେହ । ଭାଉଜଙ୍କ ଅଭାବ କେହି ପୂରଣ କଲାନାହିଁ । ଜୀବନର ଅତ୍ୟନ୍ତ ଭାବନା ବିଭୋର ବୟସରେ ଭାଉଜଥିଲେ ତାଙ୍କର ଅତି ଆପଣାର, ସବୁଠାରୁ ବିଶ୍ୱାସୀ ଓ ଏକାନ୍ତ ଆଶ୍ରୟସ୍ଥଳ । ଏହାପରେ ପରେ ବାରମ୍ବାର ମୃତ୍ୟୁର ସମ୍ମୁଖୀନ ସେ ହୋଇଛନ୍ତି । କିନ୍ତୁ ତାଙ୍କର ମନଉପରେ ଓ ପ୍ରତିଭାର ସ୍ଫୁରଣରେ ଅନ୍ୟ କୌଣସି ବିଚ୍ଛେଦ ଏପରି ଗଭୀର ରେଖାପାତ କରିନାହିଁ । ଏଇ ଦୁଃଖ ତାଙ୍କୁ ଭାଙ୍ଗି ପାରିଲା ନାହିଁ, ବରଂ ଗଢ଼ିଦେଲା । ଏଇ ଆତ୍ମାର ମନ୍ଥନ ତାଙ୍କୁ ଶକ୍ତି ଦେଲା, ତାଙ୍କୁ ପ୍ରବୀଣ କଲା । ଏଇ ପ୍ରେମ, ବିଚ୍ଛେଦ, ହତାଶା, ତିକ୍ତତା, ଭାଗ୍ୟକୁ ନିନ୍ଦିବା ମନୋବୃତ୍ତି ପରିବର୍ତ୍ତେ ଜୀବନକୁ ଗଭୀର ଭାବରେ ବୁଝିବା, ମୃତ୍ୟୁର ପ୍ରକୃତ ଅର୍ଥ ଜାଣିବାରେ ସାହାଯ୍ୟ କଲା ।

ଏଇ ଘଟଣାର ସ୍ମୃତିଚାରଣ କରି ସେ କହିଥିଲେ, ''ସେ ପର୍ଯ୍ୟନ୍ତ ହସ-କାନ୍ଦ ଭରା ପରିଚିତ ଜୀବନରେ ଯାହାକୁ ମୁଁ ଜାବୁଡ଼ି ଧରିଥିଲି, ଯାହାର ବାହାରକୁ ଦେଖିପାରୁ ନଥିଲି, ସେଥିରେ ଯେ ଛେଦ ପଡିପାରେ ତାହା ବୁଝିନଥିଲି । ଯେତେବେଳେ ମୃତ୍ୟୁ ଆସିଲା, ଯାହା ଜୀବନର ଅବିଚ୍ଛେଦ୍ୟ ଅଂଶ ଥିଲା ତାହା ଯେତେବେଳେ ଉଭେଇଗଲା, ମୁଁ ସଂପୂର୍ଣ୍ଣଭାବେ ନିଜକୁ ହରାଇବସିଲି । ସବୁ ପୂର୍ବ ପରି ଅଛି । ବୃକ୍ଷ, ମାଟି, ସୂର୍ଯ୍ୟ, ଚନ୍ଦ୍ର, ତାରା- କେବଳ ସେ ଯେ ଥିଲା ତାଙ୍କରି ଭଳି ବାସ୍ତବ ଏପରିକି ତାଙ୍କଠାରୁ ଅଧିକ ବାସ୍ତବ, ଯାହାର ଉପସ୍ଥିତି ମୁଁ ଅନୁଭବ କରିଥିଲି ପ୍ରତି ମୂହୂର୍ତ୍ତରେ, ଯାହାକୁ ମୁଁ ଛୁଇଁ ପାରୁଥିଲି ମୋ ସତ୍ତାର ପ୍ରତ୍ୟେକ ଅଂଶରେ କେବଳ ସେ ନାହାନ୍ତି, ସ୍ୱପ୍ନ ଭଳି ସେ ଉଭେଇ ଯାଇଛି । ଏଇ ଭୟଙ୍କର ବିରୋଧାଭାସ ମତେ ହତଚକିତ କରିଦେଲା, ଯାହା ଦିନେ ଥିଲି ଆଉ ଯାହା ହୋଇଗଲି ତାକୁ କିପରି ମାନିନେଇ ପାରନ୍ତି ? ତଥାପି ଏଇ ଶ୍ୱାସରୁଦ୍ଧ ଅନ୍ଧକାର ମଧ୍ୟରେ ବେଳେ ବେଳେ ଆନନ୍ଦର ଝଲକାଏ ମୃଦୁ ପବନ ମୋ ହୃଦୟ ଉପରେ ଖେଳିଯାଇ ମତେ ଆଶ୍ଚର୍ଯ୍ୟ କରିଦେଉଥିଲା । ଜୀବନ ଚିରନ୍ତନ ନୁହେଁ- ଦୁଃଖର ଅନୁଭୂତି ଭିତରେ ଏଇ ସତ୍ୟର ଉପଲବ୍ଧି ଥିଲା ଆନନ୍ଦର ମୂଳ ଉତ୍ସ । ଜୀବନର ସ୍ଥୂଳ ଦୁର୍ଭେଦ୍ୟ ବାସ୍ତବତାର ପ୍ରାଚୀର ଭିତରେ ଆମେ ବନ୍ଦୀନୋହୁଁ । ଏଇ ସ୍ୱାଗତ ଯୋଗ୍ୟ ଅନୁଭୂତି ମୋ ହୃଦୟରେ ଆନନ୍ଦ ଖେଳାଉଥିଲା । ଯେତେବେଶୀ ମୋ ମନର ଏଇ ନିର୍ଲିପ୍ତ ଭାବ ବଢ଼ିବାକୁ ଲାଗିଲା ମୋର ଅଶ୍ରୁ ସଜଳ ଆଖିରେ ପ୍ରକୃତିର ସୌନ୍ଦର୍ଯ୍ୟ ସେତେବେଶୀ ଗଭୀର ଭାବରେ ମତେ ବିଶେଷ ଅର୍ଥବହ ବୋଧ ହେଲା । ମୃତ୍ୟୁର ବିପୁଳ ପଟ୍ଟ ଉପରେ ଜୀବନର ଛବି ବାସ୍ତବରେ ଅଧିକ ସୁନ୍ଦର ମନେହେଲା, ତା'ର ମୃତ୍ୟୁ ମତେ ଏଭଳି ଏକ ନିର୍ଲିପ୍ତତା ଓ ଜୀବନକୁ ଦୂରରୁ ଦେଖିବାର ସୁଯୋଗ ଦେଲା ଯାହା ଫଳରେ ମୁଁ ଜୀବନ ଓ ଜଗତକୁ ସମଗ୍ରରୂପେ ପ୍ରକୃତ ଦୃଷ୍ଟିକୋଣରୁ ଦେଖିପାରିଲି ।''

'ଭାରତୀ' ନାମକ ଏକ ସାହିତ୍ୟ ପତ୍ରିକା ଠାକୁର ପରିବାରରୁ ପ୍ରକାଶିତ ହେଉଥିଲା । କବି ସେଥିରେ ନିୟମିତ ଲେଖୁଥିଲେ । ସତ୍ୟେନ୍ଦ୍ରନାଥଙ୍କ ପତ୍ନୀ ପିଲାମାନଙ୍କ ପାଇଁ 'ବାଳକ' ନାମରେ ଆଉ ଏକ ପତ୍ରିକା ବାହାର କଲେ । ମାତ୍ର ପତ୍ରିକାର ପୃଷ୍ଠା ପୂର୍ଣ୍ଣ କରିବାକୁ ଅକ୍ଷମ

ସଂପାଦିକା ତା'ର ଶୂନ୍ୟ ପୃଷ୍ଠାକୁ ପୂର୍ଣ୍ଣ କରିବାର ଭାର ତାଙ୍କ ସାନ ଦିଅର ଉପରେ ଦେଲେ । ସେଥିରେ ପିଲାଙ୍କ ପାଇଁ କବିତା, ନାଟକ ଓ ଗଳ୍ପ ସେ ରଚନା କଲେ । 'ମୁକୁଟ' ନାମରେ ଏକ ଐତିହାସିକ ଉପନ୍ୟାସ ସେ ଲେଖିଥିଲେ । ବହୁ ବର୍ଷ ପରେ ଶାନ୍ତିନିକେତନର ପିଲାଙ୍କ ଦ୍ୱାରା ଅଭିନୟ ଲାଗି ତାକୁ ସେ ନାଟ୍ୟ ରୂପ ଦେଲେ । ପତ୍ରିକାଟିର କ୍ଷୁଧାର ଶେଷ ନଥିଲା । ସବୁବେଳେ ନୂଆ ନୂଆ ଲେଖାପାଇଁ ଦାବୀ ଆସୁଥିଲା । କିନ୍ତୁ ସେ କଣଲେଖିବେ ଭାବିପାରୁ ନଥିଲେ । ଥରେ ସେ ଦେଓଘରରୁ କଲିକତା ଆସୁଥିଲେ । ଟ୍ରେନ୍ ଭିଡ ଭିତରେ ଶୋଇବା ସମ୍ଭବ ନଥିଲା, ''ମୁଁ ଭାବିଲି 'ବାଳକ' ପତ୍ରିକାପାଇଁ ଗୋଟେ ଗପର ଖସଡା ତିଆରି କରିଦେବି । ମନେ ମନେ ତିଆରି କଲି, କିନ୍ତୁ ଯେତେଚେଷ୍ଟା କଲେ ବି ରୂପ ଦେଇ ପାରିଲି ନାହିଁ । ଶେଷରେ ନିଦ ଆସି ମତେ ଏ ଦୁର୍ଯୋଗରୁ ଉଦ୍ଧାର କଲା । ମୁଁ ସ୍ୱପ୍ନରେ ଦେଖିଲି- ମନ୍ଦିରର ପ୍ରସ୍ତର ପାଉଛ ବଳିର ରକ୍ତରେ ରଂଜିତ ହୋଇଛି । ଛୋଟ ଝିଅଟିଏ ବାପାଙ୍କ ପାଖରେ ଠିଆ ହୋଇ ବାପାଙ୍କୁ ପଚାରୁଛି ବାପା, ଏଇଟା କ'ଣ ? କାହିଁକି ଏ ରକ୍ତପାତ ? ଆଉ ପିତା ଯାହାଙ୍କର ଅନ୍ତର ଆନ୍ଦୋଳିତ, ସେ ବାହାରକୁ ତାଙ୍କର ଭାବ ଲୁଚାଇ ଝିଅଟିକୁ ଅଧିକ ପ୍ରଶ୍ନ ନକରିବା ପାଇଁ କହୁଛନ୍ତି । ମୋ ନିଦ ଭାଙ୍ଗିବା ପରେ ମନେ ହେଲା ମୋର ଗଳ୍ପର ଘଟଣା ମୁଁ ପାଇ ଯାଇଛି ।''

ଏପରି ସେ ତାଙ୍କର 'ରାଜର୍ଷି' ଉପନ୍ୟାସ ଲେଖିଥିଲେ । ତ୍ରିପୁରାର ଜଣେ ସ୍ୱନାମଧନ୍ୟ ରାଜାଙ୍କର କାହାଣୀ । ଏହା ଉଦ୍ଦୀପନାମୟ ଐତିହାସିକ ଘଟଣାରେ ପୂର୍ଣ୍ଣଥିଲା । ଏଥିରେ କାଳିକା ଦେବୀଙ୍କୁ ତୁଷ୍ଟ କରିବା ପାଇଁ ବଳି ପ୍ରଥା ବିରୁଦ୍ଧରେ ତୀବ୍ର ସମାଲୋଚନା ପ୍ରକାଶ ପାଇଥିଲା । ପାଞ୍ଚ ବର୍ଷ ପରେ ଏଇ କାହାଣୀକୁ ଘେନି ଅମିତ୍ରାକ୍ଷର ଛନ୍ଦରେ 'ବିସର୍ଜନ' ଗୀତିନାଟ୍ୟ ସେ ଲେଖିଥିଲେ । 1917 ରେ 'ସାକ୍ରିଫାଇସ୍' ନାମରେ ଏହାର ଇଂରେଜି ଅନୁବାଦ ପ୍ରକାଶ ପାଇଥିଲା । ଉଚ୍ଚକୋଟୀର ସାହିତ୍ୟ ଭାବରେ ଉପନ୍ୟାସ ତୁଳନାରେ ନାଟକଟି ଥିଲା ଅତି ଉନ୍ନତ ମାନର । ଏଥିରେ ମାନବତାବାଦ ସପକ୍ଷରେ ରବୀନ୍ଦ୍ରନାଥଙ୍କର ଆବେଗ ପ୍ରକାଶ ପାଇଥିଲା । ନିର୍ବୋଧ ଅମାନବିକ ପରଂପରା ସବୁକୁ ସମାଲୋଚନା କରିବା ପାଇଁ ତାଙ୍କର ଦୁଃସାହସ ଓ ମାନବିକତା ସପକ୍ଷରେ ତାଙ୍କର ଗଭୀର ଭାବଦ୍ୟୋତକ ବାଣୀ ଏଥିରେ ପ୍ରକାଶିତ ।

ମହର୍ଷି ସବୁବେଳେ ରବୀନ୍ଦ୍ରନାଥଙ୍କ ଉପରେ ସଜାଗ ଦୃଷ୍ଟି ରଖିଥିଲେ । ଏବେ ସେ ତାଙ୍କୁ ବ୍ରାହ୍ମସମାଜର ସଂପାଦକ କରିଦେଲେ । ସତେ ଯେମିତି ଅବାଧ ଘୋଡା ବେକରେ ଆଉ ଏକ ଲଗାମ ବନ୍ଧା ହେଲା । ମହର୍ଷି ଯାହା ଭାବିଥିଲେ ତାହାହିଁ ହେଲା । ଏ ପର୍ଯ୍ୟନ୍ତ ଧର୍ମ ବିଷୟରେ ରବୀନ୍ଦ୍ରନାଥଙ୍କର କୌଣସି ଆଗ୍ରହ ନଥିଲା । କୌଣସି ଧର୍ମାନୁଷ୍ଠାନ ପ୍ରତି ଆଦୌ ନୁହେଁ । କିନ୍ତୁ ନୂତନ ପଦବୀରେ ଯୋଗଦେଇ ସେ ସତ୍‌ଭାବରେ କାର୍ଯ୍ୟ ନିର୍ବାହ କଲେ । ବ୍ରାହ୍ମ ପାର୍ଥନା ପାଇଁ ବନ୍ଦନା, ରାଜା ରାମମୋହନଙ୍କ ଉପରେ ପ୍ରବନ୍ଧ ରଚନା କଲେ । ନିଜ ପିତାଙ୍କ ଧର୍ମ ବିଚାରର ପ୍ରଚାର ପାଇଁ ଉଦ୍ୟମ କଲେ । ଏପରିକି ବଙ୍କିମଚନ୍ଦ୍ରଙ୍କ ପରି ଯେଉଁମାନେ ହିନ୍ଦୁ କ୍ରିୟାଚାରର ପ୍ରବକ୍ତା ଥିଲେ ସେମାନଙ୍କ ବିରୁଦ୍ଧରେ ସେ ଅସି ଉତ୍ତୋଳନ କରିଥିଲେ । ଅବଶ୍ୟ ବଙ୍କିମଙ୍କ ପରି ବଙ୍ଗ ସାହିତ୍ୟର ପ୍ରବୃଦ୍ଧ ପ୍ରବୀଣ ସାଧକଙ୍କ ପାଇଁ ରବୀନ୍ଦ୍ରନାଥଙ୍କର ଯଥେଷ୍ଟ ଶ୍ରଦ୍ଧା ଓ ସମ୍ମାନ ଥିଲା । ଦୁଇ ପ୍ରତିପକ୍ଷ ଯୋଦ୍ଧା ଅନ୍ତରରେ ଥିଲେ ଉଦାର ଓ ସତ୍ୟଦ୍ରଷ୍ଟା ତେଣୁ ଏଇ ଦ୍ୱନ୍ଦ ଥିଲା କ୍ଷଣସ୍ଥାୟୀ । ପ୍ରତି ପ୍ରଜନ୍ମରେ ଅଗ୍ରଗତି ବିଷୟରେ କିଛି ମୋହଗ୍ରସ୍ତ ଧାରଣା ଥାଏ । ବୁଦ୍ଧିଜୀବୀଙ୍କ ଭିତରେ ଦୁଇଦଳ ଥିଲେ । ଦଳେ କହୁଥିଲେ ଆଗକୁ ମାଡିଯିବେ । ଆଉ ଦଳେ କହୁଥିଲେ ଯାହା ତାଙ୍କର

ଅଛି ତାକୁ ଜାବୁଡ଼ି ଧରିବେ । ଭାରତ ବର୍ଷରେ ଉନବିଂଶ ଶତକର ଅଷ୍ଟମ ଦଶକରେ ଏଇ ଦ୍ୱନ୍ଦ ବଡ ତୀବ୍ର ଥିଲା । ଏହାର ମୂଳରେ ଥିଲା ବିଜ୍ଞାନ ଚେତନା, ପାରଂପରିକ ଜ୍ଞାନ ଦୃଷ୍ଟିଠାରୁ ଏହାଥିଲା ସଂପୂର୍ଣ୍ଣ ଭିନ୍ନ । ଯେଉଁମାନେ ନୂତନକୁ ଗ୍ରହଣ କରୁଥିଲେ ସେମାନେ ନୂତନତାର ଉନ୍ମାଦନାରେ ଉନ୍ମତ୍ତ ଥିଲେ । ପୁରାତନର ଯାହା କିଛି ଥିଲା ସେଥିରେ ସେ ଦୋଷ ଦେଖୁଥିଲେ । ଯେଉଁମାନେ ନୂତନକୁ ଡ଼ରୁଥିଲେ ସେମାନେ ପୁରାତନକୁ ଜାବୁଡି ଧରିଥିଲେ । ପ୍ରତିପକ୍ଷର କିଛି ବକ୍ତବ୍ୟ ଥିଲା । ରବୀନ୍ଦ୍ରନାଥ ରକ୍ଷଣଶୀଳ ପିତାମହ ଓ ପାଶ୍ଚାତ୍ୟ ଶିକ୍ଷିତ ଆଧୁନିକ ପୌତ୍ରଙ୍କ ଚିଠି ଭିତରେ ଏଇ ଦ୍ୱନ୍ଦକୁ ବର୍ଣ୍ଣନା କରିଥିଲେ । ପତ୍ର ପଢ଼ିଲେ ମନେ ହେବ ଉଭୟ ପକ୍ଷ ଠିକ୍ । ନାତିର ଚିଠିରେ ଥିଲା '' ଯେଉଁ ପାହାଡ ଉପରୁ ଗଙ୍ଗା ଉତ୍ସରିତ ହୋଇଥିଲା ତାହା ଯେତେ ପବିତ୍ର ଓ ସୁନ୍ଦର ହେଲେ ବି ସେ ତାର ସ୍ରୋତକୁ ଫେରାଇ ନେଇ ନ ପାରେ । ତାକୁ ଧୂଳି ଧୂସରିତ ଧରିତ୍ରୀ ଆଡକୁ ବୋହି ଯିବାକୁ ପଡିବ ଏଥିରେ ହିଁ ତାର ଜୀବନର ସାର୍ଥକତା ।'' ପୁଣି ପିତାମହ ନାତିକୁ ପରିହାସ କରି ଅଭିବାଦନ ଜଣାଇ କହିଥିଲେ ''ମଣିଷ ତ ଭାସିଯିବା ଭଳି ପାଣି ସୁଅର କାଠିକୁଟା ନୁହେଁ । ସେ ହେଉଛି ପାଣିର ଘୂର୍ଣ୍ଣିଭିତରେ ସୃଦୃଢ଼ ଏକ ପ୍ରସ୍ତର ସ୍ତମ୍ଭ, ଯିଏ ସେଇ ମହାନ୍ ଐତିହ୍ୟକୁ ଧାରଣ କରି ଠିଆ ହୋଇଥାଏ ।'' ଏପରି ଚାଲିଥିଲା କେତେ ଯୁକ୍ତି । ଟେନିସ୍ କୋର୍ଟରେ ଖେଳ ଦର୍ଶକଙ୍କ ମନରେ ଆନନ୍ଦ ଦେଲାଭଳି ।

ଅବଶ୍ୟ ଜୀବନବ୍ୟାପୀ ରବୀନ୍ଦ୍ରନାଥଙ୍କ ଅନ୍ତଃଚେତନାରେ ସର୍ବଦା ଏକ ଆଗ୍ରହ ଥିଲା ନୂତନକୁ ଆବିଷ୍କାର କରିବା ପାଇଁ । କିନ୍ତୁ ସେ ଯେଉଁ ସଂସ୍କୃତିରେ ବଢ଼ିଥିଲେ ତାର ଚେର ଏତେ ଗଭୀରକୁ ମାଡ଼ି ଯାଇଥିଲା ଯେ, ଐତିହ୍ୟକୁ ଅସ୍ୱୀକାର କରିବା ତାଙ୍କ ପକ୍ଷେ ସମ୍ଭବ ନଥିଲା । ନୂତନ ପୁରାତନ ଭିତରେ ଚାଲିଥିବା ଦ୍ୱନ୍ଦରେ ସେ କୌଣସି ପକ୍ଷ ନେବାକୁ ଚାହୁଁ ନଥିଲେ । ମଣିଷର ପ୍ରକୃତି ବିଷୟରେ ସଚେତନ ସମ୍ବେଦନଶୀଳ ଭାବ ତାଙ୍କୁ କୌଣସି ଗୋଟିଏ ପକ୍ଷଭୁକ୍ତ ନ ହୋଇ ଉଭୟଙ୍କୁ ସମାନ ମର୍ଯ୍ୟାଦା ଦେବା ପାଇଁ ସମର୍ଥ କରିଥିଲା । କିନ୍ତୁ ନ୍ୟାୟ ଓ ମନୁଷ୍ୟତାର ପ୍ରଶ୍ନ ଯେତେ ବେଳେ ଉଠୁଥିଲା ସେ ନିରବ ରହିପାରୁ ନଥିଲେ । ଯେ କୌଣସି ପ୍ରକାର ମତାନ୍ଧତାର ସେ ଥିଲେ ବିରୋଧୀ । ସେ ଲକ୍ଷ୍ୟ କରୁଥିଲେ ଯେ ହିନ୍ଦୁ ସ୍ୱଦେଶିକତାର ଅନ୍ତରାଳରେ ଏକ ଉଗ୍ର ପ୍ରତିକ୍ରିୟାଶୀଳତା ମୁଣ୍ଡ ଟେକି ଉଠୁଥିଲା । ଏହାଥିଲା ଭାବପ୍ରବଣ ଜାତୀୟତା । ଯାହାକିଛି ୟୁରୋପୀୟ ତାକୁ ଭିନ୍ନ ଦୃଷ୍ଟିରେ ଦେଖିବା ଓ ଆର୍ଯ୍ୟଭାବରେ ଯାହା କିଛିକୁ ଗୌରାବାନ୍ୱିତ କରିବା । ଏ ବିଷୟରେ ବିଦ୍ରୂପାତ୍ମକ ଲେଖା ଲେଖିବା ଫଳରେ ସେ ଲୋକପ୍ରିୟତା ହରାଇଥିଲେ । କିନ୍ତୁ ଏଇ ତରୁଣ ପ୍ରମାଣ କରିଦେଇଥିଲେ ଯେ ତାଙ୍କ ଲେଖନୀରେ ଏଭଳି ବିଦ୍ରୂପ ଲେଖି ସମାଜକୁ ଶୁଦ୍ଧ କରିବା ପାଇଁ ତାଙ୍କର ଯେଉଁ କ୍ଷମତା ରହିଛି ତାହା ସ୍ୱିଫଟ୍‌ଙ୍କ ସହିତ ତୁଳନୀୟ । କିନ୍ତୁ ଲୋକ ଦେଖାଣିଆ ଭାବରେ କିଛି କରିବା ପାଇଁ ତାଙ୍କର ଆଗ୍ରହ ନଥିଲା । ସେ କେବଳ ବାଧ ହୋଇ ଲେଖନୀ ଚାଳନା କରୁଥିଲେ ।

'କଡ଼ି ଓ କୋମଳ' ତାଙ୍କର ପରବର୍ତ୍ତୀ କବିତା ସଂକଳନ ଥିଲା । ଲୋକ ବିତର୍କ ଭିତରେ କେବଳ ନିଜକୁ ନିମଜ୍ଜିତ ନ ରଖି ସେ କବିତା ଜଗତକୁ ମହତ୍ ଅବଦାନ ଦେଇଥିଲେ । ସେ ଥିଲେ ମୂଳତଃ ଜଣେ ପ୍ରେମିକ । ଜୀବନ ଓ ଜଗତର ପ୍ରେମିକ । ଏଇ ପୃଥିବୀରେ ଆତଯାତ ହେଉଥିବା ସମସ୍ତ ଜୀବ ଜଗତର ପ୍ରେମିକ । କବିମାନେ ବୀଭତ୍ସତା, ଅନ୍ୟାୟ ଓ ନିଷ୍ଠୁରତାର ବିରୋଧୀ । କିନ୍ତୁ କ୍ୱଚିତ୍ କବି ତାଙ୍କ ଭଳି ଜଗତ ଓ ଜୀବନକୁ ତଥା ଆପଣାର ପରିପାର୍ଶ୍ୱକୁ

ଏତେ ବେଶୀ ଭଲ ପାଇଛନ୍ତି । ପ୍ରଥମ କବିତାର ପଂକ୍ତିରେ ହିଁ ଏହି ଭାବ ଦୃଢ଼ ଭାବରେ ପ୍ରକାଶ ପାଇଛି ।

''ମରିବାକୁ ଚାହେଁନା ମୁଁ ଏ ସୁନ୍ଦର ଭୁବନେ
ମଣିଷ ମେଳରେ ମୁହିଁ ବଂଚିବାକୁ ଚାହେଁ,
ଏଇ ସୂର୍ଯ୍ୟାଲୋକ ଏଇ ପୁଷ୍ପିତ କାନନେ
ଜୀବନ୍ତ ହୃଦୟ ମଧ୍ୟେ ଯଦି ସ୍ଥାନ ପାଏ ।''

ଏହି ବହିଟିରେ କବିତା ସଂଖ୍ୟା ଅନେକ । ବିଷୟ ବସ୍ତୁ ଓ କବିଙ୍କ ଭାବନାର ବୈଚିତ୍ର୍ୟ ଏଥିରେ ଅଧିକ ପ୍ରକାଶିତ ଶିଶୁ କବିତା, ଧର୍ମୀୟ ସଂଗୀତ, ଜାତୀୟତାବାଦର ଉଦ୍‌ବୋଧନ, ପ୍ରେମ କବିତା, ଇନ୍ଦ୍ରିୟ ଭୋଗ୍ୟ, ଆନନ୍ଦର ପ୍ରଣୟଗୀତି ବ୍ୟତୀତ ଶେଲି, ବ୍ରାଉନିଂ, ସ୍ୱିନ୍‌ବର୍ଣ୍ଣ ପ୍ରଭୃତି ଅନେକ କବିଙ୍କର କବିତାର ଅନୁବାଦ ମଧ ଏଥିରେ ସ୍ଥାନ ପାଇଛି । କେତେକ ଜାପାନୀ କବିତା ବି ଏଥିରେ ରହିଛି । ଚତୁର୍ଦ୍ଦଶପଦୀ କବିତା କିନ୍ତୁ ସେ ସବୁ ପେଟ୍ରାର୍କ ବା ଏଲିଜାବେଥାନ୍ ଯୁଗର ସନେଟ୍ ଶୈଳୀରେ ରଚିତ ନୁହେଁ । ଏଥରେ ସେ ନିଜର ରୁଚି ଅନୁଯାୟୀ ସନେଟ୍‌ର ରୂପଗତ ପରିବର୍ତ୍ତନ ଆଣିଥିଲେ । ବହୁ ବିଚିତ୍ର ବିଷୟର ଅବତାରଣା ହୋଇଥିଲେ ବି କବିତା ସମୂହର ପ୍ରଧାନ ଭାବ ବିଭବ ହେଉଛି, କସ୍ତୁରୀ ମୃଗ ଯେପରି ନିଜ ସୌରଭରେ ବିଭୋର ହୁଏ, କବି ସେହିପରି ଜୀବନ ମଦିରାରେ ବିଭୋର, ଜୀବନର ଆନନ୍ଦରେ ଅବଗାହନ ଓ ସ୍ଖଳନରୁ ରକ୍ଷା ପାଇଁ ଉଦ୍‌ଗ୍ରୀବ ।

ନାରୀରୂପର ସୌନ୍ଦର୍ଯ୍ୟରେ ମୁଗ୍ଧ କବି ତା'ର ଦେହ ସତ୍ତାର ରହସ୍ୟ ଆବିଷ୍କାର କରିଛନ୍ତି । ନାରୀର ବାହୁଯୁଗଳ, ପଦ, ବକ୍ଷ, ଚୁମ୍ବନ, ପ୍ରେମାନୁରାଗ- ଏ ସମସ୍ତ ମଧରେ ବିସ୍ମୟ ଓ କୌତୂହଳ, ସତେ ଯେପରି ଶିଶୁଟିଏ ପାଇଛି ଏକ ଆଶ୍ଚର୍ଯ୍ୟ ଖେଳନା ଯେଉଁଥିରୁ ସେ ଆଖି ଫେରାଇ ପାରୁନାହିଁ, କେବଳ ଦେଖୁଛି ତାର ଏ ପାଖ ସେ ପାଖ । ଏଇ ଭାବରେ ଏଇ କବିତା ଗୁଡିକରେ ଯୌବନ ସ୍ପନ୍ଦିତ । ନାରୀର ବକ୍ଷୋଜକୁ କବି କଳ୍ପନା କରିଛନ୍ତି ଯୌବନ ମଳୟ ଆନ୍ଦୋଳିତ ଏକ ବିକଶିତ ପୁଷ୍ପ ଯୁଗଳ ରୂପେ । ସେଇଥିପାଇଁ ତାର ସୌରଭ ଏତେ ମାଦକତାମୟ । ପ୍ରେମର ଆହ୍ୱାନରେ ଉଦ୍‌ବେଳିତ ଏଇ ବକ୍ଷୋଜ ଯୁଗଳ ଯେମିତିକି ସ୍ଥିର ହୋଇ ଦିବାଲୋକରେ ଅଂଚଳଭିତରେ ଲଜ୍ଜାବନତ ହୋଇ ଲୁଚି ରହିଯାଇଛି । ଚୁମ୍ବନ ତାଙ୍କୁ ମନେ ହୋଇଛି ଦୁଇଟି ଅଧରୋଷ୍ଠର ମିଳନର ମଧୁ ଯାହା ଦୁଇଟି ହୃଦୟ ପାନ କରୁଥାନ୍ତି । ପ୍ରେମ ଶରୀର ଓ ଆତ୍ମାର ମିଳନ ଘଟାଏ । କବିଙ୍କ ଭାଷାରେ ''ମୋର ପ୍ରତିଅଂଗ ତମର ପ୍ରତି ଅଂଗରେ ମିଶିବା ପାଇଁ ଆକାଙ୍‌କ୍ଷିତ ହୃଦୟର ପ୍ରୀତି ଦେହର ମିଳନରେ ସାର୍ଥକତା ଲୋଡେ ।'' ତଥାପି ପ୍ରେମର ଆନନ୍ଦ ସହଜାତ ଭାବରେ ଘେନି ଆସେ ଅବସାଦ । କୋମଳ ବାହୁର ବନ୍ଧନ ବେଶୀ କ୍ଷଣ ବାନ୍ଧି ରଖିପାରେ ନାହିଁ । ଅଧରର କ୍ଷୁଧା ମୁହୂର୍ତ୍ତକରେ ଶମିତ ହୋଇଯାଏ । ପ୍ରେମର ସମସ୍ତ ସ୍ମୃତି ଉସଲ ଆନନ୍ଦ ଅନୁଭବ ପରିଣତ ହୁଏ ଟିକିଏ ସ୍ମିତ ଅଥବା ଦୁଇ ବିନ୍ଦୁ ଲୁହରେ । ଯଦି ଇନ୍ଦ୍ରିୟର ଏଇ ଖେଳ ଏତେ କ୍ଷଣସ୍ଥାୟୀ, ଯଦି ଏହା ଆତ୍ମାର ବିଦ୍ରୂପ ତେବେ କାହିଁକି ଏତେ ଆବେଗର ଅପଚୟ, କାହିଁକି ଏତେ ବେଶୀ ବେଦନାବୋଧ- ଏହାହିଁ ତରୁଣ କବି ପ୍ରଶ୍ନ କରିଛନ୍ତି ।

ଜୀବନର ଆର ପାଖକୁ ଯେଉଁ ପ୍ରଣୟବତୀ ନାରୀ ଚାଲିଯାଇଥିଲେ ତାଙ୍କ ମୁହଁକୁ ଏଇସବୁ ଇନ୍ଦ୍ରିୟର ଉନ୍ମାଦନା ଭିତରେ ସେ ବେଶୀଦିନ ଭୁଲି ପାରି ନଥିଲେ । ସେ ଯେତେବେଳେ ଏକୁଟିଆ

ବସି ଆକାଶକୁ ଦେଖୁଥିଲେ ସେଠି ଯେମିତି ଏକ ବିରାଟ ଶୂନ୍ୟତା ତାଙ୍କୁ ଆଚ୍ଛନ୍ନ କରିରଖିଥିଲା । ''ଉଷ୍ଣ ଶରତର ଏଇ ପ୍ରଭାତ ଆଲୋକ ସ୍ୱପ୍ନରେ ମୁଁ ଜାଣେନି ମୋର ହୃଦୟ କ'ଣ ଚାହେଁ । କେହିଜଣେ ହଜିଯାଇଛି । ମୋର ଜୀବନ ହୋଇଯାଇଛି ଗୋଟିଏ ବନ୍ଧ୍ୟାମରୁ ।'' ପୁଣି କେତେବେଳେ ନିବିଡ ଭାବରେ ସେ ଅନୁଭବ କରିଛନ୍ତି ସେଇ ନାରୀଟିର ଉପସ୍ଥିତି । ''ଏଇ ଯିମିତି ତାଙ୍କର ଦୃଷ୍ଟି- କିନ୍ତୁ କାହିଁ ତାଙ୍କର ଆଖି ? ମୁଁ ଅନୁଭବ କରିଛି ତାଙ୍କର ଚୁମ୍ୱନ- ମାତ୍ର କାହିଁ ତାଙ୍କର ଓଷ୍ଠାଧର ।'' କବି ଅନୁଭବ କରିଥିଲେ ବାସନା ହିଁ ହେଉଛି ସବୁ ଦୁଃଖର ମୂଳାଧାର । ଏଇ ବାସନାର ବିରାଟ ପାଶରେ ମଣିଷ ପିଷ୍ଟ ହୋଇଯାଏ । ''ମୁଁ ଯେତେବେଳେ ଆଉ କାହାକୁ ଚାହେଁ, ମୁଁ ନିଜେ ହିଁ ଆବର୍ତ୍ତରେ ପଡ଼ିଯାଏ । ସେ ମୋର ହୁଅନ୍ତି ନାହିଁ, କିନ୍ତୁ ମୁଁ ତାଙ୍କର ହୋଇଯାଏ । ମୁଁ ଅନ୍ୟକୁ ବଂଦୀ କରିବାକୁ ଯାଇ ନିଜେ ବଂଦୀ ହୁଏ । ମୁଁ ଜଗତକୁ ଲୁଣ୍ଠନ କରେ ନିଜର ଏକ ବଂଦୀଶାଳା ତିଆରି କରିବା ପାଇଁ ଅତଳ ସମୁଦ୍ରରେ ବୁଡିରହେ ।''

ଏହି ସମୟରେ ଆଉ ଗୋଟିଏ ଲଘୁ ଗୀତିନାଟ୍ୟ ବା ଅପେରା କବି ଲେଖିଥିଲେ । ତାହା ହେଉଛି 'ମାୟାର ଖେଳା' । ପ୍ରକୃତରେ ଏହାକୁ ନାଟକ କହିହେବ ନାହିଁ । କେବଳ କେତେ ଗୁଡିଏ ସଂଗୀତର ସମାହାର । କବିଙ୍କ ନିଜ ଭାଷାରେ ''ଏହା ସଂଗୀତର ମାଳା ଯାହା ନାଟ୍ୟ ଖ୍ୟାନର ସୂତ୍ରରେ ଗ୍ରଥିତ'' । ଏଥିର ଅନେକ ସଂଗୀତ ଖୁବ୍ ଆନନ୍ଦ ଦାୟକ ଓ ଏବେ ବି ଜନପ୍ରିୟ । ଏଥିରେ ନାଟ୍ୟଗତ ଅଭିନୟ ପରିବର୍ତ୍ତେ କବିଙ୍କ ଭାବଗତ ଉତ୍କର୍ଷତା ଦେଖିବାକୁ ମିଳେ । କେହି ଯଦି ଏହାକୁ ଧରିବାକୁ ଚାହେଁ, ''ଏହା ପବନରେ ମିଳାଇ ଯାଏ ।'' ଯଦି ଏଇ ନାଟକର ପ୍ରଧାନ ଭାବକୁ ସ୍ୱତନ୍ତ୍ର ଭାବରେ ବିଚାର କରାଯାଏ ତାହେଲେ କୁହାଯାଇ ପାରେ- ବିଶ୍ୱ ପ୍ରକୃତି ଗୋଟିଏ ମାୟାର ଜାଲ ବୁଣିଛି, ଯେଉଁଥିରେ ଆମେ ମର୍ତ୍ତ୍ୟ ମାନବ ସବୁ ଛନ୍ଦି ହୋଇ ଯାଉଛୁ, ଆମେ ପ୍ରଣୟରେ ସୁଖ ଖୋଜୁ । କିନ୍ତୁ ପ୍ରେମ ଓ ସୁଖ ଉଭୟକୁ ହରାଇ ବସୁ ।''

ତା ହେଲେ କଣ ଜୀବନ ''ସ୍ୱପ୍ନର ଉପାଦାନ ଛଡା ଆଉ କେଉଁଥିରେ ଗଢ଼ା ନୁହେଁ ? କେହି କ'ଣ ଜୀବନକୁ ବୁଝିପାରେ ବାତାୟନ ପାର୍ଶ୍ୱରୁ ନିରେଖି ଅଥବା କେତେବେଳେ କେମିତି ଟିକିଏ ବାହାରକୁ ଯାଇ ?'' ଯେତେଦିନ ପର୍ଯ୍ୟନ୍ତ ବାହାରକୁ ଲଂଫ ଦେଇ ନଥିଲେ ସେତେ ଦିନ ପର୍ଯ୍ୟନ୍ତ ଏଇ ତରୁଣ କବି ଜୀବନକୁ ବୁଝି ନଥିଲେ, ବୁଝି ନଥିଲେ ତା'ର ସୌନ୍ଦର୍ଯ୍ୟ ଓ ବେଦନା ।

# କବିତ୍ୱର ନବଜନ୍ମ

***ଏଇ ତବ ଆନନ୍ଦକି ସତେ ମୋତେ କରିଛି ଏତେ ପୂର୍ଣ୍ଣ ।***

୧୮୯୨ ପ୍ରାରମ୍ଭରେ ରବୀନ୍ଦ୍ରନାଥ କନ୍ୟା ମାଧୁରୀଲତା (ବେଲା) ଓ ପୁତ୍ର ରଥୀନ୍ଦ୍ର ସମେତ ପରିବାରକୁ ଘେନି ଶୋଲାପୁର ଗଲେ । ସେଠାରେ ବଡଭାଇ ଜିଲ୍ଲାଜଜ୍ ଥାଆନ୍ତି । ସେଠି କବି ''ରାଜା ଓ ରାଣୀ,'' ନାମକ ମୁକ୍ତ ଛନ୍ଦର ଏକ ନାଟିକା ରଚନା କଲେ । ଏହାକୁ ସେକ୍ସପୀୟରୀୟ ନାଟ୍ୟଶୈଳୀର ନିକଟବର୍ତ୍ତୀ ଭାବରେ ବିଚାର କରାଯାଏ । ହିଂସାଜଡିତ ଅଭିନୟର ପ୍ରାଚୁର୍ଯ୍ୟ, ପରସ୍ପର ବିରୋଧୀ ଚରିତ୍ରାବଳୀ ଓ ଅପରିହାର୍ଯ୍ୟ ଉପକଥାର ସମନ୍ୱୟରେ ଏହା ରଚିତ ।

ପଞ୍ଜାବର ଏକ ରାଜ୍ୟର ରାଜା ବିକ୍ରମ କାଶ୍ମୀରର ଅପରୂପା ରାଜକନ୍ୟାଙ୍କୁ ବିବାହ କରନ୍ତି ଓ ତାଙ୍କ ସହିତ ପ୍ରେମରେ ଏପରି ମାତିରହନ୍ତି ଯେ ରାଜ୍ୟ ପ୍ରଶାସନ ପ୍ରତି ଆଦୌଦୃଷ୍ଟି ଦିଅନ୍ତି ନାହିଁ । ରାଣୀଙ୍କ ପ୍ରତି ଏପରି ଦୁର୍ବଳତାର ସୁଯୋଗ ନେଇ କାଶ୍ମୀରର ରାଣୀଙ୍କ ସଂପର୍କୀୟମାନେ ଏଠି ଆସି ସବୁ ଗୁରୁତ୍ୱପୂର୍ଣ୍ଣ ପଦବୀ ଅଧିକାର କରି ନିଅନ୍ତି ଓ ରାଜ୍ୟକୁ ଧ୍ୱଂସମୁଖକୁ ନେଇଯାଆନ୍ତି । ରାଜାଙ୍କ ପାଖରେ ଏହି ଅଭିଯୋଗ ପହଞ୍ଚୁଥିଲେ ମଧ ସେ କାନ ଦେଉନଥିଲେ । ଏପରି 'କ୍ଷୁଦ୍ରକଥା' ପ୍ରତି ଧ୍ୟାନ ଦେବାକୁ ତାଙ୍କର ସମୟ ନଥିଲା, କାରଣ ସେ ବୁଝିଥିଲେ ଜୀବନ କେତେ କ୍ଷଣିକ ଓ ପ୍ରୀତି କେତେ ମଧୁର । ବୁଭୁକ୍ଷୁ ଜନତା ଖାଦ୍ୟ ପାଇଁ ପ୍ରାସାଦ ଆଗରେ ଚିତ୍କାର କରୁଥିଲେ । 'ଏହା କାହାର ଚିତ୍କାର ?' ପଚାରିଲେ ରାଣୀ । ''ନା କିଛିନାହିଁ ପ୍ରିୟେ । କେବଳ କ୍ଷୁଧା- ପୂର୍ବରୁ ଅର୍ଦ୍ଧଭୁକ୍ତ ଜନତା ଏବେ ସଂପୂର୍ଣ୍ଣ ବୁଭୁକ୍ଷାରେ ଛଟପଟ ହେଉଛନ୍ତି । ସେହି ଅଭୁକ୍ତ ଅଭଦ୍ର ଜନତା ନିର୍ଲଜ ଭାବେ ଖାଦ୍ୟ ପାଇଁ ଚିତ୍କାର କରି ପ୍ରାସାଦର ମଧୁମୟ ଶାନ୍ତିଭଙ୍ଗ କରୁଛନ୍ତି ।''

ରାଣୀ ବିବେକବତୀ ଥିଲେ । ସ୍ୱାମୀଙ୍କ ସହିତ ବହୁଯୁକ୍ତି କରି ବୁଝାଇଲେ । କିନ୍ତୁ ସେ ସବୁ ରାଜାଙ୍କର କର୍ଣ୍ଣଗୋଚର ହେଲା ନାହିଁ, ବରଂ ସେ ଏହା ପରିବର୍ତ୍ତେ ନିଜ ବାହୁପାଶରେ ରାଣୀକୁ ଧରି ସମୟ କଟାଇବାକୁ ଚାହିଁଲେ । ସବୁ କର୍ତ୍ତବ୍ୟ ଓ ମାନବିକତାକୁ ଭୁଲାଇ ନିଜ ସ୍ୱାମୀକୁ ଅନ୍ଧ କରି ରଖିଥିବା ଏ ପ୍ରକାର ନିର୍ଲଜ ପ୍ରେମ ଓ କାମଲାଳସାରେ ଅତିଷ୍ଠ ହୋଇ ରାଣୀ ରାଜାଙ୍କୁ ଛାଡି ନିଜ ଭାଇ କାଶ୍ମୀର ଯୁବରାଜ କୁମାରସେନଙ୍କ ସାହାଯ୍ୟ ଭିକ୍ଷା କଲେ ସ୍ୱାମୀଙ୍କ ରାଜ୍ୟ ଚଳାଇବା ପାଇଁ । ସେଠାରୁ ପ୍ରଜାମାନଙ୍କ ରକ୍ତ ଶୋଷଣ କରୁଥିବା ଅତ୍ୟାଚାରୀ ପରାଙ୍ଗପୁଷ୍ଟ ଗୋଷ୍ଠୀକୁ ସେ ବିତାଡ଼ିତ କରିବାକୁ ଚାହୁଁଥିଲେ । ରାଣୀଙ୍କର କୃତଘ୍ନ ଭାବ ଜାଣିପାରି ରାଜା ବିକ୍ରମ ଭୟଙ୍କର ହୋଇଉଠିଲେ । ତାଙ୍କର ପ୍ରେମ ପ୍ରତିଶୋଧର ବହ୍ନିରେ ପରିଣତ ହେଲା । ବିକ୍ଷତ ପୌରୁଷ ତାଙ୍କର ହିଂସା ଓ ଆକ୍ରମଣ ପାଇଁ ଉଦ୍ୟତ ହୋଇଉଠିଲା । ନିଜ ସୈନ୍ୟଙ୍କୁ ଧରି ସେ କାଶ୍ମୀର

ଅଭିଯାନ କଲେ କୁମାରସେନଙ୍କୁ ଉଚିତ ଶିକ୍ଷା ଦେବାପାଇଁ । କେହି ତାଙ୍କୁ ଅଟକାଇ ପାରିଲେ ନାହିଁ । ତାଙ୍କ ସୈନ୍ୟମାନେ ଦୁଃସାହସୀ ଥିଲେ ଓ ସର୍ବତ୍ର ବିଜୟ ଲାଭ କରୁଥିଲେ । ସେମାନେ ଅନାୟାସରେ କାଶ୍ମୀର ଅଧିକାର କଲେ । କୁମାରସେନ ଓ ରାଣୀ ଦୁହେଁ ଅରଣ୍ୟରେ ଯାଇ ଆତ୍ମଗୋପନ କଲେ । କୁମାରସେନ ଆତ୍ମସମର୍ପଣ କରିବା ସପକ୍ଷରେ ନଥିଲେ । ସେ ଅହଂକାରୀ ଥିଲେ, କିନ୍ତୁ ବିଜୟୀ ରାଜାଙ୍କର କ୍ରୋଧ ସମ୍ବରଣ କରାଇ ନିଜ ଦେଶର ଲୋକଙ୍କୁ ରକ୍ଷା କରିବାକୁ ଚାହୁଁଥିଲେ । ତେଣୁ ସେ ନିଜର କଟାମୁଣ୍ଡ ବିଜୟୀ ରାଜାଙ୍କ ପାଖକୁ ଭେଟି ପଠାଇଲେ । ଗର୍ବିତ ଅଥଚ ଦୁଃଖରେ ମ୍ରିୟମାଣ ରାଣୀ ଏହି ଉପହାର ଘେନି ବିଜୟୀ ରାଜାଙ୍କ ନିକଟକୁ ଆସିଥିଲେ, କିନ୍ତୁ ରାଜାଙ୍କ ଚରଣରେ ପ୍ରଣତି ଜଣାଇବା ବେଳେ ସେ ଟଳିପଡିଲେ ।

ପ୍ରେମ ଓ କର୍ତ୍ତବ୍ୟ ଭିତରେ, ବୃଥା ମୋହଗ୍ରସ୍ତ ପୁରୁଷ ଓ ସ୍ୱାଭିମାନୀ କରୁଣାମୟୀ ନାରୀ ଭିତରେ ଦ୍ୱନ୍ଦ୍ୱ ଏହି ନାଟକରେ ଚିତ୍ରିତ । ଦୁଃଖ ଓ ଯନ୍ତ୍ରଣା ସହି ସହି ନାରୀର ବିଜୟ ଘୋଷିତ ହୁଏ । ଠିକ୍ ତା' ପରେ ରଚିତ ମୁକ୍ତ ଛନ୍ଦର ନାଟକ ''ବିସର୍ଜନ''ରେ ମଧ୍ୟ ରାଜା ଓ ରାଣୀଙ୍କ ମଧ୍ୟରେ ଦ୍ୱନ୍ଦ୍ୱର କାହାଣୀ ଏକ ଭିନ୍ନ ପରିପ୍ରେକ୍ଷୀରେ ବର୍ଣ୍ଣିତ । ଏଠି ରାଣୀ ପ୍ରତିକ୍ରିୟାଶୀଳ ହୋଇ ସ୍ୱାମୀଙ୍କ ବିରୁଦ୍ଧରେ ଠିଆହୁଅନ୍ତି । 'ବିସର୍ଜନ'ର ନାଟକୀୟ ଦ୍ୱନ୍ଦ୍ୱ ଅଧିକ ଗଭୀର, ଅନ୍ତର୍ଭେଦୀ ଓ ବହୁମୁଖୀ : ଜଣେ ପତି ଓ ପତ୍ନୀ ମଧ୍ୟରେ, ଐହିକ ଇଚ୍ଛା ଓ ପୁରୋହିତର ଆଧିପତ୍ୟ ମଧ୍ୟରେ, ପ୍ରେମ ଓ କର୍ତ୍ତବ୍ୟ ମଧ୍ୟରେ ମନୁଷ୍ୟର ଏକଛତ୍ରବାଦିତା ଓ ଧର୍ମର ନିୟନ୍ତ୍ରଣ ଭିତରେ ଦ୍ୱନ୍ଦ୍ୱ ଦେଖିବାକୁ ମିଳେ । ଏହି ନାଟକଟି ମଧ୍ୟ ନିରୀହ ଜୀବନନାଶର ଏକ ବିୟୋଗାନ୍ତ ଦୃଶ୍ୟରେ ଶେଷ ହୋଇଛି । କିନ୍ତୁ ପ୍ରେମର ଜୟଗାନ ହୋଇଛି ଓ ମନ୍ଦିର ସିଂହାସନରୁ ଓହ୍ଲେଇ ଆସି ଦେବତା ନିଜର ଆସନ ବାଛି ନେଇଛନ୍ତି ମାନବର ହୃଦୟପୀଠରେ ।

ନୂତନ ନାଟ୍ୟରଚନା, ସମାଜ ସଂସ୍କାର ଓ ବେଳେବେଳେ ରାଜନୈତିକ ବିତର୍କରେ ଅଂଶଗ୍ରହଣ ଭଳି ନାନା କାର୍ଯ୍ୟରେ ନିଜକୁ ନିୟୋଜିତ ରଖୁଥିଲେ ମଧ୍ୟ କବି ଆଦୌ ଖୁସି ଓ ଶାନ୍ତ ନଥିଲେ । ସେ ଯେତେବେଳେ ଏପରି ବିମର୍ଷ ରହୁଥିଲେ, ଭ୍ରମଣରେ ଯିବାକୁ ଚାହୁଁଥିଲେ, ଦୂରକୁ ନ ଯାଇ ପାରିଲେ ମଧ୍ୟ ଘର ବଦଳାଇ ଦେଉଥିଲେ । ଏଥର ସେ ଜୋଡାସାଙ୍କୋରୁ ଯାଇ ପାର୍କଷ୍ଟ୍ରୀଟ୍‌ରେ ରହିଲେ । ତା' ପରେ କିଛି ଦିନ ଦାର୍ଜିଲିଂ, ତା ପରେ ଶୋଲାପୁର ଓ ପୁନା ଭ୍ରମଣରେ ଯାଇ କଲିକତା ଫେରିଲେ । ପୁଣି ଗଲେ ଗାଜିପୁର । ଗାଜିପୁର ଥିଲା ଗୋଲାପ ପାଇଁ ବିଖ୍ୟାତ । ପଶ୍ଚିମ ଭାରତର ଐତିହାସିକ ମହତ୍ତ୍ୱ କବିଙ୍କୁ ଯେପରି ଆକୃଷ୍ଟ କରୁଥିଲା, ଗଙ୍ଗାକୂଳରେ ଥିବା ଗାଜିପୁର ମଧ୍ୟ ଠିକ୍ ସେହିପରି ତା'ର ଗୋଲାପ ଉଦ୍ୟାନ ପାଇଁ କବିଙ୍କୁ ଭଲ ଲାଗୁଥିଲା । ତାଙ୍କର ମନେ ହୋଇଥିଲା ଶେଷରେ ସେ ମନଲାଖି ଜାଗାଟି ପାଇଛନ୍ତି । ଦୀର୍ଘଦିନ ସେଠି କଟାଇବା ପାଇଁ କବିଙ୍କୁ ଭଲଲାଗୁଥିଲା । ତେଣୁ ସେଠାକୁ ସେ ତାଙ୍କ ପରିବାର ଘେନି ଯାଇଥିଲେ । କିନ୍ତୁ ଅଳ୍ପ ଦିନ ଭିତରେ ତାଙ୍କର ମୋହଭଙ୍ଗ ହେଲା । ସେ ଦେଖିଲେ ''ବ୍ୟବସାୟିକ ଦୃଷ୍ଟିରୁ ହୋଇଥିବା ଗୋଲାପ ଉଦ୍ୟାନ ବୁଲବୁଲ ପକ୍ଷୀକୁ ବା କବିଙ୍କୁ କାହାରିକୁ ଖୋରାକ ଯୋଗାଏ ନାହିଁ ।'' କିଛି ମାସ ପରେ କବି କଲିକତା ଫେରିଲେ । ସିୟାଲଦାରେ କିଛିଦିନ ଓ ଶାନ୍ତିନିକେତନରେ କିଛିଦିନ ରହିବା ପରେ ପୁଣି ସୋଲାପୁର ଫେରିଲେ ବଡ ଭାଇ ସତ୍ୟେନ୍ଦ୍ରନାଥଙ୍କ ସହ ରହିବା ପାଇଁ । ସେଠି ଯାଇ ଶୁଣିଲେ ସତ୍ୟେନ୍ଦ୍ରନାଥ ଓ ତାଙ୍କ ଯୁବବନ୍ଧୁ ଲୋକେନ ପାଲିତ ଇଂଲଣ୍ଡ ଯିବାପାଇଁ ଠିକ୍ କରିଛନ୍ତି । କବି ସେମାନଙ୍କ ସହ ଯିବାପାଇଁ ସ୍ଥିର କଲେ ।

ଏହିସବୁ ସ୍ଥାନ ଭ୍ରମଣ କରିବା ଭିତରେ ତାଙ୍କ ପାଖରେ ଥିବା ଖାତାଟି କବିତାରେ ପୂର୍ଣ୍ଣ ହୋଇଯାଉଥାଏ । କେତେବେଳେ ସେ ତୁଷାରାବୃତ ହିମାଳୟର ଗିରିଶୃଙ୍ଗରୁ ଚକିତ ହୋଇ ଚାହୁଁଥିବା ବେଳେ ବା ଆଉ କେତେବେଳେ ନିଦାଘ ମରୁରେ ଧୂଳି ଓ ଖରାରେ ଘର୍ମାକ୍ତ ହେଉଥିଲା ବେଳେ, ସବୁବେଳେ ସବୁଠି ବିଭିନ୍ନ ଅନୁଭବ ଘେନି କବିତା ଝରିପଡୁଥିଲା । ସବୁଠାରୁ ଅଧିକ ସଂଖ୍ୟକ କବିତା ରଚିତ ହୋଇଥିଲା ଗାଜିପୁରରେ, ତେବେ ତାହା ଗୋଲାପ ପାଇଁ କି ନୁହେଁ କହିହେବ ନାହିଁ । ଅତୀତ ଦିନର ବୁଲ୍‌ବୁଲ୍ ହୁଏତ ଉଡିଯାଇଥିଲା କିନ୍ତୁ କବିଙ୍କ ଭିତରର ନାଇଟିଙ୍ଗେଲଟି ଅପୂର୍ବ ଶ୍ରୁତିମଧୁର ସଙ୍ଗୀତ ଗାନରେ ମାତି ଉଠିଥିଲା । ତିନି ବର୍ଷରୁ ଉର୍ଦ୍ଧ୍ୱକାଳର ଏଇସବୁ ରଚନା ପରେ 'ମାନସୀ' ନାମରେ ପ୍ରକାଶିତ ହୋଇଥିଲା ଓ କବିଙ୍କ ଗୌରବ ବୃଦ୍ଧି କରିଥିଲା । କବି ମାନସର ନବଜନ୍ମ ହୋଇଥିଲା । କବି ଇଂଲଣ୍ଡରୁ ଫେରିବା ପରେ ଏହି ବହିଟି ପ୍ରକାଶ ପାଇଥିଲା । ତେଣୁ କବିଙ୍କର ଦ୍ୱିତୀୟଥର ଇଉରୋପ ଯାତ୍ରାର ସଂକ୍ଷିପ୍ତ ବିବରଣୀ ପରେ ଏହା ବିଷୟରେ ଆଲୋଚନା କରିବା ଯଥାର୍ଥ ହେବ ।

ଏଇଥର ଭ୍ରମଣ ବେଳେ କବି ଘରକୁ 'ଭାରତୀ'ରେ ପ୍ରକାଶ ପାଇଁ କୌଣସି ଚିଠି ପଠାଇନଥିଲେ । ମାତ୍ର ତାଙ୍କ ପାଖରେ ଯେଉଁ ଡାଏରୀଟି ଥିଲା ତାହା ସେ ଫେରିବା ପରେ 'ଇଉରୋପ ଯାତ୍ରୀର ଡାଏରୀ' ନାମରେ ପ୍ରକାଶ ପାଇଥିଲା । ଲଳିତ ଗଦ୍ୟରେ ରଚିତ ଏହି ଡାଏରୀଟି ଅତ୍ୟନ୍ତ ମର୍ମସ୍ପର୍ଶୀ ଓ ସୁଖପ୍ରଦ । ଏଥିରେ ସୂକ୍ଷ୍ମ ପର୍ଯ୍ୟବେକ୍ଷଣ ଓ ଶାଣିତ ବ୍ୟଙ୍ଗର ବହୁ ନିଦର୍ଶନ ମିଳେ । 22 ଅଗଷ୍ଟ 1890 ଯେଉଁଦିନ ବମ୍ବେରୁ ଷ୍ଟିମର ଛାଡିଲା ସେହିଦିନଠୁ ଏହାର ଲେଖା ଆରମ୍ଭ । ଜାହାଜର ଡେକ୍ ଉପରେ ଠିଆହୋଇ ଗୁଣୁ ଗୁଣୁ ହେଉଥିଲା ବେଳେ ଛାଡି ଆସିଥିବା ଉପକୂଳକୁ ଚାହିଁ ରହିଥିଲେ କବି । 'ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦ' ବିଷୟରେ କେବେ ଶୁଣିନଥିଲେ ମଧ ମନେ ମନେ ଚିନ୍ତା କରୁଥିଲେ କିପରି ସବୁକାଳରେ କବିତା ବସ୍ତୁ ଓ ବାସ୍ତବତା ଦ୍ୱାରା ପ୍ରଭାବିତ ହୋଇଛି । କାଳିଦାସଙ୍କ କାଳରେ ପ୍ରଣୟିନୀଠାରୁ ଶତଯୋଜନ ଦୂରରେ ରହିଥିବା ବିରହୀ ଯକ୍ଷ ମେଘକୁ ଦୂତ କରି ପ୍ରାଣର ଆବେଗ ପଠାଇଛି ଓ କବିଙ୍କୁ ଅନେକ ଶ୍ଳୋକରେ ତାହା ବର୍ଣ୍ଣନା କରିବାର ଅବକାଶ ଦେଇଛି । ବାଷ୍ପଯୁଗରେ ଗୋଟିଏ ଦୀର୍ଘ ସନେଟ୍ ବା ଲିରିକ୍ ଯଥେଷ୍ଟ ନଥିଲା କିନ୍ତୁ ଏବେ ପରମାଣୁ ଯୁଗରେ ସଂକ୍ଷିପ୍ତ ପଦଟିଏ ବି ବେଶୀ ମନେହୁଏ । କିନ୍ତୁ ବର୍ଷା ବିକ୍ଷୁବ୍ଧ ଆରବ ସାଗର ବକ୍ଷରେ ଉଠିପଡି ଜାହାଜ ଚାଲିଥିଲା ବେଳେ ସେସବୁ ଭାବନା କବିଙ୍କର କୁଆଡେ ହଜିଯାଉଥାଏ । ପ୍ରଥମ ଥର ଜଳଯାତ୍ରା ବେଳେ ଯେପରି ରବୀନ୍ଦ୍ରନାଥ ନିଜ କ୍ୟାବିନ୍‌ରେ ଆବଦ୍ଧ ହୋଇଥିଲେ ଏଥର ଚାରିଦିନ ସେହିପରି କ୍ୟାବିନ୍‌ରେ କଟାଇଥିଲେ ।

ପରବର୍ତ୍ତୀ ଜୀବନରେ ସେ ବହୁବାର ଜଳଯାତ୍ରା କରିଥିଲେ, କିନ୍ତୁ ନିଜ ଜନ୍ମଭୂମି ବଙ୍ଗର ନଦୀଗୁଡିକୁ ସେ ଯେପରି ଭଲ ପାଉଥିଲେ ସେହିପରି ସମୁଦ୍ରକୁ ଭଲପାଇ ପାରି ନଥିଲେ । ଜାହାଜ ଭିତରଟା ତାଙ୍କୁ ମନେହୋଇଛି ଠିକ୍ ଆଳସ୍ୟର ଦୁର୍ଗ ପରି ଯେଉଁଠି ଯାତ୍ରୀମାନେ କଣ କରି ସମୟ ବିତାଇବେ ବୁଝିପାରୁନଥାନ୍ତି । ଡାଏରୀରେ ଯାତ୍ରୀମାନେ କିଭଳି ସମୟ କଟାଇବା ପାଇଁ ଆମୋଦ କରୁଥିଲେ ତା'ର ମଜାଦାର ବର୍ଣ୍ଣନା ସ୍ଥାନପାଇଛି । ଜଣେ ସୁନ୍ଦରୀ ମହିଳା ଏଭଳି ଭାବରେ ତାଙ୍କର ରୂପବିନ୍ୟାସ ଦେଖାଉଥିଲେ ଯେ ଖାଇବାବେଳେ ସମସ୍ତଙ୍କ ଆଖି ତାଙ୍କ ଉପରେ ନିବିଷ୍ଟ ରହୁଥିଲା । ଯାନ୍ତ୍ରିକ ଭାବରେ ଦାନ୍ତସବୁ ଖାଦ୍ୟ ଚୋବାଉଥିବା ବେଳେ ଆଖିସବୁ ତାଙ୍କର ଅଙ୍ଗପ୍ରତ୍ୟଙ୍ଗରେ ଲାଖି ରହୁଥିଲା । କବିଙ୍କ ଆଖି ମଧ ନିଶ୍ଚୟ ସେଥିରେ ଭାଗ ନେଇଥିବ ନଚେତ୍ ସେ କିପରି

ଏକଥା ଜାଣିପାରି ଥାନ୍ତେ ? ତା' ପରଦିନ ଥିଲା ରବିବାର । ସକାଳେ ସମସ୍ତେ ନିଜ ନିଜ କୋଠରୀରେ ଆପଣା କାର୍ଯ୍ୟରେ ବ୍ୟସ୍ତ ଥିଲାବେଳେ ସେଇ ମହିଳା ଜାହାଜର ଡେକ୍ ଉପରେ ବସି ଜଣେ ତରୁଣ ଖ୍ରୀଷ୍ଟିୟାନ୍‌ଙ୍କ ସହ ପ୍ରେମାଳାପ କରୁଥିଲେ ।

ଲଣ୍ଡନରେ ପହଞ୍ଚିବା ମାତ୍ରେ କବି ପ୍ରଥମେ ଗଲେ ଅତୀତର ସେଇ ସୁଖ ସ୍ମୃତିଭରା ଦିନକଟାଇଥିବା ସ୍କଟ୍ ପରିବାରଙ୍କ ଘରକୁ କିନ୍ତୁ ସେଠାରୁ ସେ ପରିବାରଟି ଛାଡି ଚାଲିଯାଇଥିଲେ ଓ କେହି ତାଙ୍କର ଠିକଣା ଜାଣିନଥିବା ଶୁଣି କବି ନିରାଶ ହେଲେ । ତରୁଣ ବୟସରେ ସେଇ ମଧୁର ପ୍ରେମ ଏବେ କେବଳ ସ୍ମୃତି ହୋଇ ରହିଥିଲା ଓ ଲଣ୍ଡନରେ ଆହୁରି ଅନେକ କାର୍ଯ୍ୟରେ ତାର କ୍ଷତିପୂରଣ ହୋଇଥିଲା । ଇଂରେଜ୍ ଝିଅମାନେ ପଢ଼ି ଖୁସିହେବେ ସେ ଯାହା ତାଙ୍କ ଡାଏରୀରେ ଲେଖିଥିଲେ, ସେମାନଙ୍କ ଜେଜେମା ବା ତାଙ୍କ ମା'ଙ୍କ ବିଷୟରେ ''ସାହି ଗଳିରେ ଚାଲି ଚାଲି ଯିବା ଏଠି ଆମୋଦଦାୟକ କାରଣ ନିଶ୍ଚିତ ସୁନ୍ଦର ମୁହଁଟିଏ ଦେଖିହେବ । ଆଶାକରେ ଆମ ଦେଶପ୍ରେମୀମାନେ ମୋତେ ଭୁଲ ବୁଝିବେ ନାହିଁ ଯେ ସେମାନଙ୍କର ମୁଖଶ୍ରୀ, ଓଠର ଲାଲିମା, ତୀକ୍ଷ୍ଣ ନାଶା ଓ ଆକାଶର ନୀଳିମାକୁ ଧରି ରଖିଥିବା ଆଖି ମୋତେ ଆତ୍ମହରା କରୁଛି ।''

ବାରମ୍ବାର ସେ ଇଉରୋପୀୟ ସମାଜକୁ ପ୍ରଶଂସା କରିଛନ୍ତି । ସେଠି ନାରୀମାନେ ସମାଜରେ ନିଜର ସମୁଚିତ ସ୍ୱାଧୀନତାର ଅଂଶ ପାଇଥାନ୍ତି ଓ ସମୃଦ୍ଧ ଜାତି ଗଠନ ଦିଗରେ ସାହାଯ୍ୟ କରିଥାନ୍ତି । କିନ୍ତୁ ଅପରପକ୍ଷେ ଭାରତୀୟ ସମାଜରେ ନାରୀ କେବଳ ମାତ୍ର ପୁରୁଷର ସେବା କରିବା ଓ ଅତିଶୟ ପ୍ରଶୟ ଦେବାରେ ନିଯୁକ୍ତ ରହି ତାର ପୁରୁଷାର୍ଥ ନଷ୍ଟ କରି ଦେଇଥାନ୍ତି । ଲଣ୍ଡନ ରହଣି ତାଙ୍କର ଉପଭୋଗ୍ୟ ହୋଇଥିଲେ ମଧ୍ୟ ସୃଷ୍ଟି ଚେତନା ତାଙ୍କ ପାଖରୁ ଦୂରେଇ ଯାଇଥିଲା । ତାଙ୍କ ଜୀବନରେ ବାରମ୍ବାର ଏପରି ଘଟିଥିଲା । ସେ ଥିଲେ ବିଶାଳହୃଦୟ, ଉଦାରମନା ପ୍ରକୃତରେ ଜଣେ ବିଶ୍ୱନାଗରିକ । କିନ୍ତୁ ଆପଣାର ଜନ୍ମମାଟି ତାଙ୍କୁ ଏପରି ଗଭୀର ନିବିଡ ବନ୍ଧନରେ ବାନ୍ଧି ରଖିଥିଲା ଯେ ଭାରତ ବାହାରକୁ ଗଲେ ତାଙ୍କର ଅଜସ୍ରସ୍ରାବୀ ଲେଖନୀ ଶୁଷ୍କ ହୋଇଯାଉଥିଲା ଅବା ମନ୍ଦମନ୍ଥର ହୋଇ ଯାଉଥିଲା । ହଠାତ୍ ଅକ୍ଟୋବର ପାଞ୍ଚରେ ସେ ଡାଏରୀରେ ଲେଖନ୍ତି ''ଏ ସ୍ଥାନ ବଡ ବିରକ୍ତ ଲାଗିଲାଣି । ଏପରିକି ସୁନ୍ଦର ମୁହଁ ବି ଆଉ ଭଲ ଲାଗୁନାହିଁ । ମୁଁ ତେଣୁ ଫେରିଯିବାକୁ ସ୍ଥିର କରିଛି ।''

ଲଣ୍ଡନରୁ ଫେରିବାର ଅବ୍ୟବହିତ ପୂର୍ବରୁ ଝିଆରୀ ଇନ୍ଦିରାଦେବୀଙ୍କୁ ଲେଖା ତାଙ୍କର ଗୋଟିଏ ଚିଠି ଖୁବ୍ ଉଲ୍ଲେଖଯୋଗ୍ୟ । ଏପରି ମୁକ୍ତ ଭାବରେ ଲେଖିବାପାଇଁ କ'ଣ ତାଙ୍କୁ ପ୍ରଣୋଦିତ କରିଥିଲା ଜଣାନାହିଁ । କବି ଲେଖିଛନ୍ତି ''ମନୁଷ୍ୟ କ'ଣ ଧାତୁ ନିର୍ମିତ ଯନ୍ତ୍ର ଯେ ଠିକ୍ ନିୟମ ଅନୁସାରେ ଚାଲିବ ? ମନୁଷ୍ୟ ମନର ଗତି ଏତେ ବିସ୍ତୃତ ଓ ବିବିଧ, ତାର ମନ ଏତେ ବିଚିତ୍ର ଓ ତାର ଦାବୀ ଏତେ ବିକ୍ଷିପ୍ତ ଯେ ଏପଟ ସେପଟ ହେବାକୁ ହିଁ ପଡିବ । ତାହାହିଁ ତାର ଜୀବନର ଲକ୍ଷଣ, ମନୁଷ୍ୟତ୍ୱର ଚିହ୍ନ ଓ ଜଡତ୍ୱର ପ୍ରତିବାଦ । ଏଇ ଦ୍ୱିଧା ଯାହାର ନାହିଁ ତାହାର ମନ ନିତାନ୍ତ ସଂକୀର୍ଣ୍ଣ, କଠିନ ଓ ଜୀବନବିହୀନ । ଯାହାକୁ ଆମେ ପ୍ରବୃତ୍ତି ବୋଲି କହୁ ଓ ଯାହା ପ୍ରତି ସର୍ବଦା କଟୁଭାଷା ପ୍ରୟୋଗ କରୁ ତାହାହିଁ ଆମର ଜୀବନର ଗତିଶକ୍ତି- ତାହାହିଁ ଆମକୁ ନାନା ସୁଖଦୁଃଖ ପାପପୁଣ୍ୟ ମଧ୍ୟ ଦେଇ ଅନନ୍ତ ସମ୍ଭାବନା ଆଡକୁ ପ୍ରଧାବିତ କରେ । ଯାହା ଭିତରେ ଜୀବନୀଶକ୍ତିର ପ୍ରାବଲ୍ୟ ନାହିଁ, ଯାହାର ମନର ରହସ୍ୟମୟ ବିଚିତ୍ର ବିକାଶ ହୋଇନାହିଁ, ସିଏ ସୁଖୀ ହୋଇପାରେ, ସାଧୁ ହୋଇପାରେ ଏବଂ ତାର ସେଇ ସଂକୀର୍ଣ୍ଣତାକୁ ଲୋକେ ମନର ଜୋର କହିପାରନ୍ତି- କିନ୍ତୁ

ଅନନ୍ତ ଜୀବନର ପାଥେୟ ତା ପାଖରେ ବେଶୀ ନାହିଁ ।''

୧୮୯୦ ନଭେମ୍ବରରେ ସେ ଭାରତକୁ ଫେରିବା ପରେ ପରେ 'ମାନସୀ' କବିତାଗୁଚ୍ଛଟି ପ୍ରକାଶ ପାଇଲା । ଏଇ କବିତାଗୁଡିକର ବିପୁଳ ବିଚିତ୍ର ଭାବନାରାଶି, କଳ୍ପନାର ପ୍ଲାବନ, ଉନ୍ନତ ପରିପକ୍ୱ ଚିନ୍ତା, ଗୀତିମୟ ସୌନ୍ଦର୍ଯ୍ୟ ଓ ଶକ୍ତି ଏସବୁ ଦେଖିଲେ ମନେହୁଏ ସତେ ଯେପରିକି କବି କଳ୍ପନାର ଗୋଟେ ଉଦ୍ଦାମ ଧାବମାନ ଅଶ୍ୱପୃଷ୍ଠରେ ଖିବ୍ ଦୃଢ଼ ଭାବରେ ବସିଛନ୍ତି, ବିଚକ୍ଷଣ ଚାଳକପରି ଲଗାମ ବ୍ୟବହାର ନ କରି ମଧ ତାଙ୍କ ହାତ ଓ ପାଦର ସାମାନ୍ୟ ଇଙ୍ଗିତ ସେ ବୁଝିପାରୁଛି- ଏହା ଦେଖି ତାଙ୍କର ପ୍ରତିବାଦୀମାନଙ୍କୁ ମଧ ସ୍ୱୀକାର କରିବାକୁ ହୋଇଥିଲା ଯେ ପ୍ରକୃତରେ ସେ ଜଣେ କବି । ଏଥିରେ କବିତାଗୁଡିକ ମୁଖ୍ୟତଃ ପାଞ୍ଚ ପ୍ରକାରର ଥିଲା । ଏଇ ପାଞ୍ଚ ପ୍ରକାର ମୁଖ୍ୟ ଭାବ ସବୁଦିନେ କବିଙ୍କର ସମଗ୍ର ସୃଷ୍ଟିରେ ରହିଆସିଥିଲା । ଅବଶ୍ୟ ପରବର୍ତ୍ତୀ ସମୟରେ ଏସବୁ ଆହୁରି ବିସ୍ତୃତ ଭାବରେ ପ୍ରକାଶ ପାଇଛି : ପ୍ରଣୟ କବିତା, ପ୍ରକୃତି କବିତା, ସମାଜ ଓ ଜାତୀୟ ସମସ୍ୟା ମୂଳକ କବିତା, ଧର୍ମ ଓ ଆଧ୍ୟାତ୍ମିକ ଚେତନା ମୂଳକ ରହସ୍ୟବାଦୀ କବିତା ଓ କବିଙ୍କର ଦାର୍ଶନିକ ଓ ଅତିଭୌତିକ ଚେତନାକୁ ସାକାର କରୁଥିବା ବାସ୍ତବ ବା କିଂବଦନ୍ତୀମୂଳକ ବା ଐତିହାସିକ ଭାବସମନ୍ୱିତ କବିତା । କହିବା ଅନାବଶ୍ୟକ ଯେ କବିତାର ଏସବୁ ପ୍ରକାର ଭେଦ ସର୍ବଦା ନିର୍ଦ୍ଦିଷ୍ଟ ନୁହେଁ ଓ ପରସ୍ପର ମିଶାମିଶି ହୋଇ ରହେ । ମାନବ ଓ ଈଶ୍ୱର, ପ୍ରକୃତି ପ୍ରେମ ଓ ମାନବପ୍ରେମ, ପ୍ରେରଣା ଓ ଚିନ୍ତା କବିଙ୍କର କାବ୍ୟ ଚେତନାରେ ଓ ପ୍ରକୃତ ଜୀବନରେ ଏପରି ଭାବରେ ଓତଃପ୍ରୋତ ହୋଇ ରହିଥିଲା ଯେ ଗୋଟିକୁ ଅନ୍ୟଠାରୁ ଅଲଗା କରିବା ଆଦୌ ସମ୍ଭବ ନୁହେଁ ।

ସେଇ ପୁରୁଣା ଯୁଗର କଥାକୁ ମନେ ପକାଇଛନ୍ତି କବି । ଯେତେବେଳେ ଯମୁନାକୂଳରେ ବୃନ୍ଦାବନର ସେଇ ଲଳିତ ଲତା ତଳେ ରାଧାକୃଷ୍ଣଙ୍କ ପାଇଁ ବିରହରେ ବ୍ୟଥିତ ହେଉଥିଲେ, ପ୍ରେମ ପାଇଁ ଘନ ଘୋର ଝଡ ରାତିରେ ଘରଛାଡି ପଳାଇ ଆସିଥିଲେ । କବିଙ୍କ ଦୃଷ୍ଟିରେ ଆଜିମଧ ସେଇ ବୃନ୍ଦାବନ ମାନବର ହୃଦୟରେ ବଂଚିରହିଛି, ଆଜିମଧ ଭୀଷଣ ବର୍ଷଣମୁଖର ରାତିରେ ହେଉ, ନରମ ଶରତ ସଂଧ୍ୟାରେ ହେଉ ବା ପୂର୍ଣ୍ଣିମା ରଜନୀରେ ହେଉ ପ୍ରେମ ପାଇଁ ଅବିରତ ବୋହି ଚାଲିଛି କାମନାର ସ୍ରୋତ । ଚିରନ୍ତନ ରାଧା ଚିର ବିରହିଣୀ । ଏବେବି ସେ ବିରହରେ ବିଧୁରିତ । ଆଉ ସେହିପରି ଦିନେ ଯେତେବେଳେ ଘନୀଭୂତ ବାରିଦରେ ଆକାଶ ଭାରାକ୍ରାନ୍ତ, ସମୀରଣ ଧୀର, ଅଦୂରରେ ପ୍ରବାହିତ ଗଂଗାବକ୍ଷ ନୌକାଶୂନ୍ୟ, ଏକୁଟିଆ ବସି ସେ ତାଙ୍କୁ ଖୋଜୁଛନ୍ତି, କାହାନ୍ତି ସେ ? ଯେବେ ଅନେକବର୍ଷ ସେ ତାଙ୍କ ସହିତ ଥିଲେ କେବେ ତାଙ୍କୁ ନିଜ ହୃଦୟର କଥା କହି ନଥିଲେ । ସେ ତାଙ୍କୁ ଜାଣିଥିଲେ ଜଣେ ଅନର୍ଥକ କଥା କହୁଥିବା ଅର୍ବାଚୀନ ବାଳକ ଭାବରେ । ଯଦି ଆଜି ଏଠି ସେ ଥାଆନ୍ତେ କିମିତି ଆପଣାର ହୃଦୟ ତାଙ୍କ ପାଦତଳେ ଢ଼ାଳି ଦେଇଥାନ୍ତେ । କିନ୍ତୁ ସେ ଆଜି ନାହାନ୍ତି, ସେ ଚାଲି ଯାଇଛନ୍ତି ତାଙ୍କୁ ନିଃସଙ୍ଗ କରିଦେଇ । ଆଉ ଯଦିଓ ପୃଥିବୀ ତା ବାଟରେ ଚାଲିଛି ଠିକ୍ ପୂର୍ବପରି ସେ କିନ୍ତୁ ନିଃସୀମ ନିର୍ଜନତାର ନିଛିଦ୍ର ଅନ୍ଧକାରରେ ସବୁଦିନ ପାଇଁ ଏକୁଟିଆ ହୋଇଯାଇଛନ୍ତି ।

କିନ୍ତୁ ହୃଦୟର ବିଳାପ ଯେତେ ଅସଫଳ ବା କାମନାର ଜ୍ୱଳନ ଯେତେ ବୃଥା ହେଉପଛେ ମାନବ ହୃଦୟ କ'ଣ ପ୍ରେମ ଓ କାମନାକୁ ଛାଡିଦେଇ ପାରିବ ? ଆଉ ଯେତେବେଳେ ଜଣେ ପ୍ରକୃତରେ ଭଲପାଏ ଓ ଚାହେଁ ସେତେବେଳେ କିଛି ବାଧା ବନ୍ଧନ ଥାଏ ? ହୃଦୟର ହେଉ କି

ଇନ୍ଦ୍ରିୟର ହେଉ କାମନାର କ'ଣ ଅନ୍ତ ଅଛି ? ଏହି ଦ୍ୱନ୍ଦ ଯାହାକୁ ସେ 'ମାନସୀ'ର ଗୋଟିଏ କବିତାରେ ରୂପ ଦେଇଥିଲେ ତାହା ସାରାଜୀବନ ତାଙ୍କୁ ବିବ୍ରତ କରି ରଖିଥିଲା । ସମଧିକ ମାନବବାଦୀ ଭାବରେ ତାଙ୍କର ବ୍ୟକ୍ତିଗତ ପ୍ରେମ ଓ ପ୍ରତୀତିକୁ ସେ ମାନବାତ୍ମାର ସର୍ବକାଳିକ ଓ ସାର୍ବଜନୀନ ପ୍ରେମ ଓ ପ୍ରତୀତି ସହିତ ମିଶାଇ ଦେଇ ସେଥିରୁ ଜୀବନର ସରସତା ଓ ସଜୀବତାର ସନ୍ଧାନ କରୁଥିଲେ ।

1887ରେ ଆଠଶହ ଯାତ୍ରୀଙ୍କୁ ନେଇ ପୁରୀ ଯାଉଥିବା ଗୋଟିଏ ଜାହାଜ ସମୁଦ୍ର ଝଡରେ ବୁଡିଯାଇଥିଲା । ଏଇ ମର୍ମନ୍ତୁଦ ଘଟଣା ବିଷୟରେ ରବୀନ୍ଦ୍ରନାଥ ଗୋଟିଏ ମାର୍ମିକ କବିତା ରଚନା କରିଥିଲେ ଯାହା ତାଙ୍କର ରଚନାବଳୀର ଅନ୍ୟତମ ଶ୍ରେଷ୍ଠ ଓ ସାମୁଦ୍ରିକ ଝଡ ଉପରେ ରଚିତ ତାଙ୍କର ଶ୍ରେଷ୍ଠତମ କବିତା । ଏଇ ପ୍ରାଣସ୍ପର୍ଶୀ କବିତାଟିର ଛନ୍ଦ ବାତଆନ୍ଦୋଳିତ ସମୁଦ୍ର ବକ୍ଷପରି କ୍ଷଣକେ ଫୁଲିଉଠେ ଓ ପୁଣି କ୍ଷଣକେ ଶୋଷିହୋଇଯାଏ, ଏହାର ରୂପକଳ୍ପ ଓ ବଚନବିନ୍ୟାସ ଘଟଣାଟିର ଘନଘଟାକୁ ଘେରିରହିଛି, ଶବ୍ଦସ୍ଫୁଟସବୁ ବିଲୟର ବିଚିତ୍ର ଆର୍ତ୍ତଚିତ୍କାରକୁ ପ୍ରତିଧ୍ୱନିତ କରୁଛି । କିନ୍ତୁ ପରିଶେଷରେ କବି କହିଛନ୍ତି: ଏପରି ଭୟଙ୍କର ଧ୍ୱଂସ ଭିତରେ ମଧ୍ୟ ମାନବ ହୃଦୟର କେଉଁ ଗୁପ୍ତ କୋଣରେ ପ୍ରେମ ଓ ବିଶ୍ୱାସର ଦୀପାଳିଟିଏ ଏବେବି ଜଳୁଛି ଯାହାକୁ ଝଡ ଏବେବି ଚିରଦିନ ଲିଭାଇ ଦେବାପାଇଁ ସମର୍ଥ ହୋଇନି- ଏହାହିଁ ରବୀନ୍ଦ୍ରନାଥଙ୍କ କବିତ୍ୱର ବୈଶିଷ୍ଟ୍ୟ । କବିତାଟିର ସାର୍ଥକ ଅନୁବାଦ କରିବା ଲେଖିକଙ୍କ କ୍ଷମତା ବାହାରେ, କେବଳ କେତୋଟି ପରିଚ୍ଛେଦରେ କବିତାଟିରୁ କବିଙ୍କର ଭାବଦ୍ୟୋତନାର ପରିଚୟ ଦେବାପାଇଁ ଚେଷ୍ଟା କରାଯାଇଛି ।

ଅନନ୍ତ ସମୁଦ୍ରର ଅଶାନ୍ତ ବକ୍ଷରେ ଧ୍ୱଂସର ଲୀଳା ଆରମ୍ଭ ହେଲା । ସତେକି ପ୍ରକୃତିର ଭୟଙ୍କର ମହୋତ୍ସବ, ଭୀଷଣ ତୋଫାନ ତାର ଶତଡେଣା ମେଲାଇ ଗର୍ଜିଉଠୁଚି, ଆକାଶ ଓ ସମୁଦ୍ର ଆଲିଙ୍ଗନରେ ଏକାକାର । କାଳରାକ୍ଷସ ସତେକି ପାନୋଲ୍ଲାସରେ ଉନ୍ମତ୍ତ, ଦୃଷ୍ଟିହୀନ, ବନ୍ଧନହୀନ, ବାସହୀନ, ନିର୍ଦ୍ଦୟଭାବେ-ପ୍ରକୃତିର ପାଗଳ ସଂଗୀତ ସ୍ୱରହୀନ, ଅର୍ଥହୀନ ନୃତ୍ୟ ତାର ଛନ୍ଦହୀନ । ଦୋଳାୟମାନ ଜାହାଜ ଉପରେ ଆଠଶହ ନରନାରୀ ଭୀତତ୍ରସ୍ତ, ଭୟତ୍ରସ୍ତ, ଭୟରେ ସେମାନେ ଜଡ,ଝଡର ଝଂକାର ଶୁଭୁଛି, ଫେନିଳ ସମୁଦ୍ର ତାର ଅଜସ୍ର ଜୁଆର ଭିତରୁ ଗର୍ଜିଉଠୁଛି- ଦିଅ ଦିଅ ଦିଅ । ହେ ଭଗବାନ୍ ତୁମେ କି ନାହଁ ଏଠି ? ଦୟା ନାହିଁ, ପ୍ରାଣନାହିଁ ଏଠି କେବଳ ଘଟିଚାଲିଛି ଗୋଟେ ପ୍ରମତ୍ତ ଲୀଳା- ନିର୍ଦ୍ଦୟ, ଅସଂଯତ, ମନୁଷ୍ୟର ନିର୍ଯ୍ୟାତନାକୁ ଭ୍ରୂକ୍ଷେପ ନାହିଁ, କେବଳ ଜଡ ପ୍ରକୃତିର ବିଳାସ, ତଥାପି ଏଇ ଜଡ ନିଶ୍ଚିନ୍ତ ପ୍ରକୃତିର କୋଳରେ ମନୁଷ୍ୟ ନିର୍ଭୟରେ ବସା ବାନ୍ଧି ରହେ । କାହିଁକି ତେବେ ଧ୍ୱଂସର ଦାନବ ଏଇ ମନୁଷ୍ୟର ସବୁ ଆଶା ଓ ଆନନ୍ଦକୁ ଶେଷ କରିଦେଇପାରେ ନି ? କାହିଁକି ଏଇ ଧ୍ୱଂସମୁଖରେ ବି ମା' ତାର ଶିଶୁକୁ କୋଳକୁ ଟାଣିନିଏ ? ପ୍ରକୃତିର ପ୍ରଳୟଙ୍କରୀ ରୂପକୁ ବାନ୍ଧିଦେଇ ମା' କହେ କିଏ ଛଡାଇ ନେବ ଶିଶୁକୁ ତା' କୋଳରୁ ? ଜଡ ପ୍ରକୃତିର ଏସବୁ ନିର୍ଦ୍ଦୟ ତାଣ୍ଡବ ଭିତରେ ବି ଯେତେବେଳେ ପ୍ରେମର ଶକ୍ତି ଏପରି ବିରାଜିତ ।

ଦୟା ଓ ନିର୍ଦ୍ଦୟ ଭାବ ଗୋଟିଏ ସ୍ଥାନରେ ଏକାଠି ରହିଛି । ଇଏ ଏକ ବିଷମ ସଂଶୟ । ଭୀଷଣ ଭୟ ଓ ଅନନ୍ତ ଆଶା ଏକତ୍ର ଏଠି । କେଉଁଟା ତେବେ ସତ୍ୟ ଆଉ କେଉଁଟା ବା ମିଥ୍ୟା ? ଦିବାରାତ୍ରି ଏ ପ୍ରଶ୍ନ ଘାରୁଛି ମନୁଷ୍ୟକୁ କିନ୍ତୁ କ୍ଷଣେ ଉତ୍ତରଣ କ୍ଷଣକେ ପତନ ଜଡ ଦୈତ୍ୟ ପ୍ରକୃତି ଶକ୍ତି ପ୍ରକାଶୁଛି । କୌଣସି ମିନତି ମାନୁନି । ତା ପରେ ଆସେ ପ୍ରେମ, କୋଳକୁ ଟାଣିନେଇ ଦୂରକରେ ଭୟ । ଏହାକଣ ଦୁଇ ଦେବତାଙ୍କର ଦ୍ୟୁତକ୍ରୀଡା ? ଏଇ ନିରନ୍ତର ଭଙ୍ଗାଗଢ଼ା ? ଚିରଦିନ

ଏ ଅନ୍ତହୀନ ଜୟପରାଜୟ ?

'ମେଘଦୂତ' ଶୀର୍ଷକ ଆଉ ଏକ କବିତା ରବୀନ୍ଦ୍ରନାଥ ୧୮୨୦ରେ ଇଂଲଣ୍ଡ ଯିବା ପୂର୍ବରୁ ବର୍ଷାକାଳରେ ଶାନ୍ତିନିକେତନରେ ରଚନା କରିଥିଲେ । ଆକାଶରେ ଘନୀଭୂତ ମେଘର ଆଟୋପ ଦେଖି ସେ ତାଙ୍କର ପୂର୍ବସୂରୀ କାଳିଦାସଙ୍କୁ ସ୍ମରଣ କରିଥିଲେ । ଏପରି ଏକ ମେଘାଶ୍ଳିଷ୍ଟ ଦିନରେ କାଳିଦାସ ରଚନା କରିଥିଲେ ତାଙ୍କର ମହାନ୍ କୃତି ମେଘଦୂତ– ବିରହୀ ପ୍ରଣୟୀ ଆତ୍ମାର ପ୍ରେମ, ଯାହା ଚିରକାଳର ଅମର କୀର୍ତ୍ତିଗାଥାରେ ପରିଣତ ହୋଇଛି । ସେହି ପ୍ରାଚୀନ କାବ୍ୟର ସମ୍ମାନାର୍ଥେ କବିଙ୍କର ଏହାଥିଲା ଆଉ ଏକ ନୂତନ ମେଘଦୂତ । ନିଜର ପ୍ରତିଭା ଯେ ଏ ଦେଶର ସର୍ବଶ୍ରେଷ୍ଠ ମହାକବିଙ୍କ ସହିତ ସହଧର୍ମିତା ରକ୍ଷା କରିବାରେ ସମର୍ଥ ରବୀନ୍ଦ୍ରନାଥ ଏ ବିଷୟରେ ଦୃଢ଼ ଆସ୍ଥାବାନ ଥିଲେ । ଯେପରି ଭର୍ଜିଲଙ୍କୁ ଶ୍ରଦ୍ଧା ଓ ସମ୍ମାନ ଜଣାଇଥିଲେ ଦାନ୍ତେ ।

ଶାନ୍ତିନିକେତନରେ ସେ ଆଉ ଗୋଟିଏ ସୁନ୍ଦର କବିତା ରଚନା କରିଥିଲେ ଅହଲ୍ୟାଙ୍କ ବିଷୟରେ । ଦୈବ ଚକ୍ରାନ୍ତରେ ନିପୀଡିତା ଅହଲ୍ୟା ନିଜ ସ୍ୱାମୀଙ୍କ ଅଭିଶାପରେ ପଥର ପାଲଟି ଯାଇଥିଲେ । କବି ଏଥିରେ କଳ୍ପନା କରିଛନ୍ତି ଯେ ଅହଲ୍ୟା ଦୀର୍ଘକାଳ ମାନବିକ ସଚେତନତାରୁ ଦୂରେଇ ଯାଇ ମୂକ ଜଗତର ଏପରି ଏକ ଅସ୍ପଷ୍ଟ ଚେତନା ଭିତରେ ରହିଥିଲେ ଯାହା ମାନବିକ ଉପଲବ୍ଧିଠୁ ଭିନ୍ନ ହୋଇପାରେ, କିନ୍ତୁ ସ୍ୱକୀୟତାରେ ଅନନ୍ୟ । କବି ପଚାରନ୍ତି, 'ଅହଲ୍ୟା ! ତୁମେ କ'ଣ ଅନୁଭବ କରୁଥିଲ ଯେତେବେଳେ ପାଷାଣରୂପେ ଧରାତଳେ ଥିଲ ଯେଉଁଠି ଧରିତ୍ରୀ ମାତା ତାର ବହୁରଙ୍ଗବର୍ଣ୍ଣତଳେ ଗୋପନରେ ଲୁଚି ରହିଛି ? ନିଜର ସନ୍ତାନ ମାନଙ୍କ ପାଇଁ ମାଟି ମା'ର ଅନୁଚ୍ଚାରିତ ମମତାକୁ, ଆମର ସକଳ ସ୍ୱାର୍ଥ ପାଇଁ ନିରବ ସାଧିକା ଏଇ ମା'ର ଧୈର୍ଯ୍ୟ ଓ ଦୁଃଖକୁ କ'ଣ ତମେ ଅଙ୍ଗେ ନିଭାଇଛ ? ନିଜର ଅବାଧ ସନ୍ତାନମାନଙ୍କର ଶବ୍ଦ କୋଳାହଳ , ଶୋକ ରୋଦନରେ ବ୍ୟଥିତ ସେହି ମହୀୟସୀ ମା'ର ବିନିଦ୍ର ଯନ୍ତ୍ରଣା ମୁହୂର୍ତ୍ତରେ ତମେ କ'ଣ ଅଂଶୀଦାର ହୋଇଛ ?' ମାନବ ଓ ପ୍ରକୃତି ଜଗତ ମଧ୍ୟରେ ଥିବା କେଉଁ ସୂକ୍ଷ୍ମ ଓ ଗଭୀର ଚେତନାର ସ୍ତରରେ ଯେଉଁ ଗୋପନ ସଂପର୍କ ସୂତ୍ର ଯେ ମିଳାଇ ରଖିଛି ଏଇ କଥାର ସୂଚନା ଦେଇ କବି କହନ୍ତି ଦିନ ଆସିବ ଯେତେବେଳେ ପୃଥିବୀର ମମତାମୟ ହାତ ଅହଲ୍ୟା ଉପରୁ ମନୁଷ୍ୟକୃତ ସବୁ ପାପର କଳଙ୍କକୁ ପୋଛି ପକାଇବ ଓ ସେ ପୁଣି ଧରିତ୍ରୀ ମା'ର ଗର୍ଭରୁ ଜନ୍ମ ନେବ । ବିସ୍ମୃତ ଅତୀତର ମହାସାଗରର ନୀଳବକ୍ଷରୁ ଉଷାଭଳି ସତେଜ ଓ ସୁନ୍ଦର ରୂପ ଧରି ନବଜାତ ସତୀ କିଶୋରୀ ବେଶରେ ।

କିନ୍ତୁ ସେ ଯାହାହେଉ ପ୍ରକୃତିର ରହସ୍ୟ ବିଷୟରେ ନିଜର ବ୍ୟକ୍ତିଗତ ଅନୁରାଗ ଓ ଅନୁଧ୍ୟାନକୁ ଲାଳନ କରିବାର ଆନନ୍ଦରେ କବି ଯେତେ ମଜ୍ଜି ରହୁଥିଲେ ବି ତାଙ୍କର ଚତୁଃପାର୍ଶ୍ୱରେ ସମାଜରେ ଘଟିଯାଉଥିବା ଘଟଣା ସଂପର୍କରେ ସେ ସଂପୂର୍ଣ୍ଣ ଉଦାସୀନ ରହିପାରୁ ନଥିଲେ । ନିଜ ଦେଶର ଜନଗଣଙ୍କୁ ଗଭୀର ଭାବରେ ଭଲପାଉଥିବା ଏଇ ସ୍ୱଦେଶପ୍ରେମୀ କବି ଆପଣା ଲୋକଙ୍କ ଦୋଷ ଦୁର୍ବଳତାର କଠୋର ସମାଲୋଚକ ଥିଲେ । ''ଦୁରନ୍ତଆଶା'' ନାମକ ଏକ କବିତାରେ ସେ ବର୍ଣ୍ଣନା କରିଛନ୍ତି ଯେ କିପରି ନିଜର ଆର୍ଯ୍ୟ-ଐତିହ୍ୟ ଓ ଅତୀତର ଗୌରବପାଇଁ ଗର୍ବ ଅନୁଭବ କରୁଥିବା ଏଇ ସ୍ୱଭାବ ସୁଲଭ ଅନ୍ନଗତପ୍ରାଣ ବଙ୍ଗାଳୀମାନେ ଭୀରୁ ଓ କାପୁରୁଷ ପରି ଆପଣା ଘରେ ଲୁଚିରହିବା ଛଡା ବାହାରକୁ ବାହାରିବାକୁ ଚାହାନ୍ତି ନାହିଁ । କେବଳ ହୁକା ଟାଣି ତାସ ଖେଳରେ ମାତିରହୁଥିବା ବେଳେ ଦୁରନ୍ତ ଆଶା ମନକୁ ତାଙ୍କର ଆଘାତ କରୁଥାଏ । ବରଂ

ଏହାଠାରୁ ଭଲ ''ଯଦି ମୁଁ ଆରବର ବେଦୁଇନ୍‌ଟିଏ ହୋଇଥାଆନ୍ତି ! ପାଦତଳେ ମୋର ସୀମାହୀନ ଦିଗନ୍ତବିସ୍ତାରୀ ମରୁଭୂମି, ଘୋଡା ଦୌଡରେ ବାଲିସବୁ ଉଡେ, ଆକାଶରେ ମୁଁ ମିଶିଯାଉଥାଏ, ଦିବାରାତ୍ରି ମୋ ହୃଦୟରେ ଆଶାର ବହ୍ନି ଜଳେ, ହାତରେ ବର୍ଚ୍ଛା ଓ ମନରେ ସାହସ ବାନ୍ଧି ଉଦ୍‌ବାସ୍ତୁ ହୋଇ ମୁଁ ବୁଲୁଥାଏ ମରୁଭୂମିରେ ମୁକ୍ତ ପବନ ପରି ।''

ବ୍ୟଙ୍ଗ ଓ ବିଦ୍ରୂପ କରିବାରେ କବିଙ୍କର ଅଦ୍ଭୁତ କ୍ଷମତା ଏଇ କବିତାଗୁଡିକରେ ପ୍ରକାଶ ପାଇଛି । ଏଥିମଧ୍ୟରୁ ଗୋଟିଏ କବିତାରେ କବି ଦେଶ ଗଠନରେ ବ୍ୟସ୍ତ ଆମର 'ଜାତୀୟତାବାଦୀ ବୀର' ମାନଙ୍କୁ ଅଭିନନ୍ଦନ ଜଣାଇଛନ୍ତି ଯେଉଁମାନେ ନିଜକୁ ସହଜ ଭାବରେ ଖୁସି ରଖନ୍ତି ଓ ଯେଉଁମାନେ ସେମାନଙ୍କୁ ଖୁସି କରାନ୍ତି ନାହିଁ ସେମାନଙ୍କୁ ନିନ୍ଦା କରି ସମୟ କଟାନ୍ତି, ଅଭିଯୋଗ ଲେଖିବାରେ ଦିସ୍ତା ଦିସ୍ତା କାଗଜ ନଷ୍ଟ କରନ୍ତି ଓ କାଳି କଲମ ଧର ଯୁଦ୍ଧ ଡାକରା ଦେଉଥାନ୍ତି । 'ବଙ୍ଗବୀର' କ୍ରୋମୱେଲ ଓ ମାଜିନୀଙ୍କ ବିଷୟରେ ପଢ଼ିଥିବା ପୁସ୍ତକକୀଟ ବୀରମାନଙ୍କୁ ପରିହାସ କରନ୍ତି ଓ ନିଜକୁ ଶ୍ରେଷ୍ଠ ମନେକରି କହିବୁଲୁଥାନ୍ତି ଯେ ମାକ୍ସମୁଲାର କ'ଣ ଆମକୁ ଆର୍ଯ୍ୟ କହିନାହାନ୍ତି କି ?

ଆଉ ଗୋଟିଏ ହାସ୍ୟରସାତ୍ମକ କବିତାରେ ନିଜର ବାଳିକାବଧୂ ସହ ପ୍ରେମ କରୁଥିବା ଜଣେ ନବବିବାହିତ ତରୁଣଙ୍କୁ କବି ପରିହାସ କରିଛନ୍ତି । ସ୍ୱାମୀର ମଧୁର ବାର୍ତ୍ତାଳାପ ବିଚାରୀ ବାଳିକାଟିକୁ ଭୀତ କରାଉଛି ଓ ସେ କାନ୍ଦି ଉଠି ତାର ଆୟା ଓ କଣ୍ଢେଇକୁ ଖୋଜୁଛି । ଆହୁରି ବିଚକ୍ଷଣ ଭାବେ ଅନ୍ୟଦୁଇଟି କବିତାରେ କବି ଆବେଗୋଷ୍ଣ ପ୍ରେମର ଟ୍ରାଜେଡିକୁ ବର୍ଣ୍ଣନା କରିଛନ୍ତି । ବିବାହିତ ଜୀବନର ଅଳ୍ପ କେତେକ ବର୍ଷ ଭିତରେ ସବୁ ଆବେଗ ଶିଥିଳ ହୋଇ ଆସିଥାଏ । ଗୋଟିକରେ ନାରୀମନର ଅଗଭୀର ଦୁଃଖ ଓ ମୃଦୁ ଭର୍ତ୍ସନା ପ୍ରକାଶ ପାଇଛି ଓ ଅନ୍ୟଟିରେ ପ୍ରକାଶ ପାଇଛି ପୁରୁଷର ଯୁକ୍ତିସମ୍ମତ ବାହାନା ଯାହା ନାରୀ ମନରେ ସାନ୍ତ୍ୱନା ନଦେଇ ବରଂ ତାକୁ ସନ୍ତାପିତ କରେ । ଜଟିଳ ପୁରୁଷ ମନର ଜାନ୍ତବ ବାସନା ଓ ବୃଥା ଅହଂକାରକୁ ବୁଝିବା ଅପେକ୍ଷା ବହୁ ସୂକ୍ଷ୍ମ ଓ ଗଭୀରତର ଭାବରେ କବି ନାରୀ ହୃଦୟକୁ ବୁଝିପାରୁଥିଲେ ।

କେବେ କେବେ ଭାରତୀୟ ଆତ୍ମା ତାଙ୍କର ଅଧ୍ୟାତ୍ମିକତାରେ ମୁକ୍ତି ଲୋଡୁଥିଲା, ଜୀବନର ମୋହଭଙ୍ଗ ଘଟୁଥିଲା, ''ମଳିନ ଚିନ୍ତାରେ ବିମର୍ଷ ହୋଇ ରହୁଥିଲେ ।'' ଯେପରିକି ପ୍ରସ୍ପେରୋର ଯାଦୁବାଡି ଭାଙ୍ଗି ଯାଇଛି, ଜଗତ ଓ ଜୀବନର ସବୁ ବିଚିତ୍ର ବର୍ଣ୍ଣବିଭା କ୍ଷଣକେ ତୁଚ୍ଛ ହୋଇ ପଡ଼ିଛି । ତେବେ କାହିଁକି ଏସବୁ କାମନାର ଯନ୍ତ୍ରଣା ? ସବୁତ ଛାୟାଭଳି ମିଳାଇଯିବ । ପ୍ରାପ୍ତି ଓ ଅପ୍ରାପ୍ତି ସବୁର ସମାପ୍ତି ଶେଷ ନିଶ୍ୱାସରେ । ବେଳେ ବେଳେ ସେ ଅନୁଭବ କରନ୍ତି ଅତୀତର ସବୁପ୍ରେମ ପରି ଜୀବନରେ ସେ ଯେତେ ପ୍ରେମ କଥା ଜାଣିଛନ୍ତି ଏ ସବୁଥିରେ ସେ ଗୋଟିଏ ସତ୍‌ପ୍ରେମ କୁ ହିଁ ଖୋଜିବୁଲିଛନ୍ତି, ତାହା ହେଲା ବିଭୁପ୍ରେମ । ସତ୍ତାର ଅତନ୍ଦ୍ର ଅନ୍ୱେଷଣ ସର୍ବଶେଷ ଲକ୍ଷ୍ୟପଥରେ ଅଜ୍ଞାତର ଅନୁସନ୍ଧାନ, ଆଧ୍ୟାତ୍ମିକ ସଚେତନତା, ପରମେଶ୍ୱରଙ୍କ ସହିତ ସନ୍ତୋଷଜନକ ଓ ଆନ୍ତରିକ ସମ୍ପର୍କ ସ୍ଥାପନ କରିବାର ଆବଶ୍ୟକତା ଯାହା ଗୀତାଞ୍ଜଳି ପର୍ବରେ ସାନ୍ଦ୍ର ଓ ନିଗୂଢ଼ ହୋଇ ଉଠିଲା ତାହା ଏହି ସମୟରେ ପ୍ରଥମେ କବିଙ୍କ ଅନ୍ତରକୁ ଆନ୍ଦୋଳିତ କରିଥିଲା । କିନ୍ତୁ ଏ ସମୟରେ ଜୀବନ ପ୍ରେମ ଥିଲା ସବଳ, ଆଧ୍ୟାତ୍ମିକ ଚେତନା ଉତ୍‌କୂଳ ହୋଇ ନ ଥିଲା । ତେଣୁ 'ଆଶଂକା' ନାମକ କବିତାଟିରେ କବି ଭାବିଛନ୍ତି ''ସବୁ କ୍ଷୁଦ୍ର ପ୍ରେମ ଗୋଟିଏ ମହାନ୍ ପ୍ରେମରେ ମିଳିତ ହୋଇଯିବା କ'ଣ ଠିକ୍ ?'' ଲକ୍ଷତାରକାର ଆଲୋକ ଗୋଟିଏ ମହାନ୍

ଆଲୋକରେ ମିଶିଯାଇ ଉଜ୍ଜ୍ୱଳିତ ହୋଇ ଉଠିବ ? ସାହିତ୍ୟ କ୍ଷେତ୍ରରେ ତରୁଣକବି ଯେତେ ପ୍ରତିଷ୍ଠା ପାଇଥିଲେ ସୁଦ୍ଧା ମହର୍ଷିଙ୍କର ଦୃଢ଼ ମତ ଥିଲା ଯେ ତାଙ୍କୁ ଜମିଦାର ଘରର ପୁଅ ଓ ସଦସ୍ୟଭାବରେ କିଛି ଦାୟିତ୍ୱ ଗ୍ରହଣ କରିବାକୁ ପଡିବ । ରବୀନ୍ଦ୍ରନାଥ ଆଉ ବାପାଙ୍କ ନିର୍ଦ୍ଦେଶକୁ ନ ମାନି ରହିପାରିଲେ ନାହିଁ । ସେତେବେଳେ ଉତ୍ତର-ପୂର୍ବ ବଙ୍ଗ ଓ ଓଡିଶାରେ ଥିବା ଜମିଦାରୀ ଖମାରର ଦାୟିତ୍ୱ ତାଙ୍କୁ ନବାକୁ ପଡିଲା । ପ୍ରଥମରୁ ଏଇ ଗୁରୁ ଦାୟିତ୍ୱ ହୁଏତ ତାଙ୍କୁ ବିଚଳିତ କରିଥିବ କିନ୍ତୁ ପରେ ସେ ଏଥିପାଇଁ ପିତାଙ୍କ ପ୍ରତି କୃତଜ୍ଞ ଥିଲେ । ନିଜକୁ ମଣିଷ କରି ଗଢ଼ିବା ପାଇଁ କେବଳ ଏହାର ଆବଶ୍ୟକତା ନଥିଲା, ତା ଠାରୁ ବେଶି ଥିଲା । ଏଇ କିଛି ବର୍ଷ ମଧ୍ୟରେ ପଲ୍ଲୀ ଅଞ୍ଚଳ ବୁଲିବାର ସୁଯୋଗ ପାଇ ପ୍ରକୃତି ସହିତ ଯେପରି ଏକାତ୍ମ ହୋଇ ପାରିଥିଲେ ଓ ନିଜ ଦେଶର ପଲ୍ଲୀ ପ୍ରକୃତିର ଦିଗ୍‌ଦୃଶ୍ୟକୁ ଯେପରି ଭାବରେ ଦେଖିଥିଲେ ତାହା ଅନ୍ୟଥା ହୋଇପାରି ନଥାନ୍ତା । ଏସବୁ ଥିଲା ତାଙ୍କ କବିତା ପାଇଁ ଅତ୍ୟନ୍ତ ସମୃଦ୍ଧ ରସଦ । ଏହାଠାରୁ ଆହୁରି ସମୃଦ୍ଧତର ଅଭିଜ୍ଞତା ସେ ଲାଭ କରିଥିଲେ ମାଟିର ମଣିଷର ବାସ୍ତବ ଜୀବନ ସହିତ ମିଶି ଓ ସେମାନଙ୍କର ଦୈନନ୍ଦିନ ଜୀବନର ସୁଖଦୁଃଖ ପ୍ରକୃତିର ପ୍ରତିକୂଳତା,ରକ୍ଷଣଶୀଳ ସମାଜର ବାଧାବନ୍ଧନ, ଓ ସର୍ବୋପରି ବିଦେଶୀମାନଙ୍କର ରାଜନୈତିକ ଶାସନ ଭିତରେ ଜୀବନଧାରଣ କରିବା ପାଇଁ ସେମାନଙ୍କର ଚିରନ୍ତନ ସଂଘର୍ଷ ବିଷୟରେ ଜାଣି ।

ତାଙ୍କର ସୃଷ୍ଟିଶୀଳ ପ୍ରତିଭା ପାଇଁ ଏହା ପ୍ରକୃଷ୍ଟ ଭିତ୍ତିଭୂମି ହୋଇ ଗଢ଼ିଉଠିଥିଲା । ଏଥିରୁ ଏ ଦେଶର ସାମାଜିକ ଓ ଅର୍ଥନୈତିକ ଅବସ୍ଥାର ସଠିକ ନିଦାନ ଜାଣି ନିଜକୁ ଜଣେ ସାର୍ଥକ କ୍ଷୁଦ୍ରଗଳ୍ପ ଲେଖକ ଭାବରେ ସେ ଗଢ଼ିପାରିଥିଲେ । ଏଇ ସମୟରେ ଲେଖା, ତାଙ୍କର ଅନେକ ଚିଠି, ସେଥିରୁ ଅଧିକାଂଶ ତାଙ୍କର ଆଦରର ଝିଆରୀ ଇନ୍ଦିରାକୁ ଲେଖା ପରେ 'ଛିନ୍ନ ପତ୍ର' ନାମରେ ସଂକଳିତ ହୋଇ ପ୍ରକାଶ ପାଇଛି । (ଇଂରାଜୀରେ Glimpses of Bengal ନାମରେ ଅନୂଦିତ ହୋଇଛି ।) ଏଥିରେ ଶ୍ରଦ୍ଧାଶୀଳ ମଣିଷ ଭାବରେ ତାଙ୍କ ହୃଦୟର ବିପୁଳ ଅନୁକମ୍ପା ଓ କବିଭାବରେ ତାଙ୍କର ଗଭୀର ଭାବାନୁଭୂତି ପ୍ରକାଶ ପାଇଛି । ପ୍ରକାଶନ ପାଇଁ ଉଦ୍ଦିଷ୍ଟ ନଥିବାରୁ କବି ଏସବୁ ମୁକ୍ତ ଓ ଆତ୍ମସଚେତନ ଶୂନ୍ୟ ଭାବରେ ଲେଖିଛନ୍ତି । କେବଳ ବଙ୍ଗଭୂମିର ପରିଚୟ ଏଥିରେ ନାହିଁ, ଅଛି ଲେଖକଙ୍କର ଆତ୍ମବିକାଶର ନିଦର୍ଶନ ।

ପ୍ରକୃତିର ଦୁଇଟି ରୂପକୁ ସେ ସବୁଠାରୁ ଭଲପାଉଥିଲେ ଗୋଟିଏ ସ୍ଥିର ଓ ଅନ୍ୟଟି ଚଞ୍ଚଳ । ଗୋଟିକର ସ୍ୱରୂପ ଆକାଶ ଓ ଅନ୍ୟଟିର ନଦୀ । ହୃଦୟର ଗଭୀରତମ ପ୍ରଦେଶରେ ସେ ଏହାରି ଭିତରେ ଏକାତ୍ମ ହୋଇ ରହିଥିଲେ । ତାଙ୍କ ପରି ପ୍ରକୃତରେ ବହୁତ କମ୍ କବି ଏତେ ଗଭୀର ଭାବରେ ଭୁବନକୁ ଭଲ ପାଇଥିଲେ । ଭୁବନର ଆନନ୍ଦ ରୂପ-ଉପରେ ଓ ତଳେ ତା'ର ଇନ୍ଦ୍ରିୟୋତ୍ତର ଅପରିସୀମ ବିସ୍ତୃତି- ଏସବୁ କବିଙ୍କୁ ଭାବବିଭୋର କରିଥିଲା । ବାରମ୍ବାର ସେ ଭୁବନ ପ୍ରତି ଆକର୍ଷଣ'ର କଥା କହୁଥିଲେ । ଥରେ ଲେଖିଥିଲେ ''ମୃତ୍ୟୁଶଯ୍ୟାରେ ଗ୍ୟେଟେ ଚାହିଁଥିଲେ ଆହୁରି ଆଲୋକ । ଏପରି ସମୟରେ ମୁଁ ଚାହିଁଥାନ୍ତି ଭୁବନରେ ଆହୁରି ସ୍ଥାନ ।''

ଗୋଟିଏ ଚିଠିରେ ସେ ବର୍ଣ୍ଣନା କରିଛନ୍ତି ଦିନେ ସଂଧ୍ୟାବେଳେ ନନ୍ଦନତତ୍ତ୍ୱ ବିଷୟରେ ଗୋଟିଏ ଇଂରାଜୀ ଗ୍ରନ୍ଥ ପାଠ କରୁଥିଲାବେଳେ ତାଙ୍କର ମନେ ହେଲା ଯେ ଛଳନାପୂର୍ଣ୍ଣ ମରିଚୀକା ପଛରେ ଦୌଡି କ୍ଳାନ୍ତଶ୍ରାନ୍ତ ହୋଇ ପଡିଛନ୍ତି । ବହିଟିକୁ ଟେବୁଲ ଉପରେ ଥୋଇ ଦେଇ ଲ୍ୟାମ୍ପ ଲିଭାଇ ସେ ଶୋଇବାକୁ ବାହାରିଲେ । ସେତେବେଳକୁ ରାତିର ବିଳମ୍ବିତ ପ୍ରହର; ମୁକ୍ତ ବାତାୟନ

ଦେଇ ଚନ୍ଦ୍ରାଲୋକ ତାଙ୍କ ଶୟନକକ୍ଷକୁ ଆଲୋକିତ କରୁଥିଲା । ଜ୍ୟୋସ୍ନା ପ୍ଳାବିତ ଆକାଶକୁ ଦେଖି ତାଙ୍କର ମନେହେଲା କିପରି ମଣିଷ ଗଢ଼ା କ୍ଷୁଦ୍ର ବତୀଟିଏ ପ୍ରକୃତିର ଏସବୁ ସୌନ୍ଦର୍ଯ୍ୟ ଠାରୁ ସାର୍ଥକ ଭାବରେ ଆମକୁ ଦୂରେଇ ରଖିପାରୁଛି ।

ନିଜ ପତ୍ନୀ ଓ ପିଲାମାନଙ୍କୁ ଦେଖିବାପାଇଁ ସେ ପ୍ରାୟ କଲିକତା ଆସୁଥିଲେ । ତାଙ୍କ ପରିବାର ପକ୍ଷରୁ ପୁରୁଣା 'ଭାରତୀ' ପତ୍ରିକା ବଦଳରେ 'ସାଧନା' ନାଁରେ ଆଉ ଗୋଟିଏ ନୂଆ ସାହିତ୍ୟ ପତ୍ର ପ୍ରକାଶନ ଆରମ୍ଭ ହୋଇଥିଲା । କବିତା, ନାଟକ, କ୍ଷୁଦ୍ରଗଳ୍ପ, ସାହିତ୍ୟ ସମାଲୋଚନା ପ୍ରବନ୍ଧ ଓ ଜାତୀୟ ତଥା ସାମାଜିକ ସମସ୍ୟାମୂଳକ ବହୁ ଆଲୋଚନା ପ୍ରଭୃତି ରବୀନ୍ଦ୍ରନାଥଙ୍କର ସୃଷ୍ଟିଶୀଳ ପ୍ରତିଭାର ବହୁବିଧ ରୂପ ଚାରିବର୍ଷ ପ୍ରକାଶ ପାଇଥିବା ଏଇ ପତ୍ରିକାଟିର ପୃଷ୍ଠା ମଣ୍ଡନ କରିଥିଲା । ଏଇ ସମୟଠାରୁ ତାଙ୍କ ରଚନାରେ ପରିପକ୍ୱ ଚେତନାର ଛାପ ଦେଖିବାକୁ ମିଳିଲା । ଯାହା ଲେଖନୀରୁ ନିସୃତ ହେଲା ତାହା ତାଙ୍କ ଭାଷାର ସାହିତ୍ୟରେ ଅକଥିତ ଭାବ ଓ ପ୍ରକାଶଭଙ୍ଗୀକୁ ଆଲୋକିତ କରିବାକୁ ସମର୍ଥ ହେଲା । ରଚନା ରୀତିରେ ନୂତନ ପରୀକ୍ଷା ଓ ପ୍ରୟୋଗ ସେ କରୁଥିଲେ; ଏ ଦିଗରେ ତାଙ୍କ ପ୍ରୟାସଥିଲା ଅଶେଷ । ତାର ଅର୍ଥ ନୁହେଁ ଯେ ସେ ନିଜର ରଚନା ଶୈଳୀକୁ ପ୍ରତିଷ୍ଠା ଦେଇନଥିଲେ ବରଂ ପରୀକ୍ଷା ଓ ପ୍ରୟୋଗ କ୍ଷେତ୍ରରେ ଆବିଷ୍କାରର ଶେଷ ନାହିଁ ବୋଲି ସେ ଏଥିରେ ଶେଷ ପର୍ଯ୍ୟନ୍ତ ନିଜକୁ ନିୟୋଜିତ କରିଥିଲେ ।

'ଚିତ୍ରାଙ୍ଗଦା' ତାଙ୍କର ଗୋଟିଏ ଅତ୍ୟନ୍ତ ସୁନ୍ଦର ନାଟକ ଏଇ ସମୟର ରଚନା । 1891ରେ ରଚିତ ଏଇ ନାଟକଟି ପରବର୍ଷ ପ୍ରକାଶ ପାଇଥିଲା । ଏହା ଥିଲା ତାଙ୍କର ବସନ୍ତ ଋତୁରେ ଲେଖା ଏକମାତ୍ର ନାଟକ । ସେ ଲେଖିଛନ୍ତି ଯେ ''ଶୀତଋତୁରେ ଗୀତିମୟ ତରଳତା ଥଣ୍ଡାରେ ଜମାଟ ବାନ୍ଧି ଯାଇଥିଲା ବେଳେ ନାଟକ ଲେଖିବାପାଇଁ ଅବସର ମିଳେ ।'' ଆଉ ଏହାଥିଲା ଏକ ଅନନ୍ୟ ସାଧାରଣ ଗୀତିନାଟ୍ୟ । ଏହାର ଛତ୍ରେ ଛତ୍ରେ ବସନ୍ତର ମଳୟ ପ୍ରବାହ । ଇନ୍ଦ୍ରିୟଭୋଗ୍ୟ ଆନନ୍ଦର ଉଜ୍ଜ୍ୱଳତାରେ ଏହା ପ୍ରାଣବନ୍ତ । ପ୍ରକୃତତଃ ବସନ୍ତର ରସୋଲ୍ଲାସ ଓ ଇନ୍ଦ୍ରିୟାବେଗର ସ୍ଫୂର୍ତିହିଁ ଏହି ନାଟକର କଥାବସ୍ତୁ । ବସନ୍ତ ନିଜେ ହିଁ ନାଟକର ଗୋଟିଏ ଚରିତ୍ର ଭାବରେ ଅବତୀର୍ଣ୍ଣ ହୋଇଛି । ରବୀନ୍ଦ୍ରନାଥଙ୍କର ଏହା ଅନ୍ୟତମ ଶ୍ରେଷ୍ଠ ନାଟକ । ସୃଷ୍ଟିକଳା ଭାବରେ ପ୍ରାୟତଃ ଭ୍ରମଶୂନ୍ୟ ଓ ଏକ ସ୍ୱତନ୍ତ୍ର ପର୍ଯ୍ୟାୟଭୁକ୍ତ । ଏହାଥିଲା କବିଙ୍କର ମୁକ୍ତ ଛନ୍ଦର ଶେଷ ରଚନା । ମହାଭାରତର ଏଇ ସାଧାରଣ ଓ ବୈଚିତ୍ର୍ୟହୀନ କଥନିକାଟି ରବୀନ୍ଦ୍ରନାଥଙ୍କ ଅନୁସୃଷ୍ଟିରେ ହୋଇଉଠିଛି ଗୀତିମୟ ଚିରଚଞ୍ଚଳ ଏକ ଆବେଗୋଷ୍ଣପୂର୍ଣ୍ଣ ମନସ୍ତାତ୍ତ୍ୱିକ ନାଟିକା ।

ପୁଅ ରୂପରେ ପାଳିତ ହୋଇ ନିଷ୍ଠୁର ଯୁଦ୍ଧବିଦ୍ୟା ଶିଖୁଥିବା ରାଜକନ୍ୟା ଚିତ୍ରା ଖୁବ୍ କର୍କଶ ଦିଶୁଥିଲେ । ''ଅନ୍ୟର ହୃଦୟକୁ ଜିଣିବାର କୌଣସି ନାରୀସୁଲଭ ଚାତୁର୍ଯ୍ୟ ତାଙ୍କର ନଥିଲା ।'' ହାତରେ ସେ ତୀର ମାରି ଜାଣିଥିଲେ କିନ୍ତୁ ଆଖିରେ ନୁହେଁ । ଦିନେ ପୁରୁଷ ଶିକାରୀ ବେଶରେ ହରିଣଟି ପଛରେ ଦୌଡୁଦୌଡୁ ପଥରେ ପଡିଥିବା ଜଣେ ପୁରୁଷଙ୍କୁ କୁଦି ଦେଇଥିଲେ । ତାଙ୍କୁ ଘୁଞ୍ଚିଯିବା ପାଇଁ କହିଲେ କିନ୍ତୁ ତା ନହେବାରୁ ନିଜର ତୀର ମୁନରେ ସେ ତାଙ୍କୁ ଆଘାତ କଲେ । ଅଗ୍ନିଶିଖା ପରି ପୁରୁଷ ଠିଆ ହୋଇ ଉଠିଲେ ଓ ଶିକାରୀ ବେଶରେ ଜଣେ ଝିଅକୁ ଦେଖି ଅଟ୍ଟା କରି ହସିଲେ । ''ତା'ପରେ ଜୀବନରେ ପ୍ରଥମ ଥର ପାଇଁ ମୁଁ ଅନୁଭବ କଲି ଯେ ମୁଁ ଜଣେ ନାରୀ ଓ ମୋ ସମ୍ମୁଖରେ ଉଭା ଜଣେ ପୁରୁଷ ।'' ସେ ତାଙ୍କ ପରିଚୟ ପଚାରିଲେ । ''ମୁଁ ଅର୍ଜୁନ ମହାକୁରୁ ବଂଶର ଉତ୍ତରାଧିକାରୀ''- ସେ ଉତ୍ତରଦେଲେ । ରାଜକନ୍ୟା ସ୍ତବ୍ଧ ହେଲେ । ଏଇ ସେହି

ମହାବୀର, ଯାହାଙ୍କୁ ଯୁଗେ ଯୁଗେ କୁମାରୀ କନ୍ୟାମାନେ ସ୍ୱପ୍ନରେ ବନ୍ଦନା କରନ୍ତି । ହଠାତ୍ ସେ ହତବାକ୍ ହୋଇ ପଡିଲେ ଏପରିକି ଏହି ମହାବୀରଙ୍କୁ ଅଭିବାଦନ ଜଣାଇବାକୁ ଭୁଲିଗଲେ । ଶଙ୍କିତ ପାଦରେ ସେ ପଳାୟନ କରିଲେ ।

ପରଦିନ ପ୍ରଭାତରେ ପୁରୁଷ ବେଶ ତ୍ୟାଗ କରି ନାରୀର ସୁକୁମାର ବେଶରେ ସଜ୍ଜିତ ହୋଇ ବନପଥରେ ଅର୍ଜୁନଙ୍କୁ ଆହ୍ୱାନ କରି ତାଙ୍କର ପ୍ରଣୟ ପ୍ରାର୍ଥନା କରିଲେ । କିନ୍ତୁ ଅର୍ଜୁନ ତାଙ୍କୁ ପ୍ରତ୍ୟାଖ୍ୟାନ କରି କହିଲେ ଯେ ସେ ଗୋଟିଏ ପ୍ରତିଜ୍ଞା ପାଳନ କରୁଛନ୍ତି ତେଣୁ ନାରୀକୁ ସ୍ପର୍ଶ କରିବେ ନାହିଁ । ପ୍ରଚଣ୍ଡ କ୍ଷୁବ୍ଧ ଓ ଅପମାନିତ ହୋଇ ଚିତ୍ରା ତାଙ୍କ ଧନୁଟିକୁ ଦୁଇଖଣ୍ଡ କରିଦେଲେ ଓ ପ୍ରଣୟ ଦେବତା ମଦନଙ୍କ ଉଦ୍ଦେଶ୍ୟରେ ତପସ୍ୟା କରିଲେ । ତାରୁଣ୍ୟର ଦେବତା ବସନ୍ତକୁ ସାଙ୍ଗରେ ନେଇ ମଦନ ତାଙ୍କ ଆଗରେ ଉଭା ହେଲେ । ରାଜକନ୍ୟା ଚିତ୍ରା ବର ମାଗିଲେ "ଦିନଟିଏ ପାଇଁ ମାତ୍ର ମୋତେ ଅନିନ୍ଦ୍ୟ ସୁନ୍ଦରୀ କରିଦିଅ, ଠିକ୍ ମୋ ହୃଦୟରେ ସହସା ଜାତ ହୋଇଥିବା ପ୍ରେମ ପରି । ଆଉ ତା' ପର ଦିନସବୁ ମୋର ।" ଦେବତାମାନେ ତାଙ୍କୁ ଏଇ ଅନିନ୍ଦ୍ୟ ସୁନ୍ଦରୀ ବର ଦେଲେ । କେବଳ ଦିନଟିଏ ପାଇଁ ନୁହେଁ ଗୋଟିଏ ବର୍ଷ ପାଇଁ ।

ଚିତ୍ରା, ଅପରୂପ ଲାବଣ୍ୟମୟୀ ଏକ ଚିତ୍ରପ୍ରତିମା ହୋଇ ଉଠିଲେ । ଅରଣ୍ୟ ପୋଖରୀରେ ଦିନେ ଚିତ୍ରା ଜଳକ୍ରୀଡା କରୁଥିଲାବେଳେ ଅର୍ଜୁନ ତାଙ୍କୁ ଦେଖି ଆତ୍ମହରା ହୋଇପଡିଲେ, ନିଜର ପ୍ରତିଜ୍ଞା ଭୁଲି ତାଙ୍କର ପ୍ରେମ ପ୍ରାର୍ଥନା କଲେ । କିଛି ମାସ ଦୁହେଁ ପ୍ରେମରେ ମାତି ଉଠିଲେ । କିନ୍ତୁ ଚିତ୍ରା ସଂପୂର୍ଣ୍ଣ ଖୁସି ନଥିଲେ । ଅନ୍ୟଠାରୁ ପାଇଥିବା ସୌନ୍ଦର୍ଯ୍ୟରେ ନିଜର ପ୍ରେମିକକୁ ମୁଗ୍ଧ କରିଥିବାରୁ ସେ ଲଜ୍ଜିତ ମନେକରୁଥିଲେ । ନିଜ ଶରୀରରେ ନିଜର ପ୍ରତିଦ୍ୱନ୍ଦୀ ସୃଷ୍ଟି କରିବାରୁ ସେ ଭୟ ପାଉଥିଲେ । "ମୁଁ ବୁଝିଲି ମୋ ଶରୀରହିଁ ମୋର ପ୍ରତିଦ୍ୱନ୍ଦୀ ହୋଇ ଉଠିଛି । ପ୍ରତିଦିନ ତାର ଯତ୍ନନେବା ଏବେ ମୋର ଗୋଟେ ଘୃଣ୍ୟ କାର୍ଯ୍ୟ ହୋଇପଡିଛି, ପ୍ରଣୟୀ ପାଖକୁ ସେଇ ଶରୀରକୁ ପଠାଇବା ଓ ତାଙ୍କ ସହିତ ଉପଭୋଗକୁ ଚାହିଁରହିବା ମଧ୍ୟ ମୋର ଅସହ୍ୟ ହୋଇ ଉଠିଲାଣି । ହେ ଦେବଗଣ, ବର ତମର ଫେରାଇ ନିଅ ।" ଦେବଗଣ ଆଶ୍ୱାସନା ଦେଲେ । ସମୟକ୍ରମେ ଫୁଲ ମଉଳିଯିବ ଓ ସେଥିରୁ ଫଳ ଧରିବ । ଅର୍ଜୁନ ବି ରକ୍ତମାଂସର ସୌନ୍ଦର୍ଯ୍ୟ ପ୍ରତି ମନରେ ଅନାସ୍ଥା ଜନ୍ମାଇ ପ୍ରକୃତ ନାରୀଟିକୁ ଖୋଜି ବୁଲିବେ । ଏତିକି ସମୟ ପାଇଁ "ହେ ବାଳିକା ତୁମର ପୂର୍ବ ଜୀବନକୁ ଫେରି ଯାଅ ।"

ତାହା ହିଁ ହେଲା । ଆନନ୍ଦର ଏଇ ଦିନ ଆଉ ତିଷ୍ଠି ରହିଲା ନାହିଁ, ତାର ପ୍ରତିକ୍ରିୟା ଜନ୍ମିଲା । ଅର୍ଜୁନଙ୍କ ଭିତରେ ଥିବା ଯୋଦ୍ଧାଗୁଣ ଜାଗରିତ ହେଲା । ପ୍ରଥମ କର୍ମମୟ ଜୀବନ ପ୍ରତି ଓ ତାପରେ ପ୍ରେମ ପ୍ରତି ତାଙ୍କର ଆଶା ଜନ୍ମିଲା । "ସୁଖ ଅପେକ୍ଷା ତାହା ଦୀର୍ଘସ୍ଥାୟୀ ହେବ, ଦୁଃଖ ଭିତରେ ବି ତାହା ବଂଚିରହିବ" । "ଘୋର ନିଦ୍ରା ଭାଙ୍ଗି ଶାପଗର୍ଜି ଉଠିବା ପରି" ତାଙ୍କର ହୃଦୟ ଅତନ୍ଦ୍ର ଚଂଚଳ ଥିଲା । ଦିନେ ସେ କେତେଜଣ ବନଚାରୀଙ୍କୁ ଭେଟିଲେ, ଯେଉଁମାନଙ୍କ ଠାରୁ ଶୁଣିଲେ ସେଇ ବୀର ରାଜକନ୍ୟା ଚିତ୍ରାଙ୍କ କଥା, ଯିଏ ଯେପରି ଦୟାବତୀ ଥିଲେ, ସେହିପରି ଥିଲେ ମହତ୍ । ଥିଲେ ପୁରୁଷ ପରି ସାହସୀ ଓ ଜନନୀ ପରି ସ୍ନେହଶୀଳା । ଅର୍ଜୁନ ଭାବିବାକୁ ଲାଗିଲେ, ଇଏ ପୁଣି କେଉଁ ଚିତ୍ରା ? ସେ ତାଙ୍କ ପାଖରେ ଥିବା ସୁରୂପା ଚିତ୍ରାଙ୍କୁ ପଚାରିଲେ । ସେ କହିଲେ ଯେ ଏଇ ରାଜକନ୍ୟା ଚିତ୍ରା ଅତ୍ୟନ୍ତ ସାଧାରଣ ଓ ଅସୁନ୍ଦରୀ, କୌଣସି ନାରୀସୁଲଭ ଲାବଣ୍ୟ ତାଙ୍କର ନାହିଁ, ବନ୍ଦୀଶାଳା ପରି ଗୁଣର ପ୍ରାଚୀର ଭିତରେ ତାଙ୍କର ନାରୀତ୍ୱ ଅସ୍ତିତ୍ୱହୀନ । କିନ୍ତୁ

ଅର୍ଜୁନଙ୍କର କୌତୁହଳ ବଢ଼ିବାକୁ ଲାଗିଲା ଓ ସେ ରାଜକନ୍ୟାଙ୍କୁ ଭେଟିବାପାଇଁ ଚିତ୍ରାଙ୍କୁ କହିଲେ ।

ଗୋପନ ଭାବେ ଖୁସି ହୋଇ ଚିତ୍ରା ରାଜକନ୍ୟାଙ୍କ ସହିତ ଅର୍ଜୁନଙ୍କର ପରିଚୟ କରାଇଦେବେ ବୋଲି ପ୍ରତିଶ୍ରୁତି ଦେଲେ । ସେ ତାଙ୍କର କୃତ୍ରିମ ସୌନ୍ଦର୍ଯ୍ୟ ଫେରାଇ ନେବା ପାଇଁ ଦେବଗଣଙ୍କୁ ପ୍ରାର୍ଥନା କଲେ । ଦେବତାମାନେ ତାଙ୍କର ବରଦାନ ଫେରାଇନେଲେ ଓ ଚିତ୍ରା ସଙ୍ଗେ ସଙ୍ଗେ ନିଜର ପୂର୍ବ ରୂପ ଧାରଣ କରି ଅର୍ଜୁନଙ୍କ ସମ୍ମୁଖରେ ଉପସ୍ଥିତ ହୋଇ କହିଲେ,''ମୁଁ ଚିତ୍ରା, ମଣିପୁର ରାଜକନ୍ୟା- ପୂଜା ପାଇବା ଭଳି ଦେବୀଟିଏ ନୁହେଁ କି ପୁରୁଷକୁ ଖୁସି କରାଇବା ପରି ସାଧାରଣ ନାରୀଟିଏ ନୁହେଁ । ଯଦି ନିଜର ବିପଦସଂକୁଳ ଓ ଦୁଃସାହସିକ ଜୀବନଯାତ୍ରା ପଥରେ ସହଯାତ୍ରୀ ବନ୍ଧୁଟିଏକରି ମତେ ପାଇବାକୁ ଚାହଁ, ଯଦି ତମ ଜୀବନର ମହତ୍ତର କାର୍ଯ୍ୟରେ ଅଂଶ ଗ୍ରହଣ କରିବାକୁ ମତେଦିଅ, ତା' ହେଲେ ମୋର ପ୍ରକୃତ ପରିଚୟ ତୁମେ ପାଇବ ।'' ଅର୍ଜୁନଙ୍କ ବାକ୍ୟରେ ନାଟକର ପରି ସମାପ୍ତି ହୋଇଛି ''ପ୍ରିୟେ ! ମୋର ଜୀବନ ଆଜି ପୂର୍ଣ୍ଣ ।''

ଯେଉଁବର୍ଷ ଏହି ଗୀତିନାଟ୍ୟ ପ୍ରକାଶ ପାଇଥିଲା ସେହିବର୍ଷ ରବୀନ୍ଦ୍ରନାଥ ତାଙ୍କର ପ୍ରଥମ ଗଦ୍ୟଶୈଳୀର ସାମାଜିକ କମେଡ଼ି ରଚନା କରି ପ୍ରକାଶ କରିଥିଲେ । 'ଗୋଡ଼ାୟ ଗଲଦ୍' ନାମକ ଏଇ ଗଦ୍ୟ ରଚନାରେ ନିହିତ ଥିବା ସାମାଜିକ ବ୍ୟଙ୍ଗ ଓ ସୂକ୍ଷ୍ମ ବୁଦ୍ଧିମତ୍ତା ଓସ୍କାର ୱାଇଲ୍ଡ଼ଙ୍କ ରଚନା ରୀତିର ସମତୁଲ୍ୟ ଥିଲା । ଓସ୍କାର ୱାଇଲ୍ଡ ମଧ୍ୟ ପ୍ରାୟ ସେଇ ସମୟରେ ଲଣ୍ଡନରେ ତାଙ୍କର କମେଡ଼ି ସବୁ ରଚନା କରୁଥିଲେ । ଏଥିରେ ତିନିଜଣ ବୌଦ୍ଧିକ ତରୁଣ ଓ ସେମାନଙ୍କ ପତ୍ନୀମାନଙ୍କର ରୋମାଣ୍ଟିକ୍ ଭାବପ୍ରବଣତା ଓ ବୈବାହିକ ସଂପର୍କ ବିଷୟରେ ବର୍ଣ୍ଣନା ଥିଲା । ଏହାର କଥାବସ୍ତୁ ସରଳ ଓ ସାଧାସିଧା, କୌଣସି ଉପକଥା ବା ଅଯୌକ୍ତିକ ବଚନିକାରେ ଭାରାକ୍ରାନ୍ତ ନୁହେଁ । ପାଠକର ମନକୁ ଆଶାତୀତ ଭାବେ ଭାରାକ୍ରାନ୍ତ ନକରି ଏହା କ୍ଲାଇମାକ୍ସକୁ ନେଇଯାଏ । ଏହାର ସଂଳାପ ଗୁଡ଼ିକ ବିଚକ୍ଷଣ ବୁଦ୍ଧିମତାରେ ପ୍ରଖର ଓ ଏଥିରେ ବ୍ୟବହୃତ ଲୌକିକ ରୁଚି ଓ ପ୍ରବଚନ ସବୁ ଅନ୍ୟ ଭାଷାରେ ଅନୁବାଦ କରିବା ଏକାନ୍ତ କଠିନ । ସମସାମୟିକ ଭିକ୍ଟୋରିୟାନ ଉପନ୍ୟାସକୁ ତାଚ୍ଛଲ୍ୟ କରି ଠାଏଁ ଲେଖାଅଛି ଜଣେ ରୋମାଣ୍ଟିକ ତରୁଣ ନିଜର ଦୈନନ୍ଦିନ ''ନିରାମିଷ ଜୀବନଯାତ୍ରା'' ବିରୁଦ୍ଧରେ ଅଭିଯୋଗ କରି, ରକ୍ତମାଂସର ଉଷ୍ମତା ନପାଇ କହୁଛି ''ଏହିଭଳି ବଞ୍ଚିବାଠାରୁ ଇଂରାଜୀ ଉପନ୍ୟାସର ଚରିତ୍ର ଭାବରେ ବଞ୍ଚିବାକୁ ମୁଁ ଚାହେଁ, ଯେଉଁଠି ମୁଁ ଜଣେ ଏଡ଼ିଥ ବା ଜଣେ ଏଲେନ୍ ବା ଜଣେ ଲିଓନାରାକୁ ଭଲ ପାଇପାରିଥାନ୍ତି, ଝିଅର ବାପା ଏଇ କଥାକୁ ପ୍ରତ୍ୟାଖ୍ୟାନ କରନ୍ତେ ଓ ଝିଅ ଆତ୍ମହତ୍ୟା କରିବାର ଭୟ ଦେଖାଇବା ପରେ ଶେଷ ପରିଚ୍ଛେଦରେ ପରିଣୟର ଶାଶ୍ୱତ ଆଶୀର୍ବାଦ ପରେ ଯବନିକା ପଡିଥାନ୍ତା । ଏଇପରି ଭାବରେ ମୋର ବହୁ ସଂସ୍କରଣ ହୋଇଥାନ୍ତା ।''

# ମାଟିର ଡାକ

*ସେଇଠି ଅଛନ୍ତି ସିଏ*
*ଯେଉଁଠି କୃଷକଟିଏ*
*କର୍କଶ ମାଟିକୁ ଚଷି କରୁଥାଏ ଚାଷ*
*ଯେଉଁଠି ଶ୍ରମିକଟିଏ ପଥ ପକାଇବା ପାଇଁ*
*ପଥରକୁ ଭାଙ୍ଗୁଥାଏ ସଦା ବାରମାସ ।*

ଦୀର୍ଘ ତପସ୍ୟାର ଫଳ ସ୍ୱରୂପ ସରସ୍ୱତୀଙ୍କୁ ପାଇସାରିବା ପରେ ନିଜ 'ଚିତ୍ରାଙ୍ଗଦା' ନାଟକର ଅର୍ଜୁନ ଚରିତ୍ର ପରି ବିସ୍ତୃତ କ୍ଷେତ୍ରରେ କର୍ମ ପ୍ରବଣତାର ପ୍ରୟୋଜନ ଅନୁଭବ କଲେ ରବୀନ୍ଦ୍ରନାଥ । ମଣିଷ ଭିତରେ ମଣିଷଟିଏ ଭଳି ଏକ ପରିପୂର୍ଣ୍ଣ ଜୀବନ ସେ ଚାହିଁଥିଲେ । ତାଙ୍କ ଭିତରର ସ୍ରଷ୍ଟା ପୁରୁଷଟି ମଧ୍ୟ ସଦ୍ୟ ଭାବବସ୍ତୁର ନବ ନବ ପରିପ୍ରକାଶକୁ ଚାହିଁ ରହିଥିଲା । ପୁଷ୍ପିତ ଲତାଟିଏ ଯେପରି ଦୃଢ଼ ବୃକ୍ଷଶାଖାକୁ ଆଧାର କରି ଆଗକୁ ମାଡ଼ି ଯିବାକୁ ଚାହେଁ, କବିଙ୍କର କଳ୍ପନା ସେପରି ବାସ୍ତବ ଦୃଷ୍ଟିକୁ ଆଧାର କରି ଦ୍ରୁତ ଦ୍ରୁମାୟିତ ହେବାରେ ଲାଗିଥିଲା । ଗ୍ରାମ୍ୟ ଜୀବନ ଆପଣା ଦେଶର ଚିହ୍ନା ମାଟି ସହିତ ତାଙ୍କର ସଂପର୍କକୁ ଘନିଷ୍ଠତର କରିଥିଲା ଆଉ ଜମିଦାରୀ ଖମାର ଦେଖିବାର ଦୈନଦିନ ଛନ୍ଦହୀନ ବ୍ୟବସାୟାତ୍ମିକା ଜୀବନଯାତ୍ରା ନିଜ ଲୋକଙ୍କର ଅଭାବଗ୍ରସ୍ତ ଜୀବନ ବିଷୟରେ ତାଙ୍କର ପ୍ରତ୍ୟକ୍ଷ ଅନୁଭୂତିକୁ ଶାଣିତ କରିଥିଲା । ତାଙ୍କ ଭିତରେ ସେମାନଙ୍କ ପ୍ରତି ଶ୍ରଦ୍ଧା ବଢ଼ିଥିଲା । ସେଇ ଶ୍ରଦ୍ଧାରୁ ସେ ସେମାନଙ୍କର ଅସହାୟତାକୁ ବୁଝିପାରୁଥିଲେ, ଠିକ୍ ଅସହାୟ ପଙ୍ଗୁ ଶିଶୁଟିର ମା ଭଳି ।

''ଏଇ କୃଷକକୁଳ ପାଇଁ ମୋ ହୃଦୟରେ ଅଫୁରନ୍ତ ଶ୍ରଦ୍ଧା । ଏଇ ମାଟିର ମଣିଷ- ଏଇ ଅନନ୍ତ ପ୍ରକୃତିର ଅସହାୟ ଶିଶୁଗଣ । ଶ୍ରମ ସେମାନଙ୍କ ପାଟିରେ ଖାଦ୍ୟ ଦିଏ, ନାହିଁ ତ ନିରୁପାୟ । ମାଟି ମାର ସ୍ତନ ଶୁଖିଗଲେ ସେମାନଙ୍କ କ୍ରନ୍ଦନ ଶୁଭେ । କୌଣସି ମତେ କ୍ଷୁଧା ଦୂର ହେଲେ ସେମାନେ ସବୁକିଛି ଭୁଲି ଯାଆନ୍ତି ।'' ପୁଣି ଆଉ ଗୋଟିଏ ଚିଠିରେ ଲେଖିଛନ୍ତି : ''ଯଦି ସବୁ ମଣିଷଙ୍କ ମନକୁ କୌଣସି ଅବଚେତନିକ ଅନ୍ତଃସ୍ରୋତ ଯୋଡ଼ି ରଖିଥାଏ ତାହେଲେ ସେମାନଙ୍କ ମଙ୍ଗଳ ପାଇଁ ମୋ ହୃଦୟର ଗଭୀର ଆକୁଳତା ନିଶ୍ଚୟ ସେମାନଙ୍କ ପାଖରେ ପହଞ୍ଚିବ ଓ ସେମାନଙ୍କ ମଙ୍ଗଳ ପାଇଁ କିଛି ନା କିଛି ସାହାଯ୍ୟ କରିବ ।''

ଏଇ ଗଭୀର ଆକୁଳତା କବିଙ୍କର କେବଳ ମୌଖିକ ବା କାବ୍ୟିକ ନଥିଲା । ବିଧାତାଙ୍କର ଅଗଣିତ ଅସହାୟ ଶିଶୁଙ୍କ ପାଇଁ ସେଇ ପରିସ୍ଥିତିରେ ଯାହା ସମ୍ଭବଥିଲା ତାହା ସେ କରିଥିଲେ ।

ଏଇ ମାନଙ୍କୁ ଆତ୍ମନିର୍ଭର କରାଇବା ପାଇଁ ସେ ଗାଁରେ ସମାଜ ମଙ୍ଗଳ କାର୍ଯ୍ୟ ପ୍ରଥମେ ଆରମ୍ଭ କରିଥିଲେ । ସେତେବେଳେ ଦେଶ ପରାଧୀନ ଥିବା ଯୋଗୁ ପ୍ରତ୍ୟେକ ସ୍ତରରେ ନ୍ୟସ୍ତସ୍ୱାର୍ଥ ଲାଗି ରହିଥିଲା । ଆଇନ୍ ଶୃଙ୍ଖଳା ରକ୍ଷା ଦିଗରେ ପ୍ରଶାସନ ପାଖରୁ ନିରପେକ୍ଷତା ଆଶା କରିବା ଥିଲା ବୃଥା । ତଥାପି ବ୍ୟକ୍ତି ନିଜର ଆତ୍ମୋଦ୍ୟମ ଛାଡି ପ୍ରତ୍ୟେକ କଥାରେ କେବଳ ରାଷ୍ଟ୍ରର ସାହାଯ୍ୟ ଓ ସହଯୋଗ ପାଇଁ ଚାହିଁ ବସିବ- ସମାଜର ଏପରି ଅବସ୍ଥାକୁ ରବୀନ୍ଦ୍ରନାଥ ଠିକ ମନେ କରୁନଥିଲେ । ସେ ମନେ କରୁଥିଲେ ଯେ ଯଦି ରାଷ୍ଟ୍ର ବ୍ୟକ୍ତି ପାଇଁ ସବୁକିଛି କରିଦେବ ତେବେ ସମସ୍ତେ ''ସେଇ ଅଗଣିତ ଅସହାୟ ଶିଶୁ'' ହୋଇ ରହିଥିବେ, ବିଧାତାଙ୍କର ନହେଲେ ବି ରାଷ୍ଟ୍ରର ।

କବିଙ୍କର ସମାଜ ମଙ୍ଗଳ କାର୍ଯ୍ୟକ୍ରମର ସୂତ୍ର ଥିଲା ଦ୍ୱିବିଧ : ଆତ୍ମ ନିର୍ଭରତା ଓ ଶିକ୍ଷା । ଦ୍ୱିତୀୟଟି ଥିଲା ଅଧିକ ଗୁରୁତ୍ୱପୂର୍ଣ୍ଣ କାରଣ ତାଙ୍କ ମତରେ ଲୋକେ ଆତ୍ମୋଦ୍ୟମ ଯଦି ହରାଇ ଥାନ୍ତି ତାହା ରାଜନୈତିକ ପରାଧୀନତା ବା ଶାରୀରିକ ଓ ନୈତିକ ଆଳସ୍ୟରୁ ଯେତିକି ନୁହେଁ ତା' ଠାରୁ ବହୁତ ବେଶୀ ଆମର ସାମାଜିକ କୁସଂସ୍କାର ଓ ଧାର୍ମିକ ଅନ୍ଧବିଶ୍ୱାସ, ଆମର ଆତ୍ମଶକ୍ତିକୁ ପଙ୍ଗୁ କରିଦେଇଥିବାରୁ । ବିଜ୍ଞାନ ବିଷୟରେ ପ୍ରାଥମିକ ସାଧାରଣଜ୍ଞାନ ବି ସେମାନଙ୍କର ନାହିଁ । ସେମାନେ ଅନ୍ଧ ଓ ହୀନ ଭାବରେ ଧର୍ମର ଭୋଜବାଜିକୁ ବିଶ୍ୱାସ କରିଚାଲିଛନ୍ତି କିନ୍ତୁ ବିଜ୍ଞାନର ପ୍ରକୃତ ଅଦ୍ଭୁତ କରାମତି ବୁଝି ପାରୁ ନାହାନ୍ତି । ସେମାନଙ୍କର ଏ ପ୍ରକାର କାତରତା ଓ ଉଦାସୀନତା ବୁଝାଇ ଦେଉଛି ଯେ କୌଣସି ଦୁର୍ଭାଗ୍ୟ କେବେ ଅଜ୍ଞତାଠାରୁ ବଡ ନୁହେଁ, କୌଣସି ପାପ କେବେ ଏଥିରେ ଖୁସି ହେବାଠାରୁ ଗୁରୁତର ନୁହେଁ । ସ୍କୁଲ ପଢା ବେଳର ଦୁଃଖଦାୟକ ସ୍ମୃତିରୁ ତାଙ୍କର ଏପରି ଉପଲବ୍ଧି ଆସିଥିଲା । ଗିଳାଇବା ଓ ବାନ୍ତିକରାଇବା ଭଳି ''ମୁଖସ୍ଥ ଓ ପରୀକ୍ଷା'' ଉପରେ ପର୍ଯ୍ୟବସିତ ସେଇ ଗତାନୁଗତିକ ବିରକ୍ତିକର ଶିକ୍ଷାପଦ୍ଧତି କାଳକ୍ରମେ ତାଙ୍କୁ ଜଣେ ଶିକ୍ଷାବିତ୍ ଓ ସମାଜ ସଂସ୍କାରକ ଭୂମିକାରେ ଅବତୀର୍ଣ୍ଣ ହେବାପାଇଁ ବାଧ କରିଥିଲା । ଆଜୀବନ ତାଙ୍କ ମନରେ ଥିବା ଭାରତୀୟ ଗ୍ରାମାଞ୍ଚଳରେ ଲୋକମାନଙ୍କର ଆର୍ଥିକ ପୁର୍ନସଂସ୍ଥାନର ଅଭୀପ୍ସାକୁ ଚରିତାର୍ଥ କରିବା ପାଇଁ ସେ ପ୍ରୟାସ କରିଥିଲେ । ଏ ଦିଗରେ ତାଙ୍କର ପ୍ରଥମ ଉଦ୍ୟମ ଆରମ୍ଭ ହୋଇଥିଲା ନିଜ ପାରିବାରିକ ଜମିଦାରୀ ଖମାରରେ କାର୍ଯ୍ୟ କରୁଥିବା ଚାଷୀ ରଇତମାନଙ୍କର ଉନ୍ନତି ପାଇଁ କାର୍ଯ୍ୟ କରିବାରେ । ବହୁବର୍ଷ ପରେ ଶାନ୍ତିନିକେତନରେ ନିଜର ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା ସଂଗେ ସଂଗେ ତାରି ନିକଟରେ ସେ ସମାଜ ମଙ୍ଗଳ ଓ ହସ୍ତଶିଳ୍ପ ପ୍ରଭୃତି ପାଇଁ ଆଉ ଗୋଟିଏ ସମାନ୍ତରାଳ ଅନୁଷ୍ଠାନ ପ୍ରତିଷ୍ଠା କରି ତାର ନାଁ ଦେଇଥିଲେ ଶ୍ରୀନିକେତନ (ଶ୍ରୀ ସମୃଦ୍ଧି ଓ ସୌନ୍ଦର୍ଯ୍ୟକୁ ସୂଚିତ କରେ) । ଭବିଷ୍ୟତରେ ସମାଜର ଅଧିନାୟକ ହେବା ପାଇଁ ନିଜକୁ ଗଢୁଥିବା ଉଦୀୟମାନ ବୁଦ୍ଧିଜୀବୀ, ନିଜ ଅନୁଷ୍ଠାନର ଛାତ୍ର ଓ ଭାରତୀୟ ଅର୍ଥନୀତି ତଥା ସାମାଜିକ ଜୀବନଧାରାର ମୂଳଉତ୍ସ ସେଇ କୃଷିଜୀବୀ ମାଟିର ମଣିଷଙ୍କ ଭିତରେ ସାମାଜିକ ସେବା ଓ ସହଯୋଗ ମାଧ୍ୟମରେ ଗୋଟିଏ ଜୀବନ୍ତ ଆତ୍ମୀୟତା ଗଢି ତୋଳିବା ଥିଲା ତାଙ୍କର ଲକ୍ଷ୍ୟ । ସେ ମନେ କରୁଥିଲେ ଯେ କଲିକତା ଓ ବମ୍ବେ ଭଳି ସ୍ଥାନରେ କତିପୟ ସହରୀ ବୁଦ୍ଧିଜୀବୀଙ୍କ ଭିତରେ ଉନ୍ନତି ଓ ପରିବର୍ତ୍ତନ ଯେତେ ହେଉନା କାହିଁକି ଭାରତୀୟ ସମାଜର ଆତ୍ମା ଓ ଗ୍ରାମୀଣ କୃଷକ ସମାଜର ପରିବର୍ତ୍ତନ ନହେଲେ ଭାରତର ପରିବର୍ତ୍ତନ ସମ୍ଭବ ନୁହେଁ ।

ନିଜେ ଜଣେ ପ୍ରଗତିଶୀଳ ବୁଦ୍ଧିଜୀବୀ ଭାବରେ, କବି ଭାବରେ ନହେଲେ ବି ଶୁଦ୍ଧ ମଣିଷ ହିସାବରେ ଜୀବନର ଦୀର୍ଘ 50 ବର୍ଷ(1890 ରୁ ମୃତ୍ୟୁ ବର୍ଷ 1941 ପର୍ଯ୍ୟନ୍ତ) ତାଙ୍କର ମୁଖ୍ୟ

ଆଭିମୁଖ୍ୟ ଥିଲା ଭାରତୀୟ କୃଷିଜୀବୀ ମାନଙ୍କର ଜୀବନ ଅଧୟନ ଓ ମଙ୍ଗଳ ସାଧନ । ନିଜର ସୀମିତ ସମ୍ବଳ ଘେନି ସାଧମତେ ସୀମିତ ଅଂଚଳରେ ସେ କୃଷିଜୀବୀମାନଙ୍କୁ ସାହାଯ୍ୟ କରୁଥିଲେ ଓ ସେମାନେ ଯେପରି ନିଜ ଉଦ୍ୟମରେ ବିଦ୍ୟାଳୟ ଓ ଡାକ୍ତରଖାନା, ରାସ୍ତା ଓ ପାଣିଟାଙ୍କି ତିଆରି କରି ପାରନ୍ତି, ସମବାୟ ସମିତି ଓ ବ୍ୟାଙ୍କ ଗଢି ପାରନ୍ତି ଓ ସର୍ବୋପରି ଗାଁ ଜମିଦାର ଓ ସହରୀ ଓକିଲ ମାନଙ୍କର ଦୌରାତ୍ମ୍ୟ ଓ ଶୋଷଣରୁ ନିଜକୁ ରକ୍ଷା କରିବା ଭଳି ଏକ ସ୍ୱାୟତ୍ତଶାସନ ବ୍ୟବସ୍ଥା ପ୍ରତିଷ୍ଠା କରିପାରନ୍ତି- ସେ ଦିଗରେ ସେମାନଙ୍କୁ ଉତ୍ସାହିତ କରୁଥିଲେ । 1913ରେ ନୋବେଲ ପୁରସ୍କାର ସ୍ୱରୂପ ପାଇଥିବା ବହୁ ପରିମାଣର ଅର୍ଥକୁ କବି ନିଜର ଶାନ୍ତିନିକେତନ ବିଦ୍ୟାଳୟକୁ ଦାନ କରିଥିଲେ ଓ ପୂର୍ବରୁ ପୋତିସାର ଜମିଦାରୀରେ ପ୍ରତିଷ୍ଠା କରିଥିବା କୃଷି ସମବାୟ ବ୍ୟାଙ୍କରେ ଉପଯୋଗ କରାଯାଇଥିଲା । ତା' ଫଳରେ ଗୋଟିଏ କାର୍ଯ୍ୟରେ ଦୁଇଟି ଉଦ୍ଦେଶ୍ୟ ସାଧିତ ହୋଇଥିଲା । କୃଷକମାନେ ସ୍ୱଳ୍ପ ସୁଧରେ ଋଣ ପାଇ ପାରିଲେ ଓ ବିଦ୍ୟାଳୟ ମଧ୍ୟ ଏକ ନିର୍ଦ୍ଦିଷ୍ଟ ବାର୍ଷିକ ଆୟ ପାଇଲା ।

ଏଇ ବଦାନ୍ୟ ଜମିଦାର ସର୍ବଦା ନିଜର ପ୍ରଜାମାନଙ୍କ ମଙ୍ଗଳ ପାଇଁ ଚିନ୍ତାରେ ବ୍ୟାକୁଳ ଥିଲାବେଳେ ତାଙ୍କ ଭିତରର ଶିଳ୍ପୀପ୍ରାଣ ସାଧାରଣ ମଣିଷର ଜୀବନ ଯାତ୍ରାକୁ ଲକ୍ଷ୍ୟ କରି ରହୁଥିଲା- ସେମାନଙ୍କର ସୁଖ ଦୁଃଖ, ମିତ୍ରତା ଓ ଶତ୍ରୁତା, ଧୈର୍ଯ୍ୟ ଓ ସାହାସଭରା ଛୋଟ ଛୋଟ କାମ, ପରିବାର ଓ ଧର୍ମ ପାଇଁ ଉତ୍ସର୍ଗ ମନୋଭାବ କବିଙ୍କ ମନକୁ ଆଲୋଡିତ କରୁଥିଲା । କ୍ଷୁଦ୍ର ଭିତରେ ମହାନ୍‌କୁ ସନ୍ଧାନ କରିବାର ସୂକ୍ଷ୍ମ ଶିଳ୍ପଦୃଷ୍ଟି କବିଙ୍କୁ ନିଜର କ୍ଷୁଦ୍ର ଗଳ୍ପ ପାଇଁ ଏଇ ଗ୍ରାମୀଣ ଜନଜୀବନରୁ ବହୁ ଖୋରାକ ଯୋଗାଇ ଥିଲା । ଏପର୍ଯ୍ୟନ୍ତ ସେ କବିତା, ସଂଗୀତ,ନାଟକ, ଉପନ୍ୟାସ ଓ ପ୍ରବନ୍ଧ ପ୍ରଭୃତି ରଚନା କରିଥିଲେ ଓ ପ୍ରତ୍ୟେକରେ ନିଜର ସ୍ୱକୀୟ ଶୈଳୀ ଆବିଷ୍କାର କରିବା ପର୍ଯ୍ୟନ୍ତ ବହୁ ପରୀକ୍ଷା ଓ ପ୍ରୟୋଗକୁ ଅଙ୍ଗୀକାର କରିଥିଲେ । କିନ୍ତୁ କ୍ଷୁଦ୍ରଗଳ୍ପ କ୍ଷେତ୍ରରେ ତାହାର ବ୍ୟତିକ୍ରମ ଲକ୍ଷ୍ୟ କରାଯାଏ । ଏଥିରେ ସେ ପ୍ରଥମରୁ ହିଁ ସିଦ୍ଧହସ୍ତତାର ପରିଚୟ ବହନ କରିଥିଲେ । କୌଣସି ଜଣାଶୁଣା ଶୈଳୀ ବା ରଚନାରୀତିକୁ ସେ ଅନୁକରଣ କରିନଥିଲେ । ଆମ ଦେଶର କୌଣସି ସାହିତ୍ୟିକ ପରଂପରାରେ ଏପରି କେହି ନଥିଲେ । ସମୃଦ୍ଧ କ୍ଷୁଦ୍ରଗଳ୍ପ ରଚନାରେ ସେ ଥିଲେ ପ୍ରଥମ ଭାରତୀୟ ଲେଖକ । ଆଉ ବର୍ତ୍ତମାନ ଭାରତୀୟ ଲେଖକମାନଙ୍କ ଭିତରେ କ୍ଷୁଦ୍ରଗଳ୍ପ ରଚନା ଏକ ଲୋକପ୍ରିୟ କଳାରେ ପରିଣତ ହୋଇଥିଲେ ମଧ୍ୟ ତାଙ୍କୁ ଅତିକ୍ରମ କରିବା ଦୂରର କଥା ଏଯାବତ୍ ଏ କ୍ଷେତ୍ରରେ କାହାରିକୁ ତାଙ୍କର ସମସ୍ତରୀୟ ଶିଳ୍ପୀ ବୋଲି କୁହାଯାଇ ପାରିବନି ।

ପଦ୍ମାନଦୀରେ 'ପଦ୍ମା' ନାମକ ନିଜର ଏକ ହାଉସ୍ ବୋଟ୍‌ରେ କବି ରହୁଥିଲା ବେଳେ ଯେଉଁ ଦୃଶ୍ୟ, ଘଟଣା ଓ ଚରିତ୍ର ସବୁକୁ ପର୍ଯ୍ୟବେକ୍ଷଣ କରିଥିଲେ ତାହାହିଁ ତାଙ୍କ ଗଳ୍ପରେ ରୂପାୟିତ ହୋଇଅଛି । ଏହି ସମୟରେ ଲେଖା ତାଙ୍କର କେତେକ ଚିଠିରେ ଏହାର ସୂଚନା ମିଳେ । ନଦୀ କୂଳର ଘାଟକୁ କବି ଦେଖନ୍ତି, ତାର ପଥର ସବୁ ଶିଉଳି ଲାଗି ଗଲାଣି । ଭାବୁଛନ୍ତି ଯଦି ଏ ପଥର ସବୁ କଥା କହିପାରନ୍ତେ ତାହେଲେ କେତେ କଥା ନ କହିବେ । ତାପରେ ଘାଟ କଥାକହେ ତେଣୁ ଗଳ୍ପର ନାମ କରଣ ହୋଇଛି ''ଘାଟର କଥା' । ମନେ ପକାଏ କିପରି ଅତି ସୁନ୍ଦରୀ ଛୋଟ ଝିଅଟିଏ ଏକଦା ନଦୀକୁ ଅସୁଥିଲା । ''ସେ ଏତେ ସୁନ୍ଦରୀ ଦିଶୁଥିଲା ଯେ ଯେତେବେଳେ ତାର ଛାଇ ନଦୀ ଜଳରେ ପଡୁଥିଲା ମୁଁ ଭାବୁଥିଲି ମୁଁ ସେଇ ଛାଇଟାକୁ ଧରି ନେଇ ପଥର

ସନ୍ଧିରେ ଲୁଚାଇ ରଖନ୍ତି କି ।'' କୁସୁମ ପାଣିକୁ ଖୁବ୍ ଭଲ ପାଉଥିଲା । ଅଳ୍ପ କିଛି ଦିନ ପରେ କୁସୁମ ଆଉ ସେଠାକୁ ଆସିଲା ନାହିଁ । ନଦୀ ଘାଟରେ ତା'ର ଖେଳ ସାଥୀମାନେ କଥାବାର୍ତ୍ତା ହେଲେ ଯେ କୁସୁମ ଇତିମଧ୍ୟରେ ବାହା ହୋଇ ପାଖ ଗାଁରେ ତାର ସ୍ୱାମୀ ଘରକୁ ଯାଇଛି ।

ଦିନ ଗଡିଚାଲିଲା । ହଠାତ୍ ଦିନେ ପଥରସବୁ ପୁଣି ପୁରୁଣା ପୁଲକ ଅନୁଭବ କଲେ ଯାହା କେବଳ କୁସୁମର ପାଦ ସ୍ପର୍ଶରେ ମିଳୁଥିଲା । କିନ୍ତୁ କୁସୁମର ଚାଲିରେ ଆଉ ସେଇ ସୁଲଳିତ ସଂଗୀତ ନଥିଲା । କୁସୁମ ପୁଣି ନିଜ ଗାଁକୁ ଫେରିଥିଲା- ବିଧବା ବେଶରେ । କାଳକ୍ରମେ ସେ ସୁନ୍ଦରୀ ତରୁଣୀଟିଏ ହେଲା । ''ଗଙ୍ଗା ଯେମିତି ବର୍ଷା ଋତୁରେ ସୌନ୍ଦର୍ଯ୍ୟରେ ଫୁଲିଉଠେ'', ଦିନେ ଗାଁରେ ଜଣେ ଦୀର୍ଘକାୟ ରୂପବନ୍ତ ସନ୍ନ୍ୟାସୀ ପହଞ୍ଚି ଘାଟପାଖ ଶିବ ମନ୍ଦିରରେ ଆସ୍ଥାନ ଜମାଇଲେ । ଗାଁର ନାରୀ ପୁରୁଷ ଯେତେ ତାଙ୍କ ପ୍ରବଚନ ଶୁଣିବା ପାଇଁ ଭିଡ ଜମାଇଲେ । କିନ୍ତୁ କୁସୁମ ସେ ଭିତରେ ନଥାଏ । ସୂର୍ଯ୍ୟପରାଗ ହେବାରୁ ଦିନେ ଦୂର ଓ ନିକଟ ଗାଁରୁ ବହୁ ଲୋକ ବୁଡ ପକାଇବା ପାଇଁ ଗଙ୍ଗା ଘାଟରେ ରୁଣ୍ଡ ହେଲେ । ସେମାନଙ୍କ ଭିତରେ ଥିଲେ କୁସୁମର ସ୍ୱାମୀ ଘର ଗାଁର କେତେ ଜଣ ମହିଳା । ଘାଟରେ ତା ଭିତରୁ ଜଣେ ମହିଳା କହିବାର ଶୁଣାଗଲା- ସନ୍ନ୍ୟାସୀ ଜଣକ କୁସୁମର ସ୍ୱାମୀଭଳି ଦେଖାଯାଉଛନ୍ତି । ଯିଏ ଦିନେ କୁଆଡେ ଅଦୃଶ୍ୟ ହୋଇଯାଇଥିଲେ ଓ ମରି ଯାଇଛନ୍ତି ବୋଲି ମନେ କରାଯାଉଥିଲା ।

ଦିନେ ପୂର୍ଣ୍ଣମୀ ସଂଧ୍ୟାରେ କୁସୁମ ଆସି ଘାଟ ପାହାଚ ଉପରେ ବସିଲା । ସେତେବେଳେ କେହି ସେଠାରେ ନଥାନ୍ତି । କିଛି କ୍ଷଣପରେ ସନ୍ନ୍ୟାସୀ ମନ୍ଦିରରୁ ବାହାରି ଘାଟ ଆଡକୁ ଆସୁଥିବା ବେଳେ ପାହାଚ ଉପରେ ତରୁଣୀଟିଏ ବସିଥିବାର ଦେଖିଲେ । ଦୋଦୋ ପାଞ୍ଚ ହୋଇ ସନ୍ନ୍ୟାସୀ ଫେରି ଯାଉଥିବା ବେଳେ କୁସୁମ ମୁହଁ ଉପରକୁ ଟେକି ଚାହିଁଲା ଓ ପୂର୍ଣ୍ଣିମାର ଚନ୍ଦ୍ରାଲୋକରେ ଦୁହେଁ ପରସ୍ପରକୁ ଦେଖିପରିଲେ । ନିଜକୁ ସମ୍ଭାଳି ନେଇ କୁସୁମ ମୁହଁ ଉପରକୁ ଓଢଣା ଟାଣି ଆଣିଲା । ସନ୍ନ୍ୟାସୀ ତାକୁ ପଚାରିଲେ 'ତୁମ ନାଁ କଣ ?' କୁସୁମ ନିଜ ନାଁ କହିଲା । ଏ ଘଟଣା ପରେ କୁସୁମ ପ୍ରତିଦିନ ସଂଧ୍ୟାରେ ପୂଜା ପାଇଁ ଫୁଲ ନେଇ ଆସେ ଓ ସନ୍ନ୍ୟାସୀଙ୍କର ସବୁ କଥା ମନ ଦେଇ ଶୁଣେ ।

ପୁଣି ହଠାତ୍ କୁସୁମ ଆଉ ଘାଟକୁ ଆସିଲା ନାହିଁ । ସନ୍ନ୍ୟାସୀ ତା ପାଖକୁ ଲୋକ ପଠାଇଲେ; ତା ପରେ ସେ ଆସି ମୁହଁ ପୋତି ତାଙ୍କ ସମ୍ମୁଖରେ ବସିଲା । ସନ୍ନ୍ୟାସୀ ଯେତେବେଳେ ତାର ଅନୁପସ୍ଥିତିର କାରଣ ପଚାରିଲେ ସେ ଉତ୍ତର ଦେଲା ଯେ ସେ ଜାଣିଶୁଣି ଆସୁ ନଥିଲା । ନିଜର 'କୁଚିନ୍ତା' ପାଇଁ ନିଜେ ଲଜ୍ଜିତ ହୋଇ ସେ ଭାବୁଥିଲା ଯେ ଏ ପବିତ୍ର ବ୍ୟକ୍ତିଙ୍କ ପାଖରେ ସେ ବସିବା ପାଇଁ ଯୋଗ୍ୟ ନୁହେଁ । ଯେତେବେଳେ ସନ୍ନ୍ୟାସୀ ସବୁକଥା ଖୋଲି କହିବାକୁ କହିଲେ, କୁସୁମ ମାନିନେଇ କହିଲା ଯେ ଦିନେ ସେ ସ୍ୱପ୍ନରେ ଦେଖିଥିଲା ଯେ ସନ୍ନ୍ୟାସୀ ତାକୁ ପ୍ରେମ କରୁଥିଲେ । ସେଇ ଦିନ ଠାରୁ ସେଇ ସ୍ୱପ୍ନ ତାକୁ ଘାରୁଛି ଓ ସେ ସନ୍ନ୍ୟାସୀଙ୍କ ଭିତରେ ନିଜର ସ୍ୱାମୀ ବା ପ୍ରେମିକ ଭିନ୍ନ କିଛି ଦେଖିପାରୁନାହିଁ । ସନ୍ନ୍ୟାସୀ ସ୍ତମ୍ଭୀଭୂତ ହୋଇଗଲେ । ତାପରେ ଯେତେବେଳେ ସେ ପ୍ରକୃତିସ୍ଥ ହେଲେ ତାଙ୍କୁ ଭୁଲି ଯିବାପାଇଁ କୁସୁମକୁ ବୁଝାଇ କେଉଁଆଡେ ଅଦୃଶ୍ୟ ହୋଇଗଲେ । ଆଉ କେହି ତାଙ୍କ ବିଷୟରେ ସେ ଦିନଠାରୁ କିଛି ଶୁଣିନାହାଁନ୍ତି । କୁସୁମ ଧୀର ପଦରେ ପାହାଚ ଓହ୍ଲାଇ ପାଣିକୁ ଚାହିଁ ଠିଆ ହେଲା । ''ପିଲା ଦିନରୁ ସେ ଏଇ ନଦୀକୁ ଭଲ ପାଇ ଆସିଛି, ଆଉ ଆଜି ନିଜର ଏଇ ନିରାଶ ବେଳାରେ ନଦୀ ଯଦି ତାକୁ ନିଜର କୋଳକୁ

ନନେଇ ଯାଏ ଆଉ କିଏ ତାକୁ ନେବ ? ଦୁମ୍ କିନା ଗୋଟେ ଶବ୍ଦ ଶୁଣାଗଲା- ଆଉ ତାପରେ କିଛି ନାହିଁ ।''

ଏହା ଥିଲା ତାଙ୍କର ଅନ୍ୟତମ ପ୍ରାଥମିକ ଓ ଚରିତ୍ର ଚିତ୍ରଣ ଧର୍ମୀ ଗଳ୍ପରଚନା । ରବୀନ୍ଦ୍ରନାଥଙ୍କ କଳ୍ପନା ଜଗତରେ ପ୍ରକୃତି ସର୍ବଦା ସଚଳ ଭୂମିକା ଗ୍ରହଣ କରିଛି । ଏହି ଗଳ୍ପରେ ମଧ୍ୟ ପ୍ରକୃତି ଏପରିକି ଜଡ ବସ୍ତୁବି ଗଳ୍ପର ଅଂଶ ହୋଇ ଯାଇଛନ୍ତି ଓ ପରିମଣ୍ଡଳ ସୃଷ୍ଟି କରିବାରେ ସାହାଯ୍ୟ କରିଛନ୍ତି । ଏସବୁକୁ ନେଇ ଗଳ୍ପଟିରେ ଅଧା ଦୟା ଓ ଅଧା ଭୟର ଭାବ କଥାବସ୍ତୁ ଅପେକ୍ଷା ଗଳ୍ପର ନିର୍ଯ୍ୟାସ ହୋଇଯାଇଛି । ଆଉ ଏକ ସମଧର୍ମୀ ଗଳ୍ପରେ ଦେଖିଥିବା ଏକ ଗୁପ୍ତ କାମନା ଓ ନୈରାଶ୍ୟ ବିଜଡିତ ପ୍ରେମର କାହାଣୀ କହୁଛି ପଥଟିଏ । ଏ ପ୍ରକାର ଅଧିକାଂଶ ଗଳ୍ପରେ ଗାଳ୍ପିକଙ୍କର ଆନ୍ତରିକତା ଓ ଅନୁକମ୍ପାର ଏକଚାଟିଆ ଅଧିକାରିଣୀ ହୋଇଛନ୍ତି ନାରୀ ଚରିତ୍ରମାନେ । ମୁଖ୍ୟତଃ ତରୁଣୀ ବାଳିକା ଓ ଛୋଟ ଶିଶୁମାନେ ମଧ୍ୟ । ତାଙ୍କ ଗଳ୍ପରେ ଶିଶୁ ଓ କିଶୋର ଚରିତ୍ର ସବୁ ନିଜର କଞ୍ଚା ମନର ନରମ ଭାବ ବହନ କରି ଗାଳ୍ପିକଙ୍କର ଅସୀମ ଆନ୍ତରିକତାରେ ପରିପୂର୍ଣ୍ଣ ହୋଇ ପ୍ରକାଶ ପାଇଛନ୍ତି । ଅପର ପକ୍ଷରେ ତାଙ୍କର ପ୍ରାପ୍ତ ବୟସ୍କ ପୁରୁଷ ଚରିତ୍ରଙ୍କୁ ବିପଦ ମୁହୂର୍ତ୍ତରେ ମଧ୍ୟ ବ୍ୟଙ୍ଗର ସ୍ପର୍ଶ ଲଗାଇ ଦିଆଯାଉଛି । ସେ ଯାହା ହେଉନା କାହିଁକି ତାଙ୍କର ଆଦ୍ୟ ଜୀବନର ଗଳ୍ପ ଗୁଡିକରେ ସେ ବ୍ୟକ୍ତିତ୍ୱ ଆକଳନ ଓ ଚରିତ୍ରର ବିକାଶ ପ୍ରତି ମୁଖ୍ୟତଃ ଧ୍ୟାନ ଦେଇନଥିଲେ । କିନ୍ତୁ ଗୋଟିଏ ଭାବ ବା ମୁଡ୍‌ର ଅଭିବ୍ୟଂଜନ, ଗୋଟିଏ ପରିବେଶ ସୃଷ୍ଟି କିମ୍ବା ଗୋଟିଏ ଚରିତ୍ର ବା ଗଳ୍ପାଣୁର ସନ୍ଦେହାତୀତ ଭାବେ ସହସା ଉଦ୍‌ବର୍ତ୍ତନ ପ୍ରଭୃତି ଏସବୁ ଗଳ୍ପରେ ବରଂ ବେଶୀ ଲକ୍ଷଣୀୟ । ତାଙ୍କର କବି ପ୍ରତିଭାର ଯେଉଁ ବିଶେଷ ଗୁଣରେ ସେ ମାନବିକ ଦକ୍ଷତାକୁ ଅତିସ୍ୱଳ୍ପ ସମୟ ଭିତରେ ଅତି ଗଭୀର ଭାବରେ ଆୟତ୍ତ କରିପାରୁଥିଲେ ତାହା ବହିର୍ଜଗତର ସକଳ ବିଭାବକୁ ମଧ୍ୟ ତତ୍‌କ୍ଷଣାତ୍ ଆମୂଳ କରି ନେଉଥିଲା । ଥରେ ଗୋଟିଏ ଆଭାସ ମନ ଭିତରକୁ ଆସିଲେ କଳ୍ପନାର କାରିଗରୀରେ ତାହା ଅବିଳମ୍ବେ ଗଳ୍ପମୂର୍ତ୍ତି ଧାରଣ କରୁଥିଲା ।

ପୁଣି ଗାଁର ପୋଷ୍ଟମାଷ୍ଟରଙ୍କୁ ଯେତେବେଳେ ସେ ଭେଟିଲେ ଦେଖିଲେ ନୂଆକରି ଚାକିରୀରେ ଯୋଗ ଦେଇଥିବା ଶିକ୍ଷିତ ସହରୀ ତରୁଣ ଗାଁରେ ଆସି ଶାନ୍ତ ଓ ନିଷ୍ଫଳ ବାତାବରଣରେ ବିରକ୍ତି ଅନୁଭବ କରୁଛନ୍ତି । କିପରି ପୁଲକିତ ହୋଇ ସମୟ କଟାଇବେ ବୁଝିପାରୁ ନାହାନ୍ତି । 'ପୋଷ୍ଟମାଷ୍ଟର' ନାମକ ବିଖ୍ୟାତ କ୍ଷୁଦ୍ରଗଳ୍ପ ଏହି ସଂପର୍କରୁ ସୃଷ୍ଟି । ଗଳ୍ପର ନାୟକ ଜଣେ ପୋଷ୍ଟମାଷ୍ଟର ସହରୀ ଯୁବକ । ବଙ୍ଗଳାର ଗୋଟିଏ ମ୍ୟାଲେରିଆ ଅଧ୍ୟୁଷିତ ଗ୍ରାମରେ ଅବସ୍ଥାପିତ । ଗାଁର ଜଣେ ଅନାଥ ଅସହାୟ ବାଳିକା ରତନ ତାଙ୍କର ଘର ଚାକରାଣୀ ଭାବେ କାମ କରୁଥାଏ । ପୋଷ୍ଟମାଷ୍ଟରଙ୍କର କାମ ଥିଲା ଖୁବ୍ ସ୍ୱଳ୍ପ । କାମ ସାରି ସେ ଫେରି ଦୀର୍ଘ ଗ୍ରୀଷ୍ମ ସଂଧ୍ୟା ଅତିବାହିତ କରିବା ପାଇଁ ହୁକାଟାଣନ୍ତି ଓ ରତନକୁ ଡାକି ତା' ସାଙ୍ଗରେ ଆଳାପ କରନ୍ତି । ସେ ତାକୁ ସହରୀ ଜୀବନର କାହାଣୀ ବଖାଣନ୍ତି ଓ କେତେବେଳେ ପଢ଼ାଲେଖାର ବିଭିନ୍ନ ଶିକ୍ଷଣୀୟ ବିଷୟ କହନ୍ତି । ଅସାହାୟା ଝିଅଟି ଯିଏ କେବେ କାହାରିଠୁ ଏପରି ସ୍ନେହ ପାଇ ନଥିଲା । ନିଜ ମାଲିକଙ୍କର ଏପରି ବ୍ୟବହାରରେ ମୁଗ୍ଧ ହୋଇ ସଂଧ୍ୟା ସମୟକୁ ଆବେଗ ଭରା ହୋଇ ଚାହିଁ ବସୁଥାଏ ।

ଦିନେ ମ୍ୟାଲେରିଆରେ ପୀଡିତ ହୋଇ ପୋଷ୍ଟମାଷ୍ଟର ଶଯ୍ୟାଶାୟୀ ହୁଅନ୍ତି । ଝିଅଟି ଦିନରାତି ତାଙ୍କ ପାଖରେ ବସି ସେ ଆରୋଗ୍ୟ ହେବା ପର୍ଯ୍ୟନ୍ତ ସେବା କରେ । ଏସବୁ ସେବାକୁ ଅଙ୍ଗେନିଭେଇ ଦେହ ଭଲ ହେବା ପରେ ପରେ ପୋଷ୍ଟମାଷ୍ଟର ନିଜ ଚାକିରୀରୁ ଇସ୍ତଫାଦେଇ

ସହରକୁ ଯିବାକୁ ପ୍ରସ୍ତୁତ୍ ହେଲେ । ଏକଥା ଜାଣି ରତନ ଯେତେବେଳେ ସାଙ୍ଗରେ ତାକୁ ମଧ୍ୟ ଘେନି ଯିବାକୁ ଅନୁରୋଧ କଲା, ପୋଷ୍ଟମାଷ୍ଟର ହସିଲେ । କହିଲେ ଏକି କଥା ? ବାହାରିବା ବେଳେ ସେ ରତନ ହାତରେ କିଛି ଟଙ୍କା ଗୁଂଜି ଦେଲେ । ରତନ ତାହା ଗ୍ରହଣ କଲାନାହିଁ । ତା ବିଷୟରେ ଚିନ୍ତା ନ କରିବା ପାଇଁ ତାଙ୍କୁ କହି ସେ ସେଠାରୁ ଦୂରେଇ ଗଲା । ବୋଟ୍‌ରେ ନିଜ ସ୍ଥାନରେ ବସି ପୋଷ୍ଟମାଷ୍ଟର ନିରବରେ ଭାବିଚାଲିଲେ- ଏଇତ ଜୀବନ- ମିଳନ ଓ ବିଚ୍ଛେଦ ଭରା । କିନ୍ତୁ କୌଣସି ଦର୍ଶନର ଧାର ଧରି ନଥିବା ସେଇ ବାଳିକାଟି ରତନ— ସବୁବେଳେ ପୋଷ୍ଟଅଫିସ ପାଖରେ ଘୁରି ବୁଲିଲା— ଅଶାନ୍ତ, ଅତୃପ୍ତ ମନରେ- ଛୋଟ ମୁହଁଟି ତାର ହୋଇଉଠିଥାଏ ଲୋତକ ଭରା ।

ବାସ୍ତବ କଥା ସହିତ ଏ କାହାଣୀର ସାଦୃଶ୍ୟ ଲେଖକଙ୍କର ଗଳ୍ପରଚନାର ଷୋଳମାସ ପରର ଗୋଟିଏ ଚିଠିରୁ ସୂଚିତ । ସେଥିରେ ସେ ମନେ ପକାଇ ଲେଖିଛନ୍ତି, ଦିନେ ସଂଧ୍ୟାରେ ସେ କାଳିଦାସଙ୍କ ବହିଟିଏ ଆଣି ପଢ଼ିବାକୁ ଯାଉଥାନ୍ତି, ଭିତରକୁ ପ୍ରବେଶ କଲେ ପୋଷ୍ଟମାଷ୍ଟର । ‘‘ଜୀବିତ ପୋଷ୍ଟମାଷ୍ଟରଙ୍କୁ ଦେଖି ମୃତ କବିଙ୍କୁ ପଛକୁ ରଖି ତାଙ୍କୁ ବସିବାକୁ କହିଲି । ପୋଷ୍ଟମାଷ୍ଟର ଓ ମୋ ଭିତରେ କେମିତି ଗୋଟେ ବନ୍ଧନ ଯୋଡି ହୋଇଗଲା । ଯେତେବେଳେ ପୋଷ୍ଟ ଅଫିସ୍ ଜମିଦାରୀ ଘରର ଗୋଟେ ଅଙ୍ଗରେ ଥିଲା ତାଙ୍କ ସହିତ ମୋର ପ୍ରତିଦିନ ଦେଖା ହେଉଥିଲା । ମୁଁ ମୋର ‘‘ପୋଷ୍ଟମାଷ୍ଟର’’ ଗଳ୍ପ ଏଇ ଘରେ ଲେଖିଥିଲି । ଆଉ ଯେତେବେଳେ ଗଳ୍ପଟି ‘ହିତବାଦି’ ପତ୍ରିକାରେ ପ୍ରକାଶ ପାଇଲା, ସେ ଲଜ୍ଜାଶୀଳ ସ୍ମିତ ବଦନରେ ମୋ ପାଖକୁ ଆସିଲେ ସତେ ଯେମିତିକି ଗଳ୍ପରେ ତାଙ୍କର ଚରିତ୍ରର ବିରୋଧାତ୍ମକ ସ୍ପର୍ଶ ଅଛି ।’’

ସେଇଭଳି ଭାବରେ କଲିକତାର ଗଳିଗଳିରେ ଦୀର୍ଘକାୟ ବପୁବନ୍ତ କାବୁଲି ଲୋକମାନଙ୍କୁ ସେ ଶୁଖିଲାଫଳ ବୁଲି ବିକୁଥିବାର ଦେଖିଥିବେ । ଏମାନେ ଆମ ପାଖରେ ମାରାତ୍ମକ କାବୁଲିବାଲା ଭାବରେ ପରିଚିତ । ଏମାନେ ସବୁ ନିଷ୍ଠୁର ବର୍ବର, ଅତିଉଚ୍ଚ ସୁଧ ଦରରେ ଲୋକଙ୍କୁ ଅସୁବିଧା ବେଳରେ ଟଙ୍କା ଋଣ ଲଗାନ୍ତି ଓ ଟିକିଏ କିଛିରେ ହତ୍ୟା କରିବାକୁ ପ୍ରସ୍ତୁତ ଥାଆନ୍ତି । କାନ୍ଧରେ ଝୁଲାଉଥିବା ମୁଣିରେ ପିଲାମାନଙ୍କୁ ଚୋରିକରି ନେଇପଳାଇବା ଏମାନଙ୍କ ପକ୍ଷେ ବିଚିତ୍ର ନୁହେଁ- ଏପରି ଦୁର୍ଦ୍ଧଷ ଓ ରୁକ୍ଷ ଏମାନେ । ରବୀନ୍ଦ୍ରନାଥ ଭାବିଲେ ଏଇ ନିଷ୍ଠୁର କାବୁଲିବାଲା ମାନଙ୍କ ଭିତରେ ବି ମାନବିକତାର ସ୍ପର୍ଶଥିବ । ସେମାନେ ନିଶ୍ଚୟ ସବୁ ସଂସାରର ବାପା ମା’ଙ୍କ ଭଳି ନିଜ ପିଲା ମାନଙ୍କୁ ଭଲପାଉଥିବେ । ଏଇ ଧାରଣାକୁ ନେଇ ସେ, ଯେଉଁ ‘କାବୁଲି ବାଲା’ ଗଳ୍ପ ରଚନା କଲେ ସେଥିରେ ଥିବା ସେଇ କାବୁଲିବାଲା ଚରିତ୍ରଟି ବୋଧ ହୁଏ ବଙ୍ଗଳା କଥା ସାହିତ୍ୟର ଅତି ପ୍ରିୟ ଚରିତ୍ର ମାନଙ୍କ ମଧ୍ୟରେ ଜଣେ ହୋଇପାରିଲା । ଆଫଗାନିସ୍ତାନର ବନ୍ଧୁର ପର୍ବତ ଭିତରୁ ଆସିଥିବା ଏଇ ଅଶିକ୍ଷିତ ଜଘନ୍ୟ ଭୀଷଣକାୟ କାବୁଲିବାଲା ସହିତ ଅନନ୍ତ ଉଲ୍ଲାସଭରା ଅନବରତ କଥା କହୁଥିବା ଗୋଟେ ପାଞ୍ଚ ବର୍ଷର ଝିଅ ମିନିର ଅନ୍ତରଂଗ ବଂଧୁତାର କାହାଣୀ ମାନବ ସଂପର୍କର ଗୋଟେ ଚଳମାନ ଦଲିଲ୍ ଭାବରେ ସବୁ ଜାତି , ଧର୍ମ ଓ ସାମାଜିକ ପ୍ରଥାର ବାଧାବନ୍ଧନକୁ ଅସ୍ୱୀକାର କରି ଗଢ଼ି ଉଠିଛି ।

ଏସବୁ ଗଳ୍ପ ବିଭିନ୍ନ ପ୍ରକାରର ଓ ବିଭିନ୍ନ ଶୈଳୀରେ ରଚିତ । ମୁଖ୍ୟତଃ ଇଙ୍ଗିତଧର୍ମୀ ଓ ପ୍ରଭାବଶାଳୀ । ବଙ୍ଗାଳୀ ଜୀବନର ସବୁ ସ୍ତର ଏଥିରେ ଚିହ୍ନିତ ଓ ବହୁ ଶ୍ରେଣୀର ଜୀବନ ଧାରାର ଚରିତ୍ର ଏଥିରେ ଚିତ୍ରିତ । ସୂକ୍ଷ୍ମ ପର୍ଯ୍ୟବେକ୍ଷଣ, ଜୀବନ୍ତ କଳ୍ପନା, କାରୁଣ୍ୟ ଓ ବିଦ୍ରୁପ, ପ୍ରକୃତି

ଓ ଜୀବନ, ଆବଶ୍ୟକତାକୁ ଉପଲବ୍ଧି କରିବାର ଅସାଧାରଣ ଦକ୍ଷତା, ଅପରିସୀମ ମାନବତାବାଦୀ ଦୃଷ୍ଟିକୋଣ, ସାମାଜିକ ଅନ୍ୟାୟ ଓ ଅନାଚାର ବିରୁଦ୍ଧରେ ଅସହ୍ୟବୋଧ ଓ ଅତୁଳନୀୟ ପ୍ରକାଶ ଭଙ୍ଗୀ ଏଇ ଗଳ୍ପ ଗୁଡିକୁ ଯେପରି ସୁଖପାଠ୍ୟ ସେହିପରି କାଳୋତ୍ତୀର୍ଣ୍ଣ କଳାରେ ପରିଣତ କରିପାରିଛି । ତାଙ୍କର ବହୁ ନାଟକ ଓ ଉପନ୍ୟାସର ଚରିତ୍ର ପରି ଏଇ ଗଳ୍ପର ଚରିତ୍ର ସବୁ ସ୍ଥିର ଅଥବା ଲେଖକଙ୍କର ବକ୍ତବ୍ୟର ପ୍ରଚାରକ ନୁହଁନ୍ତି । ଏଥିରେ ଚରିତ୍ର ସବୁ ଜୀବନ୍ତ, ବାସ୍ତବ, ପ୍ରାଞ୍ଜଳ ଓ ସେଥିରୁ ଅନେକ ଅବିସ୍ମରଣୀୟ । ଅନେକ କ୍ଷେତ୍ରରେ ସେମାନେ ଲେଖକଙ୍କର ମନରେ ବସା ବାନ୍ଧନ୍ତି ଓ ଗଳ୍ପରେ ପ୍ରକାଶ କରିବା ପୂର୍ବରୁ ଲେଖକ ସେମାନଙ୍କୁ ନାମିତ ମଧ୍ୟ କରିଥାଆନ୍ତି ।

ଗୋଟିଏ ଚିଠିରେ ସେ ଲେଖିଛନ୍ତି, ''ଯଦି ଆଉ କିଛି ନକରି ମୁଁ କେବଳ କ୍ଷୁଦ୍ରଗଳ୍ପ ରଚନା କରନ୍ତି ମୁଁ ଖୁସି ହୁଅନ୍ତି ଓ କିଛି ପାଠକଙ୍କୁ ଖୁସି କରାନ୍ତି । ଖୁସିର ମୁଖ୍ୟ କାରଣ ହେଲା ମୋ ଚରିତ୍ର ମାନେ ସେତେବେଳେ ମୋର ବଂଧୁ ହୋଇ ଯାଆନ୍ତି । ବର୍ଷା ଦିନରେ ମୁଁ ଘରେ ବନ୍ଦୀ ହୋଇ ରହିଥିବା ବେଳେ ମୋ ସାଙ୍ଗରେ ଥାଆନ୍ତି । ପାଗ ଭଲ ଥିଲେ ସୂର୍ଯ୍ୟ କିରଣରେ ମୋ ସାଙ୍ଗରେ ପଦ୍ମା କୂଳରେ ବୁଲନ୍ତି । ଆଜି ପ୍ରଭାତରୁ ଗିରିବାଳା ନାମ୍ନୀ ଗୋଟେ ଅଲିଅଳୀ ଛୋଟଝିଅ ମୋ କଳ୍ପନା ରାଜ୍ୟକୁ ପଶିଆସିଛି ।'' ଭାରତୀୟ ନାରୀ ଜୀବନର ପ୍ରିୟ ପ୍ରତିନିଧି ଭାବରେ ଗିରିବାଳା ବଙ୍ଗ ସାହିତ୍ୟରେ ଚିର ଭାସ୍ୱର ରହିଛି । କାରୁଣ୍ୟ ଓ ବିଦ୍ରୁପ ଏଇ ଗଳ୍ପ ଗୁଡିକୁ ଆଚ୍ଛାଦିତ କରି ରଖିଥାଏ । ବ୍ୟର୍ଥ ତାରୁଣ୍ୟ, ନୈରାଶ୍ୟ ପୂର୍ଣ୍ଣ ଆଦର୍ଶ ପାଇଁ କାରୁଣ୍ୟ, ପ୍ରସ୍ଫୁଟିତ ହେବା ଆଗରୁ ମଉଳି ଯାଇଥିବା କଳିକା ପାଇଁ । ଆଉ ବିଦ୍ରୁପ ପୁରୁଷର ବୃଥା ଅହଂକାର ପାଇଁ । ଜୀବିତଙ୍କୁ ହୀନ କରି ମୃତ୍ୟୁଙ୍କ ପ୍ରଶଂସାରେ ନିୟୋଜିତ ଥିବା ସମାଜର ଓ ଧର୍ମର ଅମାନବିକ ବ୍ୟବସ୍ଥା ପାଇଁ ଏ କାରୁଣ୍ୟ ।

କଥା କହି ପାରୁନଥିବା ଜଡ ଝିଅ ସୁଭା ତା ପରିପାର୍ଶ୍ୱରେ ଥିବା ଲୋକଙ୍କ ଅପେକ୍ଷା ଜୀବଜନ୍ତୁଙ୍କଠାରୁ ବେଶୀ ସ୍ନେହ ଓ ସମ୍ବେଦନା ପାଏ, ଉତ୍ସର୍ଗିକୃତ ପତ୍ନୀ କୁମୋ ତା'ର ଅହଂକାରୀ ପତିକୁ ଅତିଶୟ ପ୍ରଶ୍ରୟ ଦେଇ ନିଜର ଚକ୍ଷୁ ହରାଏ, ଅଭାଗିନୀ ନିରୁପମାର ଜୀବନ ଓ ଯୌବନ ବ୍ୟର୍ଥ ହୋଇଯାଏ କାରଣ ତା'ର ନିର୍ଧନ ଅଥଚ ନିଷ୍ଠାପର ପିତା ବେଶୀ ଯୌତୁକ ଦେଇ ତାକୁ ବାହାଦେଇ ପାରନ୍ତିନି । ଆଉ ମଶାଣିରୁ ଉଠି ଆସିଥିବା ଦୁର୍ଭାଗିନୀ କାଦମ୍ବିନୀ ଭୂତ ଭଳି ଚାରିଆଡେ ଘୁରିବୁଲେ କିନ୍ତୁ କେହି ତାକୁ ଜୀବିତ ବୋଲି ମନେ କରନ୍ତିନି, ଯେତେବେଳ ଯାଏଁ ମରି ସେ ଜୀଇଁଥିଲା ବୋଲି ପ୍ରମାଣ ନ କରିଛି । ଅସହାୟା ମହାମାୟା ତା'ର ପ୍ରେମିକ ପାଖରେ ମୁହଁ ଦେଖାଇ ପାରି ନାହିଁ, ଏହିପରି ସାରିବନ୍ଧ ଟ୍ରାଜିକ୍ ନାୟିକାଗଣ ଅନନୁଭବ୍ୟ ଜଗନ୍ନାଥଙ୍କ ରଥଚକା ତଳେ ପେଶିହୋଇ ଯାଇଛନ୍ତି । ସବୁ ନାରୀ କେବେ ଏକାବେଳେ ବୀରତ୍ୱପୂର୍ଣ୍ଣ ବା ଦୁଃଖମୟ ହୋଇ ନ ପାରନ୍ତି । ବିପରୀତାତ୍ମକ ଭାବରେ କେତେଜଣ ନାରୀ ପୁଣି ଯେଉଁ ନୀତି ସେମାନଙ୍କ ଜୀବନକୁ ବିଧ୍ୱସ୍ତ ଓ ମସ୍ତିସ୍କକୁ ବିଭ୍ରାନ୍ତ କରୁଛି ତାହାର ସମର୍ଥନ ଓ ପ୍ରୋତ୍ସାହନ କରନ୍ତି । କେତେନାରୀ ବିରକ୍ତିକର ଓ କଳହପ୍ରବଣା ହୋଇ ସ୍ୱାମୀଙ୍କୁ ନଷ୍ଟ ହେବାକୁ ଦିଅନ୍ତି, କେତେଜଣ ସ୍ୱାମୀଙ୍କ ଭଲପାଇବାଠାରୁ ଅଳଙ୍କାର ପିନ୍ଧିବାକୁ ବେଶୀ ଲୋଡନ୍ତି । ସେମାନେ ସମସ୍ତେ ହିନ୍ଦୁ ରମଣୀ ନୁହନ୍ତି । ତାଙ୍କର ଗୋଟିଏ ଅତି ରୋମାଣ୍ଟିକ ନାୟିକା ଜଣେ ମୁସଲମାନ ରାଜକନ୍ୟା ଯିଏ ସେ ଭଲ ପାଉଥିବା ହିନ୍ଦୁ ସେନାପତିଙ୍କ ପାଇଁ ସବୁ ପରିତ୍ୟାଗ କରିଛି । ଏଇ ଛଳନାହୀନ ଓ ସାହସୀ ନାୟିକାଟିର ଦୁରାଶା (ଗଳ୍ପର ଶୀର୍ଷକ) ଅତି ନିପୁଣ ଭାବରେ ଚିତ୍ରିତ । ମୋଗଲ ରାଜକନ୍ୟା ଅମିନାର ପିତାଙ୍କ

ମୃତ୍ୟୁର ପ୍ରତିଶୋଧ ନେବାର କାହାଣୀ ଆହୁରି ରୋମାଞ୍ଚକର । ଏଥିପାଇଁ ସେ ଯେତେବେଳେ ଆରକୋନ୍‌ର ରାଜପୁତ୍ରଙ୍କୁ ଛୁରିକା ଘାତ କରିବାକୁ ଯାଏ ଆବିଷ୍କାର କରେ ଯେ ସେ ଅତୀତରେ ଯେଉଁ ଡାଳିଆକୁ ଭଲ ପାଉଥିଲା ଇଏ ସେଇ ଛଦ୍ମ ବେଶଧାରୀ ଡାଳିଆ ।

କେତେକ ଗଳ୍ପରେ ପୁରୁଷର ଧନ ଲିପ୍‌ସା ଚିତ୍ରିତ, କେତେକରେ ନାରୀର ସ୍ୱାମୀ ବା ପୁତ୍ରଙ୍କୁ ଲକ୍ଷ୍ୟ ପୂରଣ ପାଇଁ ତାଡନା, କେତେକରେ ଅତୀତର ଆଭିଜାତ୍ୟକୁ ମନେ ପକାଇ ସେଇ ବିବର୍ଣ୍ଣ ଗୌରବର ମାୟାରେ ଛଟପଟ ହେବାର ଦୃଶ୍ୟ, ଆଉ କେତେକ ଗଳ୍ପରେ କେତେ ଅସାଧାରଣ ଚରିତ୍ର ଯେପରି ଜଣେ ବାରବୁଲା ସାଧୁ ପୁରୁଷ ଯାହାଙ୍କୁ କୌଣସି ଧନସଂପତ୍ତି, ଭୋଗ ବିଳାସ ବା ପ୍ରେମ ଘରେ ବାନ୍ଧି ରଖି ପାରିନାହିଁ, ଅବା ଗୋଟିଏ ଦୁଷ୍ଟ ଗୋଟି ପୁଅ ଯିଏ କ୍ରମେ ସୁନ୍ଦରୀ ଯୁବତୀରେ ପରିଣତ ହୁଏ । କେତେକ ଅଦ୍ଭୁତ ଫାଣ୍ଟାସୀ ଯେଉଁଥିରେ ପ୍ରାକୃତିକ ସହିତ ଅତି ପ୍ରାକୃତିକ ବିଷୟକୁ ଏପରି ସମନ୍ୱିତ କରି ରଖାଯାଇଛି ଯାହା ପଢ଼ି ପାଠକ ବିସ୍ମିତ ହେବ ଯେ ଏସବୁ ସାଧାରଣ କାହାଣୀ ନା ଅବଚେତନ ମନର ସୂକ୍ଷ୍ମ ଅନୁଶୀଳନାତ୍ମକ ଆବିଷ୍କାର । ଏଥିଭିତରୁ ଗୋଟିଏ ଗଳ୍ପ ତାଙ୍କ ପିଲାଦିନର ପ୍ରାଣୀ ବିଜ୍ଞାନ ପଢ଼ିଲାବେଳେ ସାମନାରେ ଟଙ୍ଗା ହୋଇରହୁଥିବା 'କଙ୍କାଳ'କୁ ଘେନି ଲିଖିତ । ଆଉ କେତେ ଗଳ୍ପରେ ଆମ ଦେଶର ଜନଗଣଙ୍କର ରାଜନୈତିକ ଅସହାୟତା ଓ ବିଦେଶୀ ଶାସକମାନଙ୍କର ନୈରାଶ୍ୟକର ଉଦାସୀନ ବ୍ୟବସ୍ଥା ବର୍ଣ୍ଣିତ ଯେପରି ସେଇ ଅତିସୁନ୍ଦର ଗୋଟିଏ ଗଳ୍ପର ନାୟିକା ଗିରିବାଳାର କଥା । ଆଉ ଗୋଟିଏ ସୁଖକର ବ୍ୟଙ୍ଗ ଗଳ୍ପ ଯାହାକୁ ବହୁପରେ 1933ରେ କବି 'ତାସେର ଦେଶ' ନାମକ ନାଟକରେ ରୂପାନ୍ତର କରିଥିଲେ । ସେ ଭାରତୀୟ ଲୋକ ଗଳ୍ପର ପାରଂପରିକ ଅନୁଭୂତିକୁ ଯୋଡି ତାକୁ ଅଦ୍ଭୁତ କରିପାରିଛନ୍ତି । ରାଜାପୁଅ, ସେ ପାଇଥିବା ଦୁଇଟି ବର ଘେନି ସମୁଦ୍ର ଭିତରେ ଏପରି ଦ୍ୱୀପରେ ପହଞ୍ଚେ ଯେଉଁଠାରେ ଅଧିବାସୀ ମାନେ ତାସ ପରି ଚିହ୍ନିତ । ଜଣେ ପାଞ୍ଚ ଓ ଆଉ ଜଣେ ଛଅ, ପୁଣି ଆଉ ଜଣେ ଜ୍ୟାକ୍ ବା ରାଣୀ, ଜଣେ ହିରା, ଜଣେ ହୃଦୟ, ଜଣେ କୁଠାର- ଏହି ପରି । ସେମାନେ ବସନ୍ତି, ଉଠନ୍ତି, ନିର୍ଦ୍ଦେଶାନୁସାରେ ପରସ୍ପରକୁ ଭଲ ପାଆନ୍ତି, ଶାସନ ଶୃଙ୍ଖଳା କେହି ବୁଝନ୍ତିନି କିନ୍ତୁ ସମସ୍ତେ ମାନନ୍ତି । ଏଇ ପାଞ୍ଚ, ଛଅଙ୍କୁ ଦେଖି ଆମେ ହସୁ କିନ୍ତୁ ତାରି ଭିତରେ ଆମର ଉଦ୍‌ଭଟ ସ୍ଥିତି ଯେ ସୂଚିତ ଏହା ଉପଲବ୍ଧ କରି ପାରି ନ ଥାଉ ।

ବଡ଼ ବିଚିତ୍ର କଥା- ଏଇ ସମୟରେ ଯେତେବେଳେ ନିଜ ଦେଶର ସାଧାରଣ ଲୋକଙ୍କ ଜୀବନଯାତ୍ରା ସଂପର୍କରେ କବିଙ୍କର ଆଗ୍ରହ ଅତୁଳନୀୟ ଓ ତାଙ୍କ ଗଳ୍ପରେ ଏହାର ଚିତ୍ରଣ ବାସ୍ତବ ଓ ପ୍ରାଂଜଳ ସେତିକି ବେଳେ ତାଙ୍କ କବିତାରେ ଏକ ରହସ୍ୟବାଦୀ ଆଧାତ୍ମିକତା ଘନିଭୂତ ଯାହାପରେ ତାଙ୍କର ବହୁ ସୃଷ୍ଟିକୁ ପ୍ରଭାବିତ କରିଥିଲା । ଏଇ ରହସ୍ୟବାଦ କିନ୍ତୁ ତାଙ୍କ ପାଇଁ କୌଣସି ନୂତନ ଚିନ୍ତା ବା ଦର୍ଶନ ନଥିଲା ଯାହାକୁ ସେ ସଚେତନ ଭାବରେ ପ୍ରୟୋଗ କରିଥିଲେ କିମ୍ବା ବାସ୍ତବ ଜଗତର ଜଞ୍ଜାଳରେ ଅତିଷ୍ଠ କବି ପ୍ରାଣର ଏକ ପଳାୟନବାଦୀ ସ୍ୱର ବି ନଥିଲା । ସେ ଦାର୍ଶନିକ ନଥିଲେ । ସେ ଅନୁଭବ କରୁଥିଲେ ଗୋଟିଏ ନିର୍ଦ୍ଦିଷ୍ଟ ଶୃଙ୍ଖଳାର ଆବଦ୍ଧ ରୀତି ଅପେକ୍ଷା ଆଉ କୌଣସି କାର୍ଯ୍ୟ ବେଶୀ ବିରକ୍ତିକର ନୁହେଁ । କୌଣସି ସ୍ଥିର ଅପରିବର୍ତ୍ତିତ ଚିନ୍ତାକୁ ସେ କମ୍ ସମ୍ମାନ ଦେଉଥିଲେ । ସେ ଜଗତ ଓ ଜୀବନକୁ ପ୍ରାଣଭରି ଭଲ ପାଉଥିଲେ । ଜଗତର ପରିବର୍ତ୍ତନରେ ଜୀବନର ସ୍ୱାଦ ଚାଖୁଥିଲେ । ଜୀବନର ରହସ୍ୟବୋଧ କେବେ ତାଙ୍କର ମୋହ ଭଙ୍ଗ କରି ନଥିଲା, ସେ ଭୋଗିଥିବା କଷ୍ଟ, ସେ ଦେଖିଥିବା ନିଷ୍ଠୁରତା ଓ ନିଷ୍ପେଷଣ, ଜୀବନ ପ୍ରତି ତାଙ୍କ ମନରେ

ଅନାସ୍ଥା ସୃଷ୍ଟି କରିନଥିଲା ବରଂ ଜୀବନରେ ପ୍ରେମ ଓ ଦୟା ପ୍ରତି ତାଙ୍କୁ ବେଶୀ ଆକୃଷ୍ଟ କରିଥିଲା– ସେ 1894ରେ ଥରେ ଲେଖିଥିଲେ, ''ପାପ ଓ ପୁଣ୍ୟ ଚିନ୍ତା ଆମର କେତେ ଅଳିକ ଓ ଅବାସ୍ତବ ! ସକଳ ଜୀବନ ପ୍ରତି ଦୟାଠାରୁ ବଳି ଆଉ କିଛି ବଡ଼ଧର୍ମ ନାହିଁ । ପ୍ରେମ ହିଁ ସବୁ ଧର୍ମର ମୂଳମନ୍ତ୍ର ।''

ଏଇ ଚଳମାନ ବିଶ୍ୱର ସକଳ ଜୀବନ ପ୍ରତି ଏକାତ୍ମ ଭାବ ପିଲାଦିନରୁ ତାଙ୍କ ଆତ୍ମାରେ ରହସ୍ୟବାଦର ଚାରାଟିଏ ଭାବରେ ପ୍ରୋଥିତ ହୋଇଥିଲା । ଏଇ ସମୟରେ ସେଇ ଚାରାଟି ଅଙ୍କୁରିତ ହେଲା । ସେଇ ରହସ୍ୟବାଦୀ ଆଧ୍ୟାତ୍ମିକତାର ଉନ୍ମେଷ ତାଙ୍କ ପ୍ରାଣରେ ଅତୀତର ଅସ୍ପଷ୍ଟ ଭାବନାକୁ ସ୍ପଷ୍ଟ ଓ ସଚେତନ କରି ତାଙ୍କ ଜୀବନରେ କାବ୍ୟ ସରସ୍ୱତୀକୁ ଆବାହନ କଲା । ତାଙ୍କ ପ୍ରତିଭା ଓ ଭାଗ୍ୟକୁ ପରିଚାଳିତ କରିବା ପାଇଁ ତାଙ୍କର ଅନ୍ତର୍ନିହିତ ବ୍ୟକ୍ତିତ୍ୱକୁ ବ୍ୟକ୍ତିତ୍ୱର ଅତିରିକ୍ତ ସୋପାନ ଆଡକୁ ବାଟ କଢ଼େଇ ନେବା ପାଇଁ ଏକ ଅନିର୍ବଚନୀୟ ଶକ୍ତିର ସନ୍ଧାନ କରୁଥିଲା । 1894 ମାର୍ଚ୍ଚରେ ଗୋଟିଏ ଚିଠିରେ ସେ ଲେଖିଛନ୍ତି ''ଏକ ଅଜଣା ରହସ୍ୟର ସଚେତନତା ମତେ ଏପରି ଅଧୀର କରି ପକାଇଛି ଯେ ମୁଁ ମୋର ନିୟନ୍ତ୍ରଣରେ ନାହିଁ ବା କିଛି ବୁଝିପାରୁ ନାହିଁ- ଅଜସ୍ର ତନ୍ତ୍ରୀର ଜଟିଳ ସଂଯୋଜନା ଯୋଡିହୋଇ ଗୁପ୍ତ ଭାବରେ ରହିଥିବା ଜୀବନ୍ତ ପିଆନୋ ପରି ମୁଁ ହୋଇଯାଇଛି । କିନ୍ତୁ ତାହା କିପରି ବାଜିଉଠେ, ହଠାତ୍ କିଏ କେଉଁଠି, କିପରି ବଜାଇ ଦିଏ ମୁଁ ଜାଣେ ନାହିଁ । କେବଳ ତତ୍‌କ୍ଷଣାତ୍ ଯାହା ବାଜେ ତାହା ମୁଁ ଶୁଣେ, ତାହା ଦୁଃଖ ନା ଆନନ୍ଦର ସ୍ୱର, ତାହା ସୂକ୍ଷ୍ମ ନା ସ୍ଥୂଳ, ଦୀର୍ଘ ନା ହ୍ରସ୍ୱ, ସ୍ୱରା ବା ବେସୁରା ? ରହ, ମୁଁ କ'ଣ ପ୍ରକୃତରେ ତାହା ଜାଣେ ?''

ଭାଗ୍ୟତଃ ସେ ଦାର୍ଶନିକ ନଥିଲେ । କାହିଁକି ଓ କିପରି ବିଷୟରେ ବେଶୀ ମୁଣ୍ଡ ନ ଖେଳାଇ ସେ ଗାଇ ଚାଲିଥିଲେ । ସଂଗୀତ ନ ଆସିଲେ ସେ ଅଶାନ୍ତ ଓ ଅତୃପ୍ତ ହୋଇ ଉଠୁଥିଲେ । କବିତା ଥିଲା ତାଙ୍କ ଜୀବନର ସବୁଠାରୁ ପୁରାତନ ପ୍ରେମ, ଅନ୍ୟ ଯେ କୌଣସି କଳାରେ ସାମୟିକ ଭାବେ ଲିପ୍ତ ରହିଲେ ବି ସେ ବାରମ୍ବାର କବିତା ପାଖକୁ ଫେରି ଆସୁଥିଲେ । 1892 ମେ ରେ ସେ ଲେଖିଛନ୍ତି ''ଗୋଟିଏ ମାତ୍ର କବିତା ରଚନାର ଯେଉଁ ଆନନ୍ଦ ତାହା ରାଶି ରାଶି ଗଦ୍ୟ ରଚନାକୁ ବଳି ଯାଏ ।..........ଯଦି ଦିନକୁ ଗୋଟିଏ କବିତା ମୁଁ ଲେଖିପାରନ୍ତି...........'' ପ୍ରାୟତଃ ସେ ତା କରିଛନ୍ତି ।1894ରୁ 1900- ଏଇ ସାତ ବର୍ଷ ଭିତରେ ସେ ବଡ ବଡ କବିତା ଗ୍ରନ୍ଥ ପ୍ରକାଶ କରିଥିଲେ । ତାହା ସହିତ ନାଟକ, ଗଳ୍ପ ଓ ଅନ୍ୟାନ୍ୟ ଗଦ୍ୟ ରଚନା ମଧ୍ୟ ପ୍ରକାଶ ପାଇଛି ।

ଏଥିରୁ ପ୍ରଥମ କବିତା ଗ୍ରନ୍ଥର ନାମଥିଲା 'ସୋନାର ତରୀ' ପ୍ରଥମ କବିତାର ଶୀର୍ଷକକୁ ଘେନି ନାମିତ । ବର୍ଷା ଦିନରେ ଥରେ ଆକାଶରେ ମେଘର ଗର୍ଜନ ଶୁଭୁଛି, କବି ବସିଛନ୍ତି ନଦୀକୁ ଚାହିଁ । ସୁନାର ତରୀ କୂଳ ଛୁଇଁ ଚାଲିଛି । ସେ ଅସ୍ପଷ୍ଟ ଭାବେ ଦେଖୁଛନ୍ତି ତାର ମଙ୍ଗଉପରେ ବସିଥିବା ଆରୋହୀଙ୍କୁ । ଗଦା ଗଦା ଫସଲ ଭର୍ତ୍ତି ହେଉଛି ନୌକାରେ । ତରୀ ଭାସି ଚାଲିଛି । କେହି ଜାଣନ୍ତିନି କେଉଁଠିକି ଚାଲିଛି । ଆଉ କବି ଏକା ବସିରହିଛନ୍ତି କୂଳରେ, ନିଃସଙ୍ଗ ଭାବରେ । ଏହି କବିତାଟିର ପ୍ରକୃତ ଅର୍ଥ ଘେନି ବଙ୍ଗଳା ସାହିତ୍ୟ ଜଗତରେ ଥରେ ବିତର୍କର ଝଡ ଉଠିଥିଲା । ସୁନାର ତରୀ କ'ଣ, ଆଉ କିଏ ତା'ର ଚାଳକ ? କବି ନିଜେ ବୁଝାଇଛନ୍ତି- ତାଙ୍କ ପାଇଁ ତରୀ ହେଉଛି ଜୀବନର ପ୍ରତୀକ ଯାହା ଆମ କୃତିତ୍ୱର ଫସଲକୁ ବୋଝେଇ କରି ଚାଲିଛି ସମୟର ସ୍ରୋତରେ ଆମକୁ ପଛରେ ପକାଇ । ବହିର ଶେଷ କବିତାରେ ପୁଣି ସେଇ ସୁନାର ତରୀର ଆବିର୍ଭାବ । ଏବେ କବି ନିଜେ ତରୀ ଉପରେ । ତାଙ୍କର ହଜିଯାଇଥିବା ଖେଳସାଥି, ତାଙ୍କ କାବ୍ୟ

ଦେବୀ, ତାଙ୍କର ସ୍ୱପ୍ନ ସଂଙ୍ଗିନୀ, ତାଙ୍କୁ ଚିରକାଳ ପଥ ଦେଖାଉଥିବା ସେଇ ପରୀ, କିଛି ଜଣା କିଛି ଅଜଣା- ସେ ହିଁ  ସେଇ ତରୀର ମଙ୍ଗ ଉପରେ । ସେ ନିରବ, କିନ୍ତୁ ସ୍ମିତହାସ୍ୟ ରେଖା ତାଙ୍କର ଇଙ୍ଗିତ କରୁଛି ସେଇ ସୁଦୂର ଦିଗ୍‌ବଳୟ ଆଡେ ଯେଉଁଠି ପଶ୍ଚିମ ଦିଗନ୍ତରେ ସୂର୍ଯ୍ୟ ଅସ୍ତ ଯାଉଛନ୍ତି ।

ପଚାରିଲି ମୁଁ ତରୀ ଉପରକୁ ଉଠି
''ନୂତନ ଜୀବନ ଆମେ ପାଇବା କି ସେଠି ?
ଆଶା କି କରିବା ଆମେ ପାଇବାକୁ ଶେଷେ ସୁନାର ଫସଲ ?''
ମୋ ମୁହଁକୁ ଚାହିଁ ତମେ ସ୍ମିତ ହସି ଦେଲ
ଶବ୍ଦଟିଏ ନ ଉଚ୍ଚାରି ନିରବେ ରହିଲ ।

ଏଇ ସଂକଳନଟି ବହୁ ଦୀର୍ଘ ଓ ସୁନ୍ଦର କବିତାର ସମାହାର । ସେଥି ମଧ୍ୟରୁ ଗୋଟିଏ ସକଳ ଜୀବନର ଜନନୀ ଧରିତ୍ରୀ ବିଷୟରେ,  ଆଉ ଗୋଟିଏ ସାଗର ବିଷୟରେ ଯାହା କୋଳରୁ ପୃଥିବୀର ଜନ୍ମ । ପୁଣି ଆଉ ଗୋଟିଏ କବିତାର ବିଷୟ- ମାନସ ସୁନ୍ଦରୀ : ସବୁ ସୌନ୍ଦର୍ଯ୍ୟର ସାର ସୌନ୍ଦର୍ଯ୍ୟମୟୀ, ତାଙ୍କର ପିଲା ଦିନର ଖେଳସଂଗୀ, ଯୌବନର ସ୍ୱପ୍ନ, ଆଉ ବର୍ତ୍ତମାନର ପ୍ରାଣ ସତ୍ତା । ସେଥିରେ ଗୋଟିଏ ସୁନ୍ଦର ଓ ଚିତ୍ତାକର୍ଷକ କବିତାର ଶୀର୍ଷକ 'ଯିବାକୁ ଦେବିନି' । କବି ଥରେ ଗୋଟିଏ ଯାତ୍ରାରେ  ବାହାରୁଛନ୍ତି । ଜିନିଷ ପତ୍ର ଠିକ୍ ଠାକ୍ ହୋଇ ଯାଇଛି । ଚାକରବାକର ସଜାଡ଼ିବାରେ ବ୍ୟସ୍ତ, ପତ୍ନୀ ଏଇଟା ସେଇଟା ମନେ ପକାଇ ଯୋଗାଇ ଦେଉଛନ୍ତି, କେବଳ ଛୋଟ ଝିଅଟି  ତାଙ୍କର ଚୁପ୍ ହୋଇ ବସିରହି, ସେ ବାହାରିଲା ବେଳକୁ କହୁଛି, 'ମୁଁ ତୁମକୁ ଯିବାକୁ ଦେବିନି ।' ଶିଶୁଟିର  ହୃଦୟରୁ ଝରି ଆସିଥିବା ଏଇ ସରଳ କଥା ପଦକ କବିଙ୍କ ମନରେ ଯୁଗ ଯୁଗର ଜୀବନର ବେଦନାଭରା ମର୍ମ ବାଣୀକୁ ସମାହିତ କରିଛି । ସବୁକିଛି ଚାଲିଯାଉଥାଏ । ଆଉ ଜୀବନ ଓ ଜଗତର ଏଇ ନିରନ୍ତର ପ୍ରବହମାନତା ଭିତରେ ଗୋଟିଏ ଚିରନ୍ତନ ସ୍ୱର ପ୍ରତିଧ୍ୱନିତ ହେଉଥାଏ ''ଯିବାକୁ ଦେବିନି'' ।

ଭାବାବେଗର ଆତିଶଯ୍ୟରେ ଏ କବିତା ସବୁ ସମୁଜ୍ଜ୍ୱଳ ଓ ରସୋତ୍ତୀର୍ଣ୍ଣ । ଭାବର ବିପୁଳତାରେ ଯେପରି ବିସ୍ତୀର୍ଣ୍ଣ ଅନୁଭୂତିର ପ୍ରତିବିମ୍ବନରେ ସେହିପରି ସମୁତ୍କୀର୍ଣ୍ଣ । ପ୍ରତିବିମ୍ବିତ ବସ୍ତୁର ଛବି କ୍ରମଶଃ ତାଙ୍କ କବିତାରେ ପ୍ରାଧାନ୍ୟ ପାଇଲା । ଅନ୍ତରର ଅନୁଭବ ଏଠି ସବଳ ଓ ଭାବ ସୂକ୍ଷ୍ମ ।

'ସୋନାର ତରୀ' ପରେ ପରେ 1896ରେ ପ୍ରକାଶ ପାଇଲା ଆଉ ଏକ କବିତା ସଂକଳନ 'ଚିତ୍ରା' । ବହୁ ପାଠକଙ୍କ ମତରେ ଏହି କବିତା ଗ୍ରନ୍ଥଟି ହେଉଛି ରବୀନ୍ଦ୍ର ନାଥଙ୍କର କାବ୍ୟ ପ୍ରତିଭାର ଚରମ ଅଭିବ୍ୟକ୍ତି । ଏଥିରେ ସଂକଳିତ କେତୋଟି କବିତାରେ ନିଃସନ୍ଦେହରେ ପ୍ରକାଶ ପାଇଛି କବିଙ୍କର ଏଇ ସମୟର କାବ୍ୟସିଦ୍ଧିର ଶୀର୍ଷତମ ନୈପୁଣ୍ୟ । କିନ୍ତୁ ତାଙ୍କ କାବ୍ୟ ପ୍ରତିଭା ଥିଲା ଠିକ୍ ପର୍ବତମାଳା ପରି ଯାହା ବିଭିନ୍ନ ସମୟରେ ଭିନ୍ନ ଭିନ୍ନ  ଗିରିଶୃଙ୍ଗକୁ ପ୍ରକାଶ କରୁଥିଲା । ଏଇ କାବ୍ୟ ଗ୍ରନ୍ଥର ଶୀର୍ଷକ ବିଷୟରେ ସୂଚନା ଓ ସାମଗ୍ରିକ ଭାବେ ସବୁ କବିତାର ଆବେଦନ ପ୍ରଥମ କବିତା ଭିତରେ  ହିଁ ମିଳେ । କବି ସେଥିରେ ବିଶ୍ୱ ଶକ୍ତିର ଆଧାର ଭାବେ ପ୍ରକୃତିକୁ ସମ୍ବୋଧନ କରି କହୁଛନ୍ତି ଯେ ପ୍ରକୃତି ଏକ ବିଚିତ୍ରରୂପା ନାରୀ ଯାହାର ସୌନ୍ଦର୍ଯ୍ୟ ଶତସହସ୍ର ରୂପରେ ପ୍ରତିଭାତ । କିନ୍ତୁ ବହିର୍ଜଗତରେ ତା'ର ସୌନ୍ଦର୍ଯ୍ୟ ବହୁ ଧାରାରେ ପ୍ଳାବିତ ଓ ବହୁ ଦୃଶ୍ୟ, ବର୍ଣ୍ଣ ଓ ଶବ୍ଦରେ ବିଭାସିତ

ହେଲେ ମଧ୍ୟ ମନୋଜଗତରେ ସେ ଏକାକିନୀ ଓ ଅନନ୍ୟା- ଆତ୍ମମଗ୍ନ ଓ ସମାଚ୍ଛନ୍ନ ।

ନିଜ ଚେତନାରେ କ୍ରମ ବର୍ଦ୍ଧମାନ ଏଇ ବିଶ୍ୱସତ୍ତାର ସ୍ୱରୂପକୁ ସେ ବାସ୍ତବରୂପରେ ଗଭୀର ପ୍ରତ୍ୟକ୍ଷାନୁଭୂତି ବା ଆତ୍ମ ପ୍ରୟୋଜନ ପାଇଁ ଅନୁଭବ କରୁଥିଲେ । ସବୁ କିଛିରୁ ସେ ଥିଲେ ଊର୍ଦ୍ଧ୍ୱରେ । ସେ ଏପରି ରୂପପ୍ରାଣ ଥିଲେ, ଯିଏ ଅତି ସାଧାରଣ ବସ୍ତୁରେ ମଧ୍ୟ ସୌନ୍ଦର୍ଯ୍ୟ ଦେଖୁଥିଲେ, ବାହାର ଜଗତରେ ତାର ସ୍ପର୍ଶ ଅନୁଭବ କରୁଥିଲେ ପୁଣି ସ୍ପର୍ଶ ଅନୁଭବ କରୁଥିଲେ ନିଜର ଅନ୍ତର୍ଜଗତର ସୂକ୍ଷ୍ମ ସତ୍ତା ଭିତରେ । ସେ ଜାଣିଥିଲେ ଯେ ଅବଚେତନ ବା ଊର୍ଦ୍ଧ୍ୱଚେତନର କୌଣସି ଏକ ବିନ୍ଦୁରେ ଏଇ ଦୁଇଟିର ଏକ ଅନ୍ତରଙ୍ଗ ସଂପର୍କ ବିଦ୍ୟମାନ । ଏହି ମହାଜଗତରେ ବିସ୍ତୃତ ହୋଇ ରହିଥିବା ଓ ଏହାକୁ ପରିଚାଳିତ କରିଥିବା ମହାଶକ୍ତି ହିଁ ତାଙ୍କ ନିଜ ଅନ୍ତରରେ ଅବସ୍ଥିତ ହୋଇ ତାଙ୍କ ଜୀବନ ଓ ପ୍ରତିଭାକୁ ପରିଚାଳିତ କରୁଛି । ତାହାରି ଆତ୍ମସ୍ଥତା ଓ ଅନ୍ତରଙ୍ଗତା ସେ ସର୍ବଦା ଅନୁଭବ କରୁଥିଲେ ଓ ତାକୁ ହିଁ ସମ୍ବୋଧନ କରି କହୁଥିଲେ 'ଜୀବନ ଦେବତା'- ଏହିପରି ନାମିତ କବିତାରେ ଲେଖିଛନ୍ତି:

ଆହେ ଅନ୍ତରତମ
ମେଣ୍ଟିଛି କି ତବ ସକଳ ତୃଷ୍ଣା ଆସି ଅନ୍ତରେ ମମ
ଦୁଃଖସୁଖର ଲକ୍ଷ ଧାରାରେ
ପାତ୍ର ଭରି ମୁଁ ଦେଇଛି ତୁମରେ
ନିଠୁର ପୀଡନେ ଚିପୁଡି ବକ୍ଷ ଦଳିତ ଦ୍ରାକ୍ଷାସମ ।
କେତେ ଯେ ବରଣ, କେତେ ଯେ ଗନ୍ଧ
କେତେ ଯେ ରାଗିଣୀ, କେତେ ଯେ ଛନ୍ଦ
ଗୁଁଥି ଗୁଁଥି ମୁହିଁ କରିଛି ବୟନ ବାସର ଶୟନ ତବ
ଗଳାଇ ଗଳାଇ ବାସନାର ସୁନା
ପ୍ରତିଦିନ ମୁଁ ଯେ କରିଛି ରଚନା
ତୁମର କ୍ଷଣିକ ଖେଳା ଲାଗି ମୁହିଁ ମୂରତି ନିତ୍ୟ ନବ ।

ନିଜର ବହୁ ଦୁର୍ବଳତାକୁ ସ୍ୱୀକାର କରି ସେଥିପାଇଁ ଜୀବନ ଦେବତାଙ୍କ ପାଖରେ କ୍ଷମା ମାଗିଛନ୍ତି, ''ଆହେ ମହାକବି ! ତୁମର ଚରିତ ଗାଇକି ପାରିବି ମୁହିଁ ?''

ଏଇ କାବ୍ୟ ସଂକଳନର ଅନ୍ୟ ଏକ କବିତା 'ଉର୍ବଶୀ' । ହିନ୍ଦୁ ପୁରାଣର ସେଇ କିମ୍ବଦନ୍ତୀର ଅପସରା ମୁନି ଋଷିମାନଙ୍କୁ ଅତିଷ୍ଠ କରି ପକାଉଥିଲା ଆଉ ସମସ୍ତଙ୍କର ହୃଦୟକୁ ଜିଣିଯାଉଥିଲା । କବି ବର୍ଣ୍ଣନା କରୁଛନ୍ତି ଯେ- ଦେବଗଣଙ୍କର ଆଦିମ ସାଗର ମନ୍ଥନ ସମୟରେ ଦକ୍ଷିଣ ହସ୍ତରେ ଅମୃତ, ବାମରେ ଗରଳଧରି କୁଂଦଶୁଭ୍ର ଅନିନ୍ଦ୍ୟ ନଗ୍ନକାନ୍ତି ଉର୍ବଶୀର ଆବିର୍ଭାବ । ଉର୍ବଶୀ ଏକ ଚିରନ୍ତନ ରମଣୀ, ଯାହାକୁ ଚିରକାଳ ମଣିଷ ଚାହିଁଛି କିନ୍ତୁ କେବେ ପାଇନି । କାରଣ ସେ ''ନୁହେଁ ମାତା, ନୁହେଁ କନ୍ୟା, ନୁହେଁ ବଧୂ ।''

ଆଉ ଏକ ଭାବଦ୍ୟୋତକ ଓ ଅନୁପମ କବିତା 'ସ୍ୱର୍ଗରୁ ବିଦାୟ' । ମର୍ତ୍ତରେ ପୁଣ୍ୟ କରିଥିବା ଗୋଟିଏ ଆତ୍ମା ସ୍ୱର୍ଗରେ କିପରି ବିଳସିତ ହୋଇଥିଲା ତାହାର ସ୍ୱଗତୋକ୍ତି ଏଥିରେ ପ୍ରକାଶିତ । ସମୟ ଅତିକ୍ରାନ୍ତ ଓ ପୁଣ୍ୟ ଶେଷ ହେବା ପରେ ସେ ମର୍ତ୍ତକୁ ପୁଣି ଫେରିବ । ଏତିକି ବେଳେ ସେ ସ୍ୱର୍ଗର ଶୀତଳ ସୁଖ ଓ ଅଖଣ୍ଡ ଶାନ୍ତି ସହିତ ମର୍ତ୍ତର ସୁଖ ଦୁଃଖ ସମ୍ମିଶ୍ରିତ ଉଷ୍ଣ

ଆବେଗଭରା ଜୀବନକୁ ତୁଳନା କରୁଛି । ଏଇ କବିତାଟି ମର୍ତ୍ତ୍ୟମାଟି ଓ ତାର ସରଳ ମାନବିକ ବନ୍ଧନର ଏକ ଦୀର୍ଘ ପ୍ରଶଂସାମୁଖର ବିଜୟଗାଥା ।

ଆପଣା ସଂଗୀତର ଆହ୍ଲାଦରେ ମୁଖରିତ କବିଙ୍କର ମନ ଓ ନିଜ ଦେଶର ଦୁଃଖୀ ଜନଙ୍କ ବିକ୍ଷୁବ୍ଧ ତାଙ୍କର ବିବେକୀ ଆତ୍ମା ଭିତରେ ଦ୍ୱନ୍ଦ୍ୱକୁ ଘେନି ଏକ ମାର୍ମିକ କବିତା 'ଏଥର ଫେରାଅ ମୋରେ' । ଏହା ଏପରି ଏକ କବିତା ଯାହାକୁ ମହାତ୍ମା ଗାନ୍ଧି ହୁଏତ ରଚନା କରିଥାଆନ୍ତେ ଯଦି ସେ କବି ହୋଇଥାନ୍ତେ । କବି ନିଜକୁ ଜଣେ ବଂଶୀବାଦକ ବାଳକ ଭାବେ ମନେକରି ବର୍ଣ୍ଣନା କରିଛନ୍ତି ଯେତେବେଳେ-

ସଂସାରେ ସକଳେ ଯେବେ ସାରାକ୍ଷଣ ଶତ କର୍ମେ ରତ
ତୁହି ଖାଲି, ଛିନ୍ନବାଧା ପଳାତକ ବାଳକ ପରି ତ
ମଧ୍ୟାହ୍ନେ ପ୍ରାନ୍ତର ମଧ୍ୟେ ଏକାକୀ ବିଷଣ୍ଣ ତରୁଛାୟେ
ଦୂରବନଗନ୍ଧବହ ମନ୍ଦଗତି କ୍ଳାନ୍ତ ତପ୍ତ ବାୟେ
ସାରା ଦିନ ବଜାଇଲୁ ବଂଶୀ । ଆରେ ତୁହି ଉଠ୍ ଆଜି ।
ନିଆଁ ଲାଗି ଗଲା କାହିଁ । କାହା ଶଙ୍ଖ ଉଠୁ ଅଛି ବାଜି
ଜଗାଇ ଜଗତ ଜନେ ! କେଉଁଠି ବା ଧ୍ୱନୁଛି କ୍ରନ୍ଦନେ

ଶୂନ୍ୟତଳ ! କେଉଁ ଅନ୍ଧକାରା ମଧ୍ୟେ ଜର୍ଜର ବନ୍ଧନେ
ଅନାଥିନୀ ମାଗୁଛି ସହାୟ ! ସ୍ଫୀତକାୟ ଅପମାନ
ଅକ୍ଷମର ବକ୍ଷ ତଳୁ ରକ୍ତ ଶୋଷି କରୁଅଛି ପାନ
ଲକ୍ଷ ମୁଖ ଦେଇ ! ବେଦନାରେ କରି ପରିହାସ
ସ୍ୱାର୍ଥୋଦ୍ଧତ ଅବିଚାର, ସଂକୁଚିତ ଭୀତ କ୍ରୀତଦାସ
ଲୁଚିଅଛି ଛଦ୍ମବେଶେ ! ଏଠି ନତଶିର
ମୂକ ସର୍ବେ, ମ୍ଳାନ ମୁଖେ ଲେଖା ଖାଲି ଶତ ଶତାବ୍ଦୀର
ବେଦନାର କରୁଣ କାହାଣୀ, ସ୍କଂଧେ ଯେତେ ଚାପେ ଭାର
ବହି ଚ଼ଳେ ମନ୍ଦ ଗତି ଯେତେ କ୍ଷଣ ଥାଏ ପ୍ରାଣ ତାର
ତାହା ପରେ ସନ୍ତାନରେ ଦେଇ ଯାଏ ବଂଶ ବଂଶ ଧରି,
ନାହିଁ ଭର୍ତ୍ସେ ଅଦୃଷ୍ଟରେ ନାହିଁ ନିନ୍ଦେ ଦେବତାରେ ସ୍ମରି,
ମାନବକୁ ନାହିଁ ଦିଏ ଦୋଷ, ନାହିଁ ଜାଣେ ଅଭିମାନ,
ଦୁଇଟି ବା ଅନ୍ନଖୁଁଟି କେଉଁପରି କଷ୍ଟକ୍ଲିଷ୍ଟ ପ୍ରାଣ
ରଖେ ଯେ ବଂଚାଇ ସେହି ଅନ୍ନ ଯେବେ କେହି କାଢ଼େ,
ସେହି ପ୍ରାଣେ ଆଘାତ ଦିଏ ଗର୍ବାଂଧ ନିଷ୍ଠୁର ଅତ୍ୟାଚାରେ
ନାହିଁ ଜାଣେ କାହା ଦ୍ୱାରେ ଠିଆ ହେବ ବିଚାରର ଆଶେ
ଦରିଦ୍ରର ଭଗବାନେ ଥରେ ମାତ୍ର ଡାକି ଦୀର୍ଘଶ୍ୱାସେ
ମରେ ସେ ନୀରବେ । ଏହି ସବୁ ମୂଢ଼ ମ୍ଳାନ ମୂକ ମୁଖେ
ଦେବା ପରା ଭାଷା, ଏହି ସବୁ ଶ୍ରାଂତ ଶୁଷ୍କ ଭଗ୍ନ ବୁକେ

ଧ୍ୱନାଇ ତୋଳିବା ପରା ଆଶା, କହିବାକୁ ହେବ ଡାକି
''ମୁହୂର୍ତ୍ତେ ଟେକି ତୋ ଶିର ଏକତ୍ର ହୋଇ ଛିଡା ହୁଅ ଦେଖି।
ଯାହା ଭୟେ ତୁମେ ଭୀତ ସେ ଅନ୍ୟାୟ ଭୀରୁ ତୁମଠାରୁ
ତୁ ଯେବେ ଜାଗିବୁ ସିଏ ପଳାଇ ଯେ ଯିବ କାହିଁ ଦୂରୁ।
ଛିଡା ହେବୁ ଯେବେ ତା ସମ୍ମୁଖେ, ତେବେ ସେହି
ପଥର କୁକୁର ପରି ସଂକୋଚେ ପଳାଇ ଯିବ କାହିଁ।
ଦେବତା ବିମୁଖ ତାରେ, କେହି ନାହିଁ ସହାୟ ତାହାର,
ମୁଖେ କରେ ଆସ୍ଫାଳନ, ଜାଣେ ସେ ହୀନତା ଆପଣାର
ମନେ ମନେ।''
କବି, ତେବେ ଉଠି ଆସ- ଯଦିଥାଏ ପ୍ରାଣ
ତେବେ ତାହା ଆଣ ସଂଗେ, ତେବେ ତାହା କର ଆଜି ଦାନ।
ବଡ ଦୁଃଖ, ବଡ ବ୍ୟଥା- ସମ୍ମୁଖରେ କଷ୍ଟର ସଂସାର
ବଡ଼ଇ ଦରିଦ୍ର, ଶୂନ୍ୟ, ବଡ କ୍ଷୁଦ୍ର, ବଦ୍ଧ ଅଂଧକାର।
ଅନ୍ନ ଚାହେଁ, ପ୍ରାଣ ଚାହେଁ, ଚାହେଁ ଦୀପ୍ତି, ଚାହେଁ ମୁକ୍ତ ବାୟୁ
ଚାହେଁ ବଳ, ଚାହେଁ ସ୍ୱାସ୍ଥ୍ୟ, ଆନନ୍ଦ ଉଜ୍ଜ୍ୱଳ ପରମାୟୁ,
ସାହସ ବିସ୍ତୃତ ବକ୍ଷପଟ। ଏ ଦୈନ୍ୟ ଭିତରେ, କବି
ଥରେ ମାତ୍ର ନେଇ ଆସ ସ୍ୱର୍ଗଦେଶୁ ବିଶ୍ୱାସର ଛବି।

କିନ୍ତୁ ରବୀନ୍ଦ୍ରନାଥ ତ ଗାନ୍ଧୀ ନଥିଲେ, ବୀରତ୍ୱ କୁଆଡେ ଆପଣା ଛାଏଁ ଉଡିଗଲା। ଯଦିଓ ସେ ମହାତ୍ମାଙ୍କୁ କେବଳ ଆଦର୍ଶରେ ନୁହେଁ କର୍ମଧାରାରେ ମଧ୍ୟ ଏକା ଭଳି ଆଶା କରୁଥିଲେ ସେ ସେଇ ଏକ ପ୍ରକାର ମାନସିକତାରେ ବେଶୀ ଦିନ ରହିନଥିଲେ। ସେ ଗୋଟିଏ ଆଦର୍ଶ ବା ଲକ୍ଷ୍ୟରେ ଆବଦ୍ଧ ନଥିଲେ। ବହୁ ବିଚିତ୍ର ଭାବ ଓ ବସ୍ତୁ ତାଙ୍କୁ ବିଭିନ୍ନ ଆଡକୁ ଘେନି ଯାଉଥିଲା। ଅଳ୍ପ କିଛି ଦିନ ପରେ ରଚିତ ଠିକ ଏହାର ପର କବିତାରେ ସେ ପୂର୍ବ ସ୍ମୃତିକୁ ମନେ ପକାଇ ବ୍ୟଥିତ ହୋଇ ଉଠିଛନ୍ତି। ଭାଉଜଙ୍କ ଅଗଣାରେ ଫୁଟି ଥିବା ଚମ୍ପା ଓ ମଲ୍ଲୀ ଫୁଲ ଗନ୍ଧର ସ୍ମୃତି ପୁଣି ମୁଂଜରିତ ହୋଇ ଉଠିଛି। ''ନିଜ ହାତରେ ଯେବେ ସେ ସେଇ ଫୁଲ ସବୁ ବଢ଼ାଇ ଦେଉଥିଲେ ଆହାକି ସୁନ୍ଦର ତାହା।'' ଆଉ ଗୋଟିଏ କବିତାରେ ବିଫଳତା ପାଇଁ ପରିତାପ କରୁଛନ୍ତି- ''ମୋ ହାତରେ ଥିଲା ବୀଣା, ମନରେ ଥିଲା ସଂଗୀତ- କିଏ ଜାଣିଥିଲା ସଂଗୀତର ଅଧା ବାଟରେ ବୀଣାର ତାର ଛିଣ୍ଡି ଯିବ।''

'ସୋନାର ତରୀ' ଓ 'ଚିତ୍ରା'- ଏଇ ଦୁଇ କାବ୍ୟଗ୍ରନ୍ଥ ପ୍ରକାଶ କାଳ ମଧ୍ୟରେ ଗୋଟିଏ ଦୀର୍ଘ କବିତା 'ନଦୀ', ଗୋଟିଏ ଏକାଙ୍କୀ ଗୀତିନାଟ୍ୟ 'ବିଦାୟ- ଅଭିଶାପ' ପ୍ରକାଶ ପାଇଥିଲା। ପୂର୍ବରୁ ତାଙ୍କର ନାଟକ ସବୁ ମୁକ୍ତ ଛନ୍ଦରେ ରଚିତ ହୋଇଥିଲା କିନ୍ତୁ ବର୍ତ୍ତମାନ ମିଳନାନ୍ତ ପୟାର ଓ ଧାବମାନ ଛନ୍ଦ କବିଙ୍କୁ ଖୁବ୍ ଆକର୍ଷଣ କଲା। ବଙ୍ଗଳାରେ ଏହି ଧାରା ପ୍ରବର୍ତ୍ତନ କରି ସେ ଅଦ୍ଭୁତ ସଫଳତା ଲାଭ କରିଥିଲେ। ଚିତ୍ରାଙ୍ଗଦା ପରି 'ବିଦାୟ-ଅଭିଶାପ'ରେ କବି ମହାଭାରତରୁ ଗୋଟିଏ ସରଳ ସୁନ୍ଦର ପୌରାଣିକ କିମ୍ବଦନ୍ତୀ ଗ୍ରହଣ କରି ତାହାକୁ ଜ୍ଞାନର ଉପାସନା ବା କର୍ମ ଓ ପ୍ରେମର ଦାବୀ ମଧ୍ୟରେ ଗଭୀର ମାନସିକ ଦ୍ୱନ୍ଦ୍ୱରେ ପରିଣତ କରିଛନ୍ତି। ଏଇ କିମ୍ବଦନ୍ତୀରେ

ଦେବତା ଓ ଦୈତ୍ୟମାନଙ୍କ ଭିତରେ ପୁରାତନ ଶତ୍ରୁତାକୁ ରୂପ ଦିଆଯାଇଛି । ଦୈତ୍ୟଗୁରୁ ଶୁକ୍ର ମୃତ ସଂଜୀବନୀ ଗୁପ୍ତ ମନ୍ତ୍ର ଜାଣନ୍ତି ଓ ମୃତ ବ୍ୟକ୍ତିକୁ ଜୀବଦାନ ଦେଇ ପାରନ୍ତି । ଦେବତାମାନେ ଏହା ଜାଣିବା ପାଇଁ ବ୍ୟଗ୍ରହୋଇ ସେମାନଙ୍କର ଗୁରୁପୁତ୍ର କଚଙ୍କୁ ଶୁକ୍ରଙ୍କ ଶିଷ୍ୟ ହେବା ପାଇଁ ପଠାନ୍ତି । ସୁନ୍ଦର ବ୍ରାହ୍ମଣ ଯୁବକ କଚଙ୍କୁ ଦେଖି ଶୁକ୍ରଙ୍କ କନ୍ୟା ଦେବଯାନୀ ତାଙ୍କର ପ୍ରେମରେ ପଡି ଯାଆନ୍ତି ଓ ତାଙ୍କୁ ଶିଷ୍ୟ ଭାବରେ ଗ୍ରହଣ କରିବା ପାଇଁ ପିତାଙ୍କୁ ପ୍ରବର୍ତ୍ତାନ୍ତି । ନିଜର ଶିକ୍ଷା ସମାପ୍ତ କରି ମୃତକୁ ଜୀବଦାନ ଦେବା ଜାଣିବା ପରେ କଚ ଦେବଯାନୀଙ୍କ ପାଖକୁ ଆସି ବିଦାୟ ମାଗନ୍ତି । ଏହି ନାଟକର ଆରମ୍ଭ ଏହିଠାରୁ ତା'ପରେ ଏଇ ଦୁଇ ଜଣଙ୍କ ମଧରେ କଥୋପକଥନ ଚାଲିଛି ।

ଦେବଯାନୀ: ମନୋରଥ ପୂର୍ଣ୍ଣ ହେଲା, ପାଇଛ ଦୁର୍ଲଭ ବିଦ୍ୟା-
ଆଚାର୍ଯ୍ୟଙ୍କଠାରୁ ଅଜସ୍ର ବରଷ ତବ ଦୁଃସାଧ ସାଧନା
ସିଦ୍ଧ ଆଜି, ଆଉ କିଛି ନାହିଁ କି କାମନା,
ଭାବି ଦେଖ ମନେ ମନେ ।
ଅବଗାହି ହୃଦୟର ସୀମାନ୍ତ ଅବଧି କରହେ ସଂଧାନ,
ଅନ୍ତରର ପ୍ରାନ୍ତେ ଯଦି କେଉଁ ବାଞ୍ଛାଥାଏ, କୁଶର
ଅଙ୍କୁର ସମ କ୍ଷୁଦ୍ର ଦୃଷ୍ଟି- ଆଗୋଚର,
କିନ୍ତୁ ତୀକ୍ଷ୍ଣତମ,

କଚ: ଆଉ କିଛି ନାହିଁ

ଦେବଯାନୀ: ତମେ ସୁଖୀ ତ୍ରିଜଗତେ ଆଜି, ଯାଅ ତେବେ
ଇନ୍ଦ୍ରଲୋକେ ନିଜ କାର୍ଯ୍ୟେ ମଣ୍ଡି ଉଚ୍ଚ ଶିରେ
ଗୌରବ ମଣ୍ଡିତ । ସ୍ୱର୍ଗ ପୁରେ ଉଠିବ ଆନନ୍ଦ ଧ୍ୱନି,
ମନୋହର ସ୍ୱରେ ବାଜିବ ମଙ୍ଗଳ ଶଙ୍ଖ,
ସୁରଙ୍ଗନାଗଣ କରିବେ ତୁମର ଶିରେ ପୁଷ୍ପ ବରଷଣ
ସଦ୍ୟ ଛିନ୍ନ ନନ୍ଦନର ମନ୍ଦାର ମଂଜରୀ
ସ୍ୱର୍ଗପଥେ କଳକଣ୍ଠେ ଅପ୍ସରୀ, କିନ୍ନରୀ
ଦେବେ ଉଲୁ ଧ୍ୱନି । ଆହା ବିପ୍ର ବହୁ କ୍ଳେଶେ
କଟିଛି ତୁମର ଦିନ ବିଜନେ ବିଦେଶେ
ସୁକଠୋର ଅଧ୍ୟୟନେ । ଥିଲା ନାହିଁ କିଏ
ସ୍ମରଣ କରାଇ ଦେବ ସୁଖମୟ ଗୃହେ
ନିବାରିବ ପ୍ରବାସ ବେଦନା । ଅତିଥିରେ
ଯଥାସାଧ ପୂଜି ଅଛି ଦରିଦ୍ର କୁଟୀରେ
ଯାହା ଥିଲା ଦେଇ । ତାହା ବୋଲି ସ୍ୱର୍ଗସୁଖ
କାହିଁ ମୁଁ ପାଇବି, ଏଠି ଅନିନ୍ଦିତ ମୁଖ
ସୁରନାରୀ କାହିଁ ! ବଡ ଆଶା କରେ ମନେ
ଆତିଥ୍ୟର ଅପରାଧ ନ ଥିବ ସ୍ମରଣେ

ଫେରିଗଲେ ସୁଖଲୋକେ ।

କଚ: ସୁ କଲ୍ୟାଣ ହାସେ
ପ୍ରସନ୍ନ ବିଦାୟ ଆଜି ଦିଅ ତବ ଦାସେ ।

ଦେବଯାନୀ: ହସ ? ହାୟ ସଖା, ଏତ ସ୍ୱର୍ଗପୁରୀ ନୁହେଁ
ପୁଷ୍ପେକୀଟ ସମ ଏଥି ତୃଷା ଜାଗି ରହେ
ମର୍ମ ମଧ୍ୟେ । ବାଂଛିତକୁ ଘେରି ବାଂଛା ଘୂରେ
ଲାଂଛିତ ଭ୍ରମର ଯଥା ବାଂରମ୍ବାର ଫେରେ
ମୁଦ୍ରିତ କମଳ ପାଶେ । ଏଠି ସୁଖ ଗଲେ
ସ୍ମୃତି ଏକାକିନୀ ବସି ଦୀର୍ଘଶ୍ୱାସ ଛାଡେ
ଶୂନ୍ୟଗୃହେ, ଏଠାରେ ସୁଲଭ ନୁହେଁ ହସ ।
ଯାଅ ବଂଧୁ, କର କିଆଁ ବୃଥା କାଳ ନାଶ;
ଉତ୍କଂଠିତ ଦେବଗଣ ।

କଚ ତାଙ୍କୁ ପ୍ରବୋଧନା ଦେଇ ବୁଝାଇଥିଲେ ଯେ ସେ ଏଠାରୁ ଫେରି ଯିବା ପରେ ଆଶ୍ରମରେ ବିତାଇଥିବା ଦିନ ଗୁଡିକର ସୁଖସ୍ମୃତି ତାଙ୍କୁ ନିଶ୍ଚୟ ବ୍ୟଥିତ କରିବ । ତାପରେ ଦେବଯାନୀ ତାଙ୍କୁ ମନେ ପକାଇ ଦେଲେ କିପରି ସେ ଅନୁରୋଧ ନ କରି ଥିଲେ ତାଙ୍କ ପିତା କେବେ ଶତ୍ରୁ କୁଳର ଜଣେ ପୁତ୍ରକୁ ନିଜର ଶିଷ୍ୟଭାବେ ଗ୍ରହଣ କରି ନଥାନ୍ତେ । କଚ ଋଣ ସ୍ୱୀକାର କରନ୍ତି । ଦେବଯାନୀ କିନ୍ତୁ ନିଜର ସୂକ୍ଷ୍ମ ନାରୀସୁଲଭ ଉପଦେଶ ଦେଇ ବୁଝାଇ ଦିଅନ୍ତି ଯେ କଚ କିପରି ତାଙ୍କୁ ପ୍ରେମ କରୁଥିଲେ । ଏପରିକି ବେଳେ ବେଳେ ନିଜ ଅଧ୍ୟୟନକୁ ଅବହେଳା କରି ନିଜ ଅଧିକାର ବାହାରେ ବି ସେ ତାଙ୍କୁ ପାଇବାକୁ ଓ ତାଙ୍କ ହୃଦୟ ଜିଣିବାକୁ ବ୍ୟାକୁଳ ହୋଇ ଉଠୁଥିଲେ ।

ଦେବଯାନୀ: ଅପରାହ୍ନ କାଳେ
ଜଳସେକ କଲାବେଳେ ତରୁ ଆଲବାଳେ
ମୋତେ ଦେଖି ଶାନ୍ତ ତୁମେ କିଆଁ ଦୟାକରି
ଦେଉଥିଲ ଟେକି ଜଳ ? ପାଠ ପରିହରି
କିଆଁ ପାଳିଥିଲ ମୋର ମୃଗ ଶିଶୁଟିକୁ
ଯେ ସଂଗୀତ ସ୍ୱର୍ଗ ଦେଶୁଁ ଆସିଥିଲ ଶିଖି
କିଂପା ଶୁଣାଇଛ, ସଂଧ୍ୟାବେଳେ ଯେବେ
ନଦୀତୀରେ ଅନ୍ଧକାର ଘୋଟିଛି ନୀରବେ
ପ୍ରେମନତ ନୟନର ସ୍ନିଗ୍ଧ ଛାୟାମୟ
ଦୀର୍ଘ ପଲ୍ଲବସମ ? ମୋହର ହୃଦୟ
ବିଦ୍ୟାପାଇଁ ଆସି କିଆଁ କରିଲ ହରଣ
ସ୍ୱର୍ଗର ଚାତୁରୀ ଜାଲେ ? ବୁଝିଛି ଏ କ୍ଷଣ
ମୋତେ କରିବଶ ତୁମେ ପିତୃ ହୃଦୟେ ହିଁ
ଚାହିଁଥିଲ ପଶିବାକୁ-କୃତକାର୍ଯ୍ୟ ହୋଇ ।

**ଦେବଯାନୀଙ୍କର ଏପରି ଆବେଗୋଷ୍ଣ କଥା ଶୁଣି କଚ ବଡ ବୀତସ୍ପୃହ ହୋଇପଡିଲେ । ପ୍ରତିବାଦ କରି ଜଣାଇଲେ ଯେ ସେ ତାଙ୍କୁ ଗଭୀର ଓ ନିଷ୍ଠାପର ଭାବରେ ଭଲପାଉ ଥିଲେ କେବଳ ନିଜ ପାଇଁ । କିନ୍ତୁ ସେ କର୍ତ୍ତବ୍ୟର ଦାସ । ନିଜର ସୁଖକୁ ଜଳାଜଂଳି ଦେଇ ମଧ ତାଙ୍କୁ ଫେରିଯିବାକୁ ପଡିବ । ଦେବଗଣ ତାଙ୍କର ବିଦ୍ୟାର ଉପଯୋଗ ପାଇଁ ଅପେକ୍ଷା କରି ରହିଛନ୍ତି । ତେଣୁ ତାଙ୍କୁ ସେ କ୍ଷମା ଦିଅନ୍ତୁ ।**

ଦେବଯାନୀ ଉତ୍ତର ଦେଲେ :

କ୍ଷମା କାହିଁ ମନେ ମୋର ।
କରିଛ ଏ ନାରୀଚିତ୍ତେ କୁଳିଶ କଠୋର
ହେ ବ୍ରାହ୍ମଣ ! ତୁମେ ଚାଲିଯିବ ସ୍ୱର୍ଗଲୋକେ
ସଗୌରବେ ଆପଣାର କର୍ତ୍ତବ୍ୟ ପୁଲକେ
ସର୍ବ ଦୁଃଖଶୋକ କରି ଦୂର ପରାହତ;
ମୋ'ର କି ଅଛି କାର୍ଯ୍ୟ, କି ମୋହର ବ୍ରତ !
ମୋର ଏହି ପ୍ରତିହତ ନିଷ୍ଫଳ ଜୀବନେ
କି ରହିଲା, କେଉଁ ଗଉରବ ? ଏହି ବନେ
ବସି ରହି ନତ ଶିରେ ନିଃସଂଗ ଏକାକୀ
ଲକ୍ଷ୍ୟହୀନା । ଯେଉଁ ଦିଗେ ଫେରାଇବି ଆଖି
ସହସ୍ର ସ୍ମୃତିର କଂଟା ବିନ୍ଧିବ ନିଷ୍ଠୁର;
ଲୁଚି ମୋର ବକ୍ଷତଳେ ଲଜ୍ଜା ଅତି କ୍ରୁର
ବାରଂବାର କରିବ ଦଂଶନ । ଧିକ୍ ଧିକ୍,
କେଉଁଠୁ ଅଇଲ ତୁମେ ନିର୍ମମ ପଥିକ,
ବସି ମୋର ଜୀବନର ବନଛାୟା ତଳେ
ଦଂଡ-ଦୁଇ ଅବସର କଟାଇବା ଛଳେ
ଜୀବନର ସୁଖ ସବୁ ଫୁଲର ସମାନ
ଛିନ୍ନ କରି ନେଇ ମାଳା କରିଛ ଗ୍ରଂଥନ
ଗୋଟିଏ ସୂତ୍ରରେ, ଯାହା ଯିବାର ବେଳାରେ
ନେଲ ନାହିଁ ନିଜ ଗଳେ, ପରମ ହେଳାରେ
ସେଇ ସୂକ୍ଷ୍ମ ସୂତ୍ର ଖଂଡି ଦୁଇ ଭାଗ କରି
ଛିଂଣ୍ଡାଇଣ ଗଲ ! ଲୋଟୁଛି ଧୂଳିର- ପରେ
ଏଇ ମୋର ଅଭିଶାପ- ଯେଉଁ ବିଦ୍ୟା ପାଇଁ
ମୋତେ କଲ ଅବହେଳା ସେ ବିଦ୍ୟା କେବେହିଁ
ହେବନି ତୁମର ବଶ ସଂପୂର୍ଣ୍ଣ ରୂପରେ
ତୁମେ ଖାଲି ଭାରବାହୀ ହୋଇଥିବ, ତାରେ
କେବେ ହେଲେ ପାରିବନି କରି ନିଜେ ଭୋଗ
ଶିଖାଇବ, ପାରିବନି କରିଣ ପ୍ରୟୋଗ ।

କଚ ମୁହିଁ ବର ଦେଲି, ଦେବୀ, ତୁମେ ସୁଖୀ ହେବ।
ଭୁଲିଯିବ ସର୍ବଗ୍ଲାନି, ମୁଂଛି ଲଭିବ ଗୌରବ।

ଏଇ ହୃଦୟସ୍ପର୍ଶୀ ନାଟ୍ୟ କବିତା ପରେ ପରେ ପ୍ରକାଶ ପାଇଲା ତାଙ୍କର ଆଉ ଏକ ସଂପୂର୍ଣ୍ଣ ନାଟକ 'ମାଳିନୀ'। ସୁଗଠିତ ଏଇ ନାଟକଟି ପୂର୍ବ ଆଲୋଚିତ ନାଟ୍ୟ କବିତା ଅପେକ୍ଷା ଘଟଣାର ବିକାଶ କ୍ରମରେ ଅଧିକ ନାଟକୀୟ। ଏହା ତାଙ୍କର ପୂର୍ବବର୍ତ୍ତୀ ନାଟକ 'ବିସର୍ଜନ' ପରି ଏକା ଭାବର ବାହକ ଓ ଦ୍ୱନ୍ଦାତ୍ମକ ଅବସ୍ଥାର ଅଧ୍ୟୟନରେ ଜୀବନ୍ତ। ଏଥିରେ ବ୍ରାହ୍ମଣ ଶକ୍ତି ଓ ହିନ୍ଦୁ ନୈଷ୍ଠିକତା ସହିତ ବୌଦ୍ଧ ଚେତନାର ଦୟା ଓ ବିଶ୍ୱପ୍ରେମ ମଧ୍ୟରେ ଦ୍ୱନ୍ଦର ଚିତ୍ର ପରିବେଷିତ। ଜନ୍ମ ସୂତ୍ରରେ ବ୍ରାହ୍ମଣ ଓ ଜଣେ ହିନ୍ଦୁ ସଂସ୍କାରକଙ୍କ ପୁତ୍ର ହୋଇ ମଧ୍ୟ ହିନ୍ଦୁ ଧର୍ମର କ୍ରିୟାଚାର ପ୍ରତି କବି ଉଦାସୀନ ଥିଲେ। ଉପନିଷଦର ଦାର୍ଶନିକ ପ୍ରଜ୍ଞା, ସଂସ୍କୃତ ସାହିତ୍ୟର ସୁଦୀର୍ଘ ଐତିହ୍ୟ ଓ ମଧ୍ୟଯୁଗୀୟ ଭକ୍ତି ସାହିତ୍ୟ ପ୍ରତି ତାଙ୍କର ଆକର୍ଷଣ ଥିଲା ଅଧିକ। ଅନ୍ୟ ପକ୍ଷରେ ବୁଦ୍ଧଙ୍କ ପ୍ରତି ତାଙ୍କର ଅସୀମ ଶ୍ରଦ୍ଧାଥିଲା। ତାଙ୍କ ମତରେ ହିନ୍ଦୁ ଜାତିର ଚିନ୍ତା ବୁଦ୍ଧଙ୍କ ଭିତରେ ଖୋଜିପାଇଛି ନିଜର ସୂକ୍ଷ୍ମତମ ମହନୀୟତା।

ବୌଦ୍ଧ ଜନଶ୍ରୁତି ଓ କାହାଣୀକୁ ଉପଜୀବ୍ୟ କରି ସେ ବହୁ କବିତା ଓ ନାଟକ ରଚନା କରିଥିଲେ। ରାଜକନ୍ୟା 'ମାଳିନୀ' ତାଙ୍କର ପ୍ରଥମ ମୁଖ୍ୟ ବୌଦ୍ଧ ନାୟିକା। ମାତ୍ର ତାଙ୍କର ଏଇ ନାଟକରେ ସବୁଠାରୁ ଜୀବନ୍ତ ଓ ବାସ୍ତବ ଚ଼ରିତ୍ର ଏଇ ସୁନ୍ଦରୀ ସାଧ୍ୱୀ ରାଜକନ୍ୟା ନୁହଁନ୍ତି। କିନ୍ତୁ ତାଙ୍କର ଶତ୍ରୁ ଯିଏ କି ଥିଲେ ଧର୍ମାନ୍ଧତାର ଧ୍ୱଜାଧାରୀ। ଏଠି ସଂଘର୍ଷ କୀଟଦଷ୍ଟ ଧର୍ମଶାସ୍ତ୍ର ଭିତରେ ନୁହେଁ, ସଂଘର୍ଷ ହେଉଛି କରୁଣାର କବିତା ଓ ସାମାଜିକ ଆବଶ୍ୟକତାର ଗଦ୍ୟ ଭିତରେ। ''କରୁଣା ହେଉଛି ଦୂର ଦିଗବଳୟର ଚନ୍ଦ୍ରମା ଯାହାର ଜ୍ୟୋତ୍ସ୍ନା ଆକାଶକୁ ମୋହାଚ୍ଛନ୍ନ କରିଦିଏ। କିନ୍ତୁ ଏହା ହିଁ କ'ଣ ସ୍ଥାୟୀ ବାସ୍ତବତା ? କାଲି ପୁଣି ସକାଳ ହେବ। କ୍ଷିତିର ସମୁଦ୍ର ଭିତରେ ସହସ୍ର ନୀଡରେ ଅଗଣିତ କ୍ଷୁଧିତ ପକ୍ଷୀମାନଙ୍କ କୋଳାହଳରେ ଆକାଶ ପୂର୍ଣ୍ଣ ହୋଇ ଉଠିବ। ଏଇ ଚନ୍ଦ୍ରମାର ଜ୍ୟୋତ୍ସ୍ନା ମଳିନ ପଡିଯିବ।'' ଏହାଠାରୁ ଆହୁରି ତୀବ୍ର ସଂଘର୍ଷ ହେଉଛି ବ୍ୟକ୍ତିଗତ ଆନୁଗତ୍ୟ ଭିତରେ-ବିବେକ ଅଥବା ଧର୍ମ; ଦେଶ ଅଥବା ବିଶ୍ୱାସ, ବନ୍ଧୁତ୍ୱ ଅଥବା ପ୍ରେମକୁ ଘେନି। ଏଇ ଦ୍ୱନ୍ଦର କୌଣସି ଉତ୍ତର ନାହିଁ। ଯାହା ବାଛିଲେ ବି ତାହା ବିୟୋଗାନ୍ତ ପଥରେ ଯିବ। ତେଣୁ ମାଳିନୀ ଚାହିଁଛି ସମସ୍ତଙ୍କୁ କ୍ଷମା କରିଦେବାକୁ ଓ ସମସ୍ତଙ୍କଠାରୁ କ୍ଷମା ଭିକ୍ଷାକରିବାକୁ।

ଏହାର ପରବର୍ତ୍ତୀ ବଡ କବିତା ସଂକଳନ ହେଉଛି ୧୮୭୬ରେ ପ୍ରକାଶିତ 'ଚୈତାଳି'। 'ଚୈତାଳି'ର ପ୍ରତୀକାତ୍ମକ ଅର୍ଥ ହେଉଛି ଶେଷ ଅମଳ। ଚୈତ୍ରମାସ ଶେଷରେ ଯେଉଁ ଧାନ ଅମଳ କରାଯାଏ। ବୈଶାଖର ତପ୍ତ ବାୟୁ ପୃଥିବୀର ଶେଷ ଆର୍ଦ୍ରବିନ୍ଦୁ ଶୋଷଣ କରିନେବା ପୂର୍ବରୁ କବି ଯେମିତିକି ଅନୁଭବ କରୁଥିଲେ ତାଙ୍କ ଜୀବନର ବସନ୍ତ ଶେଷ ହୋଇ ଆସୁଛି। ତେଣୁ ତାଙ୍କର ଯୌବନର ଆବେଗର ପ୍ରାବଲ୍ୟ ବା ଦୁଃସାହସିକ ବୌଦ୍ଧିକତାର କୋମଳ ପାଖୁଡା ସବୁ ମଉଳି ଯିବ ଅଧ୍ୟାତ୍ମିକ ତପଶ୍ଚର୍ଯ୍ୟାର ଉତ୍ତାପରେ। ଏଇ ସଂକଳନର ଅଧିକାଂଶ କବିତା ଆକାରରେ କ୍ଷୁଦ୍ର, ଚତୁର୍ଦ୍ଦଶ ପଦୀ, ଏହାର ଭାଷା ସରଳ। ଏଥିରେ କବି କୌଣସି ନୂତନରୂପ ବା ଭଙ୍ଗୀ ଆବିଷ୍କାର ପାଇଁ ଚେଷ୍ଟା କରିନାହାନ୍ତି। ସାଧାରଣ ଜୀବନରୁ ସେ ବିଷୟ ଆହରଣ କରିଛନ୍ତି। ଏଥିରେ ଭାସି ଉଠିଛି ପଦ୍ମାନଦୀ କୂଳରେ ବସି ସେ ଯେଉଁ ଜୀବନ ଦେଖୁଥିଲେ ତାହାର ଚିତ୍ର ବା ଅତୀତର ସୁଖଦୁଃଖ ଜଡିତ ସ୍ମୃତି। ଯେମିତିକି ଏଥିରେ ବିଦାୟର ସ୍ୱର ବାଜି ଉଠିଛି। ଯେଉଁଥିରେ ରହିଛି ଦୁର୍ଭାବନା, ଦୁଃଖ ଓ ମନ୍ଦପଦର ସଂଚାର। ଭାରତର ଅତୀତ ଗୌରବ ଭିତରକୁ ଫେରିଯିବା

ପୂର୍ବରୁ କବି ଯେମିତିକି ନିକଟ ବର୍ତ୍ତମାନର କେତେକ ଅବିସ୍ମରଣୀୟ ମୁହୂର୍ତ୍ତକୁ ଜୀବନ୍ତ କରି ଦେଇଛନ୍ତି । ତାହା ଭିତରେ ଦେଖା ଯାଉଛି ଝିଅଟିଏ କଳସି ଧରି ନଈକୂଳକୁ ଯାଉଛି, ଛୋଟ ଭାଇଟି ତା'ର ଚାରି ପାଖରେ ବୁଲୁଛି, କାମ ସାରି କୃଷକ ଘରକୁ ଫେରୁଛି, ବୁଢ଼ାଟିଏ ପଦଚାରଣ କରୁଛି, ଯୁବକଟି ମଇଁଷିର ପଙ୍କବୋଳା ଦେହକୁ ସଫାକରି ଦେଉଛି । ଏଇମିତି କେତେ ସୁକୁମାର ଚିତ୍ର ବିଶଦ୍ ଭାବରେ କବିଙ୍କ ଆଖି ଆଗରେ ଫୁଟି ଉଠିଛି ।

ଏଇ ସମୟରେ ରବୀନ୍ଦ୍ରନାଥଙ୍କର କାବ୍ୟ ସୃଷ୍ଟି ସମୃଦ୍ଧମୟ । ଗଦ୍ୟ ରଚନାରେ ବି ତାଙ୍କର ସୃଷ୍ଟି ଅଜସ୍ର ଧାରାରେ ପ୍ରବାହିତ । ଏଇ ସମୟରେ ଲେଖା ତାଙ୍କର କ୍ଷୁଦ୍ରଗଳ୍ପ ସାହିତ୍ୟରେ ଏକ ନୂତନଧାରା ଫିଟାଇଥିଲା । ଏଇ କ୍ଷୁଦ୍ର ଗଳ୍ପରେ ସେ ଯେଉଁ ଉଚ୍ଚମାନ ସୃଷ୍ଟି କରିଥିଲେ ତାହା ଏଯାବତ୍ ଭାରତୀୟ କଥା ସାହିତ୍ୟର ଉଚ୍ଚତମ କୋଟୀକୁ ସ୍ପର୍ଶ କରିଛି । ଏପରିକି ସେ ପରବର୍ତ୍ତୀ କାଳରେ ଯେଉଁ ଗଳ୍ପ ଲେଖିଥିଲେ ତାହା ବି ଏତେ ଉଚ୍ଚକୋଟୀର ହୋଇ ପାରିନଥିଲା । ଏଇ ସମୟରେ ସେ କେତେକ ପରିହାସ ପୂର୍ଣ୍ଣ ସାମାଜିକ ମିଳନାନ୍ତ ପ୍ରହସନ ଲେଖିଥିଲେ । ସେଥି ମଧ୍ୟରୁ ପ୍ରଧାନ ଦୁଇଟି ହେଉଛି- 'ବୈକୁଣ୍ଠର ଖାତା' ଓ 'ଚିରକୁମାର ସଭା' । ପ୍ରଥମଟିର ବିଷୟ ବସ୍ତୁ ହେଉଛି ସେଇ ନଛୋଡବନ୍ଧା ବୁଢ଼ା ଲୋକଟି, ଯିଏ ଯାହା ଘଟୁ ନା କାହିଁକି ସମସ୍ତଙ୍କୁ ନିଜର ଖାତା ପଢ଼ି ଶୁଣାଉଥିଲେ । ସେଥି ପାଇଁ କେହି ତାଙ୍କ ପାଖକୁ ଯାଉ ନାହାନ୍ତି । ଆଉ ଦ୍ୱିତୀୟଟିର ବିଷୟବସ୍ତୁ ହେଉଛି ନାରୀ ବିନା ଜୀବନ କାଟିବା ପାଇଁ ଯୁବକ ମାନଙ୍କର ପ୍ରୟାସ । ଏ ଦୁଇଟି ବଙ୍ଗଳା ରଂଗମଞ୍ଚରେ ଏବେବି ଜନପ୍ରିୟ । ଏଇ ସୃଷ୍ଟିଶୀଳ ଗଦ୍ୟଲେଖା ବ୍ୟତୀତ ବହୁ ଚିନ୍ତାଦ୍ୟୋତକ ପ୍ରବନ୍ଧ ସେ ଲେଖିଥିଲେ । ଦର୍ଶନ ବା ବିଜ୍ଞାନ ଯେଉଁ ବିଷୟରେ ସେ ଲେଖନ୍ତୁ ନା କାହିଁକି ସେଥିରେ ନୂତନ ଚିନ୍ତାର ଧାରା ଫିଟିଛି ।

ଏହି ସମୟରେ ଗଦ୍ୟ ଲେଖାର ଅତି ନୂତନ ସାର୍ଥକ ସୃଷ୍ଟି ହେଉଛି 'ପଞ୍ଚଭୂତର ଡାଏରୀ' । ବଙ୍ଗଳା ବାହାରେ ଖୁବ୍ କମ୍ ଲୋକ ଏ ବହି ବିଷୟରେ ଜାଣନ୍ତି । ଜୀବନ ଓ ଜଗତ ବିଷୟରେ ପାଞ୍ଚଭୂତ ଅର୍ଥାତ୍ ବାୟୁ, ମାଟି, ପାଣି, ଉତ୍ତାପ ଓ ଆକାଶ ଭିତରେ ବ୍ୟଙ୍ଗ ଓ ବ୍ୟଂଜନାମୟ ଭଙ୍ଗୀରେ ସଂଳାପ ପ୍ରଦତ୍ତ ହୋଇଛି । ଏସବୁ ଚରିତ୍ରର ଚିତ୍ରଣ ନାଟକୀୟ । ନିଆଁ ଆଉ ପାଣି ଏଠାରେ ନାୟିକା । ସେମାନେ ସବୁଠାରୁ କୌତୁକ ଓ ଆବେଗପ୍ରବଣ । ଆଉ ତିନିଜଣ ଶକ୍ତି ସଂପନ୍ନ ପୁରୁଷ । ମାଟି ନିଦା ଓ ସୁବିଧାବାଦୀ । ପବନ ଆଦର୍ଶବାଦୀ । ଆଉ ଆକାଶ ଶୂନ୍ୟମୟ । ବୁଦ୍ଧି ଆଉ ପ୍ରଜ୍ଞା, ଯୁକ୍ତି ଆଉ ଅଳିକତା- ସବୁ ଯେମିତି ଏଥିରେ ହାତଧରାଧରି ହୋଇ ଚାଲିଚନ୍ତି । କବି ସେମାନଙ୍କ ଭିତରେ ଯେମିତିକି ମଧ୍ୟସ୍ଥତା କରୁଛନ୍ତି । ସେ ଯେମିତିକି ଭାରତବର୍ଷର ପ୍ଲାଟୋ । ତାଙ୍କ ଚକ୍ଷୁରେ ଦୀପ୍ତିର ଛଟା । କେତେବେଳେ ସେ ଚେତନାକୁ ଉଦ୍ଦୀପ୍ତ କରୁଛନ୍ତି, କେତେବେଳେ ଶାନ୍ତ ଅଥବା କୌତୁହଳୀ ଅବା ସଂଶୟ ନିରସନ କରୁଛନ୍ତି ।

ଏ ସମୟର ଶେଷ ଆଡକୁ ସେ ଲେଖିଥିଲେ 'କଣିକା' । ଏହାର ଶୀର୍ଷକରୁ ମନେହୁଏ କବି ଯେମିତି ଏହାକୁ ତୁଚ୍ଛ ମନେ କରିଛନ୍ତି । ଗାଁର ଲୋକେ ଏଇପରି ଲୋକ୍ବାଣୀ ବ୍ୟବହାର କରିଥାନ୍ତି ଜୀବନର ସବୁ କ୍ଷେତ୍ରରେ । ପରଂପରାକୁ ଅନୁବର୍ତ୍ତନ କରି ପ୍ରାଚ୍ୟର ଆପ୍ତବାକ୍ୟ ଭଳି ଏହାକୁ କବି କହିଛନ୍ତି । ନିଜର କବିତ୍ୱର ପରିଚୟ ଦେଇଛନ୍ତି ଏଥିରେ ନିହିତ ବୁଦ୍ଧି ଓ ପ୍ରଜ୍ଞାରେ । ଆର୍ଷବଚନ, ସଦୁକ୍ତି ଓ ଲୋକବାଣୀ ରୂପରେ ଲେଖା ଏଇ କବିତା ଗୁଡିକରେ ପଞ୍ଚଭୂତର ସଂଳାପରେ ଥିବା ବ୍ୟଂଜନା ଓ ଭାବସବଳତା ହୁଏତ ନାହିଁ, କିନ୍ତୁ ଅଛି ବୁଦ୍ଧିର ପ୍ରଖରତା ଓ ପ୍ରଜ୍ଞା ।

# ଜନଗଣର କବି

*ହେ ଈଶ୍ୱର ! ମୋ ଦେଶର ଆଶା ଓ ଶପଥ*
*ବାକ୍ୟ ଆଉ କର୍ମ ସତ୍ୟ ହୋଇ ଉଠୁ ।*

ଏପରିକି ରବୀନ୍ଦ୍ରନାଥ ଯେତେବେଳେ ଲେଖୁଛନ୍ତି ଯେ ନଦୀରେ ଭାସମାନ ନିଜର ନୌକା ଉପରୁ କେବଳ ସେଇ ଜୀବନର ଚିର ମୁଖର ରୂପକୁ ଦେଖିବା ଛଡା ତାଙ୍କର ଆଉକିଛି ଲୋଡାନାହିଁ ସେତେବେଳେ ବି ସେ ଅଧିକ କର୍ମମୁଖର ଓ କୋଳାହଳମୟ ସ୍ଥିତିପାଇଁ ବ୍ୟାକୁଳ ହୋଇ ଉଠୁଛନ୍ତି । ବ୍ୟବସାୟାତ୍ମିକା ଜୀବନର ବିପଣି ପସରା ପ୍ରତି ଯେତେ ବିମୁଖ ହେଲେ ସୁଦ୍ଧା ସେ ତାହାଠାରୁ ବେଶୀଦିନ ଦୂରରେ ନରହି ବାରମ୍ବାର ତାହା ପାଖକୁ ଫେରି ଆସୁଛନ୍ତି ।

ଚାରିଆଡେ ଅଶାନ୍ତ ବାତାବରଣ । ଦେଶପ୍ରେମର ସୁପ୍ତ ରାକ୍ଷସ ଏବେ ଜାଗିଉଠୁଥିଲା ଓ ବ୍ରିଟିଶ୍ ସରକାର କ୍ରମଶଃ ନିରାଶ ଓ ଶଂକିତ ହୋଇ ପଡୁଥିଲେ । ସ୍ନେହ ଓ ମମତାର ଆବରଣ ତଳେ ଅସିର ଝଂକାର ଶୁଭୁଥିଲା । 1898ରେ ରାଷ୍ଟ୍ରଦ୍ରୋହ ନିୟନ୍ତ୍ରଣ ବିଠା ଗୃହୀତ ହେଲା ଓ ଜାତୀୟତାବାଦୀ ଆନ୍ଦୋଳନ ବିରୁଦ୍ଧରେ ଦୃଢ଼ କାର୍ଯ୍ୟାନୁଷ୍ଠାନ କରାଯାଇ ମହାନ୍ ସ୍ୱଦେଶପ୍ରେମୀ ପଣ୍ଡିତ ବାଳଗଙ୍ଗାଧର ତିଳକ ବନ୍ଦୀ ହେଲେ । କବି ଏହି ସମୟରେ ସ୍ୱଦେଶୀ ଆନ୍ଦୋଳନର ବହ୍ନିରେ ଝାମ୍ପଦେଲେ ଓ ଉପରୋକ୍ତ ବିଠା ଗୃହୀତ ହେବା ପୂର୍ବଦିନ କଲିକତାଠାରେ ଗୋଟିଏ ସର୍ବସାଧାରଣ ସଭାରେ ତାଙ୍କର 'କଣ୍ଠରୋଧ' ଶୀର୍ଷକ ପ୍ରବନ୍ଧ ପାଠ କରିଥିଲେ । ବିଦେଶୀ ସରକାରଙ୍କର ଦମନନୀତି ବିରୁଦ୍ଧରେ ସେ ତାଙ୍କର ତୀବ୍ର ସ୍ୱର ଉତ୍ତୋଳନ କଲେ ଓ ତିଳକଙ୍କର ସୁରକ୍ଷା ପାଇଁ ଚାନ୍ଦା ସଂଗ୍ରହରେ ପ୍ରତ୍ୟକ୍ଷ ଯୋଗ ଦେଲେ । ଠିକ୍ ତା' ପରେ ପରେ କଲିକତା ସହରରେ ମହାମାରୀ ପ୍ଲେଗ୍ ବ୍ୟାପି ଯିବାରୁ ସେ ରୋଗୀଙ୍କର ସେବା ଶୁଶ୍ରୁଷା ପାଇଁ ଭଗ୍ନୀ ନିବେଦିତାଙ୍କୁ ସହଯୋଗ କଲେ । କେବଳ ସ୍ୱର ଉତ୍ତୋଳନ ନୁହେଁ ପ୍ରତ୍ୟକ୍ଷ ସହଯୋଗ ମାଧ୍ୟମରେ କବି ଆପଣା ଜନଗଣଙ୍କର କ୍ଷତର ଉପଶମ ପାଇଁ କେବଳ ଚେଷ୍ଟା କରି ନଥିଲେ, ସେମାନଙ୍କର ଜାତୀୟ ଆଶା ଆକାଙ୍କ୍ଷାର ମଧ୍ୟ ଅଗ୍ରଣୀ ପୁରୋଧା ହୋଇଯାଇଥିଲେ ।

ରାଜନୈତିକ କାର୍ଯ୍ୟକଳାପ ସହିତ ସମାନ୍ତରାଳଭାବେ ଗତି କରିଚାଲିଥିଲା ତାଙ୍କର ସାହିତ୍ୟିକ ରଚନା । ବହୁ ଗାଥା, ବର୍ଣ୍ଣନାତ୍ମକ ଗୀତି କବିତା ଓ ନାଟକ ନାଟିକା ମାଧ୍ୟମରେ ସେ ନିଜ ଦେଶର ଅତୀତ ଗୌରବକୁ ପୁନଃସର୍ଜନା କରୁଥିଲେ । ପ୍ଲାଟୋ ବୋଧହୁଏ ତାଙ୍କ ରଚନାକୁ ଆଗ୍ରହରେ ସ୍ୱୀକୃତି ଦେଇଥାନ୍ତେ । ''ଦେବାଦେବୀଙ୍କର ସ୍ତୋତ୍ର ଓ ମଙ୍ଗଳମୟ ସୁକର୍ମର ଜୟଗାଥା କେବଳ ଆମ ରାଷ୍ଟ୍ରରେ ଗୃହୀତ ହୋଇ ପାରିବ । ଆଉ ଯଦି ଗୀତ ଓ କବିତାର ଆନନ୍ଦମୟ



ଯୋଡାସାଙ୍କୋସ୍ଥିତ ଠାକୁର ପରିବାରର ପୁରୁଷାନୁକ୍ରମିକ ବାସଭବନ



ପ୍ରିନ୍‌ସ ଦ୍ୱାରକାନାଥ ଠାକୁର



ମହର୍ଷି ଦେବେନ୍ଦ୍ରନାଥ ଠାକୁର



ସାରଦା ଦେବୀ



ରବୀନ୍ଦ୍ରନାଥ ଓ ପତ୍ନୀ ମୃଣାଳିନୀ ଦେବୀ



ପୁତ୍ର ରଥୀନ୍ଦ୍ର ଓ କନ୍ୟା ବେଲାଙ୍କ ସହିତ



ନିଜର ପ୍ରଜାମାନଙ୍କ ସହିତ ଜମିଦାର ରବୀନ୍ଦ୍ରନାଥ



1912ରେ ରୋଦେନ୍‌ଷ୍ଟାଇନ୍‌ଙ୍କ ଘରେ



1913ରେ ରବୀନ୍ଦ୍ରନାଥ



1916ରେ ଜାପାନରେ



ବିଶ୍ୱଭାରତୀର ପ୍ରତିଷ୍ଠା ଉତ୍ସବ



ରବୀନ୍ଦ୍ରନାଥ ଓ ଏଲ୍. କେ. ଏଲମ୍‌ହର୍ଷ୍ଟ



ଆଇନ୍‌ଷ୍ଟାଇନ୍ ଓ ରବୀନ୍ଦ୍ରନାଥ



ବୃକ୍ଷରୋପଣ ଉତ୍ସବ



1930ରେ କାଉଣ୍ଟେସ୍ ଦେ ନୋଇ ଓ ଭିକ୍ଟୋରିଆ ଓକାମ୍ପୋଙ୍କ ସାଙ୍ଗରେ



ହିନ୍ଦୀ ଭବନର ଉଦ୍‌ଘାଟନ



1940ରେ ଶାନ୍ତିନିକେତନରେ ଗାନ୍ଧିଜୀ ଓ କସ୍ତୁରବା



ଶାନ୍ତି ନିକେତନଠାରେ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟ ପକ୍ଷରୁ କବିଙ୍କୁ ସମ୍ମାନସୂଚକ
ଡକ୍ଟରେଟ୍ ପ୍ରଦାନ ଉତ୍ସବରେ ଏସ. ରାଧାକୃଷ୍ଣନ୍ ଓ ମୋରିସ୍ ଗୟେରଙ୍କ ସହିତ



ଶେଷ ଯାତ୍ରା

ଭାବକୁ ଆମ ରାଷ୍ଟ୍ର ଗ୍ରହଣ କରେ ତେବେ ନୀତିନିୟମ ପରିବର୍ତ୍ତେ କେବଳ ଆନନ୍ଦ ବିଷାଦ ହିଁ ଆମ ରାଷ୍ଟ୍ରକୁ ରାଜୁତି କରିବ ।'' ଦାର୍ଶନିକ ପ୍ଲାଟୋ ତାଙ୍କର 'ରିପବ୍ଲିକ୍' ଗ୍ରନ୍ଥରେ ଏକଥା କହିଛନ୍ତି । କିନ୍ତୁ ସେ ଜଣ ଭୁଲିଯାଇଥିଲେ ଯେ ଆନନ୍ଦ ଓ ବିଷାଦ ହେଉଛି ଜୀବନର ନାଡି । ଆଉ ତାହାଛଡା ତାଙ୍କର ନୀତିନିୟମ କ'ଣ କେବଳ ନିର୍ଜୀବକୁ ଶାସନ କରିବ ? ତେଣୁ ରବୀନ୍ଦ୍ରନାଥଙ୍କ ପ୍ରତି ପ୍ଲାଟୋଙ୍କ ଦୃଷ୍ଟିକୋଣ କେବେହେଁ ଦୀର୍ଘ ସ୍ଥାୟୀ ହୋଇ ନଥାନ୍ତା ।

ଏହି ସମୟରେ ଲେଖା 'କଥା' ଓ 'କାହିଣୀ' ନାମକ ଦୁଇଟି କାବ୍ୟଗ୍ରନ୍ଥ ବର୍ଣ୍ଣନାତ୍ମକ ଗାଥା ଓ ନାଟକୀୟ ସଂଳାପ ପାଇଁ ସୁପରିଚିତ । ବୌଦ୍ଧଯୁଗର ପ୍ରାଚୀନ ଅତୀତଠାରୁ ଆରମ୍ଭ କରି ନିକଟ ଅତୀତର ରାଜପୁତ ମରହଟ୍ଟା ଓ ଶିଖମାନଙ୍କର ବୀରଗାଥା ପର୍ଯ୍ୟନ୍ତ ବହୁ କିମ୍ବଦନ୍ତୀ ଓ ଐତିହାସିକ ଜନଶ୍ରୁତିରେ ପରିପୂର୍ଣ୍ଣ ଏଇ କବିତା ଗୁଡିକ ଆବେଗାନୁରଂଜିତ । ଗୀତିକାର, ନାଟ୍ୟକାର ଓ କଥାକାର- ଏ ସମସ୍ତ ତାଙ୍କ ପ୍ରତିଭା ଭିତରେ ସମନ୍ୱିତ ହୋଇ ଏଇ କବିତା ଗୁଡିକୁ ରାବୀନ୍ଦ୍ରିକ ସୃଷ୍ଟିର ଏକ ଅନବଦ୍ୟ ଅବଦାନ ଭାବେ ବାଳ ଓ ବୃଦ୍ଧ ଉଭୟଙ୍କର ସମାଦର ଲାଭ କରିପାରିଛନ୍ତି । ଗୋଟିଏ ଘଟଣା ବା ଅବସ୍ଥାର ନାଟକୀୟ ସମ୍ଭାବନାକୁ ଚମତ୍କାର ଭାବେ ପ୍ରକାଶ କରି ପାଠକମାନଙ୍କୁ ସ୍ତବ୍ଧ କରିବାର କିପରି ଅଦ୍ଭୁତ ସାମର୍ଥ୍ୟ ତାଙ୍କର ଥିଲା 'କର୍ଣ୍ଣ କୁନ୍ତୀ ସମ୍ବାଦ' ଓ 'ଗାନ୍ଧାରୀର ଆବେଦନ' କବିତା ସହିତ ମୂଳ ମହାଭାରତର ଏଇ ପ୍ରସଙ୍ଗ ବର୍ଣ୍ଣନାକୁ ତୁଳନାକରି ଦେଖିଲେ ତାହାର ପ୍ରମାଣ ମିଳେ । ଅସାମାନ୍ୟ କାବ୍ୟଶିଳ୍ପ, ବର୍ଣ୍ଣନାନୈପୁଣ୍ୟ ଓ ନାଟକୀୟ ଉତ୍କଣ୍ଠା ସହିତ ଏଇ କବିତା ଗୁଡିକରେ କବିଙ୍କର ନୈତିକ ଓ ଆଧ୍ୟାତ୍ମିକ ମୂଲ୍ୟବୋଧ ପ୍ରତି ନିଷ୍ଠାକୁ ବୈଶିଷ୍ଟ୍ୟ ଭାବେ ଗ୍ରହଣ କରାଯାଇପାରେ । ନିଜର ଧନ ସଂପଦ ପାଇଁ ଗର୍ବିତ ଜଣେ ଧନାଢ୍ୟ ଶିଷ୍ୟ ଶିଖ୍ଗୁରୁଙ୍କ ପାଖକୁ ଆସି ତାଙ୍କୁ ଦୁଇଟି ମୂଲ୍ୟବାନ୍ ରତ୍ନଖଚିତ ସ୍ୱର୍ଣ୍ଣ କଙ୍କଣ ଉପହାର ଦେଲା । ଗୁରୁ ଜାଣିଶୁଣି ଗୋଟିଏ କଙ୍କଣ ନଦୀ ଗର୍ଭକୁ ଖସାଇ ଦେଲେ । ମୂଲ୍ୟବାନ କଙ୍କଣଟିକୁ ଉଦ୍ଧାର କରିବା ପାଇଁ ଶିଷ୍ୟ ନଦୀଭିତରକୁ ପଶି ଖୋଜିଲା ଓ କଙ୍କଣଟିକୁ ନ ପାଇ ଠିକ୍ କେଉଁ ସ୍ଥାନରେ ପଡ଼ିଛି ଗୁରୁଙ୍କୁ ସୂଚାଇ ଦେବାକୁ କହିବାରୁ ଗୁରୁ ଅନ୍ୟ କଙ୍କଣଟିକୁ ନଦୀ ଭିତରକୁ ଫିଙ୍ଗିଦେଇ କହିଲେ 'ସେଇଠି' ।

ଏଥିରେ ଗୋଟିଏ କବିତା ଜଣେ ପ୍ରାଚୀନ ହିନ୍ଦୁ ଋଷିଙ୍କ ବିଷୟରେ ଯିଏ ବ୍ରାହ୍ମଣ ଯୁବକମାନଙ୍କୁ ନୀତିଶାସ୍ତ୍ର ଶିକ୍ଷା ଦେଉଥିଲେ । ଥରେ ଜଣେ ଅତି ଗରିବ ଅଥଚ ଜିଜ୍ଞାସୁ ବାଳକ ଆସି ତାଙ୍କୁ ଶିଷ୍ୟ ଭାବେ ଗ୍ରହଣ କରିବାକୁ ତାଙ୍କୁ ଅନୁରୋଧ କଲା । ସେ ତାର ପିତୃପରିଚୟ ଓ ବ୍ରାହ୍ମଣ କି ନୁହେଁ ପଚାରିଲେ । ବାଳକ ଯାଇ ତା'ର ମାଙ୍କୁ ପଚାରି ଆସି ଜଣାଇଲା ତାର ପିତା କେହି ନାହାନ୍ତି ଓ ମା' ବିଭୁକୃପା ସ୍ୱରୂପ କେବଳ ତାକୁ ହିଁ ପାଇଛନ୍ତି । ଗୁରୁ ଏକଥା ଶୁଣି ତାକୁ ଆଲିଙ୍ଗନ କଲେ ଓ କହିଲେ ''ତମେ ହିଁ ପ୍ରକୃତ ବ୍ରାହ୍ମଣ କାରଣ ତମେ ହିଁ ପବିତ୍ର ଐତିହ୍ୟ 'ସତ୍ୟ'କୁ ନିଜ ଭିତରେ ଧାରଣ କରିଛ ।''

ଗୌତମ ବୁଦ୍ଧଙ୍କର ଜଣେ ଶିଷ୍ୟ ସନ୍ୟାସୀ ଉପଗୁପ୍ତଙ୍କ ବିଷୟରେ ଗୋଟିଏ କବିତା ସେଥିରେ ଅଛି । ଏଇ ସୌମ୍ୟଦର୍ଶନ ତରୁଣ ସନ୍ୟାସୀ ମଥୁରାନଗରୀର ପ୍ରାଚୀର ପାଖେ ଭୂମିରେ ଶୋଇଥାନ୍ତି ହଠାତ୍ ତାଙ୍କ ଛାତିରେ କଣ ସ୍ପର୍ଶ ପାଇଁ ଉଠି ବସିଲେ । ସୁନ୍ଦରୀ ନଗରବଧୂ ରାଜନର୍ତ୍ତକୀ ଯୌବନ ମଦମତ୍ତା ବାସବଦତ୍ତା ଅଭିସାରରେ ଯାଉଥିବା ବେଳେ ଅନ୍ଧକାର ହେତୁ ତାଙ୍କୁ ଝୁଣ୍ଟିପଡିଲେ । ସେ ନିଜର ପ୍ରଦୀପ ଆଲୁଅରେ ସନ୍ୟାସୀଙ୍କର ରମଣୀୟ ରୂପ ଦେଖିଲେ ଓ ତାଙ୍କ

ସହିତ ଘରକୁ ଯିବା ପାଇଁ ଡାକିଲେ କାରଣ ''ଏଇ ବନ୍ଧୁର କର୍କଶ ଭୂଇଁ ଆପଣଙ୍କର ଶଯ୍ୟାହେବା ପାଇଁ ଅନୁପଯୁକ୍ତ ।'' ଶ୍ରମଣ ତାଙ୍କ ଆଡେ ଚାହିଁ ଧୀର ସ୍ୱରରେ କହିଲେ ''ହେ ଲାବଣ୍ୟମୟୀ ! ଏବେ ମୋର ସମୟ ହୋଇନି । ତୁମେ ଏବେ ଯେଉଁଠିକି ଯାଉଛ ଯାଅ । ଯେତେବେଳେ ସମୟ ଆସିବ ମୁଁ ନିଜେ ତୁମ ପାଖରେ ପହଞ୍ଚିବି ।'' କିଛି ଦିନ ବିତିଗଲା ପରେ ଆଉ ଦିନେ ସନ୍ନ୍ୟାସୀ ସେଇ ନଗରୀର ପ୍ରାଚୀର ପାଖେ ଯାଉଥିଲା ବେଳେ ଦେଖିଲେ ଜଣେ ନାରୀ ଅସୁସ୍ଥ ଓ ଦୁଃସ୍ଥ ଅବସ୍ଥାରେ ପଡିଛି । ସୁନ୍ଦରୀ ନଗରୀ ନଟୀକୁ ବସନ୍ତ ରୋଗରେ ପୀଡିତ ଦେଖି ଏଇ ସଂକ୍ରାମକ ରୋଗ ଭୟରେ ନଗର ଲୋକେ ତାକୁ ନଗର ବାହାରେ ଫିଙ୍ଗି ଦେଇଛନ୍ତି । ସେଇ ଅସୁସ୍ଥ ଅଚେତନ ନାରୀ ପାଖରେ ବସି ସନ୍ନ୍ୟାସୀ ତାର ମୁଣ୍ଡକୁ କୋଳରେ ରଖିଲେ, ତା'ର ଶୁଖିଲା ଓଠରେ ପାଣି ଦେଲେ ଓ ଦେହରେ ଶୀତଳ ସୁବାସ ଚନ୍ଦନ ବୋଳି ଦେଲେ । ତା'ର ଆରୋଗ୍ୟ ପାଇଁ ପ୍ରାର୍ଥନା କଲେ । ନାରୀ ଆଖିଖୋଲି ଚାହିଁ ପଚାରିଲା ''କିଏ ତୁମେ ଦୟାବନ୍ତ ?'' ସେତେବେଳେ ଝରୁଛି ମୁକୁଳ, କୂଜୁଛି କୋକିଳ, ଯାମିନୀ ଜୋଛନାମତ୍ତା । ସନ୍ନ୍ୟାସୀ ଉତ୍ତର ଦେଲେ - ''ଆଜି ରଜନୀରେ ହୋଇଛି ସମୟ ଆସିଛି ବାସବଦତ୍ତା ।''

'ସାମାନ୍ୟ କ୍ଷତି' ଶୀର୍ଷକ ଆଉ ଗୋଟିଏ କବିତାରେ କବି ବର୍ଣ୍ଣନା କରିଛନ୍ତି- ଦିନେ ଶୀତ ସକାଳେ କାଶୀର ରାଣୀ ତାଙ୍କ ପରିଚାରୀକାମାନଙ୍କୁ ଘେନି ଗଙ୍ଗାରେ ସ୍ନାନ କରିବାକୁ ବାହାରିଲେ । ଖୁବ୍ ଥଣ୍ଡା ପବନ ବହୁଥିଲା । ରାଣୀ ଗାଧୋଇ ସାରିବା ପରେ ନିଆଁ ପାଖରେ ଉଷୁମ ପାଇବାକୁ ଇଚ୍ଛା କଲେ । ନିକଟରେ କେତେ ଚାଳଘର କୁଟୀର ଦେଖି ସେଥିରେ ନିଆଁଲଗାଇ ଦେବାକୁ ନିଜ ଲୋକଙ୍କୁ ନିର୍ଦ୍ଦେଶ ଦେଲେ । ନିଆଁ ଜଳିଲାରୁ ସେଥିରେ ହାତଗୋଡ ସେକି ଆରାମରେ ଉଆସକୁ ଫେରିଲେ । ଶୀତ ସକାଳଟି ଆମୋଦରେ କଟିଥିବାରୁ ସନ୍ତୋଷ ହେଲେ । ଏଣେ ଘର ପୋଡିଯାଇଥିବା ଭୟଭୀତ ଗ୍ରାମବାସୀମାନେ ଆସି ରାଜାଙ୍କ ଦରବାରରେ ନିଜର କରୁଣକାହାଣୀ କହି ଗୁହାରି କଲେ । ରାଣୀଙ୍କୁ ଏପରି କଥା କିପରି କଲେ ବୋଲି ପଚାରି ପଠାଇଲାରୁ ସେ ସ୍ମିତ ହସି ଉତ୍ତର ଦେଲେ 'ଏହା ତ ସାମାନ୍ୟ କ୍ଷତି ।' ରାଜା ରାଣୀଙ୍କର ଏପରି ଦାୟିତ୍ୱହୀନ କଥାଶୁଣି କହିଲେ 'ତୁମେ ତୁମ ନିଜ ପଟୁ ବିଚାର କରୁଛ ।' ରାଜା ସଂଗେ ସଂଗେ ନିର୍ଦ୍ଦେଶ ଦେଲେ ଯେ ରାଣୀଙ୍କ ଠାରୁ ସବୁ ଧନରତ୍ନ ଓ ଅଳଂକାର କାଢ଼ି ନେଇ ତାଙ୍କୁ ରାଜପ୍ରସାଦରୁ ବାହାର କରାଯିବ । ତାଙ୍କୁ କହିଲେ ''ଯାଅ ଏଥର ନିଜେ ବଂଚିବା ପାଇଁ ଉପାର୍ଜନ କର ଅଥବା ଭିକ୍ଷାକରି ଚଳ । ତାହେଲେ ହିଁ ତମେ ବୁଝିପାରିବ ଯେ ଦରିଦ୍ର ଜନଗଣଙ୍କର ବାସଗୃହ ସବୁ ତୁମର କ୍ଷଣିକ ଖୁସି ପାଇଁ ପୋଡି ଦିଆଯିବା ତାଙ୍କ ପାଇଁ ସାମାନ୍ୟ ନୁହେଁ, କେତେ ବଡ କ୍ଷତି । ଯେତେବେଳେ ସେଇ କୁଟୀର ସବୁ ପୁଣି ତୋଳିବା ପାଇଁ ତମେ ସମର୍ଥ ହେବ ମୁଁ ପୁଣି ମୋର ରାଣୀଭାବେ ତୁମକୁ ଫେରାଇ ଆଣିବି ।''

କିନ୍ତୁ ଅତ୍ୟନ୍ତ ପ୍ରାତିସ୍ୱିକ ଓ ଗୀତିକାବ୍ୟଭଳି ମନ୍ମୟ ରବୀନ୍ଦ୍ରନାଥଙ୍କର ସହଜାତ ମୌଳିକ କବି ପ୍ରତିଭା ଏ ପ୍ରକାର 'ଦେବ ସ୍ତୁତି ଓ ମଙ୍ଗଳଗାଥାରେ ସଂପୂର୍ଣ୍ଣ ସନ୍ତୁଷ୍ଟ ନଥିଲା । ତେଣୁ ଗୋଟିଏ ଦିଗରେ ନିଜର ସାର୍ବଜନୀନ ଓ ମାନବତାବାଦୀ ଦୃଷ୍ଟିଭଙ୍ଗୀକୁ ସମନ୍ୱିତ କରି ସେ ନିଜ ଦେଶର ନୈତିକ ଐତିହ୍ୟ ଓ ପରଂପରାକୁ ପୁନସର୍ଜିତ କରୁଥିଲା ବେଳେ ଅନ୍ୟ ଦିଗରେ ଆପଣାର ବ୍ୟକ୍ତିଗତ ଦୁଃଖ ଓ ବିଷାଦକୁ କବିତାରେ ଢ଼ାଳି ଦେଉଥିଲେ । ସେହି ସମୟରେ ରଚିତ ଗୀତି କବିତା ଓ ଗୀତ ଏକାଧାରାରେ ତିନୋଟି ଗ୍ରନ୍ଥରେ ପ୍ରକାଶ ପାଇଲା ଓ କବିଙ୍କ କାବ୍ୟଜୀବନର ବିକାଶ

କ୍ଷେତ୍ରରେ କେବଳ ନୁହେଁ ଭାରତୀୟ ସାହିତ୍ୟର ବିକାଶ ପର୍ବରେ ଉଲ୍ଲେଖ ଯୋଗ୍ୟ ହୋଇ ରହିଲା । ଆନନ୍ଦଦାୟୀ କାବ୍ୟ ସଂପର୍କରେ ପ୍ଲାଟୋ ଯାହା କହି ଥାଆନ୍ତୁନା କାହିଁକି ତାହା ହିଁ ଥିଲା ରବୀନ୍ଦ୍ରନାଥଙ୍କର ପ୍ରଥମ ଓ ଶେଷ ପ୍ରେମର ବସ୍ତୁ ଓ ସେ ଯେତେବେଳେ ବି ଏହାଠାରୁ ଦୀର୍ଘ ଦିନ ଦୂରେଇ ରହିଛନ୍ତି ତା'ରି ପାଖକୁ ସେ ପୁନଃପୁନ ଫେରି ଆସିଛନ୍ତି ବହୁଗୁଣିତ ଉତ୍ସାହରେ ।

ତାଙ୍କର ପରବର୍ତ୍ତୀ କାବ୍ୟ ସଂକଳନ 'କଳ୍ପନା'ର ପ୍ରଥମ କବିତାରେ ପ୍ରକାଶ ପାଇଛି ଭୁବନ ପ୍ରତି ମୋହ । ଯେତେ ବ୍ୟର୍ଥମନୋରଥ ହେଉ ପଛେ କଳ୍ପନାର ପକ୍ଷ ବିସ୍ତାର କରି ଅନ୍ଧକାର ଭିତରେ ମଧ୍ୟ ସେ ଉଡିଯିବାକୁ ଚାହୁଁଥିଲେ । ଆପଣାର ଆତ୍ମଶକ୍ତିକୁ ବିହଙ୍ଗ ମନେକରି ଲେଖିଛନ୍ତି :

ଯଦିଓ ସଂଧ୍ୟା ଅସୁଛି ମନ୍ଦ ମନ୍ଥରେ
ସବୁ ସଂଗୀତ ବନ୍ଦ ହୋଇଛି ଇଙ୍ଗିତେ
ଯଦିଓ ସଙ୍ଗୀ ନାହିଁ ଅନନ୍ତ ଅମ୍ବରେ
ଯଦିଓ କ୍ଲାନ୍ତି ଆସୁଛି ଅଙ୍ଗଅଙ୍ଗରେ
ମହା ଆଶଙ୍କା ଜପୁଛି ମୌନ ମନ୍ତ୍ରରେ
ଦିଗଦିଗନ୍ତ ଅବଗୁଣ୍ଠନରେ ଘୋଡା
ତଥାପି ବିହଙ୍ଗ, ଆରେ ବିହଙ୍ଗ ମୋର !
ଏବେ ତୁ ଅନ୍ଧ, ବନ୍ଦ କରନି ଉଡା

ଏଥିରେ ପ୍ରକୃତି ଚିତ୍ରଣଧର୍ମୀ ଅନେକ କବିତା ଅଛି । ବିଶେଷ କରି 'ବର୍ଷଶେଷ' କବିତାଟି ଉଲ୍ଲେଖ ଯୋଗ୍ୟ । ନିଦାଘର ତପ୍ତଘୂର୍ଣ୍ଣି ଓ ଧୂଳିଝଡପୂର୍ଣ୍ଣ ଚୈତ୍ର ମାସରେ ବଙ୍ଗଳାରେ ବର୍ଷ ଶେଷ ହୁଏ । ତା'ପରେ ଆସେ ସ୍ନେହସିକ୍ତ ବର୍ଷା । ଏଇ ଭଳି ଗୋଟିଏ ଦିନରେ କବିତାଟି ରଚିତ । ଆଉ ଏବେବି ଏଥିରେ ଯେ କେହି ପାଠକ ଶୁଣିପାରିବେ ପୁରାତନକୁ ଧ୍ୱଂସ କରି ନୂତନକୁ ବରଣ କରିଥିବା ସମୟର କରାଳ ରୂପର ଅବତାରଣା ପାଇଁ ସଂଯୋଜିତ ଆବେଗଭରା ଛନ୍ଦନିକ୍ୱଣ ।

ସବୁ କବିତାରେ କବିଙ୍କର ଭାବପ୍ରବଣ କାବ୍ୟାନୁଭୂତିର ପ୍ରତିଧ୍ୱନି ଶୁଣାଯାଏ ନାହିଁ କି ଅନ୍ତର୍ଲୋକର ପ୍ରତିବିମ୍ବନ ଦେଖାଯାଏ ନାହିଁ । ସେଥିରୁ କେତୋଟି ହାଲ୍‌କା ବାଳକ ସୁଲଭ ମନର ପରିଚୟ ଘେନି ପ୍ରକାଶିତ । ଯେପରି ସେଥିମଧ୍ୟରୁ ଗୋଟିଏ ଯୋତା କିପରି ଉଦ୍ଭାବନ ହେଲା ତା ବିଷୟରେ । ମାତ୍ର କବିଙ୍କର ସହଜାତ ବିଶୁଦ୍ଧ ପ୍ରକୃତିପ୍ରାଣତା ଓ ପ୍ରକୃତିର ବୈଚିତ୍ର୍ୟମୟ ବିବଧ ରୂପ ଦର୍ଶନରେ ଇନ୍ଦ୍ରିୟଲବ୍ଧ ପୁଲକ ସହସା ବିଷଣ୍ଣତାରେ ପରିଣତ ହୋଇଛି । ଗୋଟିଏ ଜୀର୍ଣ୍ଣ ମନ୍ଦିର ଦେଖି ତାଙ୍କ ମନରେ ଦେବତାଙ୍କ ପ୍ରତି ଦୟା ଆସିଛି ଯିଏ ଏଠି ଅବହେଳିତ ଓ ଅପୂଜିତ । ମନୁଷ୍ୟ ନିଜର ହୃଦୟରେ ଭିନ୍ନ ଦେବତାର ବନ୍ଦାପନା କରୁଛି । ଆଉ ଗୋଟିଏ ସୁନ୍ଦର କବିତା ଯାହା ହୁଏତ ଫ୍ରଏଡଙ୍କୁ କୌତୁହଳୀ କରାଇଥାନ୍ତା । ଶିବକିପରି ନିମିଷେକରେ କ୍ରୋଧାନ୍ଧ ହୋଇ ମଦନକୁ ଭସ୍ମ କରି ଦେଇଥିଲେ, ତାହା ଏଥିରେ ବର୍ଣ୍ଣିତ । କବି କହୁଛନ୍ତି, ପଞ୍ଚଶରକୁ ଦଗ୍ଧ କରି ଶିବ ସେଇ ଭସ୍ମକୁ ବିଶ୍ୱମୟ ବିଛାଇ ଦେଇଛନ୍ତି ପବନ ମାଧ୍ୟମରେ । ବ୍ୟାକୁଳତର ବେଦନା ତା'ର ବତାସରେ ନିଃଶ୍ୱାସି ଉଠୁଛି ଓ ଅଶ୍ରୁ ଗଡିପଡୁଛି ଆକାଶରୁ । ନିଖିଳ ଭବ ରତିବିଳାପ ସଂଗୀତରେ ଭରି ଉଠୁଛି । ଧରଣୀ ଶିହରୀ ଉଠୁଛି । ଅବଦମିତ କାମନାର ସୁଅ ସଚରାଚର ସମସ୍ତଙ୍କୁ ବ୍ୟତିବ୍ୟସ୍ତ କରୁଛି । କବିଙ୍କର ଆଧ୍ୟାତ୍ମିକ ସଂକଟ ଓ ସଂଶୟ ମଧ୍ୟ କେତେକ କବିତାରେ ଆତ୍ମ ପ୍ରକାଶ ଲଭିଚି । ଜୀବନଦେବତା ତାଙ୍କ ସମ୍ମୁଖରେ ଉଭା ହୋଇଛନ୍ତି । କବି କହିଛନ୍ତି, ''ଆହେ ଅନ୍ତରତମ,

ଧରାପୃଷ୍ଠରେ ଲୋଟିଥିଲା ଯେବେ ଅନ୍ତର ମମ, ତୋଳିନେଇ ତାଙ୍କୁ କରିଅଛି ତୁମେ ଆପଣା ସଂପଦ ସମ । ଦୁଃଖ ଚାହିଁଥିଲି ସୁଖ କଳ୍ପନାରେ, ସୁଖ ହିଁ ପାଇଲି ଦୁଃଖ ବଦଳରେ ପିଇଲି ଅମୃତ ସମ ।''

କିନ୍ତୁ ପୌତ୍ତଳିକତା କେବେ ବି ତାଙ୍କ ବିଶ୍ୱାସର ଜଗତକୁ ପ୍ରବେଶ କରି ପାରି ନଥିଲା । ସେ ଥିଲେ ଜୀବନପ୍ରେମିକ ତା' ସହିତ ସୃଷ୍ଟିଶିଳ୍ପ ପ୍ରତି ତାଙ୍କର ଅନୁରାଗ ତାଙ୍କୁ ସେଇଦିଗରେ ସାଧନା ବିଭୋର କରି ରଖିଥିଲା । କବିତାର ଆଙ୍ଗିକ ସୁଷମାର ଆନନ୍ଦ, ଭାବ- ବିଭୋର ମନୋଭାବ, କୌତୁକାନ୍ୱିତ ଚିନ୍ତା ଓ ଜୀବନ୍ତ ଭାଷାରେ ପରିପୁଷ୍ଟ ଏଇ ଗ୍ରନ୍ଥଟିରେ କବି ପ୍ରତିଭାର ଏକ ଚରମ ପ୍ରକାଶ ସାମର୍ଥ୍ୟର ପରିଚୟ ମିଳେ । ଚାଳିଶତମ ବର୍ଷରେ ସେ ଯେଉଁ ବହିଟିର ରଚନା ଶେଷକଲେ ବୋଧହୁଏ କବି ତା ପୂର୍ବରୁ ବା ପରେ ଜୀବନରେ କେବେ ଏହାଠାରୁ ବେଶୀ ସୂକ୍ଷ୍ମ ଓ ସିଗ୍ଧ କଥା ଲେଖି ନାହାନ୍ତି । ଜୀବନର ଅର୍ଦ୍ଧେକ ଅତିବାହିତ ହୋଇ ଯାଇଥିବା ଭଳି ଧାରଣା କବି ସତେ ଯେପରିକି ମନରେ ଆଣିଥିଲେ । ପୁଣି ଅଧିକ ଐଶ୍ୱର୍ଯ୍ୟମୟ କିନ୍ତୁ ବିଷର୍ଣ୍ଣ ଦ୍ୱିତୀୟାର୍ଦ୍ଧ ଆରମ୍ଭ ହେବା ପୂର୍ବରୁ କିଛି କ୍ଷଣସ୍ଥାୟୀ ମୁହୂର୍ତ୍ତକୁ ଭାସ୍ୱର କରିବା ପାଇଁ ସେ କିଛି ହାଲ୍‌କା ଆନନ୍ଦମୟ ରଚନାରେ ସମୟ ବିତାଇଲେ । ସଂକଳନଟିର ଯଥାର୍ଥ ନାମକରଣ ହୋଇଥିଲା 'କ୍ଷଣିକା', ଯାହାର ଅର୍ଥ ହେଉଛି କ୍ଷଣିକ ଓ ସହଜ । ଏଥିରେ ଭାବବସ୍ତୁ ଓ ରୂପକ ଅପେକ୍ଷା ଭାଷା ଓ ଶୈଳୀ ଅଧିକ ନୂତନ ଓ ଚିତ୍ତାକର୍ଷକ । ଏଇ କାବ୍ୟ ଗ୍ରନ୍ଥରେ ସେ ଲୌକିକ ଭାଷା ଓ ତାର ସାଙ୍କେତିକ ଧ୍ୱନିର ବହୁଳ ପ୍ରୟୋଗ କରି ସେଥିରୁ ନୂତନ କବିତାର ଶକ୍ତି ଓ ସାଙ୍ଗୀତିକତା ଆହରଣ କରିଥିଲେ ଯାହାକୁ ପରବର୍ତ୍ତୀ ବଙ୍ଗଳା କବିତାର ଧାରା ପ୍ରବର୍ତ୍ତନରେ ଏକ ନୂତନ ପ୍ରୟୋଗ ଭାବରେ ଅଭିହିତ କରାଯାଏ । ଜନମୁଖର କଥିତ ଭାଷାରେ ସେ ଆପଣାର ଭାଷା ବା ପ୍ରକାଶମାଧ୍ୟମ ଖୋଜି ପାଇଲେ ଓ ତାହାକୁ ହିଁ ସାହିତ୍ୟ-ଭାଷାରେ ପରିଣତ କରିଥିଲେ । ଅନ୍ୟ ଗୋଟିଏ ସୁନ୍ଦର ଗୀତିରେ କବି ନିଜର ଚପଳତା ଓ ସହଜ ମୁକ୍ତ ପ୍ରକାଶଭଙ୍ଗୀ ପାଇଁ 'ଅନୁପମ' ପାଖରେ କ୍ଷମା ଚାହିଁଛନ୍ତି । ବର୍ଷା ଋତୁରେ ଯେତେବେଳେ ଆକାଶ ନିଜକୁ ଅଜାଡି ଦେଉଛି ଓ ଧରା ନୃତ୍ୟ କରୁଛି ସେତେବେଳେ ମଣିଷମନର ନିବିଡ କାମନା କିପରି ସେ ଚପାଇ ରଖିବ ? 'ଅନୁପମ'- ଏଠି ପାଠକ ଓ ନିଜର ସାରସ୍ୱତ ସୃଷ୍ଟି ଉଭୟ ହୋଇପାରନ୍ତି ।

କିନ୍ତୁ ତାଙ୍କର ଏଇ ତୀବ୍ର ତେଜସ୍ୱିତା ଓ ସାଂସାରିକ ବିଷର୍ଣ୍ଣତା ଓ ନିର୍ଲିପ୍ତତା- ଏସବୁ ପ୍ରକୃତରେ ଥିଲା କ୍ଷଣସ୍ଥାୟୀ ବିସ୍ମୟକ ସଦୃଶ- ଆଉ ଏସବୁ ଥିଲା ସେ ବହୁଭାବରେ କୃତଜ୍ଞ ସେଇ ଗତାୟୁ ଶତାବ୍ଦୀପାଇଁ ସଶ୍ରଦ୍ଧ ଉପହାର । ନୂତନ ଶତାବ୍ଦୀ ପାଇଁ ତାଙ୍କର ଶ୍ରଦ୍ଧାର୍ଘ୍ୟ ଥିଲା ସଂପୂର୍ଣ୍ଣ ଭିନ୍ନ । ଏଇ ସମୟରେ ପରସ୍ପରକୁ ଅନୁଗମନ କରି ପ୍ରକାଶ ପାଇଥିବା ତାଙ୍କର ଦୁଇଟି କାବ୍ୟଗ୍ରନ୍ଥ 'କ୍ଷଣିକା' (1900 ଶେଷ) ଓ 'ନୈବେଦ୍ୟ' (1901 ଆରମ୍ଭ) ଭଳି ଆଉ କୌଣସି ଗ୍ରନ୍ଥ ଏତେ ବିରୋଧାତ୍ମକ ନଥିଲା । 'ନୈବେଦ୍ୟ'ରେ ସଂକଳିତ କବିତା ଓ ସ୍ତୋତ୍ରଗୁଡିକ ବିଶ୍ୱର ଯେ କୌଣସି ଶ୍ରେଷ୍ଠ ଧର୍ମଗାଥା ବା ଭକ୍ତି ବନ୍ଦନାର ସମକକ୍ଷ ଗୌରବ ଦାବୀ କରେ । ସେଥିମଧ୍ୟରୁ ଅନେକ ପରବର୍ତ୍ତୀ ସମୟରେ ଇଂରାଜୀ ଗୀତାଞ୍ଜଳିରେ ଅନୂଦିତ ହୋଇ ସଂକଳିତ ହୋଇଥିଲା । 'କ୍ଷଣିକା'ର ବେପରୁଆ ଚପଳ ଭାବ 'ନୈବେଦ୍ୟ'ରେ ସଂପୂର୍ଣ୍ଣ ପରିବର୍ତ୍ତିତ ହୋଇ କବିଙ୍କୁ ଜଣେ ନିଷ୍ଠାପର ଭକ୍ତରେ ପରିଣତ କରିଦେଇଛି । ଏଥିରେ ଭଗବାନ ଓ ମଣିଷଙ୍କ ପ୍ରତିତାଙ୍କର ଦାୟିତ୍ୱବୋଧର ଭାର ତାଙ୍କୁ ଅଧିକ ଗରୀୟାନ କରିପାରିଛି । ଶିଳ୍ପୀପ୍ରାଣ ଏଠି ଇଶ୍ୱରଙ୍କ ଶ୍ରେଷ୍ଠ ସୃଷ୍ଟି ମାନବ ଦ୍ୱାରା

ବିମୋହିତ । ତେଣୁ ଏଥିରେ କଳ୍ପନାର ପକ୍ଷବିସ୍ତାର ନାହିଁ, ଭାବକ୍ଳିଷ୍ଟତା ବା ଆହେତୁକ ଭାବପ୍ରବଣତା ନାହିଁ, ଛନ୍ଦ ବିଳାସର ଆୟାସଲବ୍ଧ କାରିଗରୀ ମଧ ନାହିଁ । ଈଶ୍ୱରଙ୍କ ସମ୍ମୁଖରେ ଅକପଟ ଭକ୍ତିମନ୍ତ୍ରର ଅନାବୃତ ଭାବ ଏଥିରେ ଗଭୀର ସତତା ଓ ସରଳତାର ସହିତ ପ୍ରକାଶ ପାଇଛି । ''ପ୍ରତିଦିନ ମୁହିଁ, ହେ ଜୀବନ ସ୍ୱାମୀ, ତବ ସମ୍ମୁଖରେ ଠିଆହେବି,

କର ଯୋଡକର, ହେ ଭୁବନେଶ୍ୱର, ତବ ସମ୍ମୁଖରେ ଠିଆହେବି ।''

ନିଜର ଅସହାୟତାକୁ ଉପଲବ୍ଧ କରି କବି ଏଥିରେ ସେଇ ଜୀବନସ୍ୱାମୀଙ୍କ ପାଖରୁ ଆଲୋକ ଭିକ୍ଷା କରିଛନ୍ତି । ସବୁ କିଛି ତାଙ୍କରି ମାୟା ।

''ମୋଅର ଏ ଘରେ ତୁମରି ହାତରେ ଗୃହଦୀପ ଜାଳି ଦିଅ ।

ମୁହିଁ ଯେତେଦୀପ ଜାଳେ ତାର ଥାଏ ନିଆଁ ଆଉ ଖାଲି ଧୂଆଁ ।'' ସେ ଆଉ ଯନ୍ତ୍ରଣାକୁ ଭୟ କରିବେ ନାହିଁ । ଭୟ ହିଁ ସତ୍ୟକୁ ବିଭ୍ରାନ୍ତ କରେ ।

''ତୁମରି ଅସୀମେ ପ୍ରାଣମନ ନେଇ ଯେତେଦୂର ମୁହିଁ ଯାଏ,
କେବେହେଁ ଦୁଃଖ, କେବେହେଁ ମୃତ୍ୟୁ, ବିଚ୍ଛେଦ କେବେ ନଥାଏ ।
ମୃତ୍ୟୁ ହିଁ ଧରେ ମୃତ୍ୟୁର ରୂପ, ଦୁଃଖ ହିଁ ହୁଏ ଦୁଃଖର କୂପ ।
ତୁମଠାରୁ ଯେବେ ଦୂରେଇ ଯାଇଣ ଦେଖଇ ଆପଣା ରୂପ ।''

ଶହେଟି ପଦ ବିଶିଷ୍ଟ ଏଇ ସଂକଳନ । 'ନୈବେଦ୍ୟ'କୁ କବି ତାଙ୍କର ତେୟାଅଶୀ ବର୍ଷର ବୃଦ୍ଧ ପୂଜନୀୟ ପିତାଙ୍କୁ ଉତ୍ସର୍ଗ କରିଥିଲେ । ଏହି ଗୀତିଗୁଡ଼ିକର ପ୍ରତ୍ୟେକ ଛତ୍ରରେ ପ୍ରକାଶ ଲାଭ କରିଥିବା ଆଧାତ୍ମିକ ଓ ନୈତିକ ଭାବ ଓ ଭୂତି କବି ପିତାଙ୍କ ଠାରୁ ପାଇଥିଲେ ଓ ତେଣୁ ଏହା ଥିଲା ସେଇ ଋଣସ୍ୱୀକାର ପାଇଁ ଶ୍ରଦ୍ଧାର୍ଘ୍ୟ ସ୍ୱରୂପ । କବି ଯେତେବେଳେ କବିତା ଗୁଡ଼ିକର ପାଣ୍ଡୁଲିପି ପିତାଙ୍କୁ ପଢ଼ି ଶୁଣାଇଲେ, ମହର୍ଷି ଅତ୍ୟନ୍ତ ପ୍ରୀତ ଓ ଅଭିଭୂତ ହୋଇଥିଲେ ଓ ଏହାର ପ୍ରକାଶନ ପାଇଁ ଅର୍ଥପ୍ରଦାନ କରିଥିଲେ ।

ଅନେକ ଦିନ ପୂର୍ବେ କବି ତରୁଣ ଥିଲାବେଳେ ଥରେ ମହର୍ଷି ଶୁଣିଲେ ଯେ ତାଙ୍କର କନିଷ୍ଠ ପୁତ୍ର ଭକ୍ତିସଂଗୀତ ରଚନା କରୁଛନ୍ତି । କବି ତାଙ୍କ ପାଖକୁ ପଠାଇଥିବା କେତୋଟି ଗୀତ ସେ ଶୁଣିଲେ । ସେଥିରୁ ଗୋଟିଏ ଯାହା ବର୍ତ୍ତମାନ ଖୁବ୍ ପ୍ରସିଦ୍ଧ ତାହାର ପ୍ରଥମ ପଂକ୍ତି ଥିଲା-

''ନୟନ ତୁମକୁ ଦେଖି ପାରେ ନାହିଁ, ରହିଛ ନୟନେ ନୟନେ,
ହୃଦୟ ତୁମକୁ ଜାଣି ପାରେ ନାହିଁ, ରହିଛ ହୃଦୟେ ଗୋପନେ ।''

ଏହା ଶୁଣି ମହର୍ଷି ଭାବବିଭୋର ହୋଇଥିଲେ ଓ କହିଥିଲେ ''ଯଦି ଏ ଦେଶର ଶାସକମାନେ ଆମରି ଲୋକଥାନ୍ତେ ଓ ଆମ ଭାଷା ବୁଝିପାରୁ ଥାଆନ୍ତେ ତେବେ ନିଶ୍ଚୟ ଏଇ ତରୁଣ କବିଙ୍କୁ ସେମାନେ ପୁରସ୍କୃତ କରିଥାନ୍ତେ ।'' ଶାସକମାନେ ନଦିଅନ୍ତୁ ପଛେ ମହର୍ଷି ସ୍ୱୟଂ କବିଙ୍କୁ ଉତ୍ସାହିତ କରିବା ପାଇଁ ପୁରସ୍କୃତ କରିଥିଲେ ।

ଗଭୀର ଭକ୍ତି ଭାବର ଆବେଗିକ ନିଷ୍ଠାପରତା ଏଇ କବିତା ଗୁଡ଼ିକୁ ଆଚ୍ଛନ୍ନ କରିରଖିଥିଲେ ମଧ ଏସବୁକୁ ଧର୍ମୀୟ ଗୀତି କୁହାଯାଇ ନପାରେ । ଧର୍ମ ଶବ୍ଦର ପାରଂପରିକ ଅର୍ଥବୋଧ ଅନୁସାରେ ଏଗୁଡ଼ିକ ଧର୍ମସଂଗୀତ ହୋଇ ନପାରନ୍ତି । ଏପରିକି ଐଶ୍ୱରିକଚିନ୍ତା ଓ ପରଲୋକ ଭାବନାର ମୁହୂର୍ତ୍ତରେ ମଧ ରବୀନ୍ଦ୍ରନାଥ କେବେ ଜଗତ ଓ ଜୀବନକୁ ଭୁଲି ପାରି ନଥିଲେ ଓ ପାରିବେ ନାହିଁ ।

ମୁକ୍ତି ତାଙ୍କ ପାଇଁ ସଂସାର ତ୍ୟାଗ ବା ବୈରାଗ୍ୟ ସାଧନ ନଥିଲା । ''ଅସଂଖ୍ୟ ବନ୍ଧନ ମଝିରେ ମୁଁ ଲଭିବି ମୁକ୍ତିର ସ୍ୱାଦ''- ଏହାଥିଲା କବିଙ୍କର ପ୍ରାଣପୂର୍ଣ୍ଣ ଉକ୍ତି । ବିଭୁ ପ୍ରେମ ଓ ଜୀବନ ପ୍ରୀତି ତାଙ୍କ ସୃଷ୍ଟି ଚେତନାରେ ମିଳିମିଶି ଗତି କରିଥିଲା ଓ ପରସ୍ପରକୁ ପରିପୁଷ୍ଟ ଓ ପରିପୂର୍ଣ୍ଣ କରିଥିଲା । ତାଙ୍କର ଅତି ପରିଚିତ କବିତା ''ଚିତ୍ତ ଯେଉଁଠି ଭୟଶୂନ୍ୟ ଉଚ୍ଚ ଯେଉଁଠି ଶିର'' ଭଳି କବିତାରେ ଈଶ୍ୱରଙ୍କୁ ସ୍ତୁତି ଓ ଜନଗଣଙ୍କୁ ପ୍ରାର୍ଥନା ଏକତ୍ର ସମନ୍ୱିତ । ତାଙ୍କର ସ୍ୱଦେଶ ପ୍ରୀତିରେ କୌଣସି ପ୍ରକାର ସଂଗ୍ରାମୀ ମନୋଭାବ ଅଥବା ବିଦେଶୀ ପ୍ରତି ଅହେତୁକ ଭୟ ସ୍ଥାନ ପାଇ ନଥିଲା । ନିଜ ଦେଶର ସବୁ ଅଭାବ ଅସୁବିଧା ପାଇଁ କେବଳ ବିଦେଶୀମାନଙ୍କୁ ଦାୟୀ କରିବାରେ ସେ ଏକମତ ନଥିଲେ । ସେ କହୁଥିଲେ, ଯେଉଁମାନେ ଅସୁବିଧା ସୃଷ୍ଟି କରିଛନ୍ତି ଓ ଯେଉଁମାନେ ତାର ବିରୋଧ ନକରି ଅତ୍ୟାଚାର ସହି ଯାଉଛନ୍ତି, ଏ ଉଭୟେ ଈଶ୍ୱରଙ୍କ ଦୃଷ୍ଟିରେ ସମାନ ଭାବରେ ଦାୟୀ । ଏକଥା ଯେତେବେଳେ କବି ପ୍ରଥମେ ଲେଖିଲେ ସେ ଭାବି ନଥିଲେ ଯେ କିଛି ବର୍ଷ ଭିତରେ ଏହି ସତ୍ୟ ପ୍ରକଟିତ ହେବ ଓ ମହାତ୍ମା ଗାନ୍ଧିଙ୍କ ଦ୍ୱାରା ସମର୍ଥିତ ହୋଇ ଜାତୀୟ ଆନ୍ଦୋଳନର ମୁଖ୍ୟସୂତ୍ର ଭାବେ ଗୃହୀତ ହେବ ।

ଗତାୟୁ ଶତାବ୍ଦୀର ଶେଷ ଦିବସରେ 'ଶତାବ୍ଦୀର ସୂର୍ଯ୍ୟ ଆଜି' ନାମିତ ଏକ ମାର୍ମିକ କବିତାରେ କବି ଜାତୀୟତାବାଦକୁ ଗୋଟିଏ ଦେଶର ଆତ୍ମପ୍ରୀତି ବା ଆତ୍ମତୃପ୍ତି କହି ଏହାକୁ ଅହେତୁକ କହିଥିଲେ ଓ ଦକ୍ଷିଣ ଆଫ୍ରିକୀୟ ବର୍ଣ୍ଣବିଦ୍ୱେଷୀ ସଂଗ୍ରାମକୁ ଭବିଷ୍ୟତରେ ଭୟଙ୍କର ଦୁଃଖାନ୍ତ ଘଟଣାର ସଂକେତ ଭାବରେ ବର୍ଣ୍ଣନା କରିଥିଲେ ।

''ଶତାବ୍ଦୀର ସୂର୍ଯ୍ୟ ଆଜି ରକ୍ତମେଘ ମଧ୍ୟେ
ଅସ୍ତଗଲା, ହିଂସାର ଉତ୍ସବରେ ଆଜି ବାଜେ
ଅସ୍ତ୍ରେ ଅସ୍ତ୍ରେ ମରଣର ଉନ୍ମାଦ ରାଗିଣୀ ଭୟଂକରୀ ।''

ବିସ୍ମୟକର ଭାବେ କବି ତାଙ୍କର ଏଇ ଧାର୍ମିକ ଓ ନୈତିକ ଆଦର୍ଶ ଭାବର ଗଭୀର ମୁହୂର୍ତ୍ତରେ 'ନଷ୍ଟନୀଡ଼' ଓ ଚୋଖେର୍‌ବାଲି' ନାମକ ଦୁଇଟି ଉପନ୍ୟାସ ରଚନା କଲେ ଯାହା ଭାରତୀୟ ଉପନ୍ୟାସରେ ବାସ୍ତବବାଦୀ ଓ ମନସ୍ତାତ୍ତ୍ୱିକ ଉପନ୍ୟାସ ରଚନାର ଭିତ୍ତି ସ୍ଥାପନ କଲା । ଏହା ପୂର୍ବରୁ ବଙ୍କିମଚନ୍ଦ୍ରଙ୍କ ଦ୍ୱାରା ଓ ସ୍ୱୟଂ ରବୀନ୍ଦ୍ରନାଥଙ୍କ ଦ୍ୱାରା ଯେଉଁସବୁ ଉପନ୍ୟାସ ଲେଖାଯାଇଥିଲା ତାହା ଥିଲା ଐତିହାସିକ ରୋମାନସ୍ ଅଥବା ସାମାଜିକ ମେଲୋଡ୍ରାମା ବା ଏ ଉଭୟର ମିଶ୍ରଣ । କିନ୍ତୁ ପ୍ରକୃତ ଅର୍ଥରେ ଆଧୁନିକ ଉପନ୍ୟାସ, ଯାହା ବାସ୍ତବବାଦୀ ମନସ୍ତାତ୍ତ୍ୱିକ ଓ ସମସ୍ୟାମୂଳକ ହୋଇଯାଏ, ସେହିପ୍ରକାର ଆଧୁନିକ ଉପନ୍ୟାସର ଧାରା ଭାରତୀୟ ସାହିତ୍ୟରେ ଏଇ ଦୁଇ ଉପନ୍ୟାସ ରଚନା ପରେ ଆରମ୍ଭ ହୋଇଥିଲା ।

ନିଜର ସୁନ୍ଦରୀ ତରୁଣୀ ପତ୍ନୀଙ୍କ ପାଇଁ ସମୟ ଦେଇ ପାରୁ ନଥିବା ଜଣେ ଦୈନିକ ସମ୍ବାଦପତ୍ରର ବ୍ୟସ୍ତ ସଂପାଦକଙ୍କ ପାରିବାରିକ ଟ୍ରାଜେଡି ହେଉଛି 'ନଷ୍ଟନୀଡ' । ନିଃସଙ୍ଗତାରେ ଅତିଷ୍ଠ ହୋଇ ଉଠିଥିବା ତାଙ୍କର ପତ୍ନୀ ସ୍ୱାମୀଙ୍କର ସଂପର୍କୀୟ ଭାଇ ଜଣେ ରସିକ ଓ ବହୁଗୁଣସଂପନ୍ନ ତରୁଣ ପାଖରୁ ସାନ୍ତ୍ୱନା ଓ ପ୍ରେରଣା ପାଏ । ସେ ଦୁହେଁ ଉଭୟେ ଉଭୟଙ୍କୁ ଲେଖିବା ପାଇଁ ଉତ୍ସାହିତ କରି ଦୁଇଜଣ ଉଦୀୟମାନ ଲେଖକ ଲେଖିକା ହୋଇ ଯାଆନ୍ତି । ତା' ପରେ ଅବଶ୍ୟମ୍ଭାବୀ ଦ୍ୱନ୍ଦ୍ୱ ଆରମ୍ଭ ହୁଏ ଓ ସୁଖର ନୀଡ ନଷ୍ଟ ହୋଇଯାଏ । 'ଚୋଖେର୍ ବାଲି' ଉପନ୍ୟାସଟି ଅଧିକ ପୂର୍ଣ୍ଣତର ଓ ରଚନା ଶୈଳୀ ଦୃଷ୍ଟିରୁ ସୁଗଠିତ । ଏଥିରେ ସମସ୍ୟାର ବିଶ୍ଳେଷଣ ଅଧିକ ଜଟିଳ । ମାନବିକ

ସଂପର୍କର ଜଟିଳ ସ୍ଥିତି ଉପରେ ଲିଖିତ ଏଇ ଗଳ୍ପରେ ଗୋଟିଏ ମଧ୍ୟବିତ୍ତ ବଙ୍ଗାଳୀ ପରିବାରର ସ୍ଥିର ବାତାବରଣ ଭିତରେ କିପରି ଦ୍ୱନ୍ଦ୍ୱର ଝଡ ବୋହିଥିଲା ତାହାର ଚିତ୍ର ଅଙ୍କିତ । ବିଧବା ମା' ଟିଏ ଏକମାତ୍ର ପୁଅ ସହିତ ରହୁଥିଲା । ପୁଅକୁ ସେ ଜୀବନଠୁଁ ବଳି ଭଲ ପାଉଥିଲା ଓ ତା'ର ମନଲାଖି ହେବା ପାଇଁ ସର୍ବଦା ଚାହୁଁଥିଲା । ଅଧିକାଂଶ ଭାରତୀୟ ପରିବାର ପରି ଏଇଠି ମଧ୍ୟ ବହୁ ନିଷେଧ ଓ କ୍ଷୀଣ ସାମାଜିକ ସଂପର୍କଭିତରେ ସେମାନେ ରହୁଥିଲେ । କିନ୍ତୁ ବ୍ୟକ୍ତିର ସହଜାତ ପ୍ରବୃତ୍ତି, ତା'ର କାମନା, ଜାନ୍ତବ ଜିଜ୍ଞାସା ଓ ହିଂସ୍ର ମନୋଭାବ ସୁପ୍ତ ଭାବରେ ଥିଲେ ମଧ୍ୟ ସମୟ କ୍ରମେ ବାହାରି ଆସେ । ତା'ପରେ ଯୁଦ୍ଧ ଆରମ୍ଭ ହୋଇ ଶାନ୍ତ ପରିବାରଟିକୁ ନଷ୍ଟ କରିଦିଏ । ବାହାରେ କାହାକୁ ନିଆଁ କି ଧୂଆଁ ଦେଖା ନଗଲେ ମଧ୍ୟ ଘରଟି ଜଳି ଯାଉଥାଏ । ଏହାହିଁ ଘଟିଛି 'ଚୋଖେର୍ ବାଲି' ଉପନ୍ୟାସରେ ।

ଚଳିତ ଶତାବ୍ଦୀର ପ୍ରଥମ ବର୍ଷଟି ଥିଲା ରବୀନ୍ଦ୍ରନାଥଙ୍କ ଜୀବନରେ ଏକ ସଫଳତାର ବର୍ଷ । ସାହିତ୍ୟ ସୃଷ୍ଟି, ଆଧ୍ୟାତ୍ମିକ ଊର୍ଦ୍ଧ୍ୱାୟନ, ଜନସେବା ଓ ସର୍ବୋପରି ମଣିଷଭାବରେ ତାଙ୍କର ଜୀବନ ସଂଘର୍ଷ- ଏ ସକଳ କ୍ଷେତ୍ରରେ ସେ ଉଲ୍ଲେଖଯୋଗ୍ୟ ଅଗ୍ରଗତି କରିଥିଲେ । ଆଜି ପର୍ଯ୍ୟନ୍ତ କବି ଜଣେ ବନ୍ଧନହୀନ ମୁକ୍ତ ବ୍ୟକ୍ତିଥିଲେ । କେବଳ ତାଙ୍କର ସୃଷ୍ଟି ଜଗତ ଓ ତାଙ୍କର ପରିବାର ବ୍ୟତୀତ ଆଉ କାହାରି ପାଖରେ ସେ କର୍ତ୍ତବ୍ୟଗ୍ରାହୀ ନଥିଲେ । ବର୍ତ୍ତମାନ ଠାରୁ ତାଙ୍କର ଆତ୍ମା ଈଶ୍ୱରବନ୍ଧନ ପାଇଁ ଆଲୋଡିତ ହେବାକୁ ଲାଗିଲା । ପ୍ରେମିକ ଏବେ ଗୁରୁଦେବ ପାଲଟିଗଲେ ! କବି ଏବେ ଭବିଷ୍ୟତବକ୍ତା ବା କ୍ରାନ୍ତଦର୍ଶୀର ଭୂମିକା ଗ୍ରହଣ କଲେ ।

କ'ଣ ସବୁ ଆସୁଥିଲା ସେ ବୁଝିପାରୁ ନଥିଲେ । କେବଳ ଏତିକି ସେ ଜାଣିଥିଲେ ଯେ ସେ ଆଉ କେବଳ ପାରିବାରିକ ଜମିଦାରୀ ଦେଖାଶୁଣା କରିବାରେ ବନ୍ଦୀ ହୋଇ ରହିପାରିବେ ନାହିଁ । ଭାଗ୍ୟ ତାଙ୍କୁ ଆଉ ଏକ ବୃହତ୍ତର ଜଗତ ଆଡକୁ ବାଟ କଢ଼ାଉଛି । କଲିକତାର ବ୍ୟସ୍ତବହୁଳ ଓ ବିଶୃଙ୍ଖଳିତ ଜୀବନ କ୍ରମଶଃ ବିସ୍ୱାଦକର ଅନୁଭୂତ ହେଉଥିଲା । ପ୍ରକୃତି ଓ ଧରିତ୍ରୀ ସହିତ ସେ ଘନିଷ୍ଠତା ଚାହୁଁଥିଲେ, ଚାହୁଁଥିଲେ ନିଜର ସୃଷ୍ଟିଶୀଳ ସାଧନା ପାଇଁ ନିଭୃତ ପରିବେଶ ଓ ସର୍ବୋପରି ଚାହୁଁଥିଲେ ରଚନା କର୍ମରୁ ବିରତି ବେଳର ଯଥାର୍ଥ ଉପଯୋଗ । ଏସବୁ କାର୍ଯ୍ୟପାଇଁ ଶାନ୍ତିନିକେତନଠାରୁ ଆଉ ସୁନ୍ଦର ଓ ପ୍ରକୃଷ୍ଟ ସ୍ଥାନ କ'ଣ ଥାଇପାରେ ? ତାଙ୍କ ପିତା ସେଠାରେ ଗୋଟିଏ ଘର ତୋଳିଥିଲେ ଓ ପରେ ମୂର୍ତ୍ତିପୂଜା ଓ କ୍ରିୟାଚାରବିହୀନ ବ୍ରାହ୍ମ ମନ୍ଦିର ମଧ୍ୟ ନିର୍ମିତ ହେଲା ।

1898ରେ ରବୀନ୍ଦ୍ରନାଥ ନିଜର ପତ୍ନୀ ଓ ପାଞ୍ଚ ସନ୍ତାନ ସନ୍ତତିକୁ (ତିନି କନ୍ୟା ଓ ଦୁଇପୁତ୍ର) ନେଇ ସିଲାଇଦହ ଗଲେ ଓ ପିଲାମାନଙ୍କର ପଢ଼ାପଢ଼ି ଦାୟିତ୍ୱ ନିଜେ ବୁଝିଲେ । ବଡ଼ପୁଅ ପାଇଁ ଇଂରାଜୀ ଟିଉଟର୍ ରଖିଥିଲେ ମଧ୍ୟ ସମସ୍ତଙ୍କ ପଢ଼ା ପାଇଁ ନିଜେ ସେ ଥିଲେ ମୁଖ୍ୟ ଶିକ୍ଷକ । ବାଲ୍ୟାବସ୍ଥାରେ ନିମ୍ନମାନର ଶିକ୍ଷାର ଶିକାର ହୋଇଥିବାରୁ ସେ ବହୁତ ଚିନ୍ତା କରିଥିଲେ ଓ ଶିକ୍ଷାର ପ୍ରାଥମିକ ପ୍ରଣାଳୀ ବିଷୟରେ ଆଲୋଚନା ଲେଖିଥିଲେ । ବର୍ତ୍ତମାନ ନିଜ ପଦ୍ଧତିକୁ କାର୍ଯ୍ୟରେ ପରିଣତ କରି ନୂତନ ଅନ୍ତର୍ଦୃଷ୍ଟି ଲାଭ କରିଥିଲେ । କିନ୍ତୁ ଜଣକର ପିଲାମାନଙ୍କୁ ପଢ଼ାଇବା କେବଳ ଯଥେଷ୍ଟ ନୁହେଁ, ତାଙ୍କ ପଦ୍ଧତିର ପ୍ରକୃତ ଉପଯୋଗ ପାଇଁ ଆହୁରି ବିସ୍ତୃତ ପରିପ୍ରେକ୍ଷୀର ପ୍ରୟୋଜନ । ତେଣୁ ସେ ଚିନ୍ତା କଲେ ଶାନ୍ତିନିକେତନ ଯାଇ ସେଠାରେ ପରୀକ୍ଷାମୂଳକ ଭାବେ କ୍ଷୁଦ୍ର ବିଦ୍ୟାଳୟଟିଏ ଖୋଲିଲେ କେମିତି ହୁଅନ୍ତା ? ତାଙ୍କର କଳ୍ପନା ପ୍ରାଚୀନ ଭାରତର ତପୋବନ ଆଦର୍ଶରୁ ପ୍ରେରଣା

ସଂଗ୍ରହ କରିଥିଲା ଯେଉଁଠି ପ୍ରଜ୍ଞାବନ୍ତ ଋଷିମାନେ ଶିଷ୍ୟ ପ୍ରଶିଷ୍ୟଙ୍କ ଗହଣରେ ଆରଣ୍ୟକ ପରିବେଶରେ ରହି ସେମାନଙ୍କୁ ଉଚ୍ଚଚିନ୍ତା ଓ ସରଳ ଜୀବନଯାପନ ଶିକ୍ଷା ଦେଉଥିଲେ । କବି ମନେ କରିଥିଲେ ସେ ପୁଣିଥରେ ସେଇ ପ୍ରାଚୀନ ଆଦର୍ଶର ବ୍ରହ୍ମଚର୍ଯ୍ୟାଶ୍ରମକୁ ପ୍ରବର୍ତ୍ତନ କରିବେ ଓ ବ୍ରିଟିଶ୍ ଶାସକମାନେ ତାଙ୍କ ଦେଶର ଭିକ୍ଟୋରିଆନ୍ ସ୍କୁଲ୍‌ରୁ ଆମଦାନୀ କରି ଆମଦେଶରେ ଚଳାଇଥିବା ତଥାକଥିତ ନିଷ୍ପ୍ରାଣ ଗତାନୁଗତିକ ଶିକ୍ଷାପଦ୍ଧତିକୁ ପରିହାର କରି ସୃଷ୍ଟିଶୀଳ ଆଶ୍ରମଶିକ୍ଷା ଚଳାଇବେ ଯେଉଁଥିରେ ଅଧ୍ୟୟନ ଓ ଅଧ୍ୟାପନା- ଉଭୟରେ ଆନନ୍ଦ ଭରିରହିଥିବ । ପ୍ରାଚୀନ ଶକ୍ତି ଓ ଆଦର୍ଶ ସହିତ ସେ ଆଧୁନିକ ପରିବେଶର ମିଳନ ଘଟାଇ ଚିରପୁରାତନକୁ ଏକ ନିତ୍ୟନୂତନ ଛାଞ୍ଚରେ ଗଢ଼ି ତୋଳିବେ ।

22 ଡ଼ିସେମ୍ବର 1901ରେ ସେ ପାଞ୍ଚଜଣ ଛାତ୍ର ଓ କେତେଜଣ ଶିକ୍ଷକଙ୍କୁ ଘେନି ଶାନ୍ତିନିକେତନ ବ୍ରହ୍ମଚର୍ଯ୍ୟାଶ୍ରମ ବିଦ୍ୟାଳୟର ଶୁଭାରମ୍ଭ କଲେ । ଛାତ୍ରମାନଙ୍କ ଭିତରେ ଥିଲେ ତାଙ୍କର ବଡ଼ପୁଅ । ରକ୍ଷଣଶୀଳ ହିନ୍ଦୁମାନେ ଏ ବ୍ୟବସ୍ଥାକୁ ଦେଖି ନାକଟେକିବା କଥା- କାରଣ ପାଞ୍ଚଜଣ ଶିକ୍ଷକଙ୍କ ମଧ୍ୟରୁ ତିନିଜଣ ଥିଲେ ଖ୍ରୀଷ୍ଟିୟାନ୍, ତାଙ୍କ ପୁଅର ପୂର୍ବତନ ଗୃହଶିକ୍ଷକ ଜଣେ ଇଂରେଜ୍ ଲୋକ । କିନ୍ତୁ ଏହାହିଁ ଥିଲା ରବୀନ୍ଦ୍ରନାଥଙ୍କର ସ୍ୱଧର୍ମ ଓ ସ୍ୱାତନ୍ତ୍ର୍ୟ । ସେ ପରଂପରାକୁ ନିଜ ରୁଚିରେ ମାନୁଥିଲେ ଓ ମୃତକୁ ବା ଅତୀତକୁ ନିଜ ଦୃଷ୍ଟିରେ ଗୌରବ ଦେଉଥିଲେ । ଏଥି ପାଇଁ କିନ୍ତୁ ତାଙ୍କୁ ବହୁତ ମୂଲ୍ୟ ଦେବାକୁ ପଡ଼ିଥିଲା । ରୁଢ଼ିବାଦୀମାନେ ତାଙ୍କ କାର୍ଯ୍ୟକୁ ଏକ ପ୍ରକାର ଉଦ୍ଭଟ ଓ ଧୃଷ୍ଟ ଉଦ୍‌ଭାବନ ବୋଲି କଟାକ୍ଷ କରୁଥିଲେ, ଆଉ ବିପ୍ଲବୀମାନେ ତାଙ୍କର ଏପ୍ରକାର ପ୍ରାଚୀନ ପ୍ରୀତିକୁ ସହ୍ୟକରି ନପାରି ତାଙ୍କଠାରୁ ଦୂରେଇ ଯାଇଥିଲେ । ତେଣୁ ସେ ହୋଇ ଯାଇଥିଲେ ସଂପୂର୍ଣ୍ଣ ନିଃସଙ୍ଗ- ଏ ପ୍ରକାର ପରିସ୍ଥିତି କବିଙ୍କ ପାଇଁ ଶ୍ରେୟଃ ହୋଇପାରେ କିନ୍ତୁ ନିଜର ଅନୁଷ୍ଠାନ ପାଇଁ ଅର୍ଥ ଓ ଲୋକ ଖୋଜୁଥିବା ସଂଗଠନ ପାଇଁ ଅତ୍ୟନ୍ତ ଅସୁବିଧାଜନକ ଥିଲା । ଏପରିକି ତାଙ୍କର ଅନୁଗତ ଓ ଶୁଭାର୍ଥୀମାନେ ମଧ୍ୟ ମନେ କରୁଥିଲେ ଯେ ଏ ପ୍ରକାର ବିଦ୍ୟାଳୟ କେବଳ ମାତ୍ର ଗୋଟିଏ କବି କଳ୍ପନାର ସାମୟିକ କୌତୁହଳ । ନିଜ ବିଦ୍ୟାଳୟ ପାଇଁ ଅର୍ଥ ଓ ଛାତ୍ର ସଂଗ୍ରହ ବଡ଼ କଷ୍ଟ ହୋଇ ଉଠିଲା । ଖର୍ଚ୍ଚ ମେଣ୍ଟାଇବା ପାଇଁ କବି ତାଙ୍କର ପୁରୀଠାରେ ଥିବା ଘର ଓ ନିଜ ବ୍ୟକ୍ତିଗତ ଗ୍ରନ୍ଥାଗାରରୁ କିଛି ବିକ୍ରି କରିଥିଲେ । ତାଙ୍କ ପତ୍ନୀ ମଧ୍ୟ ଉଦାରଚିତ୍ତରେ ନିଜର ସୁନାଗହଣା ଦେଇ ତାଙ୍କ କାର୍ଯ୍ୟ ସମ୍ଭାଳିବାରେ ସାହାଯ୍ୟ କରିଥିଲେ ।

ଯାହାହେଉ, ବିଦ୍ୟାଳୟଟି କବି କଳ୍ପନାର କୌତୁକ ହୋଇ ଆଉ ରହିନଥିଲା । ଏହା ଥିଲା ତାଙ୍କର ଏକ ଅଭିନବ ସାଧନା, ଜନମଙ୍ଗଳ ପାଇଁ ଥିଲା ଏକ ସୃଷ୍ଟିଶୀଳ ଅଭୀପ୍‌ସା, ଏକ ଦୀର୍ଘ ମହାକାବ୍ୟ ଯାହା ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ରଚନା କରିଚାଲିଥିଲେ । ଆଉ ଯାହା ତାଙ୍କର ଅଭିବୃଦ୍ଧି ସଂଗେ ଉନ୍ନତି ସାଧିତ ହୋଇଥିଲା କିନ୍ତୁ ଅପୂର୍ଣ୍ଣ ରହି ଯାଇଥିଲା । ନିଃସନ୍ଦେହରେ ତାହାଥିଲା କବିଙ୍କ କଳ୍ପନା । 'ଆଉ କବିତ ଅଜାତ ସୁମନର ପ୍ରଥମ ସମ୍ବାଦ ଅବିଶ୍ୱାସର ଜଗତରେ ବିତରଣ କରି ପାରନ୍ତି ।' ଏଇ ଦଶନ୍ଧିଟି ଥିଲା କବିଙ୍କ ସୃଷ୍ଟିଶୀଳ ଜୀବନର ସବୁଠାରୁ ବେଶୀ କ୍ରିୟାଶୀଳ, ପରିବର୍ତ୍ତନଶୀଳ ଓ ଗୁରୁତ୍ୱପୂର୍ଣ୍ଣ ସମୟ । ବିଦ୍ୟାଳୟ ଗଠନ କରି ଗୁରୁ-ଶିଷ୍ୟ ପରଂପରାର ଉଦ୍‌ବର୍ତ୍ତନ ସେ ଚାହିଁଲେ । ପୁଣି ଶିକ୍ଷା ଦେବାକୁ ଚାହିଁଲେ ଭାରତର ଆପାଂକ୍ତେୟ ଆଦିବାସୀମାନଙ୍କୁ । କର୍ମଭୂମି ଭାବରେ ବାଛିନେଲେ ବଙ୍ଗଳାର ଏକ ପରିତ୍ୟକ୍ତ ଦୁର୍ଗମ ଅଂଚଳ- ବୀରଭୂମିକୁ । କଠୋର ସରଳ ଓ ନିରାଡମ୍ବର ଜୀବନ ଯାତ୍ରାକୁ ସେ ବରଣ

କଲେ । ଆଧୁନିକ ସଭ୍ୟ ଜୀବନ ଯାପନ ପାଇଁ ସେତେବେଳେ ଶାନ୍ତିନିକେତନରେ ନିଶ୍ଚୟ କିଛି ପାଇବାର ନଥିଲା । ତଥାପି ତତ୍‌କାଳୀନ ଭାରତର ମେଟ୍ରୋପୋଲିଟାନ୍ ନଗର ଜୀବନ ଛାଡି ସେ ସେଠାକୁ ଗଲେ । ଏହା ମୂଳରେ ଥିଲା ତାଙ୍କର ସୃଷ୍ଟିଶୀଳ ସାଧନା ପାଇଁ ଅବସର ପାଇବା ଓ ଶିକ୍ଷା ତଥା ସେବା ଦିଗରେ ଲକ୍ଷ୍ୟ ହାସଲ କରିବାପାଇଁ ଏକ ବ୍ରତ ।

ଜନ ମଙ୍ଗଳ ଦିଗରେ ବାଧା ସୃଷ୍ଟି କରିଥିବା ସମସ୍ୟା ବିଷୟରେ କବି ସର୍ବଦା ସଚେତନ ଥିଲେ । ଏହା ମଧ୍ୟରୁ ପ୍ରଚଳିତ ଶିକ୍ଷାବ୍ୟବସ୍ଥା ଥିଲା ଅନ୍ୟତମ ପ୍ରଧାନ ସମସ୍ୟା । ତାଙ୍କ ଦୃଷ୍ଟିରେ ଏହି ଶିକ୍ଷା ଉନ୍ନତି କରିବା ପରିବର୍ତ୍ତେ ଉଦୀୟମାନ ଛାତ୍ରଛାତ୍ରୀମାନଙ୍କ ମନୋଜଗତକୁ ଘାଣ୍ଟୁ କରିପକାଉଛି । ଏହି ଶିକ୍ଷା ବ୍ୟବସ୍ଥାର ସସୀମତା  ଓ ଛଦ୍ମବେଶ ବିଷୟରେ ଯେଉଁ କେତେଜଣ ପ୍ରଥମେ ସଚେତନ ହୋଇଥିଲେ ସେମାନଙ୍କ ମଧ୍ୟରେ କବି ଥିଲେ ଅନ୍ୟତମ । ଶିଶୁମାନଙ୍କୁ ନିଜର ମାତୃଭାଷାରେ ମୁକ୍ତ ଓ ଆନନ୍ଦରେ ଭାବ ପ୍ରକାଶ କରିବା ପାଇଁ ଉତ୍ସାହିତ କରିବା ପରିବର୍ତ୍ତେ ଏଇ ଛୋଟ ବୟସରୁ ଗୋଟିଏ ବିଦେଶୀ ଭାଷାର ଗୁରୁଭାର ସେମାନଙ୍କ ଉପରେ ଲଦି ଦିଆଯାଏ । କୋମଳ ମତି ଅବିକଶିତ ମସ୍ତିଷ୍କ ଶିଶୁମାନେ ଏଇ ବିଦେଶୀ ଭାଷାର କ୍ରେଚ ଉପରେ ଭରାଦେଇ ଚାଲିଲାବେଳେ ଭାରସାମ୍ୟ ରଖିବା ପାଇଁ ଚେଷ୍ଟା କରୁକରୁ ନିଜର ଅଙ୍ଗପ୍ରତ୍ୟଙ୍ଗ ତୁଲ୍ୟ ମାତୃଭାଷାର ବ୍ୟବହାର ଭୁଲି ଯାଆନ୍ତି । ନିଜର ପିଲାଦିନର ସ୍କୁଲ ପଢ଼ାକଥା ସେ ଭୁଲିଯାଇ ନଥିଲେ । ସ୍ମରଣ କରି ଲେଖିଛନ୍ତି: ''ଯାଦୁଘରର ମୃତ ପଦାର୍ଥ ପରି ଆମେ ନିଷ୍କ୍ରିୟ ହୋଇ ବସୁଥିଲୁ, ଫୁଲ ଉପରେ କରକା ବୃଷ୍ଟି ହେବା ପରି ପାଠ ସବୁ ଆମ ଉପରେ ବୋଝେଇ ହୋଇ ପଡୁଥାଏ ।''

ଶିଶୁର ମନ ତା'ର ପରିବେଶ ବିଷୟରେ ଅସାଧାରଣ ଭାବେ ସଚେତନ ଥାଏ ଓ ଯେକୌଣସି ବସ୍ତୁ ବିଷୟରେ ଜ୍ଞାନ ସଂଗ୍ରହ ପାଇଁ ତା'ର ଇନ୍ଦ୍ରିୟ ସବୁ ସଜାଗ ହୋଇ ରହିଥାଏ । ମସ୍ତିଷ୍କ ଦେଇ ଶିଖିବା ପୂର୍ବରୁ ସେ ନିଜର ଅଙ୍ଗପ୍ରତ୍ୟଙ୍ଗ ଦେଇ ଓ ଗ୍ରାହିକାଶକ୍ତି ଦେଇ ଶିଖୁଥାଏ । ତେଣୁ ଶିଶୁକୁ ଏପରି ଏକ ପରିବେଶ ଯୋଗାଇବାକୁ ହେବ ଯାହା ତାର କୌତୁହଳକୁ ଉପାଦାନ ଯୋଗାଇ ତାକୁ ଉତ୍ସାହିତ କରି ପାରିବ ଓ ତାର ଚତୁଃପାର୍ଶ୍ୱରେ ଥିବା ଜଗତ ସହିତ ତାକୁ ସହଜ ଓ ଆନନ୍ଦମୟ ଭାବେ ପରିଚିତ କରିପାରିବ । ତେଣୁ ତାକୁ ଆପଣାଛାଏଁ ସବୁ କାର୍ଯ୍ୟ କରିବାକୁ ଉତ୍ସାହିତ କରାଇବାକୁ ହେବ ଯେପରିକି ସେ ଶିକ୍ଷକଙ୍କ ଉପରେ ଯଥାସାଧ୍ୟ କମ୍ ନିର୍ଭର କରିବ । ନିଜର ପରିବେଶକୁ ହୃଦୟଙ୍ଗମ କରି ମସ୍ତିଷ୍କକୁ ଅଯଥା ଭାରାକ୍ରାନ୍ତ କରିବା ପୂର୍ବରୁ ଅଙ୍ଗପ୍ରତ୍ୟଙ୍ଗ ଓ ମନ ଦେଇ ଶିକ୍ଷାଲାଭ କରିବାର ପ୍ରଥାକୁ ମହାତ୍ମା ଗାନ୍ଧି ମୌଳିକଶିକ୍ଷା ବା Basic Educationର ନୀତି  ଭାବରେ ପ୍ରଣୟନ କରିବାର ବହୁ ପୂର୍ବରୁ ଶାନ୍ତିନିକେତନରେ ଆରମ୍ଭ ହୋଇଥିଲା ।

ରବୀନ୍ଦ୍ରନାଥଙ୍କ ମତରେ ପ୍ରକୃତି ହେଉଛି ସର୍ବୋତ୍ତମ ଶିକ୍ଷୟିତ୍ରୀ । ଶାନ୍ତିନିକେତନ ବିଦ୍ୟାଳୟର ଶ୍ରେଣୀସବୁ ତେଣୁ ପ୍ରକୃତିର ମୁକ୍ତ ପରିବେଶରେ ବୃକ୍ଷତଳେ ଚାଲିଥାଏ । ଛାତ୍ର ଛାତ୍ରୀମାନେ ପରିବର୍ତ୍ତନଶୀଳ  ପ୍ରକୃତିର ରୂପ ଓ ଭାବକୁ ବୁଝିବାକୁ ଓ ଭଲ ପାଇବାକୁ ସେମାନଙ୍କୁ ଉତ୍ସାହିତ କରାଯାଏ । ପ୍ରକୃତିର ଅଧ୍ୟୟନ ଓ ଜ୍ଞାନେନ୍ଦ୍ରିୟ ଗୁଡିକର ଯଥାର୍ଥ ଅଭ୍ୟାସ ଉପଯୋଗ ମାଧ୍ୟମରେ ବିଜ୍ଞାନଭିତ୍ତିକ ଶିକ୍ଷାଦାନ କରି ଶିଶୁମାନଙ୍କର କୌତୁହଳ ଓ ବ୍ୟବହାରିକ ଜ୍ଞାନ ବୃଦ୍ଧି କରାଯିବା ଉଚିତ ବୋଲି କବି ବିଶ୍ୱାସ କରୁଥିଲେ । ତାଙ୍କ ମତରେ ଶିଶୁମାନଙ୍କର ଆବେଗ ଓ ବୋଧଶକ୍ତିର ଅଭିବୃଦ୍ଧି ପାଇଁ ସଂଗୀତ ଓ ଚିତ୍ରଶିଳ୍ପର ପ୍ରଭାବ ମଧ୍ୟ କିଛି କମ୍ ନୁହେଁ । ଶିକ୍ଷା

ପ୍ରକୃତରେ ସଂପୂର୍ଣ୍ଣ ମାନବିକ ଗୁଣର ବିକାଶ ଦିଗରେ ସହାୟକ ହେବା ଉଚିତ । କେବଳ ବୌଦ୍ଧିକ ବିକାଶ କ୍ଷେତ୍ରରେ ନୁହେଁ, ଆବେଗ ଓ ବୋଧଶକ୍ତିର ପରିପୂର୍ଣ୍ଣତା ପାଇଁ ମଧ୍ୟ ଶିକ୍ଷାରଭୂମିକା ଗୁରୁତ୍ୱ ପୂର୍ଣ୍ଣ । କବିଙ୍କ ମତରେ ମନୁଷ୍ୟର ପରିପୂର୍ଣ୍ଣତା ବ୍ୟକ୍ତିର ସୀମା ପାରହୋଇ ସମୂହ ଆଡକୁ ପ୍ରସାରିତ ହୁଏ । ତେଣୁ ଶାନ୍ତିନିକେତନ ବିଦ୍ୟାଳୟରେ ଛାତ୍ରଛାତ୍ରୀଙ୍କ ମଧ୍ୟରେ ବ୍ୟକ୍ତିତ୍ୱର ଅଭିବୃଦ୍ଧି, ଆତ୍ମ ନିର୍ଭରଶୀଳତା ସଙ୍ଗେ ସଙ୍ଗେ ଗୋଷ୍ଠୀଗତ ବା ସାମୂହିକ କାର୍ଯ୍ୟ ଉପରେ ସମାନ ଗୁରୁତ୍ୱ ଦିଆଯାଉଥିଲା ।

ଶିକ୍ଷା ତ ବିଦେଶୀ ବୃକ୍ଷର ଚାରାଟିଏ ନୁହେଁ ଯେ ଚାରା କୌଣସି ଆବଦ୍ଧ ଉଷ୍ଣ ଘରେ ତାକୁ ବଢ଼ାଇବାକୁ ହେବ । ଯଦି ଏହି ବୃକ୍ଷ ସଂସ୍କୃତିର ମାଟିରେ ନିଜର ଚେରକୁ ଭେଦ ନ କରି ପରିବେଶରେ ନିଜକୁ ପ୍ରୋଥିତ ନ କରେ ତାହାହେଲେ ସାମଗ୍ରିକ ଭାବେ ଏହାର ସାର୍ବଜନୀନ ମୂଲ୍ୟ ନଥାଏ । ଦୁଃଖ ଓ ଲଜ୍ଜାର ବିଷୟ ଏହି ଯେ ସେଇ ସମୟର ବୁଦ୍ଧିଜୀବୀମାନେ ଏପରିକି ଆଜିର କେତେକ ବୁଦ୍ଧିଜୀବୀ ମଧ୍ୟ ନିଜର ଚିନ୍ତା ଓ ଆଦର୍ଶ, ଅନୁଭବ ଓ ବୋଧଶକ୍ତିର ସୂତ୍ର ମୁଖ୍ୟତଃ ପାଶ୍ଚାତ୍ୟରୁ ଧାରକରି ଆଣନ୍ତି । ଏହି କଥାକୁ ଲକ୍ଷ୍ୟକରି ରବୀନ୍ଦ୍ରନାଥ ଲେଖିଥିଲେ : ''ଆମ ଦେଶର ଶିକ୍ଷାନୁଷ୍ଠାନ ସବୁ ଭାରତର ଜ୍ଞାନ ଭିକ୍ଷାର ପାତ୍ର, ସେସବୁ ଆମର ଜାତୀୟ ଆତ୍ମମର୍ଯ୍ୟାଦାକୁ କ୍ଷୁଣ୍ଣ କରନ୍ତି ଓ ଧାରକରା ବସ୍ତୁରେ ସଜ୍ଜିତ ଆମର ରୂପକୁ ବୋକାଙ୍କ ଭଳି ପ୍ରଦର୍ଶନ କରିବାକୁ ଆମକୁ ଉତ୍ସାହିତ କରନ୍ତି ।'' ଜୀବନ କେବେ ଅନୁକରଣ କରେ ନାହିଁ, ତାହା ସମୀକରଣ କରେ । ତେଣୁ ନିଜ ଲୋକଙ୍କୁ ସତର୍କବାଣୀ ଶୁଣାଇ କବି କହିଛନ୍ତି : ''ଯଦି ସମଗ୍ର ବିଶ୍ୱ ପରିଶେଷରେ ପାଶ୍ଚାତ୍ୟର ଅତିରଂଜନରେ ପରିଣତ ହୁଏ, ଆଧୁନିକ ଯୁଗର ଏଇ ଅସୀମ ହାସ୍ୟାନୁକରଣ ଶେଷ ହୋଇଯିବ, ଆପଣାର ଉଦ୍ଭଟତାର ମାଟିତଳେ ତାହା ସମାଧି ଲଭିବ ।''

ଏସବୁ ଥିଲା କବିଙ୍କର ମୁଖ୍ୟ ଶିକ୍ଷାଦର୍ଶ, ଯାହାକୁ ସେ ନିଜର ସୀମିତ ସମ୍ବଳ ଘେନି ସାକାର କରିବା ପାଇଁ ଏକ ନିଷ୍ଠାପର ଶୁଭାରମ୍ଭ କରିଥିଲେ । ସେ ବିଦ୍ୟାଳୟ ପ୍ରତିଷ୍ଠା କରିସାରିବାପରେ ଏହାର ପରିଚାଳନା ଭାର ଅନ୍ୟମାନଙ୍କ ଉପରେ ନ୍ୟସ୍ତ କରି ନିଜେ ଅନ୍ୟ ଉଚ୍ଚତର କାର୍ଯ୍ୟରେ ବ୍ୟସ୍ତରହି ନଥିଲେ । ସେ କେବେ ବାକ୍ୟବୀର ବା ବିଳାସୀ ଆଦର୍ଶବାଦୀ ନଥିଲେ ଯଦିଓ ଏପରି କଥା ବେଳେବେଳେ ଧାରଣା ହୋଇଥାଏ । ପ୍ରକୃତରେ ସେ ଯାହା ବିଶ୍ୱାସ କରୁଥିଲେ ତାହାକୁ ନିଜର ସକଳ ଆନ୍ତରିକତା ଓ ଶକ୍ତି ବିନିଯୋଗ କରି କାର୍ଯ୍ୟରେ ପରିଣତ କରୁଥିଲେ । ତେଣୁ ସେ ଯେ କେବଳ ଆଶ୍ରମ ଓ ବିଦ୍ୟାଳୟର ପ୍ରଶାସନିକ କାର୍ଯ୍ୟ ପରିଚାଳନା ଓ ପର୍ଯ୍ୟାଲୋଚନା କରୁଥିଲେ ତାହାନୁହେଁ, ସେଠାକାର ପ୍ରତ୍ୟେକ କାର୍ଯ୍ୟକ୍ରମରେ ଅଂଶଗ୍ରହଣ କରୁଥିଲେ ଓ ଅଧ୍ୟାପନା ମଧ୍ୟ କରୁଥିଲେ । ସେ ଶିଶୁମାନଙ୍କୁ ଗଭୀର ଭାବେ ଭଲ ପାଉଥିଲେ । ସେମାନଙ୍କ ସହିତ ରହିବାକୁ ଓ ସେମାନଙ୍କୁ ପଢ଼ାଇବାକୁ ମଧ୍ୟ ବହୁତ ଭଲପାଉଥିଲେ । ତାଙ୍କର ବିଶ୍ୱାସ ଥିଲା ଯେ ପ୍ରତ୍ୟେକ ଶିଶୁ ଈଶ୍ୱରଙ୍କଠାରୁ ସନ୍ଦେଶ ନେଇ ଆସନ୍ତି ଯେ ଏବେବି ଈଶ୍ୱର ମନୁଷ୍ୟ ଉପରେ ଆସ୍ଥା ଓ ବିଶ୍ୱାସ ହରାଇ ନାହାନ୍ତି । ବଙ୍ଗଳାରେ ଉପଯୁକ୍ତ ଅକ୍ଷରଶିକ୍ଷା ଓ ଶିଶୁସୁଲଭ ପାଠ୍ୟପୁସ୍ତକର ଅଭାବ ଲକ୍ଷ୍ୟ କରି ସେ ନିଜେ 'ସହଜପାଠ' ଭଳି ବହି ରଚନା କରିଥିଲେ ଓ ଏହିପରି ବହି ଲେଖିବା ପାଇଁ ନିଜର ଶିକ୍ଷକ ସହକର୍ମୀମାନଙ୍କୁ ଉତ୍ସାହିତ କରୁଥିଲେ । କବି ମାଟିବି ଖୋଳି ପାରନ୍ତି ଆଉ ଗୀତ ବି ଗାଇ ପାରନ୍ତି ।

# ନିଃସଙ୍ଗ ପଦାତିକ

***ଜୀବନକୁ ମୋର ସରଳ ସୁନ୍ଦର ବଂଶୀଟିଏ କର,***
***ଭରି ଦେବା ପାଇଁ ତବ ବନ୍ଦନାର ସୁମଧୁର ସୁର ।***

ନିଜ ନୂତନ ଭକ୍ତର ନିଷ୍ଠା ଓ ଆତ୍ମ ଶକ୍ତି କଳନା କରିବା ପାଇଁ ଈଶ୍ୱର ସତେ ଯେପରି ତାଙ୍କୁ ପଠାଇଥିଲେ, ସେଇ ଭକ୍ତ ପାଇଁ ସେ ଓଲଡ୍ ଟେଷ୍ଟାମେଣ୍ଟର କାର୍ଯ୍ୟସବୁ ସେପରି ବାରମ୍ବାର କରାଉଥିଲେ । ଜୀବନ ତାଙ୍କର ଥିଲା ପ୍ରିୟଜନ ମୃତ୍ୟୁ ଓ ଶୋକର ତୀବ୍ର ବେଦନାରେ ଜର୍ଜରିତ । ଶାନ୍ତି ନିକେତନରେ ନୂଆଁ ଘର ବଦଳାଇବାର କିଛି ମାସ ଭିତରେ ତାଙ୍କ ପତ୍ନୀ ମୃଣାଳିନୀ ଦେବୀ ବଡ ଭୟାନକ ଭାବେ ଅସୁସ୍ଥ ହୋଇ ପଡ଼ିଲେ । ତା' ପରେ ତାଙ୍କୁ କଲିକତା ନିଆଗଲା । ସେଠି 23 ନଭେମ୍ବର 1902ରେ ତାଙ୍କର ମୃତ୍ୟୁ ଘଟିଲା । ନିଜର ସବୁ ସୁଖ ସ୍ୱାଚ୍ଛନ୍ଦ୍ୟ ଭୁଲି ଏଇ ଐଶ୍ୱର୍ଯ୍ୟମୟୀ ନାରୀ କବିଙ୍କର ଦୀର୍ଘ କୋଡିଏ ବର୍ଷ ଅକପଟ ସେବା ଯତ୍ନ କରିଥିଲେ । ତାଙ୍କୁ ପାଞ୍ଚୋଟି ସନ୍ତାନ ସନ୍ତତିର ପିତା କରାଇଥିଲେ । ଅଭିଜାତ ପରିବେଶରେ ଚଳୁଥିବା ଯୁବତୀଟିଏ ହୋଇ ମଧ୍ୟ ସେ ସର୍ବଦା ଅତି ସାଧାରଣ ପୋଷାକ ପରିଚ୍ଛଦ ପିନ୍ଧୁଥିଲେ, ଅଳଙ୍କାର ପ୍ରାୟ ପିନ୍ଧୁ ନଥିଲେ ଓ ନିଜ ପତିଙ୍କ ଆଦର୍ଶକୁ ଆନନ୍ଦ ଚିତ୍ତରେ ଗ୍ରହଣ କରୁଥିଲେ । କେବଳ ପିଲାମାନଙ୍କୁ ସୁନ୍ଦର ପୋଷାକ ପରିଧାନ କରାଇଲା ବେଳେ ସ୍ୱାମୀଙ୍କର ପ୍ରତିବାଦକୁ ସେ ପସନ୍ଦ କରୁନଥିଲେ । ସେ ବେଶୀଦିନ ଅଶିକ୍ଷିତା ହୋଇ ରହିନଥିଲେ । କେବଳ ନିଜ ମାତୃଭାଷାରେ ନୁହେଁ ସଂସ୍କୃତ ଓ ଇଂରାଜୀରେ ମଧ୍ୟ ଖୁବ୍ କମ୍ ଦିନ ଭିତରେ ବ୍ୟୁତ୍ପତ୍ତି ଲାଭ କରିଥିଲେ । ସ୍ୱାମୀଙ୍କ କଥାଶୁଣି ସେ ମୂଳ ସଂସ୍କୃତରୁ ରାମାୟଣର ସଂକ୍ଷିପ୍ତ ଅଂଶ ବଙ୍ଗାନୁବାଦ କରିଥିଲେ । ସ୍ୱାମୀଙ୍କର ନାଟକ 'ରାଜା ଓ ରାଣୀ'ରେ ଅଭିନୟ କରି ସେ ନିଜର ପାରଦର୍ଶିତା ଦେଖାଇ ପାରିଥିଲେ । ପରିଶେଷରେ ସ୍ୱାମୀଙ୍କ ହୃଦୟ ଜୟ କରିଥିଲେ । ଯେତେବେଳେ ସେ ଅସୁସ୍ଥ ହୋଇ ଶଯ୍ୟାଶାୟୀ ହେଲେ ରବୀନ୍ଦ୍ରନାଥ ତାଙ୍କର ଖୁବ୍ ସେବାଯତ୍ନ ନିଜେ କରିଥିଲେ । କୌଣସି ନର୍ସକୁ ନରଖି ଦୁଇମାସ କାଳ ଦିନରାତି ସେ ତାଙ୍କ ପାଖରେ ବସି ତାଙ୍କର ସେବା କରିଥିଲେ । ସେତେବେଳେ ବିଜୁଳି ପଙ୍ଖା ନଥିଲା, ପ୍ରତ୍ୟକ୍ଷଦର୍ଶୀଙ୍କ ବିବରଣୀରୁ ଜଣାଯାଏ କବି ନିଜେ ବସି ରାତିଦିନ ହାତରେ ତାଙ୍କୁ ବିଞ୍ଚୁ ଥିଲେ । ଯେତେବେଳେ ମୃଣାଳିନୀ ଦେବୀଙ୍କର ମୃତ୍ୟୁ ହୋଇ ଯାଇଥିଲା କବି ତାଙ୍କ ପାଖକୁ କାହାରିକୁ ଆସିବାକୁ ମନାକରି ସାରାରାତି ସେଇ ଛାତରେ ପଦଚାରଣ କରି କଟାଇଥିଲେ ।

ଠିକ୍ ସେହିପରି ଭାବେ ତାଙ୍କ କବିତାରେ ରୂପପାଇଛି ତାଙ୍କର ଗଭୀର ଅନୁଭବ । ସତେଇଶଟି କବିତାର କ୍ଷୁଦ୍ର ସଂକଳନଟିଏ ହୋଇ ଏହା ପ୍ରକାଶ ପାଇଛି । ଆକୁଳ ଅନୁଭୂତିର

ଗଭୀରତା ଓ ପ୍ରକାଶ ଭଙ୍ଗୀର ସରଳତାରେ ଏଇ କବିତାଗୁଡିକ ଯେପରି ମାର୍ମିକ ସେହିପରି ସମୁଜ୍ଜ୍ୱଳ । ''ଦୁଃଖର ଶେଯରେ ମୋର ପାହିଅଛି ରାତି, ଲୁହଭିଜା କ୍ଳାନ୍ତ ମୋର ଆଖି ।'' ପତ୍ନୀଙ୍କ ପାଖରୁ ଯାହା କବି ଗ୍ରହଣ କରିଥିଲେ ତାହାର ପ୍ରତିଦାନ ଦେବା ପୂର୍ବରୁ ସେ ଛାଡି ଚାଲିଗଲେ, ଆଉ ବର୍ତ୍ତମାନ ଯାହାସବୁ ତାଙ୍କ ଉଦ୍ଦେଶ୍ୟରେ ଥିଲା ତାହା କବି କେବଳ ପରମେଶ୍ୱରଙ୍କୁ ଦେଇ ପାରିଲେ । ''ତା'ର ରାତି ପାହି ପ୍ରଭାତ ହୋଇଗଲା, ତୁମେ ବାହୁ ପ୍ରସାରି ତାକୁ କୋଳେଇ ନେଇ, ତା' ପାଇଁ ଥିବା ମୋର ସବୁ ଶ୍ରଦ୍ଧା ଓ ଅର୍ଘ୍ୟ ଏବେ ମୁଁ ତୁମକୁ ଦେବାକୁ ଆଣିଛି ।'' ଅନ୍ୟ ମନସ୍କ ଭାବେ ସେ ଘରର ଚାରିଆଡେ ତାଙ୍କୁ ଖୋଜି ବୁଲୁଥିଲେ କେବଳ ଉପଲବ୍ଧି କରିବାକୁ ଯେ ସେ ଆଉ କେବେ ଏ ପୃଥିବୀରେ ତାଙ୍କୁ ଦେଖି ପାରିବେନି । ''ମୋ ଘର ବହୁତ କ୍ଷୁଦ୍ର, ଏଠାରୁ ଯାହା ଥରେ ଚାଲିଯାଏ ଆଉ ଫେରେନି । କିନ୍ତୁ ତୁମର ପ୍ରାସାଦ ତ ଅନନ୍ତ ପ୍ରକାଣ୍ଡ, ସେଠି ତାଙ୍କୁ ଖୋଜିବାକୁ ମୁଁ ତୁମ ଦ୍ୱାରକୁ ଆସିଛି ପ୍ରଭୁ ।'' ସେ ପତ୍ନୀଙ୍କର ଆସବାବପତ୍ର ଭିତରୁ ତାଙ୍କ ପାଖକୁ ନିଜେ ଲେଖିଥିବା କିଛି ଚିଠି ପାଇଲେ । ତାହାକୁ ସେ ବହୁମୂଲ୍ୟ ସଂପଦ ଭଳି ସାଇତି ରଖିଲେ, ଖୁବ୍ ଭାବ ବିଭୋର ହୋଇ ପଡିଲେ, ସେ ଯେପରି ତାଙ୍କ ଘର ଓ ପରିବାରକୁ ସୁଗଠିତ କରିପାରି ଥିଲେ ତାଙ୍କ ସ୍ମୃତି କିପରି କବିଙ୍କ ଜୀବନକୁ ସୁଗଠିତ କରିବ ସେଥିପାଇଁ କବି ପ୍ରାର୍ଥନା କଲେ । ପରବର୍ତ୍ତୀ କବିତା ସଂକଳନଟି 'ସ୍ମରଣ' ନାମରେ ପ୍ରକାଶ ପାଇଲା ।

ପ୍ରକାଶିତ ଦୁଃଖ ଠାରୁ ଅନ୍ତର୍ଗତ ଦୁଃଖ ଥିଲା ଖୁବ୍ ବେଶୀ ତୀବ୍ର । ରବୀନ୍ଦ୍ରନାଥଙ୍କର ସରଳ ଓ ସୁକୁମାର ଆନନ୍ଦରେ ପରିପୂର୍ଣ୍ଣ ଶିଶୁକବିତା ସବୁ ଯେ ଜୀବନର ଗଭୀର ନୈରାଶ୍ୟ ଓ କ୍ରନ୍ଦନ ଭିତରେ ରଚିତ ହୋଇଥିଲା ଏହା କେହି ପାଠକ ଆଶା କରିପାରିବେନି । ପତ୍ନୀଙ୍କ ଦେହାନ୍ତ ହେବାର କିଛି ମାସ ପରେ ତାଙ୍କର ଦ୍ୱିତୀୟ କନ୍ୟା ରେଣୁକା ସାଂଘାତିକ ଭାବେ ଅସୁସ୍ଥ ହୋଇ ପଡ଼ିଲା ଓ ଡାକ୍ତର ମାନେ ଜଳବାୟୁ ପରିବର୍ତ୍ତନ ପାଇଁ ଶୈଳନିବାସକୁ ଯିବାକୁ ପରାମର୍ଶ ଦେଲେ । ବାପା ତାକୁ ଓ ଆଉ ଦୁଇ ସାନ ପୁଅ ଝିଅ ମିରା ଓ ସମୀନ୍ଦ୍ରକୁ ଘେନି ବାହାରିଲେ । ପ୍ରଥମେ ହଜାରିବାଗ୍ ଦେଇ ତାପରେ ସେମାନେ ହିମାଳୟର ଆଲ୍‌ମୋରା ଗଲେ । ସେ କେବଳ ଅସୁସ୍ଥ ଝିଅର ସେବା ଯତ୍ନ କରୁନଥିଲେ, ସାନ ଦୁଇ ଜଣଙ୍କର ସବୁ କଥା ବୁଝୁଥିଲେ ଓ ସେମାନଙ୍କୁ ମଜାକଥା କହି ଖୁସି କରାଉଥିଲେ । ମା'ଙ୍କ ପରେ ପିଲାମାନେ ତାଙ୍କର ଖୁବ୍‌ବେଶୀ ସ୍ନେହ ପ୍ରବଣ ହୋଇ ଉଠିଥିଲେ । ସେଇମାନଙ୍କ ପାଇଁ ଆତ୍ମଦୁଃଖକୁ ଲୁଚାଇରଖି ସେ ତାଙ୍କରି ସାଙ୍ଗରେ ଖେଳଖୁସିରେ କଟାଉଥିଲେ । ଏହିପରି ଭାବେ ସେଇ ସମୟରେ ସେ ଯେଉଁ ଶିଶୁକବିତା ଲେଖିଥିଲେ ତାହା 'ଶିଶୁ', ନାମରେ ସଂକଳିତ । ''ଶିଶୁମାନଙ୍କ ବିଷୟରେ ରଚିତ କବିତାର ଏଇ ସଂକଳନଟି ବିଶ୍ୱସାହିତ୍ୟରେ ଅନନ୍ୟ ।'' - ଏହିପରି କହି ଏଇ ବହିଟିର ପ୍ରଶଂସା କରିଛନ୍ତି ଚେକ୍ ବିଦ୍ୱାନ୍ ପ୍ରଫେସର ଲେସନୀ । ପରବର୍ତ୍ତୀ ସମୟରେ ଏଥିର ଅନେକ କବିତା ଇଂରେଜୀରେ ଅନୂଦିତ ହୋଇ 'ଦି କ୍ରିସେଣ୍ଟ ମୁନ୍' ରେ ସ୍ଥାନ ପାଇଛି ।

ଏଇ କବିତା ଭିତରେ ରବୀନ୍ଦ୍ରନାଥଙ୍କର ଶିଶୁମାନଙ୍କ ପ୍ରତି ଥିବା ଗଭୀର ସ୍ନେହ ଓ ସମ୍ବେଦନାର ଭାବ ପ୍ରକଟିତ । ଶିଶୁମାନଙ୍କର ଚପଳତାକୁ ସେ ସହଜାତ ଜ୍ଞାନ ଦେଇ ବୁଝୁଥିଲେ ଓ ସେମାନଙ୍କର ସ୍ୱାଭାବିକ ପ୍ରଜ୍ଞା ଉପରେ ତାଙ୍କର ବିଶ୍ୱାସ ଅତୁଟ ଥିଲା । ଶୈଶବରେ ସ୍ୱର୍ଗ ଆମପାଇଁ ଯାହା ଥିଲା ତାହାହିଁ ସେମାନଙ୍କର ଦୀପ୍ତିରୁ ପ୍ରକାଶିତ । ''ମୁକ୍ତା ସଂଗ୍ରହକାରୀ ମୁକ୍ତା

ପାଇଁ ସମୁଦ୍ରରେ ବୁଡେ, ବଣିକମାନେ ଜାହାଜରେ ଯାତ୍ରାକରନ୍ତି, ଯେତେବେଳେ ଶିଶୁମାନେ ଟିକିଟିକି ଗୋଡି ସବୁ ଏକାଠି କରନ୍ତି ପୁଣି ବିଛାଡନ୍ତି । ଜଗତ ପାରାବାର ତୀରରେ ଶିଶୁମାନଙ୍କର ମହାମେଳା ବସିଛି ।''

ମା'ଙ୍କ ମୃତ୍ୟୁର ମାତ୍ର ନଅମାସ ପରେ ସେପ୍ଟେମ୍ବର 1903ରେ ତେର ବର୍ଷ ବୟସର ଝିଅ ରେଣୁକା ଚାଲିଗଲା । ଏଇ ଅସାଧାରଣ ବୁଦ୍ଧିମତୀ ଝିଅଟି ଥିଲା ବାପାଙ୍କର ଏକାନ୍ତ ପ୍ରିୟ । ତା'ର ବିରହରେ କବି ମ୍ରିୟମାଣ ହୋଇ ପଡିଲେ କିନ୍ତୁ ତାହା ସେ ପ୍ରକାଶ କରି ପାରିଲେ ନାହିଁ । ନିଜ କାର୍ଯ୍ୟରେ ଆତ୍ମନିବିଷ୍ଟ ହୋଇ ରହିଲେ ଓ 'ବଙ୍ଗଦର୍ଶନ' ସାହିତ୍ୟ ପତ୍ରିକାର ପୃଷ୍ଠା ମଣ୍ଡନ କରି ଚାଲିଲେ । ଆଶ୍ଚର୍ଯ୍ୟଜନକ ଭାବେ ଏହି ସମୟରେ ସେ ସେଇ ପତ୍ରିକାରେ କ୍ରମାନ୍ୱୟରେ ଗୋଟିଏ ଉପନ୍ୟାସ ରଚନା କରୁଥିଲେ ଯାହା ବୋଧହୁଏ କେବଳ ପାଠକମାନଙ୍କର ମନୋରଂଜନ ପାଇଁ କୌଶଳପୂର୍ଣ୍ଣ କାହାଣୀମଣ୍ଡିତ । କୌଣସି ଦର୍ଶନ ବା ଜଟିଳ ଭାବ ଶୂନ୍ୟ ଏକମାତ୍ର ଉପନ୍ୟାସ ଯାହା ବିୟୋଗାନ୍ତ ନୁହେଁ, ତାହାହେଲା 'ନୌକାଡୁବି' । ପରିଚୟର ଭ୍ରମରେ ପତ୍ନୀ ବଦଳ ହୋଇ ଯାଇଥିବାର ଏଇ କୌତୁହଳପୂର୍ଣ୍ଣ ଗପଟି ଅତି ସୁଖକର ଭାବେ ବର୍ଣ୍ଣିତ । ପ୍ରକୃତିର ରୂପପ୍ରାଣ ବର୍ଣ୍ଣନା ସ୍ଥାନେ ସ୍ଥାନେ ପାଠକକୁ ମୋହମୁଗ୍ଧ କରେ ।

ରେଣୁକାର ମୃତ୍ୟୁର ଚାରିମାସ ପରେ କବି ଆଉ ଏକ ପ୍ରିୟଜନ ମୃତ୍ୟୁରେ ଭାଙ୍ଗିପଡିଲେ । ଉଦୀୟମାନ ତରୁଣ କବି ଓ ଶାନ୍ତିନିକେତନ ବିଦ୍ୟାଳୟର ଶିକ୍ଷକ ସତୀଶ ରାୟ ହଠାତ୍ ବସନ୍ତ ରୋଗରେ ମୃତ୍ୟୁବରଣ କଲେ । ସତୀଶ ଥିଲେ କବିଙ୍କର ପୁଅଭଳି ପ୍ରିୟ ଓ ବିଶ୍ୱସ୍ତ । ଏହି ସଂକ୍ରାମକ ରୋଗ ଭୟରେ ବିଦ୍ୟାଳୟର ସମସ୍ତ ଛାତ୍ରଙ୍କୁ କିଛି ଦିନ ଶିଲାଇଦହକୁ ସ୍ଥାନାନ୍ତରିତ କରାଯାଇଥିଲା । ତା' ପରେ ହେଲା ତାଙ୍କ ପିତାଙ୍କର ସ୍ୱର୍ଗାରୋହଣ । 19 ଜାନୁୟାରୀ 1905ରେ ମହର୍ଷି ଇହଧାମ ତ୍ୟାଗକଲେ 88ବର୍ଷ ବୟସରେ । ଏହି ମହିମାମୟ ବ୍ୟକ୍ତିଙ୍କର ମହାପ୍ରାୟାଣରେ ଭାରତ ଇତିହାସରେ ଗୋଟିଏ ଉଲ୍ଲେଖନୀୟ ଯୁଗର ଇତିହେଲା- ଧାର୍ମିକ ଓ ସାଂସ୍କୃତିକ ଜାଗରଣର ଯୁଗ, ଭାରତବର୍ଷର ରାଜନୈତିକ ସଚେତନତାର ପଥପ୍ରଦର୍ଶକ ବୁଦ୍ଧୀବାଦୀ ନୀତିବାଦୀ ମହାପୁରୁଷମାନଙ୍କର ଯୁଗ ପ୍ରାୟ ଶେଷ ହୋଇ ଆସିଲା । ଏହାପରେ ଗାନ୍ଧି ବା ରବୀନ୍ଦ୍ରନାଥଙ୍କର ସକଳ ମହାନ୍ ସ୍ୱପ୍ନକୁ ପଛରେ ପକାଇ ନୈତିକ ଓ ବୌଦ୍ଧିକ ଆଦର୍ଶକୁ ପଦାନତ କରି ରାଜନୈତିକ ଅଭିସନ୍ଧି ଓ କ୍ଷମତାଲିପ୍ସା ହିଁ ଭାରତର ଇତିହାସକୁ ବଦଳାଇ ଦେଲା ।

1905 ରେ ଲର୍ଡ କର୍ଜନ ତାଙ୍କର ଶାସନର ଶେଷବର୍ଷରେ ବଙ୍ଗଭଙ୍ଗ ଘୋଷଣାକରି ଏଇ ଭଳି ଏକ ଅବସ୍ଥାର ସୂତ୍ରପାତ କଲେ ଯାହାଫଳରେ ଦୁଇ ମୁଖ୍ୟ ଧାର୍ମିକ ଗୋଷ୍ଠୀଙ୍କ ଭିତରେ ବିଭେଦ ଦେଖା ଦେଲା ଓ ପରିଶେଷରେ 42 ବର୍ଷ ପରେ ଅଭୂତପୂର୍ବ ହିଂସା ଓ ସଂଘର୍ଷମୟ ପରିସ୍ଥିତି ଭିତରେ ଭାରତ ଦୁଇ ଭାଗରେ ବିଭକ୍ତ ହେଲା । ରବୀନ୍ଦ୍ରନାଥ ଏଇ ବିପଦ ସଂପର୍କରେ ନିଜ ଦେଶର ଲୋକମାନଙ୍କୁ ବହୁପୂର୍ବରୁ ସଚେତନ କରାଇଥିଲେ । ବଙ୍ଗଭଙ୍ଗ ଘଟଣାପରେ ସେ ଖୋଲାଖୋଲି ଭାବେ କ୍ଷେତ୍ରକୁ ଓହ୍ଲେଇ ଆସିଲେ । ଆଗ୍ନେୟ ବକ୍ତୃତା, ସ୍ୱଦେଶୀ ସଂଗୀତ ଓ ଶୋଭାଯାତ୍ରା ମାଧ୍ୟମରେ ଦେଶ ବିଭାଜନକୁ ସେ ତୀବ୍ର ବିରୋଧ କରିଥିଲେ । କଲେଜ ମାନଙ୍କରୁ ଅନେକ ଛାତ୍ର ଅନ୍ୟକିଛି ନୁହେଁ କେବଳ ସ୍ୱଦେଶୀ ସଂଗୀତ ଗାନ କରିବା ଦୋଷରେ ବିତାଡିତ ହୋଇଥିଲେ । ସେଇ ଛାତ୍ରମାନଙ୍କର ଶିକ୍ଷାପାଇଁ ରବୀନ୍ଦ୍ରନାଥ ଓ ଅନ୍ୟ କେତେଜଣ ମିଶି ଜାତୀୟ ଶିକ୍ଷା ପଦ୍ଧତି ସ୍ଥିର କରି ଜାତୀୟ ଶିକ୍ଷା ପରିଷଦ ଗଠନ କଲେ । ଯୋଗୀ ଶ୍ରୀଅରବିନ୍ଦ ଥିଲେ

ଏହାର ପ୍ରଥମ ଅଧକ୍ଷ । ଏଇ ପରିଷଦରେ ରବୀନ୍ଦ୍ରନାଥ ସାହିତ୍ୟର ନୀତି ବିଷୟରେ ଯେଉଁ ବକ୍ତୃତାମାଳା ପ୍ରଦାନ କରିଥିଲେ ତାହା ପରବର୍ତ୍ତୀ ସମୟରେ 'ସାହିତ୍ୟ' ନାମରେ ପ୍ରକାଶ ପାଇଥିଲା । ସେ ଆଶା କରୁଥିଲେ, ଯେ ବିଦେଶୀ ଶାସନ ବିରୁଦ୍ଧରେ ସାଧାରଣ ଜନତାଙ୍କ ଭିତରେ ଥିବା ଅସନ୍ତୋଷକୁ ତେଜେଇ ଜାତୀୟ ସ୍ୱାଧୀନତା ପାଇଁ ସୃଷ୍ଟି ହୋଇଥିବା ଅଭିନବ ଉତ୍ସାହକୁ ଜାତୀୟ ପୁନର୍ଜାଗରଣର କର୍ମଚଂଚଳ କାର୍ଯ୍ୟକ୍ରମରେ ପରିଣତ କରିବାକୁ ପଡିବ । ସେହି ସମୟରେ ନିଜର ବହୁ ଉଲ୍ଲେଖଯୋଗ୍ୟ ବକ୍ତୃତାମାଳା ଓ ପ୍ରବନ୍ଧ ମାଧ୍ୟମରେ ସେ ଏପରି କେତେକ ଜାତୀୟ କାର୍ଯ୍ୟକ୍ରମର ସୂଚନା ଦେଇଥିଲେ ଯାହା ପରବର୍ତ୍ତୀ ସମୟରେ ମହାତ୍ମା ଗାନ୍ଧିଙ୍କ ନେତୃତ୍ୱରେ ସମଗ୍ର ଦେଶରେ ଅହିଂସା ଅସହଯୋଗ ଆନ୍ଦୋଳନର ରୂପ ନେଇଥିଲା ।

କିନ୍ତୁ ରବୀନ୍ଦ୍ରନାଥ ତ ଗାନ୍ଧିଜୀ ନଥିଲେ । ତାଙ୍କ ଠାରେ ମହାତ୍ମାଙ୍କର ଅସୀମ ଧୈର୍ଯ୍ୟ ଓ ନିଷ୍ଠା ନଥିଲା । ତାଙ୍କର ଶାନ୍ତ ବିଚାରବୋଧ ଓ ଅତୁଟ ସଙ୍କଳ୍ପ ଶକ୍ତି, ତାଙ୍କର କୌଶଳ ପ୍ରଦର୍ଶନ କାରୀ ପ୍ରତିଭା ଓ ସର୍ବମାନ୍ୟ ଅଧିନାୟକ ହେବାର ଗୁଣ କବିଙ୍କଠି ନଥିଲା । କିଛିକାଳ ଅତି ବିଚକ୍ଷଣ ଭାବରେ ସେ ଆନ୍ଦୋଳନର ଝଡକୁ ବାଟ ବଢ଼ାଇଲେ କିନ୍ତୁ ଯେତେବେଳେ ତାହା ଅନିବାର୍ଯ୍ୟ ହିଂସା ଆଡକୁ ମୁହାଁଇଲା ସେ ଯୁଦ୍ଧଭୂମିରୁ ବିଦାୟ ନେଇଥିଲେ । ଏ କ୍ଷେତ୍ରରେ ସେ ଥିଲେ ଆଶାହୀନ କିନ୍ତୁ ବିଜ୍ଞ । ଅତି ବୀରତ୍ୱ ପୂର୍ଣ୍ଣ ଭାବରେ ଯେଉଁ ଆନ୍ଦୋଳନକୁ ସେ ଅନୁପ୍ରେରିତ କରିଥିଲେ ସେଥିରୁ ଓହରି ଆସିଥିବାରୁ ସେ ବହୁ ଭାବରେ ସମାଲୋଚିତ ହୋଇଥିଲେ । କିନ୍ତୁ ନିଜ ଶକ୍ତି ବିଷୟରେ ସେ ଖୁବ୍ ସଚେତନ ଥିଲେ ଓ ଯାହା ତାଙ୍କ ଦ୍ୱାରା ସମ୍ଭବ ନୁହେଁ ସେଥିରୁ ଚତୁର ଭାବେ ଦୂରେଇ ଯାଇଥିଲେ । ନିଜେ ଯାହାକୁ ଉଚିତ ମନେ କରୁଥିଲେ ଶତ ବାଧା ଓ ଲୋକନିନ୍ଦା ସତ୍ତ୍ୱେ ସେଥିରୁ ଆଦୌ ବିଚଳିତ ହେଉ ନଥିଲେ । ତାହାହିଁ ପ୍ରକୃତ ବୀରତ୍ୱ । ଯାହା ହେଉ ତାଙ୍କର ରଚିତ ବହୁ ସ୍ୱଦେଶୀ ସଂଗୀତ ଜାତୀୟ ମୁକ୍ତି ସଂଗ୍ରାମକୁ ପ୍ରେରଣା ଯୋଗାଉଥିଲା କିନ୍ତୁ ଏଗୁଡିକରୁ କେବେ କଳହପ୍ରିୟତା ବା ସଂକୀର୍ଣ୍ଣ ନିଷ୍ଠୁର ମନୋଭାବର ପରିଚୟ ମିଳୁନଥିଲା । ପରବର୍ତ୍ତୀ ସମୟରେ ଏଜ୍ରା ପାଉଣ୍ଡ କହିଥିବା ଉକ୍ତି "Tagore has sung Bengal into a nation" ବୋଧହୁଏ ଗୋଟିଏ ଦିଗରୁ ସତ୍ୟଥିଲା ।

ଯୁଦ୍ଧଭୂମିରୁ ତାଙ୍କର ବିଦାୟ ରାଜନୈତିକ ଆନ୍ଦୋଳନ ପାଇଁ ବିରାଟ କ୍ଷତି ହୋଇଥିଲା କି ନାହିଁ କେଜାଣି କିନ୍ତୁ ଶାନ୍ତିନିକେତନ ଓ ସାହିତ୍ୟ ପାଇଁ ଏହା ଥିଲା ନିଶ୍ଚିତ ଭାବେ ଏକ ଲାଭପ୍ରଦ କଥା । ସାମାଜିକ ଓ ଜାତୀୟ ସମସ୍ୟା ଆଧାରିତ ବହୁ ଆଲୋଚନା ଓ ଶିକ୍ଷା, ସାହିତ୍ୟ ସମାଲୋଚନା, ଲୋକସାହିତ୍ୟ, ଶବ୍ଦ ଓ ଧ୍ୱନିର ତାତ୍ତ୍ୱିକ ବ୍ୟାଖ୍ୟାପ୍ରଭୃତି ବିଷୟରେ ବହୁ ଲେଖା ସହିତ ଅନେକ ବ୍ୟଙ୍ଗବିଦ୍ରୂପାତ୍ମକ ରଚନା ସେ ଏହି ସମୟରେ ଲେଖିଥିଲେ । ତା' ପରେ ତାଙ୍କର ପରବର୍ତ୍ତୀ ମୁଖ୍ୟ କବିତା ସଂକଳନ 'କ୍ଷେୟା' ସେ ଶେଷକରିଥିଲେ । ତାହା 1906ରେ ପ୍ରକାଶିତ ହୋଇଥିଲା । ଏହା ଥିଲା କବିଙ୍କର ପରିବର୍ତ୍ତନକାମୀ ବ୍ୟାକୁଳ ମନର ପ୍ରତୀକ । ଆର କୂଳକୁ ପାରି ହୋଇ ଯିବା ପାଇଁ କବି ଫେରିଡଙ୍ଗାକୁ ଚାହିଁବସିଛନ୍ତି । ବହୁ ପ୍ରିୟଜନମୃତ୍ୟୁ ଓ ଜୀବନରେ ବହୁ ଦୁର୍ବିପାକ କେବଳ ଧୈର୍ଯ୍ୟବଢ଼ାଇ ଭବିଷ୍ୟତରେ ପରିବର୍ତ୍ତନ ପାଇଁ ଅପେକ୍ଷା ରଖିବାକୁ ତାଙ୍କୁ ଶିକ୍ଷା ଦେଇଛି । ଏଥିର ଅଧିକାଂଶ କବିତା (କେତେକ ସଂଗୀତ) ସ୍ୱପ୍ନିଳ ଓ ପ୍ରତୀକାତ୍ମକ । ଏଥିରୁ ଏଗାରଟି କବିତା ପରେ ଇଂରାଜୀ ଗୀତାଂଜଳିରେ ସ୍ଥାନ ପାଇଛି ଓ ଅନ୍ୟ କେତେକ କବିତା The Gardener, Fruit gathering, Lover's gift Crossing ରେ ମଧ୍ୟ ସଂକଳିତ ହୋଇଛି ।

''ବନ୍ଦୀ ଆହେ, କିଏ ଗଢ଼ିଛି ବଜ୍ର ବନ୍ଧନ ତୁମ ?''
ଆପେ ଯେ ମୁହିଁ ଗଢ଼ିଛି ତାହା ଯତନେ ଅତିଘୋର ।
ଭାବି ଥିଲି ମୁଁ ମୋହର ପ୍ରତାପ କରିବ ଜଗତ ଗ୍ରାସ,
ଏକୁଟିଆ ମୁଁ ରହିବି ସ୍ୱାଧୀନ ସରବେ ହେବେ ଦାସ ।
ତେଣୁ ମୁଁ ଗଢ଼ିଛି ରଜନୀ ଦିନ ଲୁହାର ଶିଂକୁଳି ଗୋଟି
ଲୁହାକୁ ନିଆଁରେ ବାଡେଇ ବାଡେଇ ଆଘାତ ପାଇଛି ଏଠି ।
ଗଢ଼ା ଯେବେଟି ହୋଇଲା ଶେଷ କଠିନ ସୁକଠୋର
ଦେଖେଁ ମୋତେ ବି ବନ୍ଦୀକରି ରଖିଛି ଏଇ ଡୋର ।''

ଅନ୍ୟ ଏକ କବିତାରେ କବି ନିଜକୁ ଜଣେ ଭିକ୍ଷୁକ ଝିଅ ଭାବରେ ବର୍ଣ୍ଣନା କରିଛନ୍ତି । ଭିକ୍ଷା ମାଗି ସେ ଫେରିବା ବେଳେ ରାଜପୁତ୍ର ଆସି ତା' ସମ୍ମୁଖରେ ଠିଆ ହୋଇ ହାତପାତିଲେ । କହିଲେ 'ମୋତେ କିଛି ଦିଅ' । ଏକଥା ଶୁଣି ପ୍ରଥମେ ଝିଅଟି ଲଜ୍ଜା ଅନୁଭବ କଲା । କିନ୍ତୁ ପରେ ମୁଣିରେ ହାତ ପୁରାଇ କଣା ପଇସାଟିଏ ଦେଲା । ପରେ ଘରକୁ ଫେରି ଯେତେବେଳେ ମୁଣି ଖୋଲି ଦେଖେ ସେଥିରୁ ସୁନାମୁଦ୍ରାଟିଏ ବାହାରିଲା । ଯାହା ସେ ରାଜଭିକାରୀଙ୍କୁ ଦେଇଥିଲା ତାହା ସୁନା ହୋଇ ଫେରିଛି ଦେଖି ସେ କାନ୍ଦିପକାଇ କହିଉଠିଲା ''ତୁମକୁ କିଆଁ ଦେଲିନି ମୋର ସକଳ ଶୂନ୍ୟ କରି ।''

ଆଉ ଗୋଟିଏ କବିତାରେ ସେ ନାରୀଟିଏ ହୋଇ ରାତିରେ ନିଜ ପ୍ରେମିକଙ୍କୁ ଅପେକ୍ଷା କରିଛନ୍ତି । 'ଗଭୀର ରାତିରେ ଅନ୍ଧାର ମୁଲକର ରାଜା ଆସିଲେ' । ଏଇ ପ୍ରତୀକଟିକୁ କବି ପରବର୍ତ୍ତୀ ସମୟରେ ତାଙ୍କର 'ରାଜା' ନାଟକରେ ବ୍ୟାଖ୍ୟା କରିଥିଲେ । ଇଂରାଜୀରେ ତାହା The king of the Dark Chamber ନାମରେ ପରିଚିତ ।

1907 କବିଙ୍କ ପାଇଁ ଥିଲା ଦୁଃଖମୟ କିନ୍ତୁ ସଫଳତାର ବର୍ଷ । ବାହାର ଜଗତର ନୈରାଶ୍ୟ ପଛେ ପଛେ ଆସିଥିଲା ବ୍ୟକ୍ତିଗତ କାରୁଣ୍ୟ । କଲିକତା, ଶାନ୍ତିନିକେତନ ଓ ଅନ୍ୟ ସବୁ ସ୍ଥାନରେ ବିଭିନ୍ନ କାର୍ଯ୍ୟକ୍ରମ ସତ୍ତ୍ୱେ ତାଙ୍କ ଲେଖନୀ ଅବିଶ୍ରାନ୍ତ ଭାବରେ ସୃଷ୍ଟି କରିଚାଲିଥିଲା । ବହୁ ବିଷୟରେ ନାନା ଗଦ୍ୟରଚନା କରିଥିଲେ । ତାଙ୍କର ପ୍ରଧାନ ଓ ବୃହତ୍ତମ ଉପନ୍ୟାସ 'ଗୋରା' ସହିତ ଏ ସମୟରେ ସେ ସାହିତ୍ୟ ବିଷୟକ ଚାରୋଟି ଆଲୋଚନା ଗ୍ରନ୍ଥ ଲେଖିଥିଲେ । ଏଗୁଡିକ ହେଲା 'ସାହିତ୍ୟ' 'ପ୍ରାଚୀନ ସାହିତ୍ୟ', 'ଆଧୁନିକ ସାହିତ୍ୟ' ଓ 'ଲୋକ ସାହିତ୍ୟ' । ଏକ ନିର୍ଦ୍ଦିଷ୍ଟ ବିଷୟ ଉପରେ ତାତ୍ତ୍ୱିକ, ଗଭୀର ଅଥଚ ସରଳ ଓ ସାବଲୀଳ ଆଲୋଚନା ଏଇ ଗ୍ରନ୍ଥଗୁଡିକୁ ଅନ୍ୟ ଏକ ମୌଳିକ ସାହିତ୍ୟ ସୃଷ୍ଟିର ମର୍ଯ୍ୟାଦା ପ୍ରଦାନ କରିଥାଏ । ରବୀନ୍ଦ୍ରନାଥ ଥିଲେ ଅନ୍ୟତମ ପ୍ରଧାନ ଭାରତୀୟ ଲେଖକ ଯିଏ ପ୍ରଥମ କରି ନିଜର ବିସ୍ତୃତ ଓ ବିପୁଳ ରଚନା ଭିତରେ ଯେପରି ସମଗ୍ର ସାହିତ୍ୟିକ ପରଂପରାକୁ ସମନ୍ୱିତ କରିଥିଲେ ସେହିପରି ନିଜର ସାହିତ୍ୟାଲୋଚନାରେ ପ୍ରାଚୀନ କ୍ଲାସିକାଲ୍ ଠାରୁ ଆରମ୍ଭ କରି ସାଂପ୍ରତିକ ଓ ଅଭିଜାତ ସାହିତ୍ୟଠାରୁ ଗଣସାହିତ୍ୟ ପର୍ଯ୍ୟନ୍ତ ସବୁ ସ୍ତର ଓ ପ୍ରକାରକୁ ସ୍ଥାନ ଦେଇଥିଲେ । ସାମଗ୍ରିକ ସୃଷ୍ଟିର ପୃଷ୍ଠଭୂମି ଉପରେ ପ୍ରତ୍ୟେକ ଟିକୁ ପ୍ରକୃଷ୍ଟ ଭାବେ ସ୍ଥାନିତ ଓ ଉଦ୍‌ଭାସିତ କରିବାରେ ସେ ସମର୍ଥ ହୋଇଥିଲେ । ସେ ହେଉଛନ୍ତି ବୋଧହୁଏ ପ୍ରଥମ ଲେଖକ ଯିଏ ଅବହେଳାର ବାଲିସ୍ତୂପ ଭିତରେ ପୋତି ହୋଇ ପଡିଥିବା ଏ ଦେଶର ଲୋକ ସାହିତ୍ୟର ଅମୂଲ୍ୟ ଭଣ୍ଡାରକୁ ପ୍ରଥମେ ଆବିଷ୍କାର କରି ଆବେଗ ଓ ଆନ୍ତରିକତାର

ସହିତ ତାଙ୍କୁ ଆଲୋଚନା କରିଥିଲେ ।

1907ରେ ତାଙ୍କ ପାରିବାରିକ ଜୀବନରେ ଅକଥନୀୟ ଦୁଃଖଦାୟକ ଘଟଣା ଘଟିଗଲା । ତାଙ୍କରି ଅତିସ୍ନେହର ସାନପୁଅ ସମୀନ୍ଦ୍ର, ଯିଏ ଭବିଷ୍ୟତରେ ହୁଏତ ପିତାଙ୍କ ଭଳି ହୋଇ ପାରିଥାନ୍ତା, ମାତ୍ର ତେର ବର୍ଷ ବୟସରେ ହଠାତ୍ ହଇଜାରେ ମୃତ୍ୟୁ ବରଣ କଲା । ସେ ଦିନଟି ପୁଣି ଥିଲା ସେଇ ଏକା ଦିନ ଯେଉଁ ଦିନ ଠିକ୍ ପାଞ୍ଚବର୍ଷ ପୂର୍ବେ ତା'ର ମା'ଙ୍କର ମୃତ୍ୟୁ ହୋଇଥିଲା । ଏଇ ଦୁଃଖଦାୟକ ପାଞ୍ଚୋଟି ବର୍ଷ ଭିତରେ କବିଙ୍କର ପାରିବାରିକ ଜୀବନ ସଂପୂର୍ଣ୍ଣ ଭାଙ୍ଗି ପଡିଥିଲା । ସେ ତାଙ୍କର ପତ୍ନୀ ଓ ଦୁଇଟି ସନ୍ତାନଙ୍କୁ ହରାଇଥିଲେ । ଆଉ ଯେଉଁ ତିନିଜଣ ଜୀବିତ ଥିଲେ ସେମାନଙ୍କ ଭିତରୁ ବଡଝିଅ ନିଜ ସ୍ୱାମୀ ସହିତ ବଙ୍ଗଳା ବାହାରେ ରହୁଥିଲେ । ବଡପୁଅ ପୂର୍ବ ବର୍ଷ କୃଷିବିଜ୍ଞାନ ପଢ଼ିବା ପାଇଁ ଆମେରିକା ଯାଇଥାନ୍ତି । ଆଉ ତୃତୀୟ ଝିଅ ମୀରା କିଛି ମାସ ପୂର୍ବରୁ ବିବାହ କରିଥାନ୍ତି । ଶେଷରେ ସାନପୁଅର ଏଇ ଅସମୟରେ ବିଦାୟ ତାଙ୍କୁ ଏକାନ୍ତ ନିଃସଙ୍ଗ କରିଦେଇଥିଲା । ବହୁ ଜନସମାଗମ ଭିତରେ ନିଃସଙ୍ଗତା ଅସହ୍ୟ ମନେ ହେବାରୁ ସେ ସିଲାଇଦହରେ ନିଜ ଜମିଦାରୀ ଖମାରରେ ବିଶ୍ରାମ ପାଇଁ ଗଲେ । ଏହା ଏକମାତ୍ର ଘଟଣା ଯେଉଁଥିରେ ତାଙ୍କ ଭଗ୍ନ ହୃଦୟରୁ ଶୋକାକୁଳ ଆବେଗ ପ୍ରକାଶ୍ୟ ହୋଇ ଉଠିଥିଲା । ବ୍ୟକ୍ତିଗତ ଶୋକରେ ନିଜ ସୃଷ୍ଟି ସଳିଳକୁ ଆବିଳ ନକରିବା ସେ ବହୁ ପୂର୍ବରୁ ଶିଖିଥିଲେ । ତେଣୁ ସମସ୍ତ ବାହ୍ୟ ଆବିଳତାଠାରୁ ଦୂରେଇ ରହି ସେ ସୁଗଭୀର ଓ ସୁଉଚ୍ଚ ପ୍ରେମର ମାଧମ ଭାବରେ ଭଗବାନଙ୍କ ପ୍ରତି ତାଙ୍କର କବିତାର ଅର୍ଘ୍ୟ ନିବେଦନ କଲେ ।

ସମକାଳରେ ନିଜ ଲୋକଙ୍କ ମେଳରେ ସେ କେବେ ଜନପିୟ ହୋଇପାରି ନଥିଲେ । ସେମାନଙ୍କର ମତାନ୍ଧତା ଓ ଆବେଗପ୍ରବଣତାର ବହୁ ଊର୍ଦ୍ଧ୍ୱରେ ସେ ଥିଲେ ଓ ସମକାଳର ବହୁ ଆଗକୁ ତାଙ୍କର ଦୃଷ୍ଟିପ୍ରସାରିତ ଥିଲା । ଏପରିକି ତାଙ୍କର ସାହିତ୍ୟିକ ପ୍ରତିଭା ମଧ ସମୁଚିତ ସ୍ୱୀକୃତି ପାଇ ନଥିଲା । କୁହାଯାଏ ଅନେକଦିନ ପର୍ଯ୍ୟନ୍ତ ପଣ୍ଡିତ ଓ ମୌଳବାଦୀମାନେ ବିଦ୍ୟାଳୟରେ ଛାତ୍ରମାନଙ୍କୁ ରବୀନ୍ଦ୍ରନାଥଙ୍କର ଅନୁଚ୍ଛେଦଟିଏ ଦେଇ 'ଶୁଦ୍ଧ ବଙ୍ଗଳାରେ ଲେଖ' ବୋଲି ପ୍ରଶ୍ନ କରୁଥିଲେ । ବାସ୍ତବରେ ବର୍ତ୍ତମାନ ତାହା ଯେତେ ଅପ୍ରାସଙ୍ଗିକ ଓ ଅଯୌକ୍ତିକ ମନେ ହେଲେ ବି କବି ନୋବେଲ ପୁରସ୍କାର ପାଇବା ପରେ ମଧ 1914ରେ କଲିକତା ବିଶ୍ୱବିଦ୍ୟାଳୟର ମାଟ୍ରିକ୍ୟୁଲେସନ୍ ପରୀକ୍ଷାର ବାଧତାମୂଳକ ବଙ୍ଗଳା ପ୍ରଶ୍ନ ପତ୍ରରେ ତାଙ୍କର ଅନୁଚ୍ଛେଦଟିଏ ଦିଆଯାଇ 'ଶୁଦ୍ଧ ଓ ମାର୍ଜିତ ବଙ୍ଗଳାରେ ପୁନର୍ଲିଖନ' ପାଇଁ କୁହାଯାଇଥିଲା । କେବଳ ବଙ୍ଗଭଙ୍ଗ ବିରୁଦ୍ଧରେ ଜନମତ ଓ ବିପ୍ଳବକୁ ନେତୃତ୍ୱ ଦେଉଥିବା ବେଳେ ସେ ଜନପ୍ରିୟତା ଲାଭ କରିଥିଲେ ତାହା ପୁଣି ଥିଲା ସ୍ୱଳ୍ପ ସମୟ ପାଇଁ । ପରେ ସେ ଏଥିରୁ ଓହରି ଯାଇଥିବାରୁ ଅଧିକ ନିନ୍ଦିତ ହୋଇଥିଲେ । ଅନ୍ୟ ପକ୍ଷରେ ଶାସକ କର୍ତ୍ତୃପକ୍ଷମାନଙ୍କ ଠାରୁ ସେ ବିଚ୍ଛିନ୍ନ ହୋଇ ରହିଥିଲେ । ସେମାନେ ନିଜର କର୍ମଚାରୀ ଓ ଅନୁଗତମାନଙ୍କୁ ଗୁପ୍ତ ନିର୍ଦ୍ଦେଶନାମା ଅନୁସାରେ ଜଣାଇ ଦେଇଥିଲେ ଯେ ଯେପରିକି କବିଙ୍କ ବିଦ୍ୟାଳୟକୁ ସେମାନେ ନିଜ ନିଜର ପିଲାମାନଙ୍କୁ ପଠାଇବେ ନାହିଁ କିମ୍ବା କୌଣସି ମତେ ସାହାଯ୍ୟ କରିବେ ନାହିଁ । ରାଜନୈତିକ ସନ୍ଦେହ ଦୃଷ୍ଟିରେ ତାଙ୍କ ଉପରେ କଡ଼ା ନଜର ରଖା ଯାଇଥିଲା । ଏହିପରି ଭାବେ, ଯେତିକି ବହିର୍ଜଗତ ଆଡୁ ସେତିକି ନିଜର ଅନ୍ତରର ପ୍ରୟୋଜନ ଘେନି ଏକାକୀ ଠିଆ ହେବାକୁ, ତାଙ୍କ ନିଜର ଅନ୍ତର୍ଜଗତର ଶକ୍ତି ଓ ସାମର୍ଥ୍ୟ ଉପରେ ନିର୍ଭର କରି ଈଶ୍ୱରଙ୍କର ମୁହାଁମୁହିଁ ଠିଆ ହେବାକୁ ସେ ବାଧ୍ୟ ହେଲେ ଓ ମନରେ ସାହସ ବାନ୍ଧିଲେ ।

ଏହି ସମୟରେ ରଚିତ ତାଙ୍କର ଭକ୍ତି କବିତା ଯାହା 'ଗୀତାଂଜଳି' ଓ 'ଗୀତିମାଲ୍ୟ'ର ଆବେଗୋଷ୍ଣ ଆନ୍ତରିକତା ଓ ନିଗୂଢ଼ ସରଳତାକୁ ଘେନି ମୋହମୟ ଓ ମହନୀୟ ହୋଇ ଉଠିଥିଲା ତାହା ତାଙ୍କର ହୃଦୟର ରକ୍ତ ସୁଧାରୁ ସଂଚରିତ । ସବୁ ମହତ୍ ସାଧୁସନ୍ଥ ବା ଯୋଗୀ ମାନଙ୍କ ପରି ଗଭୀର ଦୁଃଖ ଓ ନିଃସଙ୍ଗତାର ଅନୁଭୂତିରୁ ତାଙ୍କର ଧର୍ମୀୟ ଅନ୍ତର୍ଦୃଷ୍ଟି ଜନ୍ମ ନେଇଥିଲା ।

ତାଙ୍କର ଧର୍ମୀୟ ଚେତନାର ଗଭୀର ଅନ୍ତର୍ଦୃଷ୍ଟିଶୀଳ ବୈଶିଷ୍ଟ୍ୟ ହେଲା-ତାହା ତାଙ୍କର ଜଗତ ଓ ଜୀବନକୁ ଭଲ ପାଇବାରୁ ତାଙ୍କୁ ନିବୃତ୍ତ ନ କରି ବରଂ ତାହାକୁ ସବଳ କରିଛି । ନିଜ ଆତ୍ମାର ନିଭୃତ ନିକାଂଚନରେ କେବଳ ସେ ଈଶ୍ୱରଙ୍କୁ ଦେଖୁ ନଥିଲେ ବିଶ୍ୱସୃଷ୍ଟିର ପ୍ରତ୍ୟେକ ଛତ୍ରରେ ସେ ଈଶ୍ୱରଙ୍କୁ ଖୋଜୁଥିଲେ । ନିଜ ପରିବାରରେ ହରାଇଥିବା ପୁଅକୁ ସେ ଶାନ୍ତିନିକେତନର ପିଲାଙ୍କ ଭିତରେ ଖୋଜି ପାଇଥିଲେ । ସେମାନଙ୍କ ଜୀବନର ସ୍ୱାଦରେ ସେ ଆପଣାର ପୁତ୍ରବାତ୍ସଲ୍ୟକୁ ଚରିତାର୍ଥ କରୁଥିଲେ । ସେ କିପରି ଗଭୀର ଭାବେ ସେମାନଙ୍କୁ ଭଲ ପାଉଥିଲେ ଓ ସେମାନଙ୍କ ସହିତ ଏକାତ୍ମ ହୋଇଥିଲେ ତାହାର ପ୍ରମାଣ ତାଙ୍କର 1908ରେ ରଚିତ ନାଟକ 'ଶାରଦୋତ୍ସବ'ରୁ ମିଳେ । ଏହା ସହଜ ଆନନ୍ଦର ଏକ ଦୀର୍ଘ କୋଳାହଳମୟ ସୁଖ ଜୀବନଯାତ୍ରାର ମହତ୍ତମ ସ୍ତୋତ୍ର । ରବୀନ୍ଦ୍ର ନାଥଙ୍କର ଅଧିକାଂଶ ନାଟକ ପରି ଏହି ନାଟକଟି ମଧ୍ୟ ତାଙ୍କ ବିଦ୍ୟାଳୟର ଛାତ୍ରମାନେ ମୁକ୍ତ ରଙ୍ଗମଞ୍ଚରେ ଅଭିନୟ କରିବା ପାଇଁ ରଚିତ ହୋଇଥିଲା । ଏସବୁ ନାଟକରେ ପ୍ରକୃତି କେବଳ ପୃଷ୍ଠଭୂମି ହୋଇ ନରହି ପ୍ରାୟତଃ ଚରିତ୍ର ହୋଇ ଯାଇଥିଲା । ଏଇ ନାଟକଟି ଏବେବି ଶାନ୍ତି ନିକେତନର ପାଠଭବନ ପିଲାଙ୍କ ଭିତରେ ଅତି ଆପଣାର ହୋଇ ରହିଛି । ଏଡୱାର୍ଡ୍ ଥମସନ୍‌ଙ୍କ ସମୁଚିତ ମୂଲ୍ୟାୟନ ଅନୁଯାୟୀ ଏହା ଇମରସନ୍‌ଙ୍କ ବିଜ୍ଞ ଉକ୍ତି- ''ମତେ ସୁସ୍ଥ ଦିନଟିଏ ଦେଲେ ମୁଁ ସମ୍ରାଟଙ୍କ ସବୁ ଅହମିକାକୁ ଫିକା ପକାଇ ଦିଅନ୍ତି''କୁ ଘେନି ଗୀତ ଓ ନାଟକ ସଂଯୋଜନରେ ତାହାର ଏକ ପ୍ରତୀକାତ୍ମକ ଭାଷ୍ୟରଚନା କରିଛନ୍ତି କବି ଏଥିରେ ।

ଏହା ପରେ ପରେ ପ୍ରକାଶ ପାଇଲା ସଂପୂର୍ଣ୍ଣ ଭିନ୍ନ କଥାବସ୍ତୁ ଉପରେ ଆଧାରିତ ସଂଗୀତଭରା ନାଟକ 'ପ୍ରାୟଶ୍ଚିତ୍ତ' । ଏହା କେବଳ ଅନୁଭବର ନୁହେଁ କାର୍ଯ୍ୟକାରିତାର ନାଟକ, ଦ୍ୱନ୍ଦ୍ୱ ଓ ଷଡ଼ଯନ୍ତ୍ର ତଥା ଦୁଇ ଭିନ୍ନ ମାନସିକତା ଭିତରେ କଳହରେ ପୂର୍ଣ୍ଣ । ତଥାପି ରବୀନ୍ଦ୍ରନାଥଙ୍କର ସବୁ ନାଟକ ପରି ଏଥିରେ ମଧ୍ୟ ଗୋଟିଏ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଓ ନୈତିକ ମୂଲ୍ୟବୋଧ ଏହାକୁ ପଥ କଢ଼ାଇ ନେଇଛି । ଏହି ନାଟକଟି ତାଙ୍କର ପ୍ରଥମ ଓ ବହୁ ପୂର୍ବରୁ ଲିଖିତ ଉପନ୍ୟାସ 'ବୋଉ ଠାକୁରାଣୀର ହାଟ'ର ନାଟ୍ୟରୂପ । କେବଳ ଏଥିରେ ଗୋଟିଏ ନୂତନ ଚରିତ୍ରର ସଂଯୋଜନା କରାଯାଇଥିଲା ଯିଏ ଥିଲେ ମହାତ୍ମାଗାନ୍ଧିଙ୍କର ବିକଳ୍ପ । ଆଶା କରାଯାଉଥିଲା ଅତ୍ୟାଚାରୀ ଶାସକଙ୍କ ବିରୁଦ୍ଧରେ ଜନ ବିପ୍ଳବ ସ୍ୱରୂପ ଅହିଂସା ଅସହଯୋଗମୂଳକ ପ୍ରତିବାଦ ଓ କର ନଦେବା ଭଳି କାର୍ଯ୍ୟକୁ ସେ ପ୍ରୋତ୍ସାହିତ କରିବେ । କବି ରାଜନୈତିକ ଯୁଦ୍ଧକ୍ଷେତ୍ର ପରିତ୍ୟାଗ କରିଥିବାରୁ ଯେଉଁମାନେ ତାଙ୍କୁ ଦୋଷାରୋପ କରୁଥିଲେ, ଏହି ନାଟକଟି ସେଇ ଦେଶଭକ୍ତମାନଙ୍କୁ କବିଙ୍କର ସଦୁତ୍ତର ଥିଲା । ଏହା ଦଳତ୍ୟାଗ ବା ପଳାୟନ ନଥିଲା, ଥିଲା ସଂପୂର୍ଣ୍ଣ ପରିହାର ବା ପରିତ୍ୟାଗ ଯାହାର ପ୍ରକୃତ ସୂକ୍ଷ୍ମ ଅର୍ଥକୁ ନାଟକର ଶେଷ ଦୃଶ୍ୟରେ ଅତି ଚମତ୍କାର ଓ ହୃଦୟସ୍ପର୍ଶୀ ଭାବେ ଚିତ୍ରଣ କରାଯାଇଛି ।

କବି ଏଇ ସମୟରେ ନାଟକ ରଚନାରେ ଅଧୀର ହୋଇ ଉଠିଥିଲେ । ଜୀବନର ସକଳ ଗଭୀର ଓ ସୂକ୍ଷ୍ମ ଅନୁଭୂତିକୁ ମଧ୍ୟ ସେ ନାଟ୍ୟରୂପ ଦେବାକୁ ପ୍ରୟାସ କରୁଥିଲେ- ଏପରିକି

ଈଶ୍ୱରଙ୍କୁ ଘେନି ତାଙ୍କର ଉତ୍ତରଣକୁ ମଧ ସେ ରୂପାୟନ କରିବାକୁ ଚାହୁଁଥିଲେ । ସେ ସୌନ୍ଦର୍ଯ୍ୟଭିତରେ ଈଶ୍ୱରଙ୍କୁ ସନ୍ଧାନ କରୁଥିଲେ କିନ୍ତୁ ତାଙ୍କୁ ଦୁଃଖ ଭିତରେ ପାଇଥିଲେ । ସତ୍ୟ କଣ ସର୍ବଦା ସୁନ୍ଦର ଓ ଶିବ ନା କଦାକାର ଓ ଭୟଙ୍କର ମଧ ହୋଇପାରେ ? ଆତ୍ମାର ପରମାତ୍ମାଙ୍କ ସହିତ କି ସଂପର୍କ ? ଆମେ ସତ୍ୟକୁ ଆମ ନିଜ ଦୃଷ୍ଟିରୁ ନା ତା'ରି ଦୃଷ୍ଟିରୁ ବିଚାର କରିବୁ ? ଏଇ ସବୁ ପ୍ରଶ୍ନର ଉତ୍ତର ଖୋଜିଛନ୍ତି କବି ତାଙ୍କର ଏଇ ପ୍ରତୀକାତ୍ମକ ଓ ଚରିତ୍ରଚିତ୍ରଣଧର୍ମୀ ନାଟକ 'ରାଜା'ରେ (ଇଂରାଜୀରେ The king of the Dark chamber) । ଏଇ ଦାର୍ଶନିକ ରୂପକ ତାଙ୍କର ତା'ପରେ ଲିଖିତ ଅନ୍ୟଦୁଇଟି ନାଟକରେ ଅନୁଭୂତ ହୋଇଥିଲା । ଏହା 1911ରେ ଲିଖିତ ହୋଇ ପରବର୍ଷ ପ୍ରକାଶ ପାଇଥିଲା । ଏ ଦୁଇଟି ପରସ୍ପର ଠାରୁ ଓ ପୂର୍ବଲିଖିତ ନାଟକସବୁ ଠାରୁ ସଂପୂର୍ଣ୍ଣ ପୃଥକ୍ । କିନ୍ତୁ ଏ ଦୁଇଟିର କେନ୍ଦ୍ର ଚରିତ୍ର ଥିଲା ଜଣେ ବାଳକ ।

'ଡାକଘର' ନାଟକର ଇଂରାଜୀ ଅନୁବାଦ 'ପୋଷ୍ଟ ଅଫିସ' ବୋଧହୁଏ ତାଙ୍କର ସବୁଠାରୁ ଜନପ୍ରିୟ ନାଟକ ଥିଲା । ଏହା 1913ରେ ଆଇରିସ୍ କଳାକାରମାନଙ୍କ ଦ୍ୱାରା ଲଣ୍ଡନ ଠାରେ ଅତି ସଫଳତାର ସହିତ ମଞ୍ଚସ୍ଥ ହୋଇଥିଲା । ସେତେବେଳେ କବି ଡ୍‌ବ୍ଲ୍ୟୁ.ବି. ୟେଟସ୍ ସେଠି ସେଇ ନାଟକ ଦେଖି ମତ ଦେଇଥିଲେ: ''ମଞ୍ଚସ୍ଥ ହୋଇଥିବା ଏଇ କ୍ଷୁଦ୍ର ଅଥଚ ସୁସଂଯୋଜିତ ନାଟକଟି ଭବ୍ୟ ଦର୍ଶକମାନଙ୍କୁ ଭଦ୍ରତା ତଥା ଶାନ୍ତିର ଆବେଗିକ ଉତ୍କଣ୍ଠା ବିଷୟରେ ସୂଚନା ଦେଇଛି ।''1921ରେ ବର୍ଲିନ୍‌ଠାରେ ଏଇ ନାଟକଟିର ଜର୍ମାନ୍ ରୂପାନ୍ତରର ଅଭିନୟ କବି ଦେଖିବାର ସୁଯୋଗ ପାଇଥିଲେ ଓ ଏ ସମୟର ସ୍ମରଣୀୟ ଅନୁଭୂତିକୁ ବର୍ଣ୍ଣନା କରି ସି.ଏଫ୍, ଆଣ୍ଡ୍ରୁସଙ୍କୁ ଚିଠିରେ ଲେଖିଥିଲେ: ''ମୋର ମନେ ଅଛି, ମୋ ନିଜର କେଉଁ ଅନୁଭବ ଏ ନାଟକ ରଚନା କରିବାକୁ ଅନୁପ୍ରେରିତ କରିଥିଲା । ଯେଉଁ ମଣିଷଙ୍କ ଆତ୍ମା ଖୋଲା ରାସ୍ତାର ଡାକକୁ ଶୁଣି ପାରିଛି ଅମଲ ସେମାନଙ୍କର ପ୍ରତିନିଧି ...'' ବା କବିଙ୍କର ପୂର୍ବରଚିତ ଗୀତକୁ ଉଦ୍ଧାର କରି କହିଲେ 'ଯିଏ ସୁଦୂରର ପିପାସୁ ।' ଏଥିରେ ଆଉ ଯାହା ଗଭୀରତର ପ୍ରତୀକବାଦ ଥାଉ ନା କାହିଁକି ଏହା ଲେଖକଙ୍କର ପିଲାଦିନେ ଘରର ଆବଦ୍ଧ ପରିବେଶରୁ ମୁକ୍ତି ପାଇଁ ଉତ୍କଣ୍ଠାର ସ୍ମୃତିକୁ ଅଭିବ୍ୟଂଜିତ କରିଛି ।

ଆଉ ଏକ ନାଟକ 'ଅଚଳାୟତନ' । ଏହା ଇଂରାଜୀରେ ପ୍ରକାଶିତ ହୋଇ ନାହିଁ କାରଣ ପ୍ରକୃତରେ ଏହାକୁ ଇଂରାଜୀରେ ଅନୁବାଦ କରିବା ଅତି ସୁକଠିନ । ଏହା ହିନ୍ଦୁ ସମାଜରେ ଆତ୍ମପୁଣ୍ୟ, ଆତ୍ମତୁଷ୍ଟ ଓ ଅନମନୀୟ ମନୋଭାବ ବିରୁଦ୍ଧରେ ଏକ ତୀବ୍ର ବିଦ୍ରୂପ ଓ ଏହି ସମାଜର ଉଦ୍ଭଟ ରକ୍ଷତାଶୀଳତା ଉପରେ ଏକ ଦୀର୍ଘ ଓ ଦୃଢ଼ ପରିହାସପୂର୍ଣ୍ଣ ନାଟକ । ଏହି ନାଟକର ମୁଖ୍ୟ ଚରିତ୍ର ପଞ୍ଚକ ତାର କଠୋର୍ ରକ୍ଷଣଶୀଳ ବଡ଼ଭାଇଙ୍କ ଦ୍ୱାରା ଗୋଟେ ମଠରେ ଏକ ଗୁରୁ ପରଂପର ନୂତନ ଚେଲା ଭାବରେ ନିଯୁକ୍ତ ହୋଇଛି । ରକ୍ଷଣଶୀଳତାର ଦୁର୍ଗ ଏଇ ମଠଟିର ନାମ ଅଚଳାୟତନ ଯାହାର ବଡ ବଡ ପ୍ରାଚୀର ତାକୁ ବାହାର ଜଗତଠାରୁ ବିଚ୍ଛିନ୍ନ କରି ରଖିଛି । ଅସୀମ କୌତୁହଳୀ ଓ ଆନନ୍ଦରେ ମୁଖର ଏଇ ପିଲାଟି ତାର ଅନ୍ୟ ଅନ୍ତେଃବାସୀ ସାଙ୍ଗମାନଙ୍କ ଦୃଷ୍ଟିରେ ନୀଚ ହୋଇ ରହିଛି ଓ ନିଜର ଗୀତ ଗାଇବାର ଅଭ୍ୟାସ ଯୋଗୁଁ ଉପହସିତ ମଧ୍ୟ ହେଉଛି । ''ଗୀତ ଗାଇବାରେ ବା କି ବାହାଦୁରୀ ଅଛି? ସାମାନ୍ୟ ପକ୍ଷୀ ବି ଗୀତ ଗାଇପାରେ ।'' ସେ ଥିଲା ପାଠଚୋର । ପଡୋଶୀ ଚଷାମୂଲିଆମାନଙ୍କ ସହ ସେ ବେଶୀ ମିଶୁ ଥିଲା । ସେଇ କୁଲି ମୂଲିଆ ଓ ନୀଚ ଜାତିର ଆଦିବାସୀଙ୍କୁ ସେ ବେଶୀ ଭଲ ପାଉଥିଲା ଓ ସେମାନଙ୍କ ସରଳ ଜୀବନଯାତ୍ରା, ଖେଳ କସରତ,

ନିଷ୍ଠାପର କର୍ମ ଭିତରେ ସେ ଆନନ୍ଦ ପାଉଥିଲା । ପରିଶେଷରେ ସେଇ ମହାନ୍ ଗୁରୁ ଯାହାଙ୍କୁ ସନ୍ନ୍ୟାସୀଗଣ ଘୋର ଭୟ କରୁଥିଲେ କିନ୍ତୁ କେବେ ଦେଖି ନଥିଲେ ସିଏ ମଞ୍ଚକୁ ଆସିଲେ ଓ ଗୁପ୍ତ ଭାବରେ ସେଇ ଆଦିବାସୀ ଓ ନୀଚ ଜାତିର ଲୋକଙ୍କ ଭିତରେ ଉଦ୍ଦୀପନା ଜାଗ୍ରତ କରି ଅଚଳାୟତନ ବିରୁଦ୍ଧରେ ବିପ୍ଳବ କରି ତାହାକୁ ଭାଙ୍ଗି ଭୂମିସାତ୍ କରିଦେଇଥିଲେ । ସେଦିନଠାରୁ ଆଜି ସମୟର ପ୍ରଭୂତ ପରିବର୍ତ୍ତନ ଘଟିଛି । ଛଅଦଶକ ପୂର୍ବେ ରବୀନ୍ଦ୍ରନାଥ ଯାହା କହିଥିଲେ ଆଜି ସମାଜରେ ତାହା ଏତେ ସାଧାରଣ ହୋଇଗଲାଣି ଯେ ନିଜ କାର୍ଯ୍ୟବିଷୟରେ ଭବିଷ୍ୟଚିନ୍ତା ଓ ସାହସିକତା ଘେନି ଓ ନିଜ ଶସ୍ତା ଜନପ୍ରିୟତାକୁ ଭୃକ୍ଷେପ ନକରି ଜାତିକୁ ଯିଏ ପଥ ଦେଖାଉଥିଲେ ତାଙ୍କ ପ୍ରତି କୃତଜ୍ଞ ହେବା ପାଇଁ କେହି ସଚେତନ ନୁହଁନ୍ତି ।

କିନ୍ତୁ ରବୀନ୍ଦ୍ରନାଥ କେବେ ବି ଜଣେ ତିକ୍ତ ବା ଉଗ୍ର ବ୍ୟକ୍ତି ନଥିଲେ ଯିଏ ନିଜ ଅନୁଗାମୀମାନଙ୍କୁ ତୁଚ୍ଛ ମନେ କରିବେ, ପୁଣି ଉଦ୍ଦାମ ବିପ୍ଳବୀ ନ ଥିଲେ ଯିଏ ପୁରାତନ ନୀତି ପ୍ରତି ନିଜର ଅଧୈର୍ଯ୍ୟ ପାଇଁ ସବୁ ଭଲ ସହିତ ମନ୍ଦକୁ ପାଦରେ ଦଳି ଦେବାକୁ ଚାହିଁବେ । ସେ ନିଜ ଦେଶ ଓ ତା'ର ଐତିହ୍ୟକୁ ଏତେ ଗଭୀର ଭାବେ ଭଲ ପାଉଥିଲେ ଯେ ସବୁ ପାରଂପରିକ ମୂଲ୍ୟବୋଧକୁ ଅବଜ୍ଞା କରିବା ତାଙ୍କ ପକ୍ଷେ ସମ୍ଭବ ନ ଥିଲା । ପୁରାତନ ଓ ନୂତନ ଉଭୟ ମୂଲ୍ୟବୋଧକୁ ଗ୍ରହଣ କରି ଏ ଉଭୟ ସପକ୍ଷରେ ସମୁଚିତ ଯୁକ୍ତି ବାଢ଼ିବା ତାଙ୍କ ପକ୍ଷରେ କିପରି ସହଜ ଓ ସାର୍ଥକ ଥିଲା ତାହା ରବୀନ୍ଦ୍ରନାଥଙ୍କର ଏ ସମୟରେ ଲେଖା ଓ ପ୍ରକାଶିତ ଉପନ୍ୟାସରୁ ପ୍ରମାଣିତ । ଅନେକଙ୍କ ମତରେ ଏହା ହିଁ ଥିଲା ତାଙ୍କର ସର୍ବଶ୍ରେଷ୍ଠ ଉପନ୍ୟାସ । 'ଗୋରା' କେବଳ ମାତ୍ର ସାମାନ୍ୟ ଉପନ୍ୟାସଟିଏ ନୁହେଁ । ଏହା ଏକ ଘଡିସନ୍ଧି ମୁହୂର୍ତ୍ତରେ କାଳାନ୍ତରଶୀଳ ଭାରତ ବର୍ଷର ଏକ ମହାକାବ୍ୟ ଯେତେବେଳେ ନବ୍ୟଶିକ୍ଷିତ ବୁଦ୍ଧିବାଦୀ ମାନଙ୍କର ସାମାଜିକ ବିବେକବୋଧ ଓ ବୌଦ୍ଧିକ ସଚେତନତା ପ୍ରବଳ ଘୂର୍ଣ୍ଣାବର୍ତ୍ତ ଭିତରେ ପେଶି ହେଉଥିଲା । ଭାରତୀୟ ସାମାଜିକ ଜୀବନରେ ବିଭେଦ ଓ ତା'ର ପର୍ଯ୍ୟାପ୍ତ ବିରୋଧତା ଏବଂ ପୁନରଭ୍ୟୁଦୟବାଦୀ ହିନ୍ଦୁ ଧର୍ମରୁ ଆରମ୍ଭ ହୋଇ ବିଶ୍ୱମାନବତାବାଦ ଆଡକୁ ପ୍ରସାରିତ ହୋଇଥିବା ଭାରତୀୟ ଜାତୀୟତାବାଦର ସ୍ୱରୂପକୁ ପୁଂଖାନୁପୁଂଖ ବିଶ୍ଳେଷଣ କରିବାରେ ଏହି ଉପନ୍ୟାସଟି ଯେପରି ସଫଳ ହୋଇ ପାରିଛି ତାହା ଅନ୍ୟତ୍ର ସମ୍ଭବ ହୋଇପାରିନାହିଁ । ପୁଣି ଏସବୁ ରହିଛି ବୋଲି ଏହି ବହିଟି ଉପନ୍ୟାସ ଭାବରେ କୌଣସି ଦିଗରୁ କମ୍ ସୁଖପାଠ୍ୟ ବା ଆବେଗସ୍ପର୍ଶୀ ନୁହେଁ । ଚରିତ୍ର ଗୁଡିକ ନିପୁଣ ଭାବେ ଚିତ୍ରିତ । ଆପଣାର ସ୍ୱାତନ୍ତ୍ର୍ୟ ଓ ବୈଶିଷ୍ଟ୍ୟ ଘେନି ସେମାନେ ସହଜରେ ପରିଚିତ ଓ ସ୍ମରଣୀୟ । ଜୀବନ୍ତ ଓ କର୍ମଚଂଚଳ ଏଇ ଚରିତ୍ର ଗୁଡିକର ନିଜ ନିଜ ମଧ୍ୟରେ ଓ ନିଜ ନିଜ ଅନ୍ତରରେ ସୃଷ୍ଟି ହେଉଥିବା ଦ୍ୱନ୍ଦ୍ୱକୁ ଅସାମାନ୍ୟ ଅନ୍ତର୍ଦୃଷ୍ଟି, ଅନୁକମ୍ପାର ସହିତ ଯଥାଯଥ ଭାବେ ଚିତ୍ରଣ କରାଯାଇଛି । କଥାବସ୍ତୁରେ ଏଠି ତର୍କର ପ୍ରାଚୁର୍ଯ୍ୟ ହୁଏତ ଅପରିହାର୍ଯ୍ୟ ହୋଇ ପଡିଛି, ତା ସତ୍ତ୍ୱେ ମୁଖ୍ୟଧାରାରୁ ଓ କାହାଣୀର ଗତିପଥରୁ ଲେଖକ କେବେ ବିଚ୍ୟୁତ ହୋଇ ନାହାନ୍ତି ଯାହା ଫଳରେ ଶେଷ ପର୍ଯ୍ୟନ୍ତ ଆବେଗ ଓ ଆକର୍ଷଣ ଏଥିରେ ଅତୁଟ ରହିପାରିଛି ।

ଏହି ଉପନ୍ୟାସଟି କିପରି ରଚିତ ହୋଇଥିଲା ସେ କଥା ଏଠାରେ ସ୍ମରଣୀୟ । କୁହାଯାଏ ଏହି ଉପନ୍ୟାସର ମୁଖ୍ୟ ଚରିତ୍ର 'ଗୋରା' ଯାହା ନାଁରେ ଉପନ୍ୟାସଟିର ନାମକରଣ ହୋଇଛି ସେ ଆଇରିସ୍ ମହିଳା ମାର୍ଗାରେଟ୍ ନୋବଲଙ୍କ ବ୍ୟକ୍ତିତ୍ୱ ଦ୍ୱାରା ଅନୁପ୍ରେରିତ ଯିଏ ପରବର୍ତ୍ତୀ ସମୟରେ ସ୍ୱାମୀ ବିବେକାନନ୍ଦଙ୍କ ଶିଷ୍ୟା ହୋଇ ଭଗ୍ନୀ ନିବେଦିତା ଭାବେ ପରିଚିତ ହୋଇଥିଲେ ।

ଓ ନବ ହିନ୍ଦୁଧର୍ମର ଜଣେ ନିରବଚ୍ଛିନ୍ନ ପ୍ରଚାରିକା ହୋଇ ଯାଇଥିଲେ । ବର୍ତ୍ତମାନ ବି ତାଙ୍କ ଲେଖା ପଢ଼ିଲେ ସେ ହିନ୍ଦୁ ଧର୍ମର କିପରି ଆବେଗପ୍ରବଣ ସମର୍ଥକ ଥିଲେ ତାହା ବୁଝାଯାଏ । ତାଙ୍କର ନିଷ୍ଠା ଓ ସାହସିକତା ପାଇଁ କବି ତାଙ୍କୁ ପ୍ରଶଂସା କରୁଥିଲେ । ସେ ଯେତେବେଳେ କବିଙ୍କୁ ହିନ୍ଦୁଧର୍ମ ବିଷୟରେ ବୁଝାଇଲେ କବି ମନେ ମନେ ହସି ଭାବିଲେ- 'ଇଏ ହିନ୍ଦୁଙ୍କ ଅପେକ୍ଷା ବି ବେଶୀ ହିନ୍ଦୁ ? ଥରେ ସେ ରବୀନ୍ଦ୍ରନାଥଙ୍କ ଶିଲାଇଦହ ଖମାରରେ ଅତିଥି ହୋଇଥିଲେ । ସଂଧ୍ୟାରେ ଦିନେ ନୌକା ବିହାର କଲାବେଳେ ସେ କବିଙ୍କୁ ଗପଟିଏ କହିବାକୁ ଅନୁରୋଧ କଲେ । ସେଠି କବି 'ଗୋରା'ର କାହାଣୀ ତାଙ୍କୁ ଶୁଣାଇ ଥିଲେ ଓ ପରେ ତାହାକୁ ଲେଖିଥିଲେ ।

ଜନ୍ମ ସୂତ୍ରରେ ଗୋରା ଥିଲା ଆଇରିସ୍ । ତାକୁ ଜନ୍ମ ଦେଇ 1857ର ସିପାହୀ ବିଦ୍ରୋହରେ ତା'ର ପିତାମାତା ମୃତ୍ୟୁବରଣ କରିଥିଲେ । ଜଣେ ଦୟାବତୀ ବ୍ରାହ୍ମଣୀ କୋଳରେ ସେ ବଢ଼ିଥିଲା । ଗୌରବର୍ଣ୍ଣ ସୁନ୍ଦର ସୁଠାମ ଚେହେରାର ଦୀର୍ଘକାୟ ଯୁବକ ଗୋରା ଥିଲା ସ୍ୱାଭିମାନୀ ଓ କର୍ମଚଂଚଳ । କାଳକ୍ରମେ ସେ ହିନ୍ଦୁ ନୈଷ୍ଠିକତା ଓ ଜାତି ପ୍ରଥାର କଠୋର ସମର୍ଥକ ପାଲଟିଗଲା । ଏହି ଧର୍ମଯୁଦ୍ଧକୁ ସେ ଜୀବନର ଚରମ ପରାକାଷ୍ଠା ବୋଲି ମାନିବାକୁ ଲାଗିଲା ଓ ଏଥିପାଇଁ ନିଜର ଜଣେ ପ୍ରକୃତ ବଂଧୁ ଠାରୁ ଦୂରେଇ ଗଲା ଓ ତାକୁ ପ୍ରେମ କରୁ ଥିବା ଝିଅଟିକୁ ମଧ୍ୟ ଅବଜ୍ଞା କରିଲା ଯାହାକୁ ସେ ନିଜେ ବି ହୃଦୟର ସହିତ ଭଲ ପାଉଥିଲା । ସେତେବେଳେ ସେ ଜାଣିଲା ଯେ ସେ ନିଜେ ବିଦେଶୀ ରକ୍ତରୁ ଜାତ ଓ ତା ନିଜ ବିଶ୍ୱାସର ମାପକାଠିରେ ଗୋଟେ ମ୍ଳେଛ ସେତେବେଳେ ବୁଝିପାରିଲା ଯେ ହିନ୍ଦୁ ନୈଷ୍ଠିକ ସମାଜରେ ତାର ସ୍ଥାନ ନାହିଁ । ଏଇ ଆତ୍ମୋପଲବ୍ଧି ତାକୁ ନିଜ ଜାତିର ଐତିହ୍ୟକୁ ପ୍ରକୃତଭାବେ ବୁଝିବା ପାଇଁ ସମର୍ଥ କରାଇଲା । ''ଆଜି ମୁଁ ପ୍ରକୃତରେ ଜଣେ ଭାରତୀୟ । ଆଜି ଆଉ ମୋ ଭିତରେ ହିନ୍ଦୁ, ମୁସଲମାନ ଓ ଖ୍ରୀଷ୍ଟୀୟାନ୍‌ଙ୍କ ମଧ୍ୟରେ କୌଣସି ପ୍ରଭେଦ ନାହିଁ । ଆଜି ଭାରତର ସବୁ ଜାତି ମୋର ନିଜ ଜାତି ଆଉ ସମସ୍ତଙ୍କର ଖାଦ୍ୟ ମୋର ନିଜ ଖାଦ୍ୟ ।''

ନିଜ ଦେଶର ଇତିହାସ ଓ ଆଦର୍ଶର ପ୍ରକୃତ ମହତ୍ତ୍ୱ ଯାହା କବି ଏଇ ଉପନ୍ୟାସର ନାୟକକୁ ବହିର ଶେଷ ଭାଗରେ ବୁଝାଇ ପାରିଥିଲେ ତାହାକୁ ସେ ସେଇ ସମକାଳରେ ରଚିତ 'ଭାରତତୀର୍ଥ' ନାମକ ଏକ କବିତାରେ ପ୍ରତ୍ୟକ୍ଷ ଭାବେ ବୁଝାଇ କହିଥିଲେ । ସଂପୂର୍ଣ୍ଣ କବିତାଟିକୁ ଏଠାରେ ଉଦ୍ଧାର କରିବା ସମ୍ଭବ ନୁହେଁ । ମାତ୍ର କେତୋଟି ପଂକ୍ତି ତା'ର ଭାବଧର୍ମ ବିଷୟରେ ସୂଚନା ଦେବ-

ହେ ମୋର ଚିତ୍ତ, ପୁଣ୍ୟ ତୀର୍ଥ ଜାଗରେ ଧୀରେ
ଏଇ ଭାରତର ମହାମାନବର ସାଗରତୀରେ ।
ଏଥେ ଠିଆ ହୋଇ ଦିବାହୁ ବଢ଼ାଇ ନମି ନର ଦେବତାରେ,
ଉଦାର ଛନ୍ଦେ ପରମାନନ୍ଦେ ବନ୍ଦନ କରେ ତାରେ
ଧ୍ୟାନ ଗମ୍ଭୀର ଏହି ଯେ ଭୂଧର, ନଦୀ-ଜପମାଳା-ଧୃତ ପ୍ରାନ୍ତର,
ଏଠାରେ ନିତ୍ୟ, ଦେଖ ପବିତ୍ର ଧରିତ୍ରୀରେ,
ଏଇ ଭାରତର ମହାମାନବର ସାଗରତୀରେ ।।
କେହି ନାହିଁ ଜାଣେ, କାର ଆହ୍ୱାନେ କେତେ ମଣିଷର ଧାରା
ଦୁର୍ବାର ସ୍ରୋତେ ଆସିଲେ କେଉଁଠୁ ସମୁଦ୍ରେ ହେଲେ ହରା ।
ଏଠାରେ ଆର୍ଯ୍ୟ, ଏଠି ଅନାର୍ଯ୍ୟ, ଏଠାରେ ଦ୍ରାବିଡ, ଚୀନ

ଶକ-ହୂନ ଦଳ ପଠାଣ, ମୋଗଲ ଏକ ଦେହେ ହେଲେ ଲୀନ ।
ପଶ୍ଚିମ ଆଜି ଖୋଲି ଅଛି ଦ୍ୱାର, ସେଠାରୁ ଆଣନ୍ତି ସବୁ ଉପହାର,
ଦେବେ ଆଉ ନେବେ, ମିଳି ମିଳାଇବେ, ଫେରିବେନିରେ
ଏହି ଭାରତର ମହାମାନବର ସାଗରତୀରେ ।।

ଦୁଇବର୍ଷ ପରେ ଏହି ଭାବଧାରାକୁ ସେ ଗୋଟିଏ ବୌଦ୍ଧିକ ନିବନ୍ଧରେ ବିଶ୍ଳେଷଣ କରିଥିଲେ । ପ୍ରଥମେ ଏହା କଲିକତାଠାରେ ବକ୍ତୃତା ରୂପେ ପରିବେଷିତ ହୋଇ ପରେ 'ଭାରତ ବର୍ଷେର ଇତିହାସେର ଧାରା' ନାମରେ ପ୍ରକାଶିତ ହୋଇଥିଲା । ସେହି ବର୍ଷ ଅନ୍ୟ ଗୋଟିଏ ସଂଗୀତରେ ଏହି ଚେତନା ପ୍ରତିଧ୍ୱନିତ ହୋଇଥିଲା ଯାହା ବର୍ତ୍ତମାନ ଜାତୀୟ ସଂଗୀତ ଭାବରେ ପ୍ରଚଳିତ ।

ଜଣେ ବେପରୁଆ ଗାୟକ ଭାବେ ନିଜର କର୍ମ ଜୀବନ ଆରମ୍ଭ କରିଥିବା ସେଇ ବାଳକଟି ଏବେ କବି ରବୀନ୍ଦ୍ରନାଥ ଭାବରେ ଏ ଶତାବ୍ଦୀର ଆରମ୍ଭରେ ବହୁ ଦୁଃଖ ଓ କଷ୍ଟଭୋଗ, ପ୍ରିୟଜନ ମୃତ୍ୟୁ ଓ ପରାଭବ, ସଂଘାତ ଓ ମର୍ମପୀଡନ ଓ ଅବମାନନା ଭିତରେ ସମୟ ଅତିବାହିତ କରିଥିଲେ । ବହିର୍ଜଗତରେ ଓ ନିଜ ଅନ୍ତରରେ ସୃଷ୍ଟି ହୋଇଥିବା ବିଷାଦ ଭାବ ପରିଶେଷରେ ତାଙ୍କ ହୃଦୟକୁ ପରିପୂର୍ଣ୍ଣ ଓ ପରିଶୋଧିତ କରି 1909 ଓ 1910 ରେ ଯେଉଁ ସଂଗୀତ ଆକାରରେ ଝରି ଆସିଥିଲା ତାହା ପରବର୍ଷ 'ଗୀତାଞ୍ଜଳି' କାବ୍ୟ ଗ୍ରନ୍ଥରେ ସଂକଳିତ ହେଲା । ଏଥିରେ ସନ୍ନିହିତ 157 କବିତା ମଧ୍ୟରୁ 51ଟି ପରେ ଇଂରାଜୀରେ ଅନୂଦିତ ହୋଇ ସେହି ନାମରେ ପ୍ରକାଶିତ ହେଲା ଓ କବିଙ୍କୁ ଏଇ ଗ୍ରନ୍ଥଟି ବିଶ୍ୱ ବିଖ୍ୟାତ କରାଇ ପାରିଲା । ଏହି ସବୁ କବିତା ଏତେ ସୁପରିଚିତ ଓ ବହୁଧା ଆଲୋଚିତ ଯେ ଏଠାରେ ସେ ସବୁର ସୂଚନା ଓ ବିଶ୍ଳେଷଣର ପ୍ରୟୋଜନ ନାହିଁ । ଯେଉଁମାନେ ବଙ୍ଗଳା ଭାଷା ଜାଣନ୍ତି ସେମାନେ ପରୀକ୍ଷା କରିପାରିବେ ଯେ ଏଗୁଡିକ କିପରି ସମାନ ଭାବେ ସୁମଧୁର ସଂଗୀତ ଓ ସୁଶୋଭିତ କବିତା । ଏଗୁଡିକର ଭାଷା ସରଳ, ଅନୁଭବ ଗଭୀର ଓ ଭାବଧର୍ମ ମହାନ୍ ଓ ଶାଶ୍ୱତ । ସେଥିମଧ୍ୟରୁ ଗୋଟିକରେ କବି କହିଛନ୍ତି-

ମୋହର ଏ ଗୀତ ଛାଡିଛି ତାର ସକଳ ଅଳଂକାର
ମୋହ ପାଖରେ ରଖିନି ଆଉ ରୂପର ଅହଂକାର
ଅଳଂକାର ଯେ ମଝିରେ ରହେ
ମିଳନେ ବାଧା ଯେ ଆଣୁଥାଏ
ଆମର କଥା ଲୁଚଇ ତାର ଝଣଝଣ ଶବ୍ଦରେ ।

ଗଭୀର ବିଭୁ ପ୍ରୀତି ଓ ଗଭୀରତର ମାନବ ପ୍ରୀତି, ଦୁଃଖରେ ଶକ୍ତି ଓ ଆନନ୍ଦରେ ଶାନ୍ତି, ଶତାବ୍ଦୀର ଚିନ୍ତାକୁ ଲୁଚାଇ ରଖିଲା ଭଳି ଏକ ନିଷ୍କପଟ ବିସ୍ମୟ ଏ ସଂଗୀତ ଗୁଡିକରେ ଏପରି ଆବେଦନ ଭରି ଦେଇଛି ଯାହା ହୋଇ ପାରିଛି ସର୍ବକାଳିକ ଓ ସାର୍ବଜନୀନ । ବଙ୍ଗଳା ଗୀତାଞ୍ଜଳିର ପ୍ରଥମ ଗୀତଟିରେ ହିଁ କବିଙ୍କ ଅନାସକ୍ତ ଭାବମୁଗ୍ଧତାର ପରିଚୟ ମିଳେ-

ମୋର ଯେମିତି ନ କରେ ପ୍ରଚାର ମୋଅରି ଆପଣା କୃତିରେ;
ତୁମରି ଇଚ୍ଛା କର ହେ ପୂର୍ଣ୍ଣ ମୋଅର ଜୀବନ ଗତିରେ ।

ପ୍ରେମ ହିଁ ଏଥିରେ ମୁଖ୍ୟ ଭାବ । ଈଶ୍ୱରଙ୍କୁ ସେ ଭଲ ପାଇଛନ୍ତି କାରଣ ଜଗତ ଓ ଜୀବନକୁ ସେ ଭଲ ପାଇଛନ୍ତି । ଆଉ ଯେତେବେଳେ ସେଠାରୁ ବିଦାୟ ନେବା ବେଳ ଆସି ଯାଇଛି କବିଙ୍କ ମୁଖରୁ

କୃତଜ୍ଞତାର ଶବ୍ଦ ଉଚ୍ଚାରିତ ହୋଇଛି- 'ଯାହା ଦେଖିଛି, ଯାହା ପାଇଛି ତୁଳନା ତା'ର ନାହିଁ ।'

ଅର୍ଦ୍ଧଶତାବ୍ଦୀ ବ୍ୟାପୀ ଏଇ ସଫଳତା ପୂର୍ଣ୍ଣ ମହାର୍ଘ ଜୀବନର ଏକ ପର୍ଯ୍ୟାୟ 1911ରେ ଶେଷ ହେଲା । ସେତେବେଳେ କବି ଜାଣିଥିଲେ ଯେ ତାଙ୍କ ଜୀବନ ବିକାଶ କ୍ରମର ପ୍ରଥମ ପର୍ବ ଏଠି ଶେଷ ହୋଇ ଆଉ ଏକ ନୂତନ ପର୍ବ ଆରମ୍ଭ ହେବାକୁ ଯାଉଛି । ଏତିକିବେଳେ ସେ ବାଲ୍ୟାବସ୍ଥାଠାରୁ ଆରମ୍ଭ କରି ବୟଃପ୍ରାପ୍ତ ଅବସ୍ଥା ପର୍ଯ୍ୟନ୍ତ ଜୀବନାନୁଭୂତିର ସ୍ମୃତି ''ଜୀବନସ୍ମୃତି' ନାମିତ ଏକ କ୍ଷୁଦ୍ର ପୁସ୍ତକରେ ଲିପିବଦ୍ଧ କରିଥିଲେ । କାହିଁକି ଏଥିରେ ଜୀବନର ସବୁକଥାକୁ, ମୁଖ୍ୟତଃ ଜୀବନର ସବୁଠାରୁ ନାଟକୀୟ ବର୍ଷ ଗୁଡିକୁ, ଘଟଣାବହୁଳ ସମୟକୁ ଲୋକଲୋଚନକୁ ଆଣିବା ପାଇଁ ଚାହିଁଲେ ନାହିଁ ତାହା କହିବା କଠିନ । ଏଇ ସ୍ମୃତିକଥାରେ ପୁଣି କାଳାନୁକ୍ରମିକ ଘଟଣାବଳୀର ସୂଚନା ନାହିଁ ଦିନଲିପି ପରି । ଏହା ବିଷୟରେ କହିବାକୁ ଯାଇ କବି ଲେଖିଛନ୍ତି, ''ଜୀବନ ସ୍ମୃତି'' ଜୀବନର ଇତିବୃତ୍ତି ନୁହେଁ, ଏହା ଅଦୃଶ୍ୟ ଶିଳ୍ପୀର ମୌଳିକ କୃତି, ସ୍ୱହସ୍ତର ରଚନା ।'', ଶିଳ୍ପୀ ଅଭିବ୍ୟକ୍ତିବାଦୀ, ମାନସପଟରେ ସେ ଯାହା ଆଙ୍କେ ତାହା ପ୍ରକୃତ ଘଟଣାର ପ୍ରତିଫଳନ ନୁହେଁ । ଇତିହାସ ଓ ସ୍ମୃତିକଥା- ''ଉଭୟେ ଅର୍ଥବହ କିନ୍ତୁ ଏକା ପରି ନୁହଁନ୍ତି ।''

# ପାଶ୍ଚାତ୍ୟର ମୁଖାମୁଖୀ

*ଦୂରକୁ କରିଲ ନିକଟ ବନ୍ଧୁ, ପରକୁ କରିଲ ଭାଇ ।*

ନିରବଚ୍ଛିନ୍ନ ଭାବରେ ନାନା ଦିଗରେ ବାରବର୍ଷ ଧରି ରବୀନ୍ଦ୍ରନାଥ ନାନା ଉଦ୍ୟୋଗରେ ସଫଳତା ଲାଭ ପାଇଁ ସଂଗ୍ରାମ କରି ଚାଲିଥିଲେ । ଏହାର ଫଳ ମଧ୍ୟ ପ୍ରଚୁର ଫଳିଲା । କିନ୍ତୁ ଏହା ଦେହ ଓ ମନରେ ଆଣିଦେଇଥିଲା କ୍ଳାନ୍ତି । ଯେଉଁ ଗଭୀର ଉଦ୍‌ବେଗ ଭିତରେ ସେ ଜୀବନ ବିତାଉ ଥିଲେ ତାହାର ଅବଶ୍ୟମ୍ଭାବୀ ଫଳ ଫଳିଥିଲା । ପଚାଶ ବର୍ଷର ଜନ୍ମଦିନରେ ଦେଖାଗଲା ରବୀନ୍ଦ୍ରନାଥ ଦେହ ଓ ମନରେ ହୋଇ ପଡ଼ିଛନ୍ତି ଏକାନ୍ତ ଅସୁସ୍ଥ । ପୂର୍ବରୁ ଦୁଇଥର ସେ ବିଦେଶ ଯାତ୍ରା କରିଥିଲେ । ଏହା ତାଙ୍କ ପାଇଁ ଉତ୍ସାହ ଓ ଉଦ୍ଦୀପନା ଆଣି ଦେଇଥିଲା । ଏବେ ଦୋ ଛକିରେ ଠିଆହୋଇ ସେ ଆଶାୟୀ ନେତ୍ରରେ ପଶ୍ଚିମ ଆଡକୁ ଚାହିଁଲେ । ଜାତୀୟତାବାଦୀ ଯୁଗରେ ବି ସେ କେବେ ପାଶ୍ଚାତ୍ୟ ବିରୋଧୀ ନ ଥିଲେ । ନିଜ ଦେଶର ପରଂପରାରୁ ଯେପରି ଠିକ୍ ସେହିପରି ପାଶ୍ଚାତ୍ୟ ସଭ୍ୟତା ଓ ମୂଲ୍ୟବୋଧରୁ ସେ ଶକ୍ତି ଓ ପ୍ରେରଣା ସଂଗ୍ରହ କରୁଥିଲେ । ସେ ଜାଣିଥିଲେ ଯଦି ସେ ମୁକ୍ତ ଭାବରେ ଗ୍ରହଣ ନ କରନ୍ତି ତେବେ ସମୃଦ୍ଧ ଭାବରେ କିଛି ଦେଇପାରିବେନି । ତେଣୁ 1912 ଆରମ୍ଭରେ ସେ ତୃତୀୟ ଥର ବିଦେଶ ଯାତ୍ରା ପାଇଁ ପ୍ରସ୍ତୁତ ହେଲେ ।

ପୂର୍ବରୁ ବଙ୍ଗଳାର ବୁଦ୍ଧିଜୀବୀମାନେ ରବୀନ୍ଦ୍ର ପ୍ରତିଭାକୁ ଅବହେଳା କରିଥିଲେ । ଏବେ ତାକୁ ସୁଧାରିବାକୁ ଚାହିଁଲେ । ବଙ୍ଗୀୟ ସାହିତ୍ୟ ପରିଷଦ ଆନୁକୂଲ୍ୟରେ 1912 ଜାନୁଆରୀ 28 ତାରିଖରେ କଲିକତା ଟାଉନହଲରେ ତାଙ୍କର ପଚାଶତମ ଜନ୍ମବାର୍ଷିକୀ ଉପଲକ୍ଷେ ତାଙ୍କୁ ଶ୍ରଦ୍ଧାର୍ଘ୍ୟ ଦିଆଗଲା । 19 ମାର୍ଚ୍ଚ କଲିକତାରୁ ରବୀନ୍ଦ୍ରନାଥଙ୍କର ଜଳ ଜାହାଜରେ ବିଦେଶ ଯାତ୍ରା କରିବା କଥା ଥିଲା । କିନ୍ତୁ ପୂର୍ବଦିନ ରାତିରେ ସେ ହଠାତ୍ ଅସୁସ୍ଥ ହୋଇ ପଡିଲେ । ଡାକ୍ତରମାନେ ତାଙ୍କୁ ବିଦେଶ ଯାତ୍ରା ପାଇଁ ବାରଣ କଲେ । ଜିନିଷ ପତ୍ର ମାଡ୍ରାସ ଜଳଜାହାଜରୁ ଫେରାଇ ଅଣାଗଲା । ତାଙ୍କ ଯାତ୍ରା ଏମିତି ଅଭାବିତ ଭାବରେ ବନ୍ଦ ହୋଇଯିବା ଫଳରେ ସେ ହତାଶ ହୋଇପଡିଲେ । ମନରେ ସାନ୍ତ୍ୱନା ଓ ସ୍ୱାସ୍ଥ୍ୟଲାଭ ପାଇଁ ପୁଣି ତାଙ୍କର ପ୍ରିୟ ପଦ୍ମାକୂଳରେ ସେଇ ସିଲାଇଦହକୁ ଗଲେ । ଏଇଠି ସେ ପ୍ରଥମେ ତାଙ୍କର ଗୀତାଞ୍ଜଳିର ଗୀତିଗୁଡିକୁ ଇଂରାଜୀରେ ଅନୁବାଦ କଲେ । ଏଇ କଥା କବିଙ୍କ ନିଜ ଭାଷାରେ କୁହାଯାଇପାରେ । ଲଣ୍ଡନରୁ ସେ ଝିଅାରୀ ଇନ୍ଦିରାଙ୍କୁ ଲେଖିଥିଲେ । ''ଗୀତାଞ୍ଜଳିର ଇଂରାଜୀ ଅନୁବାଦ ତୁମକୁ ଖୁବ୍‌ଭଲ ଲାଗୁଥିଲା । ମୁଁ କଳ୍ପନା କରିପାରୁନି ଲୋକେ ଏହାକୁ କାହିଁକି ଏତେ ଭଲ ପାଉଛନ୍ତି । ମୁଁ ଇଂରାଜୀ ଭଲ ଲେଖିପାରେନି ଏହା ଜଣାକଥା । ଏଥିପାଇଁ ମୋର କୌଣସି ଲଜ୍ଜା ନଥିଲା । ମତେ ଯଦି କେହି ଇଂରାଜୀରେ ଲେଖି ଚା ଖାଇବା ନିମନ୍ତ୍ରଣ ପଠାଉଥିଲେ, ମୁଁ ତାର ଉତ୍ତର ଦେବାକୁ ନିଜକୁ ସମକକ୍ଷ ମନେ କରିପାରୁ ନଥିଲି ।

ତୁ ଭାବୁଥିବୁ ମୋର ଦୁର୍ବଳତା କଟିଯାଇଥିବ, ତା' ଆଦୌ ନୁହେଁ । ମୁଁ ଯେ ଇଂରାଜୀରେ ଲେଖିଚି- ଏହା ହିଁ ମୋ ପାଇଁ ଆଶ୍ଚର୍ଯ୍ୟ । ମୋର ଯେଉଁଦିନ ଜାହାଜରେ ଯିବା କଥାଥିଲା, ବନ୍ଧୁମାନଙ୍କ ବିଦାୟ ଭୋଜିରେ ଯୋଗଦେଇ ମୁଁ ଅସୁସ୍ଥ ହୋଇ ପଡିଲି । ଯାତ୍ରା ସ୍ଥଗିତ ହୋଇଗଲା । ତା ପରେ ମୁଁ ସିଲାଇଦହକୁ ଗଲି ବିଶ୍ରାମ ନେବାକୁ । ଯଦି ମନୁଷ୍ୟର ମସ୍ତିଷ୍କ ପୂର୍ଣ୍ଣମାତ୍ରାରେ କ୍ରିୟାଶୀଳ ନ ହୁଏ, ତେବେ ଦେହରେ ବଳ ଆସେ ନାହିଁ । ମନର ଅବସାଦ ଘୁଞ୍ଚେ ନାହିଁ । ନିଜକୁ କାର୍ଯ୍ୟ କରିବା ପାଇଁ ମୁଁ କିଛି ଲଘୁ ଆମୋଦଦାୟକ କାର୍ଯ୍ୟ କରିବା ପାଇଁ ଚାହିଁଥିଲି । 'ଗୀତାଞ୍ଜଳି'ର କବିତା ଗୁଡିକୁ ଧରି ଗୋଟିକ ପରେ ଗୋଟିଏ ଅନୁବାଦ କରିଚାଲିଲି । ତମେ ଭାବି ଆଶ୍ଚର୍ଯ୍ୟ ହୋଇପାର ଦୁର୍ବଳ ସ୍ୱାସ୍ଥ୍ୟଥାଇ ଏଭଳି ଉଚ୍ଚାକାଂକ୍ଷା ପୋଷଣ କରିବା କି ଦରକାର ଥିଲା । କିନ୍ତୁ ମତେ ବିଶ୍ୱାସ କର, ମୁଁ ବେପରୁଆ ଭାବରେ ଏହା କରୁଥିଲି । କିଛି ପାଇବା ପାଇଁ କରୁନଥିଲି । ପୂର୍ବରୁ 'ଗୀତାଞ୍ଜଳି'ର କବିତାଗୁଡିକ ଲେଖିଲା ବେଳର ଅନୁଭବ ଓ ମନୋଭାବ ମତେ ଯେ ଆନନ୍ଦ ଦେଇଥିଲା, ଅନୁବାଦ ସମୟରେ କେବଳ ସେଇ ଆନନ୍ଦଘନ ମୁହୂର୍ତ୍ତ ଗୁଡିକୁ ସହଜ ଭାବରେ ଥରେ ପାଇବାକୁ ଚାହୁଁଥିଲି । ଛୋଟ ଖାତାର ପୃଷ୍ଠାଗୁଡିକ ପୂର୍ଣ୍ଣ ହୋଇଉଠିଲା । ସେଇଟିକୁ ପକେଟ୍‌ରେ ଧରି ମୁଁ ଜାହାଜ ଚଢିଲି ।'' ସିଲାଇଦହର ଏହି ବାଧ୍ୟତାମୂଳକ ଅବସର ସମୟରେ 'ଗୀତାଞ୍ଜଳି'ର ଯେଉଁ ଭକ୍ତି ଭାବନା ପ୍ରକାଶ ପାଇଥିଲା ସେଇ ଅନୁକ୍ରମରେ ସେ ଅନେକ ଗୁଡିଏ କବିତା ରଚନା କରିଥିଲେ । 'ଗୀତାଞ୍ଜଳି'ରେ ସେ ତାଙ୍କର ଆତ୍ମାର ଦେବତାକୁ ମୁଠାଏ ସଂଗୀତର ପୁଷ୍ପ ଉପହାର ଦେଇଥିଲେ । କିନ୍ତୁ 'ଗୀତିମାଲ୍ୟ'ରେ ସେ ତାଙ୍କୁ ମାଳା ପିନ୍ଧାଇ ଦେଲେ । 'ଗୀତିମାଲ୍ୟ'ର ୧୭ଟି କବିତାର ଇଂରାଜୀ ଅନୁବାଦ ପରେ ଇଂରାଜୀ 'ଗୀତାଞ୍ଜଳି'ରେ ସ୍ଥାନ ପାଇଥିଲା ।

ଅନୁବାଦ ହୋଇ ନଥିବା କେତେଗୁଡିଏ ସଂଗୀତରେ କବି ତାଙ୍କର ଯାତ୍ରା ସ୍ଥଗିତ ହେବାର ହତାଶା ପ୍ରକାଶ କରିଥିଲେ । ତାଙ୍କ ମନର ଅସ୍ଥିରତା ଏଥିରେ ଜୀବନ୍ତ ଭାବରେ ପ୍ରକାଶ ପାଇଥିଲା । ''ଫେରିନୌକାକୁ ଘଣ୍ଟା ପରେ ଘଣ୍ଟା ଅପେକ୍ଷା କରି ବସିଛି । ପଶ୍ଚିମ ଦିଗର କୋଠାଟି ଉପରେ ଅର୍ଦ୍ଧଚନ୍ଦ୍ର ସ୍ୱପ୍ନ ଝରାଉଛି । ମୋ ମନ ଭିତରେ ମୁଁ ଶୁଣୁଚି ସୁଦୂରର ବଂଶୀଧ୍ୱନି ।'' ପୁଣି ''ଏବେ ପାଣିରେ ନୌକାଟି ଭାସିବାର ବେଳ ଆସିଲା, ହାୟ ମୋର ଭାଗ୍ୟ । କୂଳରେ ବସି ରହିବାର କ୍ଳାନ୍ତି ଅସହ୍ୟ ।'' ପୁଣି ନିଜର ଅସ୍ଥିରତାକୁ ବିଦ୍ରୁପ କରି ଲେଖିଛନ୍ତି– ''ମୁଁ ଯେତେବେଳେ ମଙ୍ଗଛାଡି ଦେବି ତୁମେ ତାହା ଧରିବ । ଯାହା ହେବାର ହେବ କାହିଁକି ଏ ନିରର୍ଥକ ଅଧୀରତା ?'' ଏମିତି ମୁହୂର୍ତ୍ତରେ ସେ ପୁଣି ତାଙ୍କର ଅଧୀଶ୍ୱରଙ୍କ ପାଇଁ ସଂଗୀତ ରଚନା କରୁଥିଲେ । ''ଏବେ ସମସ୍ତ କୋଳାହଳ ଯେତେବେଳେ ଶାନ୍ତ ହୋଇଯାଇଛି, ଆସ ଆମେ ଚୁପ୍ ଚୁପ୍ କଥା ହେବା, ତମେ ଆଉ ମୁଁ, ନିଭୃତ ହୃଦୟର ଅସ୍ଫୁଟ ଧ୍ୱନି ସଂଗୀତରେ ଝରିପଡୁ ।'' ଇଂରାଜୀ 'ଗୀତାଞ୍ଜଳି'ର ପ୍ରଥମ କବିତାଟି ଏଇ ସଂକଳନରୁ ଗୃହୀତ । ''ତମେ ମତେ ଅସୀମ କରିଛ । ସେଇଥିରେ ତମର ଆନନ୍ଦ । ଏଇ ଦୁର୍ବଳ ଦେହ ତରୀଟି ମୋର ତମେ ବାରମ୍ବାର ଶୁନ୍ୟ କରିଦେଇଛ, ପୁଣି ନୂତନ ପ୍ରାଣରେ ପୂର୍ଣ୍ଣ କରି ଦେଇଛ ।''

1912 ମେ 27 ତାରିଖରେ ରବୀନ୍ଦ୍ରନାଥ ଇଂଲଣ୍ଡ ଅଭିମୁଖେ ଜାହାଜରେ ବସିଲେ । ସାଙ୍ଗରେ ଗଲେ ପୁଅ ରଥୀନ୍ଦ୍ରନାଥ ଓ ପୁତ୍ରବଧୂ ପ୍ରତିମା । ୟୁରୋପରେ ରବୀନ୍ଦ୍ରନାଥଙ୍କ ଖ୍ୟାତିକୁ ଲାଳନ କରିଥିଲେ ଇଂରେଜ ଚିତ୍ରଶିଳ୍ପୀ ସାର୍ ଉଇଲିୟମ୍ ରୋଦେନ୍‌ଷ୍ଟାଇନ୍ । 1910 ରେ ସେ

ଭାରତ ଆସିଥିଲେ । ତାଙ୍କର କଲିକତା ରହଣିକାଳରେ ସେ ଅବନୀନ୍ଦ୍ରନାଥ ଓ ଗଗନେନ୍ଦ୍ରନାଥଙ୍କୁ ଜାଣି ଥିଲେ । ରୋଦେନ୍‌ଷ୍ଟାଇନ୍ ଲେଖିଛନ୍ତି ''ମୁଁ ଯେତେଥର ଯୋଡାସାଙ୍କୋ ଯାଇଛି ଆକୃଷ୍ଟ ହୋଇଛି ତାଙ୍କର କକାଙ୍କ ପ୍ରତି-ସୁନ୍ଦର ଚେହେରା, ଧୋତି ଓ ଚାଦର ପରିହିତ । ନିରବରେ ବସି ଆମ କଥା ଶୁଣୁଥାନ୍ତି । ତତ୍‌କ୍ଷଣାତ୍ ସେ ମୋର ମନଜଗତକୁ ଆକର୍ଷଣ କଲେ । ମୁଁ ତାଙ୍କୁ ଅନୁରୋଧ କଲି, ମୁଁ ଆପଣଙ୍କ ଛବି ଆଙ୍କି ପାରେ ? କାରଣ କେବଳ ଦୈହିକ ସୌନ୍ଦର୍ଯ୍ୟ ନୁହେଁ ତା ଭିତରେ ଏକ ଅନ୍ତଃସୌନ୍ଦର୍ଯ୍ୟ ମୁଁ ଆବିଷ୍କାର କଲି ଓ ମୋର ପେନ୍‌ସିଲ୍‌ରେ ଫୁଟାଇବାକୁ ଚାହିଁଥିଲି । ସେହି ବ୍ୟକ୍ତି ଯେ ଏଯୁଗର ଜଣେ ମହନୀୟ ପୁରୁଷ, ସେ କଥା ମତେ କେହି ସୁଚନା ପର୍ଯ୍ୟନ୍ତ ଦେଇ ନ ଥିଲେ ।''

ଲଣ୍ଡନରେ ଯେତେବେଳେ ରବୀନ୍ଦ୍ରନାଥ ପହଞ୍ଚିଲେ, କୌଣସି ପରିଚିତ ବ୍ୟକ୍ତିଙ୍କ ସହିତ ତାଙ୍କର ସାକ୍ଷାତ ହୋଇ ନ ଥିଲା । ସେ ପ୍ରଥମେ ରୋଦେନ୍‌ଷ୍ଟାଇନ୍‌ଙ୍କ ଦ୍ୱାରା ଆହୂତ ହେଲେ । ରବୀନ୍ଦ୍ରନାଥଙ୍କ କବିତାପ୍ରତି ତାଙ୍କର ଆଗ୍ରହଥିବା ଜାଣି ସେଇ ଖାତାଟି ତାଙ୍କୁ ଦେଲେ । ରୋଦେନ୍‌ଷ୍ଟାଇନ୍ ଲେଖିଛନ୍ତି ''ସେଇ ସଂଧ୍ୟାରେ ମୁଁ କବିତାଗୁଡିକ ପଢିଲି । ମୋର ମନେହେଲା ଏଇ କବିତାଗୁଡିକ ଏପରି କବିତା ଯାହା ରହସ୍ୟବାଦୀ କବିଙ୍କ ସୃଷ୍ଟି ମଧ୍ୟରେ ଶ୍ରେଷ୍ଠତମ । ସେ ସବୁକୁ ଆଣ୍ଡ୍ରୁ ବ୍ରାଡ୍‌ଲିଙ୍କୁ ଦେଖାଇଲି, ସେ ମଧ୍ୟ ଏହା କହିଲେ ।''ତା ପରେ ସେ ଲେଖିଛନ୍ତି– ''ମନେ ହେଲା ଆମ ଭିତରେ ପୁଣି ଜଣେ ମହାନ୍ କବିଙ୍କର ଆବିର୍ଭାବ ଘଟିଛି । ମୁଁ ୟେଟସ୍‌ଙ୍କୁ ଲେଖିଲି ପ୍ରଥମେ ତାଙ୍କ ଉତ୍ତର ପାଇଲି ନାହିଁ । ତାପରେ ପୁଣି ଥରେ ଲେଖିଲି ,ସେ କବିତାଗୁଡିକ ପଢିବାକୁ ଚାହିଁଲେ । ତାହା ପଠାଇବାକୁ ଅନୁରୋଧ କଲେ । ଯେତେବେଳେ ପଢି ସାରିଲେ ତାହା ବିଷୟରେ ସମାନ ଆଗ୍ରହ ପ୍ରକାଶ କଲେ । ସେ ଲଣ୍ଡନ ଆସିଲେ । ପ୍ରତ୍ୟେକଟି କବିତାକୁ ତନ୍ନ ତନ୍ନ ପଢି କେଉଁଠି କେମିତି ଟିକିଏ ଟିକିଏ ପରିବର୍ତ୍ତନ କରିବାକୁ ପରାମର୍ଶ ଦେଲେ । କିନ୍ତୁ କବିତାଗୁଡିକର ମୂଳରୁପ ଅକ୍ଷୁଣ୍ଣ ରହିଲା ।''

ୟେଟସ୍‌ଙ୍କର ଅଭିମତ ଲଣ୍ଡନର ଇଣ୍ଡିଆ ସୋସାଇଟି ଦ୍ୱାରା 'ଗୀତାଞ୍ଜଳି'ର ସ୍ୱଳ୍ପ ସଂଖ୍ୟାରେ ପ୍ରକାଶିତ ସଂସ୍କରଣର ମୁଖବନ୍ଧରେ ପ୍ରକାଶ ପାଇଲା- ''କେତେ ଦିନ ଧରି ଏଇ କବିତା ଗୁଡିକର ପାଣ୍ଡୁଲିପିଟି ସାଙ୍ଗରେ ଧରି ବୁଲିଛି । ଟ୍ରେନ୍, ବସ୍, ରେସ୍ତୋରାଁରେ ସବୁଠି ମୁଁ ବହିଟିକୁ ବନ୍ଦ୍ କରିରଖେ କାରଣ ତାହା ପଢି ମୁଁ କିପରି ଭାବ ବିଭୋର ହୋଇ ପଡେ, ତାହା ବାହାର ଲୋକେ ଦେଖି ପକାଇବେ ।'' ୟେଟସ୍ କବିତାଗୁଡିକୁ ଏପରି ପସନ୍ଦ କରୁଥିବା ଦେଖି ଏ ବିଷୟରେ ଆଲୋଚନା ପାଇଁ 30 ଜୁନ୍ ସଂଧ୍ୟାରେ ରୋଦେନ୍‌ଷ୍ଟାଇନ୍ କେତେକ ସାହିତ୍ୟିକଙ୍କୁ ତାଙ୍କ ହାମ୍‌ଷ୍ଟିଡ୍ ବାସଭବନକୁ ଡାକିଲେ । ଲଣ୍ଡନର ଏଇ ବିଶିଷ୍ଟ ସାହିତ୍ୟିକଙ୍କ ସମ୍ମୁଖରେ ୟେଟସ୍ କବିତା ଗୁଡିକୁ ପଢିଲେ । ଏଇଠାରେ ରବୀନ୍ଦ୍ରନାଥଙ୍କର ପ୍ରଥମେ ସି.ଏଫ୍. ଆଣ୍ଡ୍ରୁସ୍‌ଙ୍କ ସହ ଦେଖା ହୋଇଥିଲା । ସେ ହୋଇ ଯାଇଥିଲେ ତାଙ୍କର ଆଜୀବନ ବନ୍ଧୁ ଓ ସହଯୋଗୀ । ସେତେବେଳେ ଆଣ୍ଡ୍ରୁସ୍ ଥିଲେ କେମ୍ବ୍ରିଜ୍ ବ୍ରଦରହୁଡ୍ ସାଙ୍ଗେ ଯୁକ୍ତ ଜଣେ ମିସନାରୀ । ଏଇ ସ୍ମରଣୀୟ ସଂଧ୍ୟାର ବର୍ଣ୍ଣନା ଦେବାକୁ ଯାଇ ସେ ଲେଖିଛନ୍ତି ''ସେଦିନ ସଂଧ୍ୟାରେ ଏଚ୍. ଡବ୍ଲ୍ୟୁ. ନେଭିନ୍‌ସନ୍‌ଙ୍କ ସଙ୍ଗେ ହାମ୍‌ଷ୍ଟେଡ୍ ହିଥ୍ ଯାଇ ଚାଲି ଚାଲି ଫେରିଲି । କିନ୍ତୁ ମୋ ମୁହଁରୁ ପଦେକଥା ବାହାରି ନଥିଲା । ମୁଁ ଏକୁଟିଆ ବସି ନିରବରେ ଏଇ କବିତାଗୁଡିକର ମହତ୍ତ୍ୱ ଓ ବିସ୍ମୟଭାବନା ବିଷୟରେ ଚିନ୍ତା କରୁଥିଲି । ନେଭିନ୍‌ସନ୍ ଚାଲିଗଲେ । ମୁଁ ଏକୁଟିଆ ଚାଲିଥାଏ । ସେଇ ମେଘମୁକ୍ତ ଆକାଶ । କିନ୍ତୁ

ଅନୁଭବ ହେଉଥିଲା- ଭାରତୀୟ ଆକାଶରେ ଲୋହିତ ଆଭାକୁ ଯେମିତି ଚାକ୍ଷୁସ କରୁଥିଲି । ମୁଁ ଏକୁଟିଆ ଏଇ କବିତାର ଆଶ୍ଚର୍ଯ୍ୟ ଭାବ ଅନୁଭବ କରୁଥିଲି ।

''ଜଗତ ପାରାବାରର ତୀରେ ଶିଶୁଏ କରନ୍ତି ଖେଳ
ଜଗତ ପାରାବାରର ତୀରେ ଶିଶୁଙ୍କ ମହାମେଳ ।''

'ଗୀତାଞ୍ଜଳି' ପ୍ରକାଶ ପାଇବା ପରେ ଏଜ୍‌ରା ପାଉଣ୍ଡ ତାହାର ସମୀକ୍ଷାରେ ଲେଖିଥିଲେ : ''ପ୍ରାୟ ମାସକ ପର୍ଯ୍ୟନ୍ତ ମୁଁ ୟେଟସ୍‌ଙ୍କ ଘରକୁ ଯାଇ ଦେଖିଲି ଆମ ସମସ୍ତଙ୍କ ଠାରୁ ବଡ କବିଙ୍କର ଆବିର୍ଭାବରେ ସେ ଉତ୍ସାହିତ ହୋଇ ପଡିଛନ୍ତି । ତାଙ୍କ ବିଷୟରେ କେଉଁଠୁ ଆରମ୍ଭ କରିବି ଜାଣି ପାରୁନି । ଯେପରିକି ଆମେ ହଠାତ୍ ଆମର ପ୍ରାଚୀନ ଗ୍ରୀସ୍‌କୁ ଫେରି ପାଇଛୁ । ରେନାସାଁ ପୂର୍ବରୁ ୟୁରୋପ ଯେପରିକି ନିଜର ଭାରସାମ୍ୟ ହରାଇ ବସିଥିଲା । ଏଇ ଯାନ୍ତ୍ରିକ ଯୁଗରେ ଏହା ଦ୍ୱାରା ବିବେକର ସ୍ଥୈର୍ଯ୍ୟ ଆସିଲା । ମୁଁ ହଠାତ୍ ଏଇ ସିଦ୍ଧାନ୍ତରେ ପହଞ୍ଚିନି, ଆବେଗ ଚାଳିତ ହୋଇ କହୁନି ବା ନୁଆ କହିବାକୁ ଦେଖାଇ ହେବାପାଇଁ କହୁନାହିଁ-ଦୀର୍ଘ ଏକ ମାସ ଏହା ବିଷୟରେ ଭାବିଛି । ତା ଭିତରେ ପ୍ରକୃତିର ପ୍ରଶାନ୍ତ ସୌନ୍ଦର୍ଯ୍ୟ ପ୍ରକାଶିତ । କୌଣସି ଝଂଜା ବା ଆଗ୍ନେୟ ସ୍ଫୁରଣରୁ ଏଇ କବିତା ସୃଷ୍ଟି ହୋଇନାହଁ । ମନେ ହୁଏ ଏହା ତାଙ୍କ ମନର ସହଜାତ ଅଭ୍ୟାସର ଅଂଗ । ସେ ପ୍ରକୃତି ସହିତ ଏକୀଭୂତ । କିଛି ବିରୋଧ ଦେଖନ୍ତି ନାହିଁ । ଏଇଠି ଆମ ପାଶ୍ଚାତ୍ୟ ମନୋଭାବଠାରୁ ତାଙ୍କର ବଡ ପାର୍ଥକ୍ୟ । ଏଠି ବଡ ନାଟକରେ ମନୁଷ୍ୟର ପ୍ରକୃତି ଉପରେ ପ୍ରଭୁତ୍ୱ ବିସ୍ତାର ଦେଖାଇ ଦିଆଯାଇଥାଏ । ଗ୍ରୀକ୍‌ମାନେ ଯେପରି ମନୁଷ୍ୟଙ୍କୁ ଦେଖନ୍ତି ଭାଗ୍ୟର ମୁଠାରେ ଦେବତାଙ୍କର ଖେଳନା ଭାବରେ- ଏଥିରେ ତାହାର ବିରୋଧ ରହିଛି । ମୁଁ ଯେତେବେଳ ଟାଗୋରଙ୍କ ପାଖରୁ ପଳାଇ ଆସିଲି ମୋର ମନେହେଲା ମୁଁ ଯେପରି ପ୍ରସ୍ତର ଚର୍ମାବୃତ ବର୍ବର ଆଦିମ ମାନବ ।''

''ସଂକ୍ଷେପରେ କହିବାକୁ ଗଲେ ଏଇ କବିତାଗୁଡିକ ଭିତରେ ମୁଁ ଏକପ୍ରକାର ସାଧାରଣ ବିଚାରର ଚୂଡାନ୍ତ ପରିପ୍ରକାଶ ଦେଖିଲି । ବିଜ୍ଞାପନର ଘୂର୍ଣ୍ଣିରେ ଆବର୍ତ୍ତିତ କୃତ୍ରିମ ସାହିତ୍ୟର ନିରର୍ଥକ ବାକ୍-ବିଳାସ ଏଥିରେ ନାହିଁ । ଆମର ନଗର ଜୀବନର ମୁନାଫାଖୋରୀ, ପାଶ୍ଚାତ୍ୟ ଜୀବନର ଦ୍ୱନ୍ଦ ଭିତରେ ଆମେ ଗୋଟିଏ ଜିନିଷ କଥା ମନେ ପକାଇବା ବେଳେ ଚାଳିଶଟି ଜିନିଷ ଭୁଲିଯାଉ । ଏଇ ଧରଣର ସାଧାରଣ ବିଚାର ଜିଜ୍ଞାସା ନିଉ ଟେଷ୍ଟାମେଣ୍ଟର ପ୍ରଥମ ଭାଗରେ, ଏଇ ଧରଣର ସୂତ୍ରର ସଂଧାନ ମିଳେ ବାଇବେଲରେ ଥିବା ସୂତ୍ର ସଂହିତା ଭିତରେ । କିନ୍ତୁ ତଥାକଥିତ ଧର୍ମଯାଜକଙ୍କ ମାଧ୍ୟମରେ ସେସବୁ ମହତ କଥାର ସୁଖାନୁଭୂତି କ୍ଷୁଣ୍ଣ ହୋଇଯାଇଛି । କେତେ ନିର୍ବୋଧ ସେଇ ବାଣୀକୁ ଅପ ପ୍ରଚାର କରିବାରେ ନିଜକୁ ନିୟୋଜିତ କରିଥିଲେ । ସେଥିରେ ଯେଉଁ କାବ୍ୟିକଗୁଣ ଅଛି ଯଦି ଲଣ୍ଡନର ବିଶପ୍‌ଜନ୍ ଓ କାଣ୍ଟଙ୍କ ଶ୍ଳଥ ଧାରଣାକୁ ନ ନେଇ ତାହାକୁ ଆମେ ପଢୁ ତା ହେଲେ ତାହା ପାଇ ପାରିବୁ ।''

''ଯଦିବା ଏଇ କବିତାରେ କିଛି ଦୋଷ ଥାଏ, ଦୋଷ ଅଛି ବୋଲି ମୁଁ ସ୍ୱୀକାର କରିବି ନାହିଁ- କିନ୍ତୁ ଯଦି ଏଥିରେ କିଛି ଗୁଣ ଥାଏ ତାହା ବି ସାଧାରଣ ପାଠକଙ୍କୁ ଅସୁବିଧାରେ ପକାଇବ । କାରଣ ଏସବୁ ଅନେକ ବେଶୀ ପବିତ୍ର ତଥାପି ସେଇ ପାଠକମାନଙ୍କ ପାଇଁ ମୋର ଦୟା ଆସେ, ଯେଉଁମାନେ ବୁଝି ପାରନ୍ତି ନାହିଁ ସେଇ ପବିତ୍ରଭାବକୁ ଯାହା ଦାନ୍ତେଙ୍କ କବିତାର ପବିତ୍ର ଭାବରେ ଥିଲା । ସେଇ ପବିତ୍ରତା ଅତୀବ ସୁନ୍ଦର ।''

'ଗୀତାଞ୍ଜଳି' ପ୍ରକାଶ ପାଇବା ସମୟରେ ରବୀନ୍ଦ୍ରନାଥ ଇଂଲଣ୍ଡରେ ନଥିଲେ । ସେ ସେଠି ବେଶୀ ଦିନ ରହି ନଥିଲେ । ମାତ୍ର ଚାରିମାସ ଥିଲେ । ସେଇ ସମୟ ଥିଲା ଖୁବ୍ ବ୍ୟସ୍ତବହୁଳ ଓ ଫଳପ୍ରସୂ ହୋଇଥିଲା । ଏହାର ମୂଳରେ ଥିଲେ ଶିଳ୍ପୀ ରୋଦେନ୍‌ଷ୍ଟାଇନ୍ ଓ ତାଙ୍କର ପରିଚିତ ଅନ୍ୟ ବିଦେଶୀ ବଂଧୁମାନଙ୍କର ସଦିଚ୍ଛା । ଏଇ ଭବିତବ୍ୟକୁ କଳ୍ପନା କରି କବି ଯେପରିକି 'ଗୀତାଞ୍ଜଳି'ରେ ଲେଖିଥିଲେ ''କେତେ ଅଜଣାକୁ ଜଣାଇଲ ତୁମେ କେତେ ପର କଲ ଘର'' । ସେ ଯେଉଁସବୁ ବିଶିଷ୍ଟ ଲୋକଙ୍କୁ ସେତେବେଳେ ସାକ୍ଷାତ୍ କରିଥିଲେ ସେମାନଙ୍କ ମଧ୍ୟରେ ଥିଲେ ବର୍ଣ୍ଣାଡ ଶ', ବଟ୍ରାଣ୍ଡ ରସେଲ୍, ଏଚ.ଜି. ୱେଲସ୍, ଜନ୍ ଗାଲସ୍‌ୱର୍ଦ୍ଦି, ରବର୍ଟବ୍ରିଜ୍, ଜନ୍ ମାସ୍‌ଫିଲଡ୍, ଷ୍ଟାର୍ଜମୁର୍, ହଡ୍‌ସନ୍ ଓ ବ୍ରୁକ୍ । ରୋଦେନ୍‌ଷ୍ଟାଇନ୍ ଲେଖିଛନ୍ତି ''ରବୀନ୍ଦ୍ରନାଥଙ୍କର ମର୍ଯ୍ୟାଦାବୋଧ, ଆକର୍ଷଣୀୟ ପୌରୁଷ, ସରଳ ବ୍ୟବହାର, ଶାନ୍ତପ୍ରଜ୍ଞା- ଯେଉଁମାନେ ତାଙ୍କୁ ସାକ୍ଷାତ କରିଥିଲେ ସମସ୍ତଙ୍କୁ ତାହା ପ୍ରଲୁବ୍ଧ କରିଥିଲା । ତାଙ୍କ ନୂଆ ବଂଧୁମାନଙ୍କର ଦୃଷ୍ଟିର ଉଦାରତା ଓ ଚିନ୍ତାର ପାର୍ଥକ୍ୟ ଦେଖି ସେ ଅଭିଭୂତ ହୋଇଥିଲେ ।'' ତେଣୁ ସେ କହିଥିଲେ 'ଭାରତରେ ଆମେ ଯେଉଁମାନେ ଇଂରେଜ ଭାଷା ଜାଣୁ ଇଂରେଜ ଜାତିକୁ ଜାଣିପାରି ନଥାଉ' । ରଦେନ୍‌ଷ୍ଟାଇନ୍ ଇଣ୍ଡିଆ ସୋସାଇଟିକୁ ପ୍ରସ୍ତାବ ଦେଲେ ୟେଟସ୍ ମୁଖବନ୍ଧ ଲେଖିବାକୁ ରାଜିଥିବା ଏକ କବିତା ସଂକଳନ ପ୍ରକାଶ ପାଇଁ । ମାକ୍‌ମିଲାନ୍ ଦ୍ୱାରା ଗୀତାଞ୍ଜଳିର ଜନପ୍ରିୟ ସଂକଳନ ପ୍ରକାଶ ପୂର୍ବରୁ ଏପରି ଭାବରେ ୭୫୦ କପି ପ୍ରକାଶ ପାଇଥିଲା । ବ୍ରିଟେନ୍ ଓ ଭାରତର ବହୁ ସହରରେ ତାଙ୍କର ଅନେକ ନିନ୍ଦୁକ ଥିଲେ- ଯେଉଁମାନେ ବିଶ୍ୱାସ କରିପାରୁ ନଥିଲେ ଯେ ରବୀନ୍ଦ୍ରନାଥ ଏତେ ଭଲ ଇଂରାଜୀ ଲେଖିଛନ୍ତି । 'ଗୀତାଞ୍ଜଳି'ର ଏପରି ସାଫଲ୍ୟ ଦେଖି ସେମାନେ ଭାବୁ ଥିଲେ ଯେ ବୋଧହୁଏ ୟେଟସ୍ ସେଗୁଡିକୁ ସଂଶୋଧନ କରି ଲେଖିଦେଇଛନ୍ତି । ଏବେ ବି ଏଇ ମତ ଅନେକ ପୋଷଣ କରିଥାନ୍ତି । ଏ ବିଷୟରେ ରୋଦେନ୍‌ଷ୍ଟାଇନ୍‌ଙ୍କ ମତ ଉଦ୍ଧାର କରିବା ଉଚିତ । ଏ ବିଷୟରେ ପ୍ରକୃତ ସତ୍ୟ କ'ଣ ? ସେ ହିଁ ପ୍ରକୃତରେ କହିପାରିବେ, କାରଣ ସେ ଯେ ମୂଳପାଣ୍ଡୁଲିପିଟି ପଢ଼ିଥିଲେ ତା ନୁହେଁ, ୟେଟସ୍‌ଙ୍କ ସଂଶୋଧିତ ପାଣ୍ଡୁଲିପିଟି ମଧ୍ୟ ତାଙ୍କ ପାଖରେ ଥିଲା ଓ ତାଙ୍କ ଘରେ ରହିଛି । ସେ କହିଛନ୍ତି ''ଭାରତରେ କେହି କେହି କହନ୍ତି ଯେ ରବୀନ୍ଦ୍ରଙ୍କ ଇଂରାଜୀକୁ ୟେଟସ୍ ସଜାଡି ଲେଖିବା ଫଳରେ 'ଗୀତାଞ୍ଜଳିର' ସାଫଲ୍ୟ ସମ୍ଭବ ହୋଇଛି । କିନ୍ତୁ ଏହା ମୁଁ ସହଜରେ ପ୍ରମାଣ କରି ଦେଇ ପାରେ, ରବୀନ୍ଦ୍ରନାଥଙ୍କର ଇଂରାଜୀ 'ଗୀତାଞ୍ଜଳି'ର ମୂଳ ପାଣ୍ଡୁଲିପି ମୋ ପାଖରେ ଅଛି । ୟେଟସ୍ ଏଠି ସେଠି ପରିବର୍ତ୍ତନ ପାଇଁ ସାମାନ୍ୟ ସୂଚନା ଦେଇଥିଲେ । କିନ୍ତୁ ଯେଉଁ ପ୍ରଧାନ ପାଠଟି ମୁଦ୍ରିତ ହୋଇଛି ତାହା ରବୀନ୍ଦ୍ରନାଥଙ୍କ ସ୍ୱରଚିତ ।''

1912 ଅକ୍ଟୋବର ମାସରେ ରବୀନ୍ଦ୍ରନାଥ ନିଜପୁତ୍ର ଓ ପୁତ୍ରବଧୂଙ୍କୁ ସାଙ୍ଗରେ ଘେନି ଆମେରିକା ଅଭିମୁଖେ ଯାତ୍ରା କଲେ । ସେ ବାପାଙ୍କୁ ଆର୍‌ବାନାରେ କିଛି ଦିନ ଶାନ୍ତଭାବରେ କଟାଇବା ପାଇଁ ପ୍ରବର୍ତ୍ତାଇ ଥିଲେ । ସେଠି ସେ ଗଭୀର ଚିନ୍ତାଦ୍ୟୋତକ ଗଦ୍ୟ ଇଂରାଜୀରେ ରଚନା କରିଥିଲେ । ପରେ ତାହା ସେ ହାର୍ଭାର୍ଡ଼ ବିଶ୍ୱବିଦ୍ୟାଳୟରେ ବକ୍ତୃତା ଦେଇଥିଲେ । 'ସାଧନା' ନାମରେ ତାହା ପ୍ରକାଶିତ । ଏଇ ବକ୍ତୃତା ଗୁଡିକରେ ରବୀନ୍ଦ୍ରନାଥ ପ୍ରାଚୀନ ଭାରତର ଋଷିମାନଙ୍କର ବାଣୀ ଓ ଜୀବନାଦର୍ଶର ଅବଲମ୍ବନରେ ତାଙ୍କ ନିଜସ୍ୱ ରୀତିରେ ପ୍ରାଚୀନ ଭାରତବର୍ଷର ଆତ୍ମା ଓ ଆଦର୍ଶ ବ୍ୟାଖ୍ୟା କରିଥିଲେ ।

ରବୀନ୍ଦ୍ରନାଥ ଇଲିନୟସ୍‌ରେ ରହୁଥିବା ସମୟରେ 1912 ନଭେମ୍ବର ମାସରେ ଇଂଲଣ୍ଡର

ଇଣ୍ଡିଆ ଅଫିସରୁ 'ଗୀତାଞ୍ଜଳି' ପ୍ରକାଶ ପାଇଥିଲା । ବହୁ ଇଂରାଜୀ ପତ୍ରିକାରେ ଏହାର ଭଲ ଆଲୋଚନା ବାହାରିଲା । Times literary Supliment ଲେଖିଥିଲା ''ଏଇ କବିତାଗୁଡିକ ପଢ଼ିଲେ କେବଳ ଏହା ଏକ ବିଦେଶୀ ଲେଖିବୋଲି କୌତୁହଳ ଜନ୍ମେନାହିଁ, ଏପରି କ୍ରାନ୍ତଦର୍ଶୀ କବିତା ଇଂଲଣ୍ଡରେ ମଧ୍ୟ ରଚନା କରାଯାଇ ପାରିଥାନ୍ତା ଯଦି ଆମର କବିମାନେ ଭାବାବେଗ ଓ ଆଦର୍ଶାନୁଭୂତିରେ ଏପରି ସମନ୍ୱୟ ସାଧନ କରିପାରିଥାନ୍ତେ । ଆମେ ଆଜି ଧର୍ମ ଓ ଦର୍ଶନରୁ ବିଚ୍ୟୁତ ହୋଇ ପଡିଛୁ ଏବଂ ଏଇ ଦୁଇ କ୍ଷେତ୍ରରେ ଆମର ପତନ ସୂଚିତ । କେହି କେହି ହୁଏତ ଏଇ ଭାରତୀୟ କବିଙ୍କ ମୋହର ପ୍ରଭାବ ଅସ୍ୱୀକାର କରିପାରନ୍ତି । କାରଣ ସେ ଯେଉଁ ଦର୍ଶନର ଅବତାରଣା କରିଛନ୍ତି ତାହା ଆମର ନୁହେଁ । ଆମକୁ ଯଦି ଏସବୁ ଅବାନ୍ତର ବା ବୈଦେଶିକୀ ମନେ ହୁଏ, ତାହାକୁ ଆମେ ଘୃଣା କରିବା ପୂର୍ବରୁ ନିଜକୁ ପ୍ରଶ୍ନ କରିବା ଉଚିତ ''ଆମର ଦର୍ଶନ କ'ଣ ?'' ଆମର ଚିନ୍ତା ଅସ୍ଥିର । କବିମାନେ ପ୍ରକାଶ କରିବା ଭଳି ଆମ ପାଖରେ କିଛି ନାହିଁ ।'' ଭାରତୀୟ କବିଙ୍କର ମୋହରେ ପଡିବାକୁ ଚାହୁଁ ନଥିବା ସମାଲୋଚକଙ୍କର ଅଭାବ ନଥିଲା । ଏମିତି ଜଣେ ଲଣ୍ଡନର ନ୍ୟୁଏଜ୍ ପତ୍ରିକାରେ ଲେଖିଥିଲେ ''ଆମ ମାନଙ୍କ ଭିତରୁ ଯେ କେହି ଏପରି 'ହଯବରଲ' ଲେଖିପାରିବ । କିନ୍ତୁ ଭାବିବା ଉଚିତ ଯେ ଏଥିରେ କିଛି ନୂତନ ତତ୍ତ୍ୱ ଅଛି ।'' କେହି କେହି ପୁଣି ଲେଖିଲେ ''ଇଂରେଜମାନେ ଭାରତୀୟଙ୍କୁ ସଭ୍ୟ କରିବାରେ ଏତେଦୂର ସଫଳ ହୋଇଛନ୍ତି ଯେ ଜଣେ ଭାରତୀୟ ଏପରି କବିତା ଲେଖି ପାରିଲେ ।'' 'ବରମିଙ୍ଗହମ୍ ପୋଷ୍ଟ'ରେ ଜଣେ ଲେଖିଥିଲେ ''ଟାଗୋରଙ୍କ ସାଫଲ୍ୟର ମୂଳକଥା ହେଉଛି, ଏହା ଇଂରେଜ ସାହିତ୍ୟର ଏକ କ୍ଷୁଦ୍ରଚାରାର ବିକାଶ ଯାହା ଆମର ଦୃଷ୍ଟିରେ ପଡିନଥିଲା ।''

ସାଧାରଣ ଭାବରେ 'ଗୀତାଞ୍ଜଳି' ବ୍ରିଟିଶ ସମ୍ବାଦ ପତ୍ରରେ ଯେପରି ପ୍ରଶଂସାଭାଜନ ହୋଇଥିଲା, ଏହାଥିଲା ରବୀନ୍ଦ୍ରନାଥଙ୍କ ପାଇଁ ଅନୁକୂଳ ଓ ସେଥିପାଇଁ କବି ଆନନ୍ଦ ଅନୁଭବ କରିଥିଲେ ।

ରବୀନ୍ଦ୍ରନାଥଙ୍କ ନିଜ ଦେଶର ଲୋକଙ୍କ ମନରେ ଏହାର ମିଶ୍ର ପ୍ରତିକ୍ରିୟା ଦେଖାଦେଇଥିଲା । ବସନ୍ତ କୁମାର ରାୟ ଆମେରିକାରେ ବାସ କରୁଥିଲେ ଓ ପରେ ସେ ରବୀନ୍ଦ୍ରନାଥଙ୍କ ଜୀବନୀ ସେଠି ପ୍ରକାଶ କରିଥିଲେ । ଯୁକ୍ତରାଷ୍ଟ୍ର ଆମେରିକାର ବଙ୍ଗାଳୀମାନେ ଜଣେ ମିଶନାରୀଙ୍କ ନିମ୍ନ ମନ୍ତବ୍ୟ ପଢ଼ି ଅତୀଶୟ କ୍ରୁଦ୍ଧ ହୋଇଥିଲେ । ତାଙ୍କର ମନ୍ତବ୍ୟଥିଲା ''କେତେ ଶତାବ୍ଦୀ ଧରି ଭାରତରେ ଏଇଭଳି କବି ଓ ସଂଗୀତଜ୍ଞ ଜନ୍ମ ହୋଇ ନଥିଲେ ।'' ଆମେରିକାନ୍ ରୀତିରେ ଜଣେ କହିଉଠିଲେ ଓଃ ! ବଙ୍ଗଳାରେ ନବୀନଚନ୍ଦ୍ର ସେନ୍ ଓ ଡି.ଏଲ୍. ରାୟ ଠାକୁରଙ୍କ ଠାରୁ ଅନେକ ବଡ଼ କବି । ତାଙ୍କ ମତରେ ରବୀନ୍ଦ୍ରନାଥଙ୍କ କବିତା ''ମଧ୍ୟଯୁଗୀୟ ବୈଷ୍ଣବ କବିମାନଙ୍କର ଏକ ନିକୃଷ୍ଟ ଅନୁକରଣ ମାତ୍ର । ତାଙ୍କ ଦର୍ଶନ ଉପନିଷଦର ଦର୍ଶନ । ତାଙ୍କ ଲେଖାକୁ ନେଇ ୟୁରୋପ ଓ ଆମେରିକାରେ ଲୋକେ ଯେତେ ମାତନ୍ତୁନା କାହିଁକି ଆମ ପାଇଁ ତା'ର କୌଣସି ମୂଲ୍ୟନାହିଁ ।''

ରବୀନ୍ଦ୍ରନାଥଙ୍କ ନାଁ ଇଂରାଜୀ ପତ୍ରପତ୍ରିକାରେ ବହୁ ଭାବରେ ପ୍ରଚାରିତ ହୋଇଥିଲା ଓ ତାଙ୍କ ଖ୍ୟାତି ଆଟଲାଣ୍ଟିକ ସେପାରିରେ ଯାଇ ପହଞ୍ଚିଲା । ସେତେବେଳେ ସେ ଆରବାନାର ଗୋଟିଏ ଅଖ୍ୟାତ ଜାଗାରେ ରହୁଥିଲେ । ଯଦିବା ସାଧାରଣ ଅଧିବାସୀ ଏ ବିଷୟରେ ଅଜ୍ଞ ଥିଲେ । ବିଶ୍ୱବିଦ୍ୟାଳୟ ଓ ଅନ୍ୟାନ୍ୟ ବୌଦ୍ଧିକ ଅନୁଷ୍ଠାନରୁ ଅନେକ ନିମନ୍ତ୍ରଣ ଆସିଲା । ଚିକାଗୋର

'ଚାରିଅଟ' ପତ୍ରିକାର ଡିସେମ୍ବର ସଂଖ୍ୟାରେ ହାରିଏଟ୍ ମୁନ୍‌ରୋଙ୍କ ଦ୍ୱାରା 'ଗୀତାଞ୍ଜଳି'ର ଛଅଟି କବିତା ପ୍ରକାଶ ପାଇଲା । ବୋଧହୁଏ ପଶ୍ଚିମ ଜଗତରେ ଏହାହିଁ ରବୀନ୍ଦ୍ରନାଥଙ୍କ କବିତାର ପତ୍ରିକାରେ ପ୍ରଥମ ପ୍ରକାଶ । ଏହା ପରେ ପରେ ଚିକାଗୋ ବିଶ୍ୱବିଦ୍ୟାଳୟରେ ବକ୍ତୃତା ପାଇଁ ନିମନ୍ତ୍ରଣ ଆସିଲା । ଟାଗୋର ଆରବାନାରେ ଥିବା ସମୟରେ ବସନ୍ତ କୁମାର ରାୟ ତାଙ୍କୁ ସାକ୍ଷାତ କରିବାକୁ ଆସିଥିଲେ । ସେ ଅଧିକ କବିତା ଇଂରାଜୀରେ ଅନୁବାଦ କରିବାକୁ ପ୍ରବର୍ତ୍ତାଇ ଥିଲେ । ତାହା ହେଲେ ସେ ଆଗ ହେଉ ପଛେ ହେଉ ନିଶ୍ଚୟ ନୋବେଲ ପୁରସ୍କାର ପାଇବେ । ଏ ପର୍ଯ୍ୟନ୍ତ ଏସୀୟ ବା ଭାରତୀୟ କେହି ଏ ସମ୍ମାନ ପାଇନାହାନ୍ତି । ରବୀନ୍ଦ୍ରନାଥ ପ୍ରଥମେ ସହଜ ଭାବରେ ପଚାରିଲେ ''ଏସିଆର ଲୋକେ କ'ଣ ଏହା ପାଇବା ପାଇଁ ଯୋଗ୍ୟ ?''

ବୋଧେ ରବୀନ୍ଦ୍ରନାଥଙ୍କର ଏହି ମନ୍ତବ୍ୟ ଅହେତୁକ ନଥିଲା । ସେ ନୋବେଲ ପାଇବା ପରେ, ଏସିଆର ଜଣେ ଏହା ପାଇବାରୁ ସମଗ୍ର ପାଶ୍ଚାତ୍ୟ ଜଗତରେ କୋଳାହଳ ହୋଇଥିଲା । ଆମେରିକାର ଗୋଟିଏ ସମ୍ବାଦ ପତ୍ର ଲେଖିଥିଲେ ''ସାହିତ୍ୟରେ ନୋବେଲ ପ୍ରାଇଜ୍ ଜଣେ ହିନ୍ଦୁଙ୍କୁ ଦେବା ଦ୍ୱାରା ବହୁତ ଅସନ୍ତୋଷ ପ୍ରକାଶ ପାଇଛି । କକେସିଆନ୍ ଜାତିର ଲେଖକମାନେ ଏଥିରେ ଆଶ୍ଚର୍ଯ୍ୟ ହୋଇଛନ୍ତି । ସେମାନେ ବୁଝି ପାରୁନାହାନ୍ତି ଯେ, କାହିଁକି ଜଣେ ଅଶ୍ୱେତକାୟଙ୍କୁ ଏ ପୁରସ୍କାର ଦିଆଗଲା ।'' କାନାଡାରେ ଟରୋଣ୍ଟୋର 'ଗ୍ଲୋବ୍' ପତ୍ରିକା ଲେଖିଥିଲେ, ''ପ୍ରଥମେ ନୋବେଲ ପୁରସ୍କାର ଜଣକୁ ଦିଆଯାଇଛି ଯାହାକୁ ଆମେ ଶ୍ୱେତବୋଲି ଜାଣି ନାହୁଁ । ରବୀନ୍ଦ୍ରନାଥ ଠାକୁର ନାମକ ଜଣେ ବ୍ୟକ୍ତି ଯେ ନୋବେଲ୍ ପୁରସ୍କାର ପାଇବେ, ଏଥି ସହିତ ଏକମତ ହେବାପାଇଁ ଆମକୁ ଅନେକ ସମୟ ଲାଗିବ । ଆମକୁ କୁହାଯାଇ ନଥିଲା କି ଯେ 'ପୂର୍ବ ଓ ପଶ୍ଚିମ କେବେ ମିଳିବେ ନାହିଁ ।' ଏଇ ନାଁର ଧ୍ୱନି ବଡ ବିଚିତ୍ର । ଛପା ହରଫରେ ଯେତେବେଳେ ଏଇ ନାଁଟି ଦେଖିଲୁ ଏହା ପ୍ରକୃତରେ ଜଣକ ନାଁ ଏକଥା ଆମେ ବିଶ୍ୱାସ କରିପାରିଲୁ ନାହିଁ ।'' 'ଲସ୍‌ଏନ୍‌ଜେଲସ୍ ଟାଇମ୍' ଅଭିଯୋଗ କରି ଲେଖିଥିଲା ''ଏପରି ଭାବରେ ନୋବେଲ ପୁରସ୍କାର ପ୍ରଦାନ କରାଯିବା ଫଳରେ ୟୁରୋପ ଓ ଆମେରିକାର ତରୁଣ ଲେଖକମାନେ ଅତ୍ୟନ୍ତ ନିରୁତ୍ସାହିତ ବୋଧ କରୁଛନ୍ତି । 'ଏମିତି ଜଣେ ହିନ୍ଦୁ କବି ଯାହାଙ୍କ ନାଁ ଖୁବ୍ କମ୍ ଲୋକ ଉଚ୍ଚାରଣ କରି ପାରିବେ, ଆମେରିକାର ଅତି ଅଳ୍ପ ଲୋକ ତାଙ୍କ ରଚନାବଳୀ ବିଷୟରେ ଜାଣନ୍ତି । ଏପରି ଲୋକଙ୍କ ନୋବେଲ୍ ପୁରସ୍କାର ଦାବୀକୁ ଅତିଅଳ୍ପ ଲୋକ ସ୍ୱୀକାର କରିବେ ।''

ଜାନୁୟାରୀ 1913 ଖ୍ରୀଷ୍ଟାବ୍ଦରେ ରବୀନ୍ଦ୍ରନାଥ ଚିକାଗୋକୁ ଆସିଥିଲେ । ପ୍ରାଚୀନ ଭାରତୀୟ ସଭ୍ୟତାର ଆଦର୍ଶ ଓ ଇଭିଲ୍‌ର ସମସ୍ୟା ବିଷୟରେ ବକ୍ତୃତା ଦେଇଥିଲେ । ଚିକାଗୋରୁ ସେ ଗଲେ ରୋଚେଷ୍ଟାର । ସେଠାରେ ଧର୍ମୀୟ ଉଦାରତାବାଦୀ ମହାସଭାରେ କୌମଗତ ଦ୍ୱନ୍ଦ (Race-Conflict)ବିଷୟରେ ବକ୍ତୃତା ଦେଇଥିଲେ । ଏହାପରେ ବୋଷ୍ଟନ ସହରରେ ସେ ଯେଉଁସବୁ ବକ୍ତୃତା ଦେଇଥିଲେ ପରେ ତାହା 'ସାଧନା'ରେ ପ୍ରକାଶିତ ହୋଇଥିଲା ।

ନ୍ୟୁୟର୍କ ପରିଦର୍ଶନ କରିସାରିବା ପରେ 1913 ଏପ୍ରିଲ୍ ମାସରେ କବି ଲଣ୍ଡନ ଫେରିଲେ । ସେଠାରେ କାକ୍‌ସଟନ୍ ହଲ୍‌ରେ ସେ କେତେଗୁଡିଏ ବକ୍ତୃତା ପ୍ରଦାନ କରିଥିଲେ । ବର୍ଷକ ତଳେ ଯେତେବେଳେ ସେ ଲଣ୍ଡନକୁ ଆସିଥିଲେ ସେ ଥିଲେ ଜଣେ ଅଜ୍ଞାତ ବିଦେଶୀ । କିନ୍ତୁ ଏବେ ତାଙ୍କୁ ଘେନି ଚହଳ ପଡିଯାଇଥିଲା । ଲୋକେ ତାଙ୍କୁ ଦେଖିବାକୁ ଆସୁଥିଲେ । 'ପୋଷ୍ଟ ଅଫିସ୍' ନାଟକ ଅଭିନୀତ ହୋଇଥିଲା ଓ ତାଙ୍କ ରଚନାବଳୀର ଅନୁବାଦ ସମ୍ବଳିତ ତିନୋଟି ଗ୍ରନ୍ଥ ସେଇ ବର୍ଷକ

ମଧ୍ୟରେ ପ୍ରକାଶ ପାଇଥିଲା । ସେ ଗୁଡିକ ହେଉଛି ଦି ଗାର୍ଡ୍‌ନର୍, ଦି କ୍ରିସେଣ୍ଟ ମୁନ୍ ଓ ଚିତ୍ରା ନାଟକ । ଏଥିରୁ କୌଣସି ବହି ଧର୍ମ, ଦର୍ଶନ ଓ ଆଧ୍ୟାତ୍ମିକ ବିଷୟବସ୍ତୁ ଘେନି ଲେଖା ନୁହେଁ । ରବୀନ୍ଦ୍ରନାଥଙ୍କ ରଚନାକୁ ବିଦେଶୀମାନଙ୍କ ପକ୍ଷରେ ବୁଝିବା ପାଇଁ ଅନୁକୂଳ ବାତାବରଣ ସୃଷ୍ଟି ହୋଇଥିଲା । କିନ୍ତୁ ଯାହା ପ୍ରଥମ ଧାରଣା ସେଇଟାହିଁ ବେଶୀ ଜୀବନ୍ତ ଓ ସ୍ଥାୟୀ ହୁଏ । ତେଣୁ ରବୀନ୍ଦ୍ରନାଥ ପାଶ୍ଚାତ୍ୟ ଦେଶରେ ମୁଖ୍ୟତଃ ଜଣେ ଧର୍ମ ଓ ଦର୍ଶନ ଭାବନାର କବି ଭାବରେ ବିବେଚିତ ହୋଇଥାନ୍ତି । ତାଙ୍କର ସେଇ ଆର୍ଷ ବ୍ୟକ୍ତିତ୍ୱ, ଋଷିସୁଲଭ ଚେହେରା ଓ ବାରମ୍ବାର ତପୋବନ ଯୁଗର ଆଦର୍ଶ ପ୍ରଚାର ହେତୁ ଏ ପ୍ରକାର ଏକପାକ୍ଷିକ ଧାରଣା ଦୃଢ଼ ହୋଇଥିଲା । ଜଣେ କବି ଯେମିତି ଅନ୍ୟ ଜଣେ କବିଙ୍କୁ ଦେଖନ୍ତି ଏଜ୍‌ରା ପାଉଣ୍ଡ ତାଙ୍କୁ ସେହିପରି ଦେଖି ସେଇପୂର୍ବ ଧାରଣା ଦୂର କରିବାକୁ ଚାହିଁଥିଲେ । କିନ୍ତୁ ଏ ଦିଗରେ ସେହିଁ କେବଳ ଉଦ୍ୟମ କରିଥିଲେ । ରବୀନ୍ଦ୍ରନାଥଙ୍କ 'ଗାର୍ଡ୍‌ନର୍' (gardner)ଗ୍ରନ୍ଥର 'ଫ୍ରି ଓମେନ୍' ''(free woman) ପତ୍ରିକାରେ ସମୀକ୍ଷା କରିବାକୁ ଯାଇ ସେ ଲେଖିଥିଲେ ''ଏଇ ଦ୍ୱୀପର ଭଲ ଲୋକେ କାହିଁକି ଯେ ତାଙ୍କୁ ଜଣେ ଉଚ୍ଚକୋଟୀର ଶିଳ୍ପୀ ଭାବରେ ସମ୍ମାନ ଦେଉନାହାନ୍ତି ବା ଦେବାକୁ ଅକ୍ଷମତା ପ୍ରକାଶ କରୁଛନ୍ତି ଓ ଯେତେବେଳେ ସମ୍ମାନ ଦେବାକୁ ଚାହୁଁଛନ୍ତି ତାଙ୍କୁ ଜଣେ ଧର୍ମାତ୍ମା, ନୀତିବାଦୀ ଭାବରେ ତାଙ୍କର କୁଶପୁତ୍ତଳିକାକୁ ତୁଳାରେ ଗୁଡାଇ ପଥପରିକ୍ରମା କରାଉଛନ୍ତି ମୋପକ୍ଷରେ ଏହା ଏବେବି ଏକ ଅସମାଧିତ ରହସ୍ୟ ।''

ସେପ୍‌ଟେମ୍ବର ମାସରେ ରବୀନ୍ଦ୍ରନାଥ ଭାରତ ଅଭିମୁଖେ ଯାତ୍ରା ଆରମ୍ଭ କଲେ ସ୍ୱାସ୍ଥ୍ୟ ଓ ଖ୍ୟାତି ଅର୍ଜନ କରି । ସେ ଶାନ୍ତିନିକେତନ ପହଞ୍ଚିବା ପରେ ନଭେମ୍ବର 13 ତାରିଖ ଦିନ ତାଙ୍କର 'ଗୀତାଞ୍ଜଳି' ପାଇଁ ନୋବେଲ୍ ପୁରସ୍କାର ପାଇଥିବା ସମ୍ବାଦ ଆଶ୍ରମରେ ପହଞ୍ଚିଲା । ଏ ସମ୍ବାଦରେ ଆଶ୍ରମବାସୀ ବିସ୍ମିତ ହେଲେ ଓ ସାରା ଦେଶରେ ଆନନ୍ଦ ଖେଳିଗଲା । ଶାନ୍ତିନିକେତନ ଆଶ୍ରମର ଅନ୍ତେଃବାସୀ ମାନେ, ଯେଉଁମାନେ ନୋବେଲ କ'ଣ ଜାଣି ନ ଥିଲେ, ସେମାନେ ବୁଝିଲେ ଯେ ତାଙ୍କ ପ୍ରିୟ ଗୁରୁଦେବଙ୍କୁ ସାରା ଜଗତ ସମ୍ମାନ ଦେଇଛି । ସେମାନଙ୍କର ଆନନ୍ଦର ସୀମା ରହିଲା ନାହିଁ । କିନ୍ତୁ କବି କ'ଣ ଅନୁଭବ କରିଥିଲେ ? ନିଶ୍ଚିତ ଭାବେ, ଏଥିପାଇଁ ସେ ନିଜକୁ ଗୌରବାନ୍ୱିତ ମନେ କରିଥିଲେ ଓ ଆନନ୍ଦିତ ହୋଇଥିଲେ । କାରଣ ସେ ଜାଣିଥିଲେ ଯେ ସେ ନ୍ୟାୟ ବିଚାର ପାଇଛନ୍ତି । ଅବଶ୍ୟ ସେ ଯଦି ଅନ୍ୟ ଭାବରେ ଭାବିଥାନ୍ତେ ତେବେ ତାଙ୍କୁ ଆମେ ଜଣେ ସାଧାରଣ ମଣିଷ ବୋଲି ବିଚାରି ନଥାନ୍ତୁ । ତାଙ୍କ ଭିତରର ଦେଶପ୍ରେମିକ ଖୁସୀ ହେଲା- ଏଇଥି ପାଇଁ ଯେ ତାଙ୍କ ଦେଶର ନାମ ପୃଥିବୀ ସାହିତ୍ୟର ମାନଚିତ୍ରରେ ସ୍ଥାନ ପାଇଲା ଓ ତାଙ୍କ ଦ୍ୱାରା ଏହା ସମ୍ଭବ ହେଲା ବୋଲି ସେ ଗୌରବ ଅନୁଭବ କରିଥିଲେ । କିନ୍ତୁ ତାଙ୍କ ଭିତରର କବି ଚିତ୍ତ ଏହାଭାବି ବିଚଳିତ ହେଲା ଯେ ତାଙ୍କର ସୁଖଶାନ୍ତିର ଦିନ ଶେଷ ହେଲା । ନିରବରେ ଅବିଚ୍ଛିନ୍ନ ଭାବରେ କାବ୍ୟସାଧନାର ସୁଯୋଗ ଛିନ୍ନ ହେଲା । ଜଣେ ଶିଶୁମାନଙ୍କର ଶିକ୍ଷକରୂପେ ଓ ଭଗବାନଙ୍କ ଭକ୍ତ ରୂପେ ଅନ୍ତରଙ୍ଗ ଆଳାପର ଦିନ ଶେଷ ହୋଇଗଲା । ପାଞ୍ଚଦିନ ପରେ ସେ ରୋଦେନ୍‌ଷ୍ଟାଇନ୍‌ଙ୍କୁ ଲେଖିଲେ ''ଏଇ ସମ୍ବାଦ ସାଧାରଣରେ ଯେ ଝଡ ସୃଷ୍ଟି କରିଛି ସେଥିରେ ମୁଁ ଆତଙ୍କିତ ହୋଇ ଉଠିଛି । ଗୋଟିଏ କୁକୁର ଲାଙ୍ଗୁଡରେ ଟିଣଟିଏ ବାନ୍ଧି ଦେଲେ ସେ ଯେମିତି ଶବ୍ଦ ସୃଷ୍ଟି ନ କରି ପାଦେ ଆଗେଇ ପାରେ ନାହିଁ ମୋ ଅବସ୍ଥା ସେପରି । ମୋ ଉପରେ କେତେଦିନ ଧରି ଟେଲିଗ୍ରାମ ଓ ଚିଠିର ବାଣ ବର୍ଷା ହେଉଛି । ଯେଉଁମାନେ ମୋ ପ୍ରତି ବନ୍ଧୁଭାବାପନ୍ନ ନ ଥିଲେ ବା ମୋ

ଲେଖାଧାଡିଏ ପଢ଼ି ନାହାନ୍ତି ସେଇମାନେ ହିଁ ଉଚ୍ଚ କଣ୍ଠରେ ଆନନ୍ଦ ପ୍ରକାଶ କରୁଛନ୍ତି । ଏହି ବିପୁଳ ଅବାସ୍ତବତା, ଏଇ କୋଳାହଳ ମତେ ଯେ କିପରି ଅବସନ୍ନ କରିଛି ତାହା ମୁଁ ପ୍ରକାଶ କରିପାରିବି ନାହିଁ । ପ୍ରକୃତରେ ଏ ଲୋକେ ମତେ ଦିଆଯାଇଥିବା ସମ୍ମାନର ସମ୍ମାନ କରୁଛନ୍ତି, କିନ୍ତୁ ମତେ ସମ୍ମାନ କରୁ ନାହାନ୍ତି ।''

ନିଜ ଦେଶବାସୀ, ଦେଶର ଭାଷା ଓ ସାହିତ୍ୟ ପ୍ରତି ତାଙ୍କର ସେବାକୁ ଅକୁଣ୍ଠ ଚିତ୍ତରେ ଗ୍ରହଣ ନ କରି ବିଦେଶରୁ ସମ୍ମାନ ମିଳିବା ପରେ ସେ ଯାଇ ତାଙ୍କୁ ତାରିଫ୍ କରୁଛନ୍ତି, ଏଇ ଭାବନା ତାଙ୍କ ସ୍ୱଦେଶ ପ୍ରେମୀ ମନକୁ ପୀଡିତ କରୁଥିଲା । ନଭେମ୍ବର 23 ତାରିଖରେ କଲିକତାର ବିଭିନ୍ନ ପେଶାର ପାଞ୍ଚସହ ବିଖ୍ୟାତ ନାଗରିକ ଶାନ୍ତିନିକେତନ ଆସି ଜାତି ତରଫରୁ ତାଙ୍କୁ ସମ୍ବର୍ଦ୍ଧନା ଜଣାଇଥିଲେ । ସମ୍ବର୍ଦ୍ଧନାର ଉତ୍ତରରେ ରବୀନ୍ଦ୍ରନାଥ ନିଜର ବେଦନାଦାୟକ ଓ ତିକ୍ତ ଅନୁଭୂତିକୁ ତୀକ୍ଷ୍ଣ ଅଥଚ କାବ୍ୟିକ ଭାଷାରେ ପ୍ରକାଶ କରିଥିଲେ । କବି କହିଥିଲେ- ''ଏଇ ସମ୍ମାନ କବି ସହଜରେ ଗ୍ରହଣ କରିପାରିବେ ନାହିଁ । ଏଥିରେ ତାଙ୍କର ଯେଉଁମାନେ ସ୍ତାବକ ଥିଲେ ସେମାନେ ବୁଝି ପାରିଲେ ସେ କାହା ଉଦ୍ଦେଶ୍ୟରେ କହୁଛନ୍ତି । କିନ୍ତୁ ଅନ୍ୟମାନେ ତାଙ୍କର ଏଇ 'ଅସୌଜନ୍ୟ ମୂଳକ ଉତ୍ତର' ପାଇଁ ତାଙ୍କ ଉପରେ କ୍ଷିପ୍ତ ହେଲେ ।

ଅବଶ୍ୟ ଗୋଟିଏ କବିତା ବହିର କାବ୍ୟିକ ଉତ୍କର୍ଷ ଓ ତା'ର ଅନ୍ତର୍ନିହିତ ଉଚ୍ଚ ଆଦର୍ଶ ବିଚାର କରି କବିଙ୍କୁ ନୋବେଲ ପୁରସ୍କାର ଦିଆଯାଇଥିଲା । କିନ୍ତୁ ଏଇ ସମ୍ମାନ ଯେ ଜଣେ ଏସୀୟ ଲୋକଙ୍କୁ ଦିଆଯାଇଥିଲା, ଏ ପ୍ରସଙ୍ଗ ଏକ ଅପୂର୍ବ ଘଟଣା ଭାବରେ ଗ୍ରହଣ କରାଯାଇଥିଲା । ଏଇ ସମ୍ବାଦ କିପରି ଏକ ବିସ୍ମୟ ସୃଷ୍ଟି କରିଥିଲା । ବ୍ୟକ୍ତି ରବୀନ୍ଦ୍ରନାଥ ଏକ ପ୍ରତୀକରେ ପରିଣତ ହୋଇଥିଲେ । ଏଇ ପ୍ରତୀକ ଥିଲା ଏସିଆର ଅନ୍ତର୍ନିହିତ ଶକ୍ତି ଓ ଅଦୂର ଭବିଷ୍ୟତରେ ଏହାର ପୁନର୍ଜୀବନକୁ ବାଧ୍ୟତାରେ ହେଉପଛେ ପାଶ୍ଚାତ୍ୟର ସ୍ୱୀକୃତିର ପ୍ରତୀକ । ସେମାନେ ସ୍ୱୀକାର କରିଥିଲେ ଯେ ବିପୁଳ ଭାବେ ପ୍ରକାଶିତ ଏସିଆର ମନ ଜୀବନ୍ତ, ତା'ର ଯେ ପ୍ରାଣଶକ୍ତି ଅଛି ଏହା ଗ୍ରହଣ କରିବାକୁ ପଡିବ । ତାହା କେବଳ ଏକ ଯାଦୁଘରର ସଂଗୃହୀତ ବସ୍ତୁ ନୁହେଁ ।

ନାନା ଭାବରେ ନାନା ଦୃଷ୍ଟିରୁ ପ୍ରତିକ୍ରିୟା ପ୍ରକାଶ ପାଇଲା । ନୈଷ୍ଠିକ ଖ୍ରୀଷ୍ଟିୟାନ୍‌ମାନେ ଆଶାବାଦୀ ଭାବରେ ରବୀନ୍ଦ୍ରନାଥଙ୍କ କବିତାରେ ଦେଖିଲେ ନୂତନ ସୂର୍ଯ୍ୟୋଦୟର ସମ୍ଭାବନା । 'ବାପ୍‌ଟିଷ୍ଟ ଟାଇମ୍' ପତ୍ରିକା ଲେଖିଥିଲା ''ଆମେ ଆତୁର ଭାବରେ ଅପେକ୍ଷା କରିଥିଲୁ ଦିନେ ନା ଦିନେ ହିନ୍ଦୁ ମନରେ ଖ୍ରୀଷ୍ଟୀୟ ଆଦର୍ଶର ସୁଫଳ ଫଳିବ । ଏମିତି ଜଣେ ଲୋକଙ୍କୁ ଆମେ ଏ ପର୍ଯ୍ୟନ୍ତ ଚାହିଁ ବସିଥିଲୁ, ଯିଏ ଜଗଦୀଶ୍ୱରଙ୍କ ପାଖକୁ ପଥ ପରିଷ୍କାର କରିବା ପାଇଁ ପ୍ରେରିତ ହୋଇଛନ୍ତି । ଏଇ କବିଙ୍କର କଥା ଶୁଣିବା ପାଇଁ ଯେତେବେଳେ ଅୟୁତମନ ଚାହିଁରହିଛି, ତାହା ଆମ ମନରେ ପ୍ରଶ୍ନ ଆଣେ ଯେ ନୂତନ ଖ୍ରୀଷ୍ଟୀୟ ଭାରତବର୍ଷର ଦ୍ୱାର ଦେଶରେ ଆମେ ଉପନୀତ ହୋଇଛୁ କି ?'' ଡିନ୍ ଇଙ୍ଗେଙ୍କ ଭଳି ଜଣେ ସାହସୀ ଓ ଉଦାରମନା କେବଳ ତାଙ୍କର ସମଧର୍ମୀମାନଙ୍କୁ ସ୍ମରଣ କରାଇ ଦେଇଥିଲେ, ''ରବୀନ୍ଦ୍ରନାଥ ଖ୍ରୀଷ୍ଟୀୟାନ୍ ନୁହଁନ୍ତି । କିନ୍ତୁ ତାଙ୍କ ଚେତନା ଆମକୁ ସ୍ମରଣ କରାଇଦିଏ ଯେ ଦିନେ ଏସିଆ ଥିଲା ଖ୍ରୀଷ୍ଟଧର୍ମର ଦେଶ । ତାହା ଥିଲା ଗସପେଲ୍‌ର ଯୁଗ । ତେଣୁ ଖ୍ରୀଷ୍ଟିୟାନ୍ ଅପେକ୍ଷା ସେ ଅଧିକ ଖ୍ରୀଷ୍ଟିୟାନ୍ ମନେ ହେବା ସ୍ୱାଭାବିକ ।'' ଏମାନଙ୍କ ଛଡା ଆହୁରି କେତେ ଚତୁର ଲୋକେ ଥିଲେ ଯେଉଁମାନେ ନିଜକୁ ସର୍ବଜ୍ଞ ମନେ କରୁଥିଲେ । ସେମାନେ କହୁଥିଲେ, ବ୍ରିଟିଶ୍ ସାମ୍ରାଜ୍ୟବିତ୍‌ମାନେ ନିଜର ଗୌରବ ପ୍ରସାରର

ଅଂଶରୂପେ ଏଇ ନୋବେଲ ପୁରସ୍କାର ଦିଆଇଛନ୍ତି । ଆଉ ଦଳେ କହୁଥିଲେ ସ୍ୱିଡେନର ସାହିତ୍ୟିକ ମଣ୍ଡଳୀ ଜର୍ମାନ୍‌ମାନଙ୍କର ଅନୁଗାମୀ ଓ ସେମାନେ ବ୍ରିଟିଶରଙ୍କୁ ନିନ୍ଦିତ କରିବା ପାଇଁ ଏଇଭଳି ଭାବରେ ଜଣେ ଭାରତୀୟଙ୍କୁ ସମ୍ମାନ ଦେଇଛନ୍ତି । ଏଇଭଳି କିଏ କେତେ ଯେ ଚାତୁର୍ଯ୍ୟ ଦେଖାନ୍ତି ତାର ସୀମାନାହିଁ ।

ପ୍ରକୃତ ଘଟଣା ଅତିସହଜ । ପ୍ରଥମରେ ନୋବେଲ ପାଇଁ ପ୍ରସ୍ତାବ ଦେଇଥିଲେ ଇଂରାଜୀ କବି ଷ୍ଟାର୍ଜମୁର୍ । ସ୍ୱିଡିସ୍ ଏକାଡେମୀର ସଂପାଦକଙ୍କୁ ସେ ଲେଖିଥିଲେ : ''ମହାଶୟ । ଇଂଲଣ୍ଡର ରୟାଲ ସୋସାଇଟିର ଜଣେ ଫେଲୋ ଭାବରେ ମୁଁ ରବୀନ୍ଦ୍ରନାଥ ଠାକୁରଙ୍କ ନାମ ନୋବେଲ ସାହିତ୍ୟ ପୁରସ୍କାର ପାଇଁ ପ୍ରସ୍ତାବ କରୁଛି । ମୋ ମତରେ ସେ ଏଥିପାଇଁ ଯୋଗ୍ୟ ବ୍ୟକ୍ତି ।'' ନିର୍ବାଚନ କମିଟିର ବିବରଣୀରୁ ଦେଖାଯାଏ, ଏପରି ଏକ ପ୍ରସ୍ତାବ ପାଇ ସ୍ୱିଡିସ୍ ଏକାଡେମୀ ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲେ । ଯେଉଁ ଦୁଇଜଣଙ୍କର ଦୃଢ଼ ଯୁକ୍ତି ଓ ମତ ନୋବେଲ୍ କମିଟିର ସିଦ୍ଧାନ୍ତକୁ ପ୍ରଭାବିତ କରିଥିଲା ସେମାନେ ହେଉଛନ୍ତି ଭାର୍‌ନାର ଭଁ ହେଇଡେନ୍‌ଷ୍ଟାମ୍, ଯିଏକି ତିନି ବର୍ଷ ପରେ ନିଜେ ନୋବେଲ ପାଇଥିଲେ । ଆଉ ଜଣେ ନୋବେଲ୍ କମିଟିର ସଭ୍ୟ ଓ ସଂପାଦକ ପାର ହଲଷ୍ଟ୍ରମ୍ । କମିଟି ସମକ୍ଷରେ ଯେଉଁ ବିବରଣୀ ଉପସ୍ଥାପନା କରିଥିଲେ ସେଥିରେ ହଲଷ୍ଟ୍ରମ୍ ଲେଖିଥିଲେ ''ଏ ଯାବତ୍ ୟୁରୋପୀୟ କବିତାରେ ଆମେ କବିତାରୁ ଯାହା ପାଇଛୁ ଏହା ତା' ଠାରୁ ଅଧିକ ଆକର୍ଷଣୀୟ । ଏହାର ବୈଶିଷ୍ଟ୍ୟ ନିଃସନ୍ଦେହ ଭାବରେ ସଂପୂର୍ଣ୍ଣ ଭିନ୍ନ । ଯେଉଁ ଜଗତରୁ ଏହାର ଉଦ୍‌ଭବ ତାହା ଆମର ଏତେ ଅଜଣା ଯେ, ଅଧିକ ଗବେଷଣା ଓ ତଥ୍ୟପ୍ରମାଣ ନ ଥାଇ ଏହା ବିଷୟରେ କିଛି କହିବା ସହଜ ନୁହେଁ । ବିଶୁଦ୍ଧ ଧର୍ମୀୟ କବିତାକୁ ଆମର ଏଇ ପୁରସ୍କାର ସହିତ ସଂଯୁକ୍ତ କରିବା ନୀତିବିରୁଦ୍ଧ । ଏଇ ପୁରସ୍କାର ଯେମିତି ଡେଭିଡ୍‌ଙ୍କ ସ୍ତୋତ୍ର ବା ସେଣ୍ଟଫ୍ରାନ୍‌ସିସ୍‌ଙ୍କ ସଂଗୀତକୁ ପୁରସ୍କାର ଦେବାପରି ହେବା ।''

''ଯଦି କୌଣସି ଆଧୁନିକ ୟୁରୋପୀୟ କବିତାକୁ ଏହିଭଳି ତୁଳନା କରାଯାଇଥାନ୍ତା ତାହା ହାସ୍ୟାସ୍ପଦ ହୋଇଥାନ୍ତା । କିନ୍ତୁ 'ଗୀତାଞ୍ଜଳି' ବିଷୟରେ ଏ କଥା କହିଲା ବେଳେ ତାହା ଅବାନ୍ତର ମନେ ହେବନାହିଁ । ଏଥିରେ ଯେ ଅନନ୍ୟ ସାଧାରଣ କାବ୍ୟସୌନ୍ଦର୍ଯ୍ୟ ରହିଛି ତାକୁ କେବେ ଅସ୍ୱୀକାର କରାଯାଇ ନ ପାରେ । ଏଥିରେ ରହିଛି ଚିରାୟତ ସାହିତ୍ୟର ସହଜ ପ୍ରକାଶ ଭଙ୍ଗୀ । ଏହାର ରୂପଚିତ୍ରରେ ରହିଛି ଭାଷା ଓ ଭାବର ସ୍ୱତଃସ୍ଫୁର୍ତ୍ତତା, କବିଙ୍କର ଏସବୁ ଆୟାସଲବ୍‌ଧ କାରିଗରୀ ନୁହେଁ, କେବଳ ଶବ୍ଦମାତ୍ର ଉଚ୍ଚାରଣ କରି ସେ ତାଙ୍କର ଭାବକୁ ସଂପୂର୍ଣ୍ଣ ପ୍ରକାଶ କରିପାରିଛନ୍ତି । ଠିକ୍ ଯେମିତି ଗ୍ୟେଟେଙ୍କ କବିତାରେ ସେଇ ବ୍ରାହ୍ମଣନାରୀ ଯେ ପ୍ରବାହିତ ସ୍ରୋତସ୍ୱିନୀର ଜଳରୁ ଆଂଜୁଳାଏ ତୋଳିନେବା ସଙ୍ଗେ ସଙ୍ଗେ ତାହା ତାଙ୍କ ହାତରେ କଠିନ ହୋଇ ଆକାର ନେଇଥିଲା । ସବୁ ଇଂରାଜୀ ସମୀକ୍ଷକମାନେ ଏଥିରେ ଦେଖିଛନ୍ତି ଏକ ଯୁଗାନ୍ତକାରୀ ସୃଷ୍ଟି । ଏଥିରୁ କେବଳ ପ୍ରାଚ୍ୟଜୀବନ ଧାରାକୁ ଯେ ବୁଝି ହୁଏ ତାହା ନୁହେଁ । ୟୁରୋପୀୟ ଶିଳ୍ପଚେତନାରେ ଏହାର ସମ୍ଭାବ୍ୟ ପ୍ରଭାବକୁ ମଧ୍ୟ ଧାରଣା କରିହୁଏ । ଆଧୁନିକ କବିତାରେ ଶ୍ରେଷ୍ଠତ୍ୱର ତୁଳନାପାଇଁ ଆମେ ସାଧାରଣତଃ ଗ୍ୟେଟେଙ୍କ ପାଖକୁ ଯାଉ । କିନ୍ତୁ ମୁଁ ଏଇ ଦୁଇଜଣଙ୍କ ବ୍ୟକ୍ତିତ୍ୱରେ କୌଣସି ସାଧାରଣତ୍ୱ ଦେଖୁନାହିଁ । ଆମେ ଶୁଣିଛୁ ରବୀନ୍ଦ୍ରନାଥଙ୍କ ଦେଶବାସୀ ମନେ କରନ୍ତି, ତାଙ୍କର ଆବିର୍ଭାବ ଦ୍ୱାରା ସାହିତ୍ୟରେ ଏକ ଶ୍ରେଷ୍ଠ ଯୁଗର ଆବିର୍ଭାବ ଘଟିଛି । କୌଣସି ପୂର୍ବ ଧାରଣା ବ୍ୟତିରେକେ ଏଇ ଅନୁବାଦ କବିତା ପଢ଼ି ମୁଁ ଯେଉଁ ମତ ଦେଇଛି ସେଥିରେ

କିଛି ଅତିଂରଞ୍ଜନ ନାହିଁ । ତେବେ ଏକଥା ନିଶ୍ଚିତ ଯେ 1832 ଖ୍ରୀଷ୍ଟାବ୍ଦରେ ଗ୍ୟେଟେଙ୍କର ମୃତ୍ୟୁ ହେବାପରଠାରୁ ଅପ୍ରଭାବିତ ମହତ୍ୱ ଓ ଚିରାୟତ ସ୍ଥୈର୍ଯ୍ୟ ଦିଗରୁ କୌଣସି ମହତ୍ ବ୍ୟକ୍ତି ଟାଗୋରଙ୍କ ପ୍ରତିଦ୍ୱନ୍ଦୀ ହୋଇ ନ ପାରନ୍ତି ।''

ଏକ ଦିଗରେ ବଙ୍ଗଳାର ବିଷୁବୀୟ ନିମ୍ନଭୂମି ଓ ଅନ୍ୟଦିଗରେ ସ୍କାଣ୍ଡିନେଭିଆର ବରଫାଚ୍ଛାଦିତ ମାଳଭୂମି - ଯେମିତି ପ୍ରାକୃତିକ ଜଳବାୟୁ ସେମିତି ସାମାଜିକ ପରିମଣ୍ଡଳ- ଦୁଇ ଭୂମିଖଣ୍ଡ ସଂପୂର୍ଣ୍ଣ ଭିନ୍ନ । ସ୍ୱଦେଶପ୍ରେମୀ, ରାଜନୈତିକ ଓ ଧର୍ମପ୍ରଚାରକମାନେ ଯେତେ ଭେଦ ପ୍ରାଚୀର ତୋଳନ୍ତୁନା କାହିଁକି ରବୀନ୍ଦ୍ରନାଥଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ ସାରା ମାନବ ଜାତିର ବୁକୁରେ ଗୋଟିଏ ହୃଦୟ ସ୍ପନ୍ଦିତ ହୁଏ । ଏଇ ବିପୁଳ ବିଭେଦ ସତ୍ୱେ ଗାଙ୍ଗେୟ ତ୍ରିକୋଣ ଭୂମିରେ ଲିଖିତ କବିତା ସ୍କାଣ୍ଡିନେଭିଆର ହୃଦୟକୁ ଗଭୀର ଭାବରେ ଆଲୋଡିତ କରିବା ମୂଳରେ 'ଗୀତାଞ୍ଜଳି'ର ସାର୍ବଭୌମିକ ଗୁଣ ଯେ କେବଳ ନିହିତ ଥିଲା ତା' ନୁହେଁ, ନୋବେଲ ପ୍ରାପ୍ତିରେ ଏଇ ବିଶ୍ୱାସର ସତ୍ୟତା ପ୍ରମାଣିତ ହୋଇଥିଲା ।

ଆଇସ୍‌ଲ୍ୟାଣ୍ଡର ଅଜ୍ଞାତ ପଲ୍ଲୀର ପନ୍ଦର ବର୍ଷର ବାଳକ ଉପରେ ଏଇ କବିତାର ପ୍ରଭାବ ଯେ କେତେ ଗଭୀର ଥିଲା ତାହା ବର୍ଣ୍ଣନାତୀତ । ସେଇ ବାଳକ ଜଣକ ଅନେକ ପରେ ଜଣେ ଖ୍ୟାତିମାନ ଔପନ୍ୟାସିକ ଭାବରେ ନୋବେଲ ପୁରସ୍କାର ଲାଭ କରିଥିଲେ । ସେ ହେଉଛନ୍ତି ହଲଡର ଲାକସନେସ୍ । ରବୀନ୍ଦ୍ର କବିତାର ପ୍ରଭାବ ପ୍ରସଙ୍ଗରେ ସ୍ମୃତିଚାରଣ କରିବାକୁ ଯାଇ ସେ ଲେଖିଥିଲେ ''ମୋର ତରୁଣ ଆତ୍ମାର ଶ୍ରୁତିରେ ଅକସ୍ମାତ୍ ଆସି ବାଜିଥିଲା ଏଇ ଅଦ୍ଭୁତ ଦୂରାଗତ କୋମଳ ସ୍ୱର । ସେଇ ଦିନଠାରୁ ସମୟ ସମୟରେ ମୋର ମନର ଗଭୀରତମ କୋଷରେ ଏହାର ଉପସ୍ଥିତି ଅନୁଭବ କରେ । କେତେ ପ୍ରିୟ ସେ ଦେବତା, ସେଇ ରବୀନ୍ଦ୍ରନାଥଙ୍କ ଦେବତା, ସେଇ ପରମ ବନ୍ଧୁ, ସେଇ ପ୍ରିୟତମ, ସେଇ ପ୍ରସ୍ଫୁଟିତ ପଦ୍ମ, ସେଇ ଅଜ୍ଞାତ ବ୍ୟକ୍ତି, ସେ ସୁଦୂରକୁ ଭାସି ଯାଉଥିବା ନୌକାରେ ବସି ବଂଶୀବାଦନ କରୁଛନ୍ତି । ଆମ ପାଶ୍ଚାତ୍ୟ ଦେଶର ଦେବତା ହେଉଛନ୍ତି ଆବିଶ୍ୱ ପ୍ରସାରିତ ବ୍ୟବସାୟ ଫାର୍ମର ନିର୍ଦ୍ଦେଶକ ଅଥବା ଶିଶୁସୁଲଭ ମନର ଖେଳସାଥୀ, କି ଏକ ଆଦିମ ମଣିଷ । ଉପସ୍ଥିତ ବିପଦ ସମ୍ମୁଖରେ ବା ମୃତ୍ୟୁର ମୁହୂର୍ତ୍ତରେ ତାଙ୍କୁ ପାଇବା ପାଇଁ ଆମେ ବ୍ୟାକୁଳ ହୋଇଉଠୁ । ସମ୍ଭବତଃ ଟାଗୋରଙ୍କ ଆଧ୍ୟାତ୍ମିକ ବାସ୍ତବତା ପାଶ୍ଚାତ୍ୟମାନସରେ ପ୍ରାଚ୍ୟର ଏକ ବିସ୍ମୟ ହୋଇରହିବ ଯୁଗ ଯୁଗ ଧରି ।''

# ଦେଶ ଓ ବିଶ୍ୱ

*ତୁମକୁ ଜାଣିବାପରେ କେହି ଆଉ ଅଚିହ୍ନା ନୁହନ୍ତି*
*ଆଉ କେଉଁ ଦ୍ୱାର ମଧ୍ୟ ରହେ ନାହିଁ ରୁଦ୍ଧ ।*

ପାଶ୍ଚାତ୍ୟରେ ଏଇ ଦୀର୍ଘ ଭ୍ରମଣ ରବୀନ୍ଦ୍ରନାଥଙ୍କ ଉଦାର ହୃଦୟକୁ ଆହୁରି ବିପୁଳ କରିଦେଇଥିଲା ଓ ମହାନତାର ଆହରଣ ଦିଗରେ ପାଶ୍ଚାତ୍ୟ ମନର ବୌଦ୍ଧିକ ଓ ଆଧ୍ୟାତ୍ମିକ ଆବେଗକୁ ଗଭୀର ଭାବରେ ବୁଝିବାର ଅବକାଶ ଦେଇଥିଲା । ବର୍ତ୍ତମାନ ଠାରୁ ସେ ଯେତିକି ସ୍ୱଦେଶର ସେତିକି ସମଗ୍ର ବିଶ୍ୱର ହୋଇଯାଇଥିଲେ । କେବଳ ବିଶ୍ୱପ୍ରସିଦ୍ଧ ହୋଇଥିବାରୁ ନୁହେଁ ବିଶ୍ୱ ସହିତ ଏକାତ୍ମ ହୋଇଥିବାରୁ ଏ ପ୍ରତ୍ୟୟ ତାଙ୍କର ଆସୁଥିଲା । କେତେକ ବିଶ୍ୱ ପ୍ରସିଦ୍ଧ ବ୍ୟକ୍ତି ମହାପୁରୁଷ ହୁଅନ୍ତି ପୁଣି ଆଉ କେତେକ ଥାଆନ୍ତି ଯେଉଁମାନେ ଆପଣାର ଇଲାକା ଛଡା ବାହାରକୁ ଦେଖିପାରନ୍ତି ନାହିଁ । କିନ୍ତୁ ରବୀନ୍ଦ୍ରନାଥ ବିଶ୍ୱର ଭାଗ୍ୟକୁ ଆପଣା ପ୍ରାଣରେ ଅନୁଭବ କରୁଥିଲେ । ପୃଥିବୀର ଯେ କୌଣସି ପ୍ରାନ୍ତରେ କେଉଁଠି କେବେ ଦୁଃଖ, ଶୋକ ବା ଅନ୍ୟାୟ ଅନାଚାର ହେଲେ ଗଭୀର ଭାବେ ମ୍ରିୟମାଣ ହୋଇ ପଡୁଥିଲେ । ଏଇ ବିଶ୍ୱ ଚେତନା ତାଙ୍କ ଭିତରେ ବାସ୍ତବରେ ଥିଲା ଓ ଏଥିପାଇଁ ସେ ନିଜ ଦେଶରେ କମ୍ ଭୁଲ ବୁଝାମଣାର ଶିକାର ହୋଇ ନଥିଲେ ।

କବିଙ୍କର ଅନେକ ବିଦେଶୀ ବନ୍ଧୁଙ୍କ ମଧ୍ୟରେ ଯେଉଁ ଦୁଇଜଣ ଏଇ ସମୟରେ ତାଙ୍କ ସହିତ ଓ ତାଙ୍କର ଶାନ୍ତିନିକେତନ କାର୍ଯ୍ୟାବଳୀ ସହିତ ନିବିଡ ଭାବରେ ସଂଶ୍ଳିଷ୍ଟ ହୋଇଥିଲେ, ସେମାନେ ହେଲେ ଦୁଇ ବିଖ୍ୟାତ ଇଂରେଜ ସି.ଏଫ୍ ଆଣ୍ଡ୍ରୁସ ଓ ଡବ୍ଲ୍ୟୁ. ଡବ୍ଲ୍ୟୁ. ପିଆରସନ୍ । ଉଭୟଙ୍କ ଭିତରେ ମିଶନାରୀ ପ୍ରବଣତା ଅପେକ୍ଷା ଖ୍ରୀଷ୍ଟିୟାନ୍ ଭାବ ଅଧିକ ଥିଲା । ତେଣୁ ନିଜ ନିଜର ଅନୁଷ୍ଠାନରୁ ଚାଲିଆସି ସେମାନେ ବୁଝିଥିବା ଖ୍ରୀଷ୍ଟୀୟ ଆଦର୍ଶରେ ଜନହିତ କରିବାର ସ୍ୱାଧୀନତା ଚାହୁଁଥିଲେ । ସେ ଦୁହେଁ ରବୀନ୍ଦ୍ରନାଥଙ୍କ ସହଯୋଗୀ ହେଲେ ଓ ଆଜୀବନ ବଂଧୁ ପାଲଟି ଗଲେ ।

ଗାନ୍ଧିଜୀ ସେତେବେଳେ ମହାତ୍ମା ହୋଇନଥାନ୍ତି କି ନିଜ ଦେଶରେ ମଧ୍ୟ ବେଶୀ ଜଣାଶୁଣା ହୋଇନଥାନ୍ତି । ସେ ଦକ୍ଷିଣ ଆଫ୍ରିକାରେ ବର୍ଣ୍ଣ ବୈଷମ୍ୟ ନୀତି ବିରୁଦ୍ଧରେ ଏକୁଟିଆ ହେଲେ ବି ବୀରତ୍ୱପୂର୍ଣ୍ଣ ସଂଗ୍ରାମ ଚଳାଇ ଥାଆନ୍ତି । କବି ଭାବରେ ଦିବ୍ୟ ଦୃଷ୍ଟି ଘେନି ରବୀନ୍ଦ୍ରନାଥ ମହାତ୍ମାଙ୍କର ଆବିର୍ଭାବକୁ ଲକ୍ଷ୍ୟ କରିଥିଲେ ଓ ନିଜର ନାଟକ ଓ କବିତାରେ ତାର ସୂଚନା ଦେଇଥିଲେ । ତାଙ୍କ ଭିତରେ ଏଇ ପ୍ରତ୍ୟାଶା ବହୁ ପୂର୍ବରୁ ଥିଲା । ତେଣୁ ନଭେମ୍ବର 1913ରେ ଯେତେବେଳେ ଆଣ୍ଡ୍ରୁସ୍ ଓ ପିଆରସନ୍ ତାଙ୍କ ପାଖରୁ ବିଦାୟ ନେଇ ଦକ୍ଷିଣ ଆଫ୍ରିକାରେ ବର୍ଣ୍ଣବୈଷମ୍ୟ ବିରୋଧୀ

ଆନ୍ଦୋଳନରେ ସାମିଲ ହବାକୁ ଗଲେ ସେତେବେଳେ ସେମାନେ ଗାନ୍ଧିଜୀଙ୍କର ସଫଳତା ପାଇଁ କବିଙ୍କର ଅଶେଷ ଶୁଭକାମନା ନେଇ ଯାଇଥିଲେ । ଆଣ୍ଡ୍ରୁସ୍ ଏଇ କଥାକୁ ମନେ ପକାଇ ଲେଖିଛନ୍ତି ''ଆଉ ମୁହୂର୍ତ୍ତେ ମୋତେ ରହିବାକୁ ଦିଅ, ପ୍ରଥମେ ଯେତେବେଳେ ପିଆରସନ୍ ଓ ମୁଁ ଶାନ୍ତିନିକେତନ ଛାଡି ଦକ୍ଷିଣ ଆଫ୍ରିକାରେ ପହଞ୍ଚି ଥାଉ, ଆମର କଥାଭାଷାରେ କବି ଓ ତାଙ୍କ ଆଶ୍ରମର ଅଭିନବ ଆଧ୍ୟାତ୍ମିକ ଦୃଷ୍ଟି ଉଦ୍‌ଭାସିତ ହୋଇ ଉଠୁଥାଏ । ଏଥିରୁ ପ୍ରଥମ କରି ଆମର ସାଧାରଣ ଉତ୍ସାହ ତାଙ୍କ ପ୍ରତି ଭକ୍ତି ଓ ନିଷ୍ଠା ଜାଗ୍ରତ କରିଥାଏ । ତାରି ଆଲୋକରେ ଆମର ସମଗ୍ର ସତ୍ତା ବର୍ଣ୍ଣିଳ ହୋଇ ଉଠୁଥାଏ । ତାଙ୍କ କଥା କହିଲା ବେଳେ ଆକାଶ ବେଶୀ ଗୌରବପୂର୍ଣ୍ଣ ମନେ ହେଉଥାଏ ଓ ଆମର ଭାବନାକୁ ସାକାର କରୁଥାଏ । ଠିକ୍ ଏତିକି ବେଳେ ଏକ ସ୍ମରଣୀୟ ମୁହୂର୍ତ୍ତରେ ମହାତ୍ମା ଗାନ୍ଧିଙ୍କ ସହ ଆମ ଦୁହିଁଙ୍କର ନୂତନ ବଂଧୁତା ଆରମ୍ଭ ହେଲା । ଏଇ ଦୁଇ ବଂଧୁତା ନିବିଡ ଓ ସୂକ୍ଷ୍ମ ଭାବରେ ଏକାତ୍ମ ହୋଇଉଠିଲା । ପ୍ରାୟ ନିର୍ଜନ ଅନ୍ଧାର ରାତିରେ ତାରକା ମଣ୍ଡଳ ତଳେ ବସି ଆମେ ନିଜ ଭିତରେ ଗପିଛୁ କିପରି ଅନେକ ମନୋରମ ସଂଧ୍ୟା ଆମେ ଶାନ୍ତିନିକେତନରେ ଗୁରୁଦେବଙ୍କ ସହ ତାଙ୍କର ସେଇ କୁଟୀର ସମ୍ମୁଖ ଅଗଣାରେ ବସି କଟାଇଥିଲୁ । ସେତେବେଳର ସେଇ ସ୍ମରଣୀୟ ମୁହୂର୍ତ୍ତରେ ମହାତ୍ମା ଗଭୀର ଆନ୍ତରିକତାର ସହିତ କବିଙ୍କ ପ୍ରତି ଆମ ହୃଦୟର ଭକ୍ତି ଓ ଏକାଗ୍ରତାକୁ ହୃଦୟଙ୍ଗମ କରିଥିଲେ । କବିଙ୍କ ସହିତ ସାକ୍ଷାତ୍ କରିବା ପାଇଁ ତାଙ୍କର ଯେଉଁ ଉଦଗ୍ର ଅଭିଳାଷ ଥିଲା ତାହା ସେ ବାରମ୍ବାର ଆମ ଆଗରେ ପ୍ରକାଶ କରୁଥିଲେ । ଏହିପରି ଭାବରେ ଆମେ ସମସ୍ତେ ଗୋଟିଏ ମମତାମୟ ବୃତ୍ତ ଭିତରେ ରହିଥିଲୁ ।''

1913 ଡିସେମ୍ବର 26 ତାରିଖରେ କଲିକତା ବିଶ୍ୱବିଦ୍ୟାଳୟ ତରଫରୁ ଏକ ସ୍ୱତନ୍ତ୍ର ସମାବର୍ତ୍ତନ ଉତ୍ସବରେ କବିଙ୍କୁ ସମ୍ମାନ ସୂଚକ ଡ଼କ୍ଟରେଟ୍ ଉପାଧି ପ୍ରଦାନ କରାଯାଇଥିଲା । ଏଇ ବର୍ଷଟି ଥିଲା କବିଙ୍କ ପାଇଁ ଘଟଣା ବହୁଳ ଓ ଚମକପ୍ରଦ, ସମ୍ମାନ ଓ ପୁରସ୍କାରରେ ଭରା, କିନ୍ତୁ ସର୍ଜନାତ୍ମକ ଦିଗରୁ ନୈରାଶ୍ୟପୂର୍ଣ୍ଣ । ସେଇ ଦଶନ୍ଧିର ଏହା ଥିଲା ଏକମାତ୍ର ବର୍ଷ, ଯେଉଁବର୍ଷ ଭିତରେ କବିଙ୍କର ବଙ୍ଗଳା ଭାଷାରେ ଗୋଟିଏ ହେଲେ ନୂଆ ବହି ପ୍ରକାଶ ପାଇ ନଥିଲା । ଯେଉଁ ତିନୋଟି ବହି ଲଣ୍ଡନରେ ପ୍ରକାଶ ପାଇଥିଲା ସେ ସବୁ ତାଙ୍କ ଗ୍ରନ୍ଥର ଅନୁବାଦ : ଦି ଗାର୍ଡନର୍, ଦି କ୍ରିସେଣ୍ଟମୁନ୍ ଓ ଚିତ୍ରା । କିନ୍ତୁ ଏଇ ବର୍ଷ ମଧ୍ୟରେ ସେ ବିଦେଶ ଭ୍ରମଣରେ ଗଲାବେଳେ ଓ ଦେଶରେ ଥିଲାବେଳେ ବହୁ ଗୀତି ରଚନା କରିଥିଲେ । ଆମେରିକାରେ ରଚିତ ସେତେବେଳର ଏକମାତ୍ର କବିତା ତାର ନୂତନ କିଣାବିକାର ରୂପକ ବ୍ୟବହାର ପାଇଁ ପ୍ରଣିଧାନଯୋଗ୍ୟ । କବି କଳ୍ପନା କରୁଛନ୍ତି ଯେ ପଣ୍ୟ ଦ୍ରବ୍ୟର ଭାର ଘେନି ସେ ଘୁରିବୁଲୁଛନ୍ତି । ଜୋର୍‌କରି ସେ ସବୁ ନେଇ ଯିବା ପାଇଁ ରାଜା ଭୟ ଦେଖାଉଛନ୍ତି । ବୃଦ୍ଧ ଲକ୍ଷପତି ବଣିକ ସେଗୁଡିକୁ ସ୍ୱର୍ଣ୍ଣ ଦେଇ କିଣିବାକୁ ଚାହୁଁଛି । ସୁନ୍ଦରୀ ଜଣେ ସ୍ମିତ ହାସ୍ୟରେଖାରେ ତାଙ୍କୁ ଆକର୍ଷିତ କରିଛି କିନ୍ତୁ ବୋଝ ଠିକ୍ ସେହିପରି ରହିଯାଇଛି ଯେତେବେଳେ ଶାମୁକା ନେଇ ଖେଳୁଥିବା ପିଲାଟିଏ ତାଙ୍କୁ କୁଣ୍ଢେଇ ଧରି କହିଛି, ଏଗୁଡିକ ସବୁ ମୋର, ସେତେବେଳେ ଯାଇ ଭାର ଓହ୍ଲେଇ ଯାଇଛି । ବିନା ମୂଲ୍ୟରେ ସବୁ ଜିନିଷ ପିଲାଟିକୁ ସେ ଦେଇଛନ୍ତି ଆନନ୍ଦ ମନରେ ଖେଳିବା ପାଇଁ ।

ଏହିପରି ଶବ୍ଦ ଓ ସଂଗୀତ ଭରା ଯେଉଁ ସବୁ କବିତା ସେ ରଚନା କରୁଥିଲେ ତାହା 'ଗୀତିମାଲ୍ୟ' ଓ 'ଗୀତାଳି' ନାମରେ 1914ରେ ପ୍ରକାଶ ପାଇଲା । ଏଗୁଡିକ ତାଙ୍କର ଏଯାବତ୍ ରଚିତ ଗୀତ ଓ କବିତା ମଧ୍ୟରେ ଅନନ୍ୟ ଥିଲା ଓ 'ଗୀତାଞ୍ଜଳି'ର ଆଧ୍ୟାତ୍ମିକ ଭାବ ବହନ କରିଥିଲା ।

ସେଇ ଭାବ କିନ୍ତୁ ପରିବର୍ତ୍ତିତ ହୋଇଯାଇଥିଲା, କ୍ରମଶଃ ତାଙ୍କ ଭିତରେ ଆତ୍ମ ପ୍ରତ୍ୟୟ ଦୃଢ଼ ହୋଇ ଆସୁଥିଲା, ମନୁଷ୍ୟର ଭାଗ୍ୟ ବିଷୟରେ ତାଙ୍କର ଆସ୍ଥା ବଳିଷ୍ଠ ହୋଇ ଉଠୁଥିଲା ଓ ଜୀବନ ଓ ତା'ର ଦାୟିତ୍ୱବୋଧ ତାଙ୍କ ପାଖରେ ଅଧିକ ଆନନ୍ଦମୟ ମନେ ହେଉଥିଲା । ଗୋଟିଏ କବିତାରେ କବି ଯେପରି ଲେଖିଛନ୍ତି ଜୀବନରେ ସୁଖର ଗୋଲାପଟିଏ ପ୍ରସ୍ଫୁଟିତ ହେଲେହିଁ ସବୁ ଦୁଃଖର କଣ୍ଟା ଅର୍ଥବହ ହୋଇ ଉଠିବ । ଗୋଟିଏ ଅର୍ଥରେ ରବୀନ୍ଦ୍ରନାଥଙ୍କ ସଂଗୀତ ଗୁଡିକ ହିଁ ତାଙ୍କର ଜନସମାଜକୁ ସର୍ବଶ୍ରେଷ୍ଠ ଅବଦାନ । ଏଥିରେ ଜୀବନର ଅଶେଷ ବିଚିତ୍ର ଭାବ ଓ ଅନୁଭବ ଅତିସୂକ୍ଷ୍ମ ଓ ନିପୁଣ ଭାବରେ ପ୍ରକାଶ ପାଇଛି । ଏହା ଶିକ୍ଷିତ, ଅଶିକ୍ଷିତ, ତରୁଣ, ବୃଦ୍ଧ- ସମସ୍ତଙ୍କୁ ଆମୋଦିତ କରେ । ଏଥିରେ ସଂଯୋଜିତ ଶବ୍ଦ , ଛନ୍ଦ ଓ ପ୍ରତୀକ ଏକାନ୍ତ ସରଳ ଓ ସ୍ୱତଃସ୍ଫୂର୍ତ୍ତ । ମନେ ହୁଏ ଏହା ଯେପରି ହୋଇଛି ତାଠୁଁ ଭିନ୍ନ କିଛି ହୋଇ ନପାରେ । ପ୍ରକୃତ ଅର୍ଥରେ ତାହା ତାଙ୍କର ଅନ୍ତରର ଅନ୍ତରଂଗ ଅଞ୍ଜଳି । ସାଂସ୍କୃତିକ ଅବଚେତନର ଗଭୀର ପ୍ରଦେଶରୁ ନିର୍ଗତ ରଚନାର ଆବେଦନ ସାର୍ବଜନୀନ । ପରିଣତ ବୟସରେ ସେ ପ୍ରାୟ କହୁଥିଲେ ତାଙ୍କର ଅନ୍ୟସବୁ କୃତିକୁ ଭୁଲିଗଲେ ବି ଲୋକଙ୍କ ଭିତରେ ତାଙ୍କ ପ୍ରିୟ ଗୀତଗୁଡ଼ିକ ଗାନ କରାଯାଉଥିବ ।

ଥରେ ଶାନ୍ତିନିକେତନର ଜଣେ ନବାଗତ ତରୁଣ ଶିକ୍ଷକ ଅତି କଠୋର ଭାବରେ କବିଙ୍କୁ ପ୍ରଶ୍ନ କଲେ ''ଆପଣ ଭଗବାନଙ୍କ ବିଷୟରେ ଅନେକ କଥା କହନ୍ତି, ସେଥିରୁ କେତେକାଂଶ ପ୍ରତ୍ୟକ୍ଷ ଜ୍ଞାନରୁ ଆସିଥାଏ ? ମୁହୂର୍ତ୍ତେ ନୀରବ ରହି କବି ଧୀରେ ଉତ୍ତର ଦେଲେ ''ସତ କହିବାକୁ ଗଲେ ବେଳେବେଳେ ମୁଁ ତାଙ୍କର ଉପସ୍ଥିତି ଅନୁଭବ କରିଛି- ଅନ୍ୟସବୁ ମୁହୂର୍ତ୍ତ ଅପେକ୍ଷା ବେଶୀ ଯେତେବେଳେ ମୁଁ କୌଣସି ଗୋଟିଏ ନୂଆ ସଂଗୀତର ଆବେଶରେ ଆପ୍ଲୁତ ହୋଇ ଉଠୁଥାଏ ସେତେବେଳେ ଅତି ଗଭୀର ଓ ଅନ୍ତରଂଗ ଭାବେ ମୁଁ ତାଙ୍କୁ ଅନୁଭବ କରେ ।'' ଏ କଥା ପୁଣି ସେ ଗୋଟିଏ ଗୀତରେ କହିଛନ୍ତି । ''ମୋ ସଂଗୀତ ତୁମ ପଦ ସ୍ପର୍ଶ କରେ, ତୁମେ ଅପର କୂଳରେ ଠିଆ ହୋଇଅଛ, ମତେ କିନ୍ତୁ ସର୍ବଦା ଛଳନା କରି ଲୁଚିଯାଉଅଛ ।''

ଏଇ ଗୀତ ଗୁଡିକ ମଧ୍ୟରୁ ଅନେକରେ ତାଙ୍କର ସେ ସମୟର ମାନସିକ ସଙ୍କଟ ଓ ଅସ୍ଥିର ଭାବର ପ୍ରତିଫଳନ ଦେଖିବାକୁ ମିଳେ କେଉଁଠି ଆନନ୍ଦର ଉଲ୍ଲାସ ତ କେଉଁଠି ଅର୍ଥହୀନ ଅମଙ୍ଗଳବୋଧ । ସେ ସର୍ବଦା ମନେ କରୁଥିଲେ ଯେ ଇଶ୍ୱର ଚାହାନ୍ତି ଯେପରିକି ସେ ଏଇ ମର୍ତ୍ତ୍ୟକୁ ଭଲପାଆନ୍ତୁ । ''ଯଦି ଏଇ ହୃଦୟ ପ୍ରୀତିଭରା ନୁହେଁ ତା' ହେଲେ କାହିଁକି ପ୍ରଭୁ ଏଇ ପ୍ରଭାତ ଆକାଶକୁ ଏପରି ସଂଗୀତରେ ଭରି ଦେଇଛ ? କାହିଁକି ଆକାଶରେ ତାରାର ବିସ୍ମୟ, କାହିଁକି ଏ ଧରାରେ ପ୍ରସ୍ଫୁଟିତ ପୁଷ୍ପର ପ୍ରାଚୁର୍ଯ୍ୟ, କାହିଁକି ସମୀରଣରେ ଏତେ ଗୁଞ୍ଜରଣ ?'' ସେ ବୁଝିଥିଲେ ଯେ ନାନା କର୍ମଜଞ୍ଜାଳରେ ସେ ଜଡିତ ହୋଇ ଯାଇଛନ୍ତି ସେଥିପାଇଁ କ୍ଷୋଭଭରା କଣ୍ଠରେ ପଚାରନ୍ତି ''ଯଦି କର୍ମ ଜାଲରେ ବାନ୍ଧିଦବାକୁ ତୁମେ ଚାହଁ ତେବେ ଏ ଅପୁରନ୍ତ ସୌନ୍ଦର୍ଯ୍ୟରେ କାହିଁକି ମୋତେ ଏପରି ହତବୁଦ୍ଧି କର ?''

ନିଜର ଭବିଷ୍ୟତ ପ୍ରତି ସେ କେବେ ନିଶ୍ଚିତ ନ ଥିଲେ । ''ଏକାକୀ ମୁଁ ନିର୍ଜନ ପଥ ଅତିକ୍ରମ କରୁଥିବା ବେଳେ ଆଲୁଅ ଲିଭିଯାଇଥିଲା । ସହସା ଝଡ ଆସି ଅନ୍ଧକାର ଆଡକୁ ମତେ ବାଟ କଢ଼ାଉଥିଲା । ଝଡ ହିଁ ଏବେ ମୋର ଏକମାତ୍ର ସଙ୍ଗୀ । ମୋର ପରିଚିତ ପଥ ମୁଁ ହରାଇ ବସିଥିଲି, ଝୁଣ୍ଟି ପଡିଥିଲି, ଜାଣି ପାରୁନଥିଲି କେବେ କେଉଁଠି ଏ ଘନ ଅନ୍ଧକାର ରାତି ପାହି ପ୍ରଭାତ ଆସିବ ।'' ଶାନ୍ତ ଭାବରେ ସେ ସମସ୍ୟାର ସମ୍ମୁଖୀନ ହେଉଥିଲେ । କଷଣ ସହିବାକୁ

ସେ ଭୟ କରୁନଥିଲେ । ''ଯଦି ଦୁଃଖଠାରୁ ତୁମେ ଦୂରେଇ ଯିବ ତା ହେଲେ ଦୁଃଖକୁ କିପରି ଜୟ କରିବ ? ବିଷ ତାର ନିଜ ଜ୍ୱାଳାରେ ପୋଡି ଯିବା ଉଚିତ । ନିଆଁକୁ କେବେ ଡର ନାହିଁ କାରଣ ସେ ନିଜେ ହିଁ ନିଜକୁ ଜାଳି ଯେତେବେଳେ ପାଉଁଶ କରିଦିଏ ସେତେବେଳେ ଆଉ ଜଳିବା ପାଇଁ କିଛି ନଥାଏ ।''

ଏଇ ଶତାବ୍ଦୀର ଆରମ୍ଭରେ ଅତୀତର ସ୍ମୃତି ତାଙ୍କୁ ଯେପରି ଆବେଗ ପ୍ରବଣ କରି ରଖିଥିଲା ତା' ବେଶୀ ଦିନ ରହିଲା ନାହିଁ, ଜୀବନର ଅଗ୍ରଗତି ପାଇଁ ତାଙ୍କର ଦୃଢ଼ ଆତ୍ମ ପ୍ରତ୍ୟୟ ଜନ୍ମ ନେଲା । ମୁକ୍ତମନା ଭାବରେ ଚିନ୍ତାର ଆଦାନ ପ୍ରଦାନ ତାଙ୍କର ସୃଷ୍ଟିଶୀଳ ଚେତନାକୁ ପୁଣି ଉଜ୍ଜୀବିତ କରୁଥିଲା । 1914 ମେ ପହିଲାରେ ସ୍ଟାର୍ଜ ମୁର୍‌ଙ୍କ ପାଖକୁ ଲେଖା ତାଙ୍କର ଏକ ପତ୍ରରେ ଏଇ କଥାର ସୂଚନା ମିଳେ । ''ଗୋଟିଏ ଦେଶର ସାହିତ୍ୟ କେବଳ ତା'ର ଆଭ୍ୟନ୍ତରୀଣ ପଣ୍ୟବସ୍ତୁ ନୁହେଁ, ଯେଉଁଠି ବିଦେଶୀ ଭାବରେ ପରିଚିତ ସେଠି ହିଁ ଏହାର ପ୍ରୟୋଜନୀୟତା ଓ ଏହାର ପ୍ରକୃତ ମୂଲ୍ୟ ନିହିତ ଥାଏ । ମୁଁ ମନେ କରେ, ପାଶ୍ଚାତ୍ୟର ଏହା ଏକ ସୌଭାଗ୍ୟ ଯେ ବାଇବେଲ ମାଧ୍ୟମରେ ପ୍ରାଚ୍ୟର ଭାବନିର୍ଯ୍ୟାସକୁ ସେଠି ଗ୍ରହଣ କରାହୋଇଛି । ବିଦେଶୀ ଭାବବସ୍ତୁ ହୋଇଥିବାରୁ ଆପଣଙ୍କର ଜୀବନ ଧାରାର ସାତ୍ତ୍ୱାନ୍ତ୍ୟକୁ ଏହା ପୁଷ୍ଟ କରିଛି । ସମୟ କ୍ରମେ ହୁଏତ ଆପଣମାନେ ଏହାର କେତେକ ମତ ଓ ଉପଦେଶକୁ ଅଗ୍ରାହ୍ୟ କରି ପାରନ୍ତି, କିନ୍ତୁ ଏହା ପୂର୍ବରୁ ସେ ତା'ର କାମ କରିସାରିଛି- ଜୀବନର ପୂର୍ଣ୍ଣ ବିକାଶ ପାଇଁ ଏହା ଆପଣମାନଙ୍କ ମାନସଭୂମିରେ ଏକ ବିଶେଷତା ସୃଷ୍ଟି କରିଛି । ପାଶ୍ଚାତ୍ୟ ସାହିତ୍ୟ ଆମ ଭିତରେ ଠିକ୍ ସେହି କାର୍ଯ୍ୟ କରୁଛି । ଆମର ଜୀବନାନୁଭୂତିକୁ ରସାଣିତ କରି ସେଥିରୁ କେତେକ ଆମର ସ୍ୱଭାବକୁ ସ୍ନିଗ୍ଧ କରୁଛି ତ ଆଉ କେତେକ ବିରୋଧ କରୁଛି । ଏହାହିଁ ଆମର କାମ୍ୟ । ଏହା କେବଳ ଆମକୁ ଆମୋଦିତ ବା ବିସ୍ମିତ କରିବା ଯଥେଷ୍ଟ ନୁହେଁ । ଆମକୁ ବ୍ୟସ୍ତ, ବିବ୍ରତ ଓ ବିଘ୍ନିତ କରିବା ବି ଉଚିତ । ଏଣୁ ଆପଣଙ୍କର ସୃଷ୍ଟି ସମ୍ଭାରରେ ତୁଚ୍ଛା କଳାତ୍ମକତା ଅପେକ୍ଷା ପ୍ରାଂଜଳ ଓ ଶକ୍ତିଶାଳୀ ଗୁଣକୁ ଆମେ ବେଶୀ ଖୋଜିଥାଉ । ଏହିପରି ଭାବରେ ବିଗତ ଯୁଗର ତରୁଣମାନଙ୍କ ଉପରେ ବାଇରନ୍‌ଙ୍କର ସାଘାଂତିକ ପ୍ରଭାବ ପଡ଼ିଥିଲା । ଶେଲୀଙ୍କର ନିରର୍ଥକ ଆଦର୍ଶବାଦ ସତ୍ତ୍ୱେ ପ୍ରଗାଢ଼ ଜୀବନ ପ୍ରତ୍ୟୟରୁ ଜାତ ତାଙ୍କର ଉଗ୍ର ମତାନ୍ଧତା ଆମ ମନକୁ ଆନ୍ଦୋଳିତ କରେ । ଜଣେ ବିଦେଶୀ ଲୋକର ଦୃଷ୍ଟି ଘେନି ମୁଁ କହୁଛି । ଆପଣଙ୍କ ସାହିତ୍ୟର ବିଶୁଦ୍ଧ ଶିଳ୍ପ ବିଭବକୁ ହୁଏତ ଆମେ ଗ୍ରହଣ କରିବା ସମ୍ଭବ ହୋଇ ନପାରେ କିନ୍ତୁ ସେ ସାହିତ୍ୟରେ ଯାହା ସାର୍ବଜନୀନ ମାନବିକ ଗୁଣ ଓ ଗଭୀର ସତ୍ୟ, ତାହା ଦୀର୍ଘକାଳ ଧରି ଯେକୌଣସି ପ୍ରଦେଶକୁ ମଧ୍ୟ ସଂଚାରିତ ହୋଇ ପାରିବ । ଅତୀତର ସବୁ ଅବଶେଷକୁ ବହନ କରି ଆଣୁଥିଲେ ମଧ୍ୟ ଆମେ ଆପଣଙ୍କ ସାହିତ୍ୟ ଆଡକୁ ଆଶାଭରା ଆଖିରେ ଚାହିଁ ରହିଥାଉ କିପରି ତାହା ଆମ ପାଖକୁ ପାଶ୍ଚାତ୍ୟର ସେଇ ଉଦଗ୍ର ଜୀବନ ବନ୍ୟାର ବୈଚିତ୍ର୍ୟ ଘେନି ଆସିବ ।''

ଏଇ ସମୟରେ କବିଙ୍କର ତରୁଣ ବଂଧୁ ପ୍ରମଥନାଥ ଚୌଧୁରୀ 'ସବୁଜ ପତ୍ର' ନାମରେ ଏକ ସାହିତ୍ୟ ପତ୍ରିକା ସଂପାଦନା ଆରମ୍ଭ କଲେ । ପ୍ରମଥନାଥ ରବୀନ୍ଦ୍ରନାଥଙ୍କର ଝିଆରୀ ଇନ୍ଦିରାଙ୍କୁ ବିବାହ କରିଥିଲେ । ସବୁଜ ପତ୍ର ନାମରୁ ଏକ ନୂଆ ସାହିତ୍ୟିକ ଆନ୍ଦୋଳନର ସୂଚନା ମିଳୁଥିଲା । ପ୍ରମଥ ଚୌଧୁରୀ (ବୀରବଲ୍ ଛଦ୍ମ ନାମରେ ପରିଚିତ) ନିଜେ ଜଣେ ବିଚକ୍ଷଣ ଲେଖକ ଥିଲେ, କିନ୍ତୁ ପତ୍ରିକାଟିର ମର୍ଯ୍ୟାଦା ଓ ଲୋକପ୍ରିୟତାର ଦାୟିତ୍ୱ ମୁଖ୍ୟତଃ ନିର୍ଭର କରୁଥିଲା ରବୀନ୍ଦ୍ରନାଥଙ୍କ

ଉପରେ । ଏପରି ଦାୟିତ୍ୱବୋଧ ଓ ଉଦ୍ଦୀପନାର ଉତ୍ତର କବିଙ୍କର ବହୁ ମୂଲ୍ୟବାନ୍ ରଚନାରେ ପ୍ରକାଶ ପାଇଲା । କବିତା, କ୍ଷୁଦ୍ରଗଳ୍ପ, ପ୍ରବନ୍ଧ ଓ ଉପନ୍ୟାସ ସେ ରଚନା କଲେ । ଏଇ ସମୟରେ ଲେଖା ତାଙ୍କର ଗଳ୍ପ ଗୁଡିକ ବିଶେଷ ସଜୀବ ଓ ମାର୍ମିକ ହୋଇ ପାରିନଥିଲା ଯେପରି ହୋଇଥିଲା ନବମ ଦଶକରେ ସେ ଯେତେବେଳେ ପଦ୍ମାନଦୀ ଉପରେ ନୌକାରେ ବାସ କରୁଥିଲା ବେଳେ ଲେଖିଥିଲେ । ସେତେବେଳେ ନିଜ ନୌକାଉପରୁ କବି ପଦ୍ମା କୂଳର ପରିବର୍ତ୍ତନଶୀଳ ପ୍ରକୃତି ଓ ଜୀବନକୁ ସମ୍ବେଦନଶୀଳ ଆଖିରେ ଚାହିଁରହୁଥିଲେ । କିନ୍ତୁ ପରବର୍ତ୍ତୀ ଗଳ୍ପ ଗୁଡିକ ତାଙ୍କର ମଧ୍ୟବିତ୍ତ ଜୀବନସମସ୍ୟା ଓ ବିଶେଷ ଭାବରେ ହିନ୍ଦୁ ପରିବାରରେ ନାରୀଙ୍କର ଅସହାୟତା ଉପରେ ଆଧାରିତ । ଏଗୁଡିକରେ ସଦ୍ୟ ଫଳର ସ୍ୱାଦ ନଥିଲେ ମଧ୍ୟ ସୁପକ୍ୱ ଛେନାର କ୍ଷୁଧାବର୍ଦ୍ଧକ ବାସ୍ନା ନିଶ୍ଚୟ ଅଛି ।

ନୈଷ୍ଠିକ ହିନ୍ଦୁ ସ୍ୱାମୀଟିର ଭୀରୁତା ଓ ସ୍ୱାର୍ଥପରତାକୁ ବିଦ୍ରୂପ କଲାବେଳେ ଲେଖକଙ୍କର ଲେଖନୀ ଯେପରି ସୂକ୍ଷ୍ମ ଓ ଶାଣିତ, ପବିତ୍ର ଧର୍ମାଚାର ଓ ପରଂପରା ନାଁରେ ପ୍ରଚଳିତ ଅନ୍ୟାୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ ସେହିପରି ପ୍ରଶଂସନୀୟ । 'ହୈମନ୍ତି' ଗଳ୍ପରେ ଜଣେ ଅସହାୟ ପିତାର ସାହସୀ କନ୍ୟା ଆପଣାର ମୃତ୍ୟୁରେ ମୁକ୍ତି ଲୋଡେ । 'ସ୍ତ୍ରୀର ପତ୍ର' ଗଳ୍ପରେ ଜଣେ ପତ୍ନୀ ଦୀର୍ଘ ପନ୍ଦର ବର୍ଷ ନିଷ୍ପେଷିତ ହୋଇ ଅତିବାହିତ କରିବା ପରେ ଯେତେବେଳେ ସ୍ୱାମୀକୁ ପରିତ୍ୟାଗ କରିଛି ସେତେବେଳେ ପତ୍ରଟିଏ ଲେଖୁଛି । ସେଇ ଚତୁରୀ ରୂପସୀ ଓ ଦୃଢ଼ମନା ସ୍ତ୍ରୀ ମୃଣାଳ ସ୍ୱାମୀ ଓ ଘରଦ୍ୱାର ଛାଡି ନିଜର ଜୈବିକ ସ୍ଥିତି ଖୋଜି ପାଇଛି । ସ୍ୱାମୀ ମୁହଁରେ ସେ ଦୃଢ଼ ଓ କଠିନ ଭାଷାରେ ଉତ୍ତର ଦେଇଛି ଓ ନିଜର ସ୍ୱାଧୀନତା ଦାବୀ କରିଛି । କହିବା ଅନାବଶ୍ୟକ ଯେ କବିଙ୍କୁ ଏଥିପାଇଁ ଶରବ୍ୟ ହେବାକୁ ପଡିଛି ଓ ସାମାଜିକ ନ୍ୟାୟ ପାଇଁ ତାଙ୍କର ଦାବୀକୁ ରାଜନୈତିକ ଦୃଷ୍ଟିରୁ ଜଟିଳ କରାଯାଇଛି । ତାଙ୍କର ଆଉ ଗୋଟିଏ ଗଳ୍ପ ''ଅପରିଚିତା''ରେ ସେ ଦେଖାଇଛନ୍ତି କିପରି ଜଣେ ଉଚ୍ଚ ଶିକ୍ଷିତା ଓ ଉଦ୍ୟମୀ ବଙ୍ଗାଳି ଝିଅ ତାକୁ ବିବାହ କରିବା ପାଇଁ ରାଜି ହୋଇ ତା ପ୍ରତି ଦୟା ଦେଖାଉଥିବା ସେଇ ଅଧମ ଯୁବକଟି ଠାରୁ କେତେ ଭଲ । ଏଇ ସବୁ ଗଳ୍ପ ମୁଖ୍ୟତଃ ଉତ୍ତମ ପୁରୁଷ ଏକ ବଚନରେ ଲିଖିତ ଓ ପ୍ରତ୍ୟେକର ମୁଖ୍ୟ ଚରିତ୍ର ଆପଣାର ଅନ୍ତର୍ମୂଲ୍ୟବୋଧକୁ ପ୍ରକାଶ କରିବା ପାଇଁ ଚେଷ୍ଟିତ । ଆଉ ଏକ ମର୍ମସ୍ପର୍ଶୀ ଗଳ୍ପ 'ବୈଷ୍ଣବୀ' ଯେଉଁଥିରେ ଜଣେ ନାରୀ ଭକ୍ତଟିଏ ହବା ପାଇଁ ତା'ର ଘରଦ୍ୱାର ସବୁ ଛାଡିଛି । ରବୀନ୍ଦ୍ରନାଥ ପ୍ରକୃତରେ ଏଇଭଳି ଜଣେ ନାରୀଙ୍କୁ ବଙ୍ଗଳାରେ କୌଣସି ଏକ ଗ୍ରାମରେ ଜାଣି ଥିଲେ । ପରବର୍ତ୍ତୀ କାଳରେ ସେ ଗଭୀର ଶ୍ରଦ୍ଧା ଓ ସମ୍ମାନର ସହିତ ତାଙ୍କର 'କ୍ରିଏଟିଭ୍ ୟୁନିଟି' (Creative Unity) ଗ୍ରନ୍ଥରେ ତା'ରି କଥା ବର୍ଣ୍ଣନା କରିଥିଲେ ।

ଗ୍ରୀଷ୍ମ ଅବକାଶ କଟିଲା ହିମାଳୟର ରାମଗଡରେ । ପ୍ରଥମରୁ ସେ ଖୁବ୍ ଆନନ୍ଦିତ ଥିଲେ । ସେଠି ଅପ୍ରଚୁର ଖାଦ୍ୟ ମିଳୁଥିଲେ ମଧ୍ୟ ପ୍ରଚୁର ମନର ଖାଦ୍ୟ ତାଙ୍କୁ ଉଲ୍ଲସିତ ରଖିଥିଲା । ଆଣ୍ଡ୍ରୁଜ୍‌ଙ୍କୁ ଲେଖିଥିଲେ 'ମୋ ଜୀବନ ଏଠି ପୂର୍ଣ୍ଣ ।' କିନ୍ତୁ ହଠାତ୍ ସେ ଅସ୍ୱସ୍ତି ବୋଧକଲେ, ଗୋଟେ ଅସ୍ପଷ୍ଟ ଉଦ୍‌ବେଗ ତାଙ୍କୁ ପୀଡିତ କଲା । ମନେ ହେଲା ତାଙ୍କର ଅତି ପ୍ରିୟ ଆପଣାର ପୃଥିବୀ ଉପରେ ସତେ ବା ବିପଦ ଘନେଇ ଆସୁଛି । ରାଜନୈତିକ ଦିଗ୍‌ବଳୟରେ ଘନ ବାଦଲର ସୂଚନା ନଥିଲା । ହଠାତ୍ ଅଗଷ୍ଟ ମାସରେ ମହାଯୁଦ୍ଧ ଘନେଇ ଆସିଲା । କାହିଁକି ଓ କିପରି ତାଙ୍କ ମନରେ ଏଇ ଯୁଦ୍ଧର ଆଶଙ୍କା ଉଦିତ ହୋଇଥିଲା କହିବା କଷ୍ଟ । କିନ୍ତୁ ଏହା ଯେ ସେ ବହୁ ପୂର୍ବରୁ ଜାଣିପାରିଥିଲେ

ଓ ଅତି କରୁଣ ଓ ଗଭୀର ଭାବରେ ଅନୁଭବ କରୁଥିଲେ ତାହା ସେତେବେଳେ ତାଙ୍କ ପାଖରେ ଥିବା ଲୋକଙ୍କ ଠାରୁ ଓ ତାଙ୍କର ପତ୍ର ଗୁଡିକରୁ ସ୍ପଷ୍ଟ ବାରିହୁଏ । ଆଣ୍ଡ୍ରୁସ୍‌ଙ୍କୁ ସେ ଗୋଟେ ଚିଠିରେ ଲେଖିଥିଲେ ''ଭଗବାନ ଜାଣନ୍ତି କାହିଁକି ଏ ମୃତ୍ୟୁର ପଦଧ୍ୱନି ମୋର ହୃଦୟରେ ହାହାକାର ତୋଳୁଛି ।'' ଏଇ ମନୋଭାବ ସେ ଗୋଟେ କବିତାରେ ମଧ ପ୍ରକାଶ କରିଛନ୍ତି, ''ଦେଖ୍ ଏଇ ଯେ ଆସୁଛି ସର୍ବଧ୍ୱଂସୀ ମୃତ୍ୟୁର ଝଡ । ଯନ୍ତ୍ରଣାର ସାଗରରେ ଶୋକର ବନ୍ୟା, ଋକ୍ଷାକ୍ତ ମେଘ ଉପରେ ଚପଳାର ଲାସ୍ୟ ଓ ଘନ ଅନ୍ଧକାରର ନିର୍ଜନତାକୁ ଭେଦକରି ଶୁଭୁଛି ବଜ୍ରର ନିର୍ଘୋଷ ନିଜ ମୃତ୍ୟୁର କୌତୁକରେ ଶୁଭୁଛି ପାଗଳଟିର ଅଟ୍ଟହାସ୍ୟ ।''

କବି ଖୁବ୍ ବିବ୍ରତ ହୋଇ ପଡିଥିଲେ । ପ୍ରତିଥର ଏପରି ହେଲେ ଭ୍ରମଣରେ ସମୟ କଟାନ୍ତି । ଏଥର ମଧ ସେ ସିଲାଇଦହ, ଦାର୍ଜିଲିଂ, ଆଗ୍ରା ଓ ଆହ୍ଲାବାଦ ଘୁରି ବୁଲିଲେ । ଶେଷରେ ଯେତେବେଳେ ମହାଯୁଦ୍ଧ ଆରମ୍ଭ ହୋଇଯାଇଥିଲା, ତାକୁ ସେ ୟୁରୋପର ଦୁର୍ଭାଗ୍ୟ ଭାବରେ କେବଳ ଦେଖୁନଥିଲେ । ଏଥିରେ ଏସିଆ ମହାଦେଶ ସଂପୃକ୍ତ ନଥିଲା । ଇଂଲଣ୍ଡର ଦୁଃସ୍ଥିତି ଯେ ଭାରତ ପାଇଁ ସୌଭାଗ୍ୟ ଆଣି ଦେବ ଏଇପରି ଆଗ୍ରହାନ୍ୱିତ କଳ୍ପନା ତାଙ୍କ ପାଖରେ କ୍ଷୀଣ ଥିଲା । ସେ କୌଣସି ପକ୍ଷ ନେଇ ନଥିଲେ । ଯୁଦ୍ଧ ଥିଲା ତାଙ୍କ ପାଇଁ ସମଗ୍ର ମାନବ ଜାତିର ବକ୍ଷରେ ଏକ କ୍ଷତ ସଦୃଶ । ତେଣୁ ଏହାର ଯନ୍ତ୍ରଣା ଓ ଯାତନା ଯେତେ ବିଚ୍ଛିନ୍ନ ହୋଇଥିଲେ ବି, ତାର ସବୁ ଅଙ୍ଗ ପ୍ରତ୍ୟଙ୍ଗରେ ଅନୁଭୂତ ହେବା ସ୍ୱାଭାବିକ୍ ।

ଶାନ୍ତିନିକେତନଠାରେ ତାଙ୍କର ଛାତ୍ରମାନଙ୍କୁ ଏକ ବକ୍ତୃତାରେ ସେ କହିଥିଲେ ''ଯେପରି ପିତାଙ୍କ କୃତ ପାପର ପ୍ରାୟଶ୍ଚିତ ସନ୍ତାନମାନଙ୍କୁ କରିବାକୁ ପଡିଥାଏ ଠିକ୍ ସେହିପରି ଯେ କୌଣସି ପ୍ରାନ୍ତରେ ମନୁଷ୍ୟକୃତ ଦୁଷ୍କର୍ମର ପାପବୋଧ ଓ ଶାସ୍ତିର ଅଂଶୀଦାର ହେବାକୁ ପଡ଼ିବ ସମଗ୍ର ମାନବ ଜଗତକୁ ।'' ତାଙ୍କର ଗୋଟିଏ ମାର୍ମିକ କବିତାରେ ସେ ଲେଖିଥିଲେ ''ପୃଥିବୀର ସମସ୍ତ ଦୁଃଖ, ପାପ ଓ ଦୁଷ୍କର୍ମ, ଆତଙ୍କ ଓ ସ୍ୱଳନର ଅଶାନ୍ତ ଢ଼େଉ ସୀମା ଟପି ଉଦ୍‌ବେଳିତ ହୋଇ ଉଠିଛି, ଆକାଶକୁ କରିଛି ବାଷ୍ପାକୁଳ । ତଥାପି ହେ ସାହସୀ ନିର୍ଯ୍ୟାତିତ ମାନବ ସମାଜ ! ଦୃଢ଼ ଭାବରେ ତମର କ୍ଷେପଣୀକୁ ଧରି ଜୀବନ ନୌକାକୁ ବାଟ କଢ଼ାଅ । ଏଇ ଅଶାନ୍ତ ସମୟର ତରଂଗ ଭିତରେ ଆଶାର ତରୀ ବାହିଚାଲ । କାହାକୁ ତମେ ଦୋଷ ଦେବ ମୋ ଭାଇ ? ଆପଣା ଶିର ନତ କର- ସବୁ ଆମରି ଦୋଷ । ସମୟର ଗର୍ଭରେ ଥିବା ମାରାତ୍ମକ ଭ୍ରୂଣଟି ଶେଷରେ ଫାଟି ଯାଇଛି । ମୂର୍ଚ୍ଛିତ ହୃଦୟର ଆତଙ୍କ ନିର୍ଗତ ବିଷାକ୍ତ ବାଷ୍ପ, ଅହଂକାରର ଔଦ୍ଧତ୍ୟ, ଗୃଧ୍ରର ଲୋଭ, ଜାରଜଙ୍କର ବିଦ୍ୱେଷ, ମଣିଷ ଭିତରର ଦିବ୍ୟଶକ୍ତି ବିରୁଦ୍ଧରେ ସଂଚିତ ଅପମାନ- ପରିଶେଷରେ ଏସବୁ କ୍ଷଣକେ ଫାଟି ଉଠୁଛି ଓ ନିଜର ଫମ୍ପା ନିଃଶ୍ୱାସରେ ପୃଥିବୀ ଓ ସମୁଦ୍ରକୁ ଅଶାନ୍ତ କରି ତୋଳିଛି ।''

ଏଇପରି ଅନେକ କବିତା (ସେକ୍‌ସପିୟରଙ୍କ ଉପରେ ଏକ ସନେଟ ସମେତ) ସେ ଏହି ଅଶାନ୍ତ ସମୟରେ ରଚନା କରିଥିଲେ, ଯେତେବେଳେ ଏଠି ସେଠି ବୁଲୁଥିଲେ, ନିଜ ଭିତରେ ମନସ୍ତାପ ଓ ଉତ୍‌ଫୁଲ୍ଲତା, ଆବେଗ ଓ ପ୍ରତ୍ୟାଶା ଘେନି ସେ ଯେ ବର୍ତ୍ତମାନ ଜୀବନର ଏକ ନୂଆ ପ୍ରସ୍ଥରେ ପାଦ ଦେଇଛନ୍ତି ଏପରି ଏକ ଅସ୍ପଷ୍ଟ ଅନୁଭବ ତାଙ୍କର ଆସୁଥିଲା । ଜୀବନରେ କ'ଣ ହଜାଇ ଦେଇଛନ୍ତି ଓ କ'ଣ ଗୋଟାଇ ପାଇଛନ୍ତି ବୁଝି ପାରୁନଥିଲେ, କିନ୍ତୁ ଯାହା ସେ ସ୍ପଷ୍ଟ ଭାବରେ ବୁଝୁଥିଲେ, ତାଙ୍କୁ ପୁଣି ପୂର୍ବପରି ଚଞ୍ଚଳ ହେବାକୁ ପଡିବ, ଜୀବନକୁ ନୂଆ ମୋଡ ଦେବାକୁ ପଡିବ ଓ ଆବଶ୍ୟକ ସ୍ଥଳେ ସବୁକୁ ଅତିକ୍ରମ କରି ଆଗେଇ ଯିବାକୁ ପଡିବ । ଏଇ

ସବୁ କବିତା 1916ରେ ଗୋଟିଏ କ୍ଷୁଦ୍ର କବିତା ଗୁଚ୍ଛ ଭାବେ 'ବଳାକା' ନାମରେ ପ୍ରକାଶିତ ହେଲା । ଏଇ ଗ୍ରନ୍ଥଟି କବିଙ୍କର ଇଂରେଜ ବଂଧୁ ପିଆରସନଙ୍କୁ ଉତ୍ସର୍ଗ କରାଯାଇଛି । ଏଥିରେ ସୂଚିତ ହେଉଥିଲା ହିମାଳୟର ସେହି ବରଫାବୃତ ସୁଉଚ୍ଚ ଗିରିଶୃଙ୍ଗ ଯାହାକୁ ସମୟ ସମୟରେ ହିମାଳୟ ଯାତ୍ରା ବେଳେ କବି କଳ୍ପନାରେ ମାପୁଥିଲେ । କାଶ୍ମୀରରେ ଲେଖା କବିତାଟିର ନାମରେ ବହିଟିର ନାଁ ଦିଆଯାଇଛି । ଯେଉଁଠି ସନ୍ଧ୍ୟାରେ ବସି କବି ଦେଖୁଥିଲେ ''ଖଡ୍ଗ ଭଳି ଝଲସୁଥିଲା ଝେଲମ୍ ନଦୀର ବଙ୍କିମ ଜଳରେଖା ଗୋଧୂଳି ଆଲୋକରେ, ଦିବାସ୍ୱପ୍ନ ଟାଙ୍କର ଭାଙ୍ଗିଲା ଅକସ୍ମାତ୍ ଶୂନ୍ୟରୁ ଏକ ଶବ୍ଦର ବୈଦ୍ୟୁତିକ ଝଂକାରରେ'' ଉପରକୁ ଚାହିଁ ଦେଖିଲେ ବଳାକା ପଲେ ପକ୍ଷ ମେଲାଇ ଉଡିଯାଉଛନ୍ତି ସୁଦୂରକୁ । ସଚଳ ବା ଆପାତତଃ ଅଚଳ ବସ୍ତୁ, ସମୟର ଅନନ୍ତ ପ୍ରବାହ, ଜୀବନ ଓ ଆତ୍ମାର ଅସରନ୍ତି ଅନୁସନ୍ଧାନ, ବିଶ୍ୱ ହୃଦୟର ଶାଶ୍ୱତ ଧ୍ୱନି- ଏ ସବୁର ଚିରନ୍ତନ ଗତିର ପ୍ରତୀକଥିଲା କବିଙ୍କ ପାଇଁ ଏହି ଯାଯାବର ପକ୍ଷୀଙ୍କର ଉଡାଣ । ''ଏଠି ନୁହେଁ ଏଠି ନୁହେଁ ଆଉ କେଉଁଠାରେ ।''

'ବଳାକା' ଗ୍ରନ୍ଥର ସବୁ କବିତାରେ ପ୍ରତିଧ୍ୱନିତ ହୋଇଛି ଏହି ରବ । କବିତାର ଭାବ ଓ ଭଙ୍ଗୀ ଯାହା ହେଉନା କାହିଁକି ଏସବୁ ଥିଲା ପ୍ରକୃତରେ ଚିରନ୍ତନ ଚଳମାନ ବିଶ୍ୱର ଗତିକୁ ଦେଖି ଯେଉଁ ଅଶେଷ ବିସ୍ମୟରେ ହୃଦୟ ଭରିଯାଏ ତାହାର ସ୍ତୁତିଗାଥା । ଏଇ ଗତି ପରିବର୍ତ୍ତନ ଭିତରେ ଚିର ପୁରାତନକୁ ନିତ୍ୟନୂତନ କରାଉଥାଏ, ଆପଣାକୁ ଅତିକ୍ରମ କରିଯିବା ପାଇଁ ଆହ୍ୱାନ ଦେଉଥାଏ-''ଶାହାଜାନ'' କବିତାରେ ବିଶାଳ ଓ ବିସ୍ମୟକର କୀର୍ତ୍ତି ତାଜମହଲର ନିର୍ମାତା ଶାହାଜାନଙ୍କ ଉଦ୍ଦେଶ୍ୟରେ କଥିତ ବିଷୟ ହେଉ ବା କବିଙ୍କ ଜୀବନର ହୃତ ପ୍ରାଣମୟୀ ସ୍ୱର୍ଗତା ଭାଉଜ କାଦମ୍ବରୀଙ୍କ ସ୍ମୃତି ହେଉ । ତାଙ୍କର ପୁରାତନ ଚିତ୍ରଟିଏ ନିଶ୍ଚୟ କବିଙ୍କ ଦୃଷ୍ଟିକୁ ଖୋଲିଛି କାରଣ କବିତାଟିର ନାଁ 'ଛବି' । ତାଙ୍କ ସ୍ମୃତି ଥିଲା ଅତ୍ୟନ୍ତ ମର୍ମାନ୍ତକ କିନ୍ତୁ ଏ ଦୁଃଖକୁ ଯୁବ ସୁଲଭ ଅଭିଜାତର ରଂଗ ନଦେଇ କବି ସର୍ବଦା ଏହା ଭାବି ଶାନ୍ତ ରହୁଥିଲେ ଯେ ତାଙ୍କ ପାଇଁ ବରଂ ସେ ପୂର୍ବଠାରୁ ଅଧିକ ଜୀବନ୍ତ ହୋଇ ରହିଛନ୍ତି । ''ଯଦି ତୁମେ ମୋର ନୟନ ସମ୍ମୁଖରେ ନାହଁ, ତୁମେ ହିଁ ମୋର ଆଖିର ଜ୍ୟୋତି ହୋଇ ରହିଛ । ତୁମେ ହିଁ ଧରିତ୍ରୀର ଶ୍ୟାମଳିମା ଓ ଆକାଶର ନୀଳିମା, ତୁମେହିଁ ମୋର ନିଖିଳ ବିଶ୍ୱର ଅନ୍ତରର ମେଳ, ମୁଁ ଜାଣେନି, ଆଉ କେହି ନ ଜାଣେ- ତବ ସୁରବାଜେ ମୋର ଗାନେ, କବିର ଅନ୍ତରରେ ତୁମେ କବି ।''

ସେଇ ଭାବ, ଜୀବନର ସେଇ ଅନୁବର୍ତ୍ତନ, ବାର୍ଦ୍ଧକ୍ୟର ମୁଖା ଫିଙ୍ଗି ଦେଇ ଶୀତ ତରୁଣ ବସନ୍ତ ସାଜେ- ଏଇ ସବୁ ଆନନ୍ଦମୟ ରୂପକଥା ସେ ଶାନ୍ତିନିକେତନର ପିଲାଙ୍କ ପାଇଁ ଲେଖିଥିଲେ ''ଫାଲ୍‌ଗୁନି''ରେ । ଶାନ୍ତିନିକେତନ ଓ କଲିକତା ଉଭୟ ସ୍ଥାନରେ ନାଟିକାଟି ଅଭିନୀତ ହୋଇଥିଲା, କବି ନିଜେ ଦ୍ୱୈତ ଭୂମିକାରେ ଅଭିନୟ କରିଥିଲେ । ଗୋଟିଏ କବିର ଓ ଅନ୍ୟଟି ଜଣେ ଅନ୍ଧ ବାଉଲ ବା ଚାରଣ ଗାୟକର । ଏହାର ବିଷୟବସ୍ତୁ କ୍ଷୀଣ ପ୍ରାୟ କିଛି ନାହିଁ କହିଲେ ଚଳେ । କେବଳ ବସନ୍ତର ଆଗମନରେ କବିଙ୍କର ମନଭାବକୁ ସଂଗୀତ ଓ ପୁଲକଭରା ନୃତ୍ୟ ଗୀତରେ ପ୍ରକାଶ କରିବା ପାଇଁ ଗୋଟିଏ ମାଧ୍ୟମ । ଦଳେ କୌତୁହଳୀ ପିଲା ବୃଦ୍ଧ ଶୀତ ସାଂଗେ ଲାଗିଛନ୍ତି ଓ ତା'ର ବେଶ ପୋଷାକ ଟାଣୁଛନ୍ତି କେବଳ ଆବିଷ୍କାର କରିବା ପାଇଁ ଯେ ସେ ନିଜେ ହିଁ ବସନ୍ତ । ପ୍ରଥମ ଅଭିନୟଟି ଦେଖି ଏଡୱାର୍ଡ ଥମସନ୍ ଅନୁଭବ କରିଥିଲେ, ''ଏହା ଏକ ବନ୍ୟ ସଂଗୀତ । ବାଉଁଶ ଗଛର ସ୍ୱନ, ଦକ୍ଷିଣା ପବନର ସ୍ୱର ଓ ଫୁଲର ସୁରଭିରେ ମହକିତ ସଂଗୀତ - ସତେ

ଯେପରିକି ଏ ସବୁର ଏହା ଏକ ମିଶ୍ରିତ ମାନବିକ ରୂପାନ୍ତର ।'' 1921ରେ କବିଙ୍କର ଜର୍ମାନୀ ଭ୍ରମଣ ବେଳେ ଏହା ଯେତେବେଳେ ସେଠି ମଞ୍ଚସ୍ଥ ହୋଇଥିଲା, ଦର୍ଶକଙ୍କ ଭିତରୁ ଜଣେ ଛାତ୍ର ଉଠି ଭଙ୍ଗାଭଙ୍ଗା ଇଂରାଜୀରେ କହିଥିଲେ ଯେ ସେମାନେ ଜାଣିଥିଲେ ଯେ ପ୍ରାଚ୍ୟର ଜଣେ ବୃଦ୍ଧ ସେମାନଙ୍କୁ କହିବେ, କିନ୍ତୁ ଏଠି ତ ସେ ପ୍ରାଚ୍ୟର ତରୁଣଙ୍କର କଥା ଶୁଣୁଛନ୍ତି ।

'ଫାଲ୍‌ଗୁନୀ' ରଚନା କରିବା ପରେ ପରେ ରବୀନ୍ଦ୍ରନାଥ ପ୍ରଥମ ଥର ପାଇଁ 1915 ମାର୍ଚ୍ଚରେ ଗାନ୍ଧିଜୀଙ୍କୁ ଭେଟିଥିଲେ । ଦକ୍ଷିଣ ଆଫ୍ରିକାରେ ନିଜ କାର୍ଯ୍ୟସାରି ଓ ସଂଗ୍ରାମରେ ବିଜୟ ହାସଲ କରି ଗାନ୍ଧି ନିଜ ଦେଶକୁ ଫେରିଥାନ୍ତି କିନ୍ତୁ ଠିକ୍ କରିନଥାନ୍ତି ସେ କଣ କରିବେ ଓ କେଉଁଠି ରହିବେ । ପୂର୍ବରୁ ସେ ନିଜର ଫୋଏନିକ୍ସ ସଂଗଠନକୁ ଉଠାଇ ଦେଇ ଦକ୍ଷିଣ ଆଫ୍ରିକାରୁ ପ୍ରାୟ କୋଡିଏ ଜଣ ସ୍ୱେଚ୍ଛାସେବୀଙ୍କୁ ଭାରତ ପଠାଇଥିଲେ । ଗାନ୍ଧିଜୀ ଓ ଗୁରୁଦେବଙ୍କ ଭିତରେ ଯୋଗାଯୋଗକାରୀ ଆଣ୍ଡ୍ରୁସ୍ ପ୍ରସ୍ତାବ ଦେଇଥିଲେ ଯେ ଏଇ ସେବକ ପିଲାମାନେ ଗାନ୍ଧିଜୀ ଭାରତ ଆସି ନିଜର ଏକ ଆଶ୍ରମ ପ୍ରତିଷ୍ଠା କରିବା ପର୍ଯ୍ୟନ୍ତ କବିଗୁରୁଙ୍କ ଶାନ୍ତିନିକେତନରେ ରହିଲେ ଭଲ ହେବ । ଏଇ ପ୍ରସ୍ତାବରେ ରବୀନ୍ଦ୍ରନାଥ ଖୁସିରେ ରାଜି ହୋଇଥିଲେ ଓ ସେଇ ପିଲାମାନେ ଶାନ୍ତିନିକେତନରେ କିଛି ମାସ ରହିଥିଲେ । ଗାନ୍ଧିଜୀ ଆସି ସେଠି ସେମାନଙ୍କୁ ଦେଖିଥିଲେ । ଦୁଇପ୍ରକାର ପିଲାଙ୍କୁ ଏକାଠି ଦେଖିବା ନିଶ୍ଚୟ ବଡ଼ ମଜାଦାର ହୋଇଥିବ, ଗୁରୁଦେବଙ୍କର ଛୋଟ ଛୋଟ ନବାଙ୍କୁରମାନେ ଗୀତଗାଇ, ନାଚି ଘୁରି ବୁଲୁଥିଲେ ଆଉ ମହାତ୍ମାଙ୍କର ଛୋଟ ସନ୍ୟାସୀଗଣ ଥିଲେ ସେମାନଙ୍କ ବୟସ ତୁଳନାରେ ଅତୀବ ଧୀର ଓ ବିଜ୍ଞ । କିନ୍ତୁ ସେମାନେ ଏଠି ଉତ୍ତମ ଭାବରେ ରହିଥିଲେ । ଗୁରୁଦେବ ନିଜ ପିଲାଙ୍କ ପରି ସେମାନଙ୍କୁ ଭଲ ପାଉଥିଲେ । କହୁଥିଲେ 'ଅତିଭଲ' 'ଅତି ଆପଣାର', କିନ୍ତୁ ଆଣ୍ଡ୍ରୁସଙ୍କ ପାଖକୁ ଚିଠିରେ ଲେଖିଥିଲେ 'ଏମାନେ ଏତେ ପୁରାପୁରି ଭଲ ନ ହେବା ଭଲ' ।

ଗାନ୍ଧିଜୀ ଶାନ୍ତିନିକେତନରେ ମାତ୍ର ସପ୍ତାହେ ରହିଥିଲେ । ସେତେବେଳକୁ ସେ ମହାତ୍ମା ହୋଇନଥାନ୍ତି । ତାଙ୍କ ପ୍ରସିଦ୍ଧି ଆହୁରି ପରେ ଆସିଲା କିନ୍ତୁ ସେତେବେଳେ ତାଙ୍କ ବ୍ୟକ୍ତିତ୍ୱ ସେଠାର ଅନ୍ତେଃବାସୀଙ୍କ ମନରେ ଗଭୀର ପ୍ରଭାବ ପକାଇ ଥିଲା । ଏହା ଥିଲା ତାଙ୍କର ଶାନ୍ତିନିକେତନକୁ ଦ୍ୱିତୀୟ ଥର ଭ୍ରମଣ । ପୂର୍ବରୁ ଥରେ ସେ ଆସିଥିଲେ କିନ୍ତୁ ସେତେବେଳେ ଗୁରୁଦେବ ସେଠି ଅନୁପସ୍ଥିତ ଥିଲେ । କିନ୍ତୁ ଏଇଥର ମାତ୍ର ଛଅ ଦିନ ରହଣି ଭିତରେ ଗୁରୁଦେବଙ୍କ ସହିତ ତାଙ୍କର ଆଜୀବନ ବଂଧୁତାର ଭିତ୍ତି ସ୍ଥାପିତ ହୋଇଥିଲା ଓ ଆଧୁନିକ ଭାରତର ଏଇ ଦୁଇ ପଥିକୃତ ନିର୍ମାତାଙ୍କ ଚିନ୍ତା ଆଦର୍ଶ, କର୍ମଧାରା ଓ ବ୍ୟକ୍ତିତ୍ୱ ଭିତରେ ଥିବା ଅସ୍ପଷ୍ଟ ସାଦୃଶ୍ୟ ଓ ସ୍ୱାଭାବିକ ବୈସାଦୃଶ୍ୟ, କ୍ରମଶଃ ସ୍ପଷ୍ଟ ହୋଇ ଉଠିଥିଲା । ଏମାନଙ୍କ ଚିନ୍ତାରେ ଥିବା ପାର୍ଥକ୍ୟ ଓ ଆପାତ ବିରୋଧିତା ଏପରି ଜ୍ୱଳନ୍ତ ହୋଇଉଠିଥିଲା ଯେ ଦିନେ ଏ ଦୁହିଁଙ୍କର ମର୍ଯ୍ୟାଦା ସମ୍ପନ୍ନ ସମର୍ଥକମାନଙ୍କ ଭିତରେ ଭୁଲ ବୁଝାମଣା ସୃଷ୍ଟି କରିଥିଲା । କିନ୍ତୁ ଏଇ ବିରୋଧତାର ମୁଖା ତଳେ ଥିଲା ଏପରି ଏକ ଗଭୀର ଓ ସୂକ୍ଷ୍ମ ସଂପର୍କ ଯାହା କେବଳ ସେ ଦୁହିଁଙ୍କୁ ଜଣାଥିଲା । ଉଭୟଙ୍କର କେହି କେହି ଅସାଧରଣ ଘନିଷ୍ଠ ବଂଧୁ ବା ସମର୍ଥକ ଏଇ କଥା ଅନୁଭବ କରିଥିଲେ ଯେପରି ଆଣ୍ଡ୍ରୁସ୍ ଓ ଜବାହରଲାଲ୍ । କିନ୍ତୁ ତଥାକଥିତ ଶିଷ୍ୟ ବା ଭକ୍ତ ଅନୁଗାମୀ ଦଳ ଏ ଦୁହିଁଙ୍କର ବ୍ୟକ୍ତିତ୍ୱ-ମୁଖାର ବିକୃତିସିନା ଦେଖୁଥିଲେ; କିନ୍ତୁ ଭିତରେ ଥିବା ସ୍ମିତହାସ୍ୟକୁ ବୁଝିପାରୁ ନଥିଲେ ।

ନିଜର ସ୍ୱଭାବ ସୁଲଭ ଭଙ୍ଗୀରେ ବାସ୍ତବ ଦୃଷ୍ଟି ଘେନି ଗାନ୍ଧିଜୀ ଶାନ୍ତିନିକେତନର ଆଶ୍ରମକୁ

ଦେଖିଥିଲେ, ସମସ୍ତଙ୍କ ସହିତ ମିଶିଥିଲେ । ସମସ୍ତଙ୍କର ଦୁର୍ବଳତାକୁ ବୁଝିଥିଲେ ଓ ପ୍ରାଣକୁ ସ୍ପର୍ଶ କରିଥିଲେ । ଅନ୍ତେବାସୀମାନଙ୍କୁ ବୁଝାଇଥିଲେ ସେମାନଙ୍କର ଆଦର୍ଶ କିପରି ଅଧିକ ସଫଳ ଭାବରେ ରୂପାୟିତ କରିପାରିବେ । ସେ କହିଥିଲେ ଯେ ସେମାନେ ନିଜର କାର୍ଯ୍ୟ ସମ୍ପୂର୍ଣ୍ଣ ଭାବେ ନିଜେ କରିବେ । କୌଣସି ମଜୁରି ଦେବା ଶ୍ରମ ଗ୍ରହଣ ନକରି ଆଶ୍ରମକୁ ସଫା ରଖିବା ଦିଗରେ ସମ୍ପୂର୍ଣ୍ଣ ଦାୟିତ୍ୱ ଗ୍ରହଣ କରିବେ ଯେପରି ନିଜ ନିଜର ଦେହକୁ ସଫା ରଖନ୍ତି ଠିକ୍ ସେହିପରି । ରୋଷେଇ, ବାସନ ଧୋଇବା ପ୍ରଭୃତି କାର୍ଯ୍ୟ ନିଜେ କରିବେ । ତରୁଣମାନେ ପ୍ରଥମେ ନୂଆ କଥା ପ୍ରତି ଆକୃଷ୍ଟ ହୋଇଥାଆନ୍ତି, ଛାତ୍ର ଓ ଶିକ୍ଷକମାନେ ଗାନ୍ଧିଙ୍କ କଥାକୁ ସ୍ୱାଗତ କଲେ ଓ ଗ୍ରହଣ କରିନେଲେ । ଗୁରୁଦେବ ଏ କଥା ଶୁଣିଲାରୁ କହିଲେ ଏହାହିଁ ସ୍ୱରାଜର ଚାବିକାଠି । ମାର୍ଚ୍ଚ 10 ତାରିଖରେ ଏ କାର୍ଯ୍ୟ ଆଶ୍ରମରେ ଆରମ୍ଭ ହୋଇଥିଲା । ପରଦିନ ଗାନ୍ଧିଜୀ ସେଠାରୁ ରେଙ୍ଗୁନ ଉଦ୍ଦେଶ୍ୟରେ ଯାତ୍ରା କଲେ । କିନ୍ତୁ ଏଇ କାର୍ଯ୍ୟପନ୍ଥା ଆଶ୍ରମରେ ଦୀର୍ଘ ଦିନ ଯେ ଚାଲି ପାରିଲା ନାହିଁ ଏଥିରେ ଗାନ୍ଧିଜୀ ବା ଗୁରୁଦେବ ଆଶ୍ଚର୍ଯ୍ୟ ହୋଇନଥିଲେ । ସେମାନଙ୍କ ଆଦର୍ଶ କିନ୍ତୁ ପ୍ରକୃତରେ ବାସ୍ତବତାଶୂନ୍ୟ ବା ହାସ୍ୟକର ନଥିଲା । ଏଇ ଦିନର ସ୍ମୃତି ପ୍ରତିବର୍ଷ ମାର୍ଚ୍ଚ 10 ତାରିଖରେ ଆଶ୍ରମରେ 'ଗାନ୍ଧି ପୁଣ୍ୟାହ' ଭାବରେ ପାଳିତ ହୋଇଥାଏ । ଏଇ ଦିନ ସବୁ କର୍ମଚାରୀମାନଙ୍କୁ ଛୁଟି ଦେଇ ଛାତ୍ର ଓ ଶିକ୍ଷକମାନେ ରୋଷେଇ କରନ୍ତି ଓ ସମଗ୍ର ଆଶ୍ରମରେ ବସନ୍ତର ନିର୍ମଳତା ଆଣି ଦିଅନ୍ତି । ଭାରତୀୟ ପରଂପରାରେ ପୌନଃପୌନିକ ପ୍ରତୀକବାଦର ଏହା ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ।

ଗାନ୍ଧିଜୀଙ୍କ ସଂସ୍କାରବାଦୀ ଦୃଷ୍ଟି କବିଙ୍କ ବ୍ୟକ୍ତିଗତ ଖାଦ୍ୟ ଉପରେ ମଧ ପଡିଥିଲା । ରାତ୍ରି ଭୋଜନରେ ଦିନେ ଲୁଚି ଖାଉଥିବାର ଦେଖି ଗାନ୍ଧି କହିଲେ, 'ଏଇ ଘିଅଭଜା ଲୁଚି ଗୁଡିକ ବିଷପରି', ରବୀନ୍ଦ୍ରନାଥ ଅଳ୍ପ ହସି ଧୀର ଭାବରେ ଉତ୍ତର ଦେଲେ ''ଏହା ନିଶ୍ଚୟ ଅତି ନିମ୍ନମାନର ବିଷ ହୋଇଥିବ, କାରଣ ମୁଁ ଏହା ଅର୍ଦ୍ଧଶତାବ୍ଦୀ ଧରି ଖାଇ ଆସୁଛି'' ।

ଗାନ୍ଧିଜୀ ଥିଲେ ସନ୍ଥ । ସେ ରାଜନୀତିରେ ପବିତ୍ରତା ଆଣିବା ପାଇଁ ଉଦ୍‌ଯୋଗ କରୁଥିଲେ । ରବୀନ୍ଦ୍ରନାଥ ଥିଲେ କବି, ଯିଏ ପବିତ୍ରତା ଭିତରେ ମଧ ସୌନ୍ଦର୍ଯ୍ୟ ଆରୋପ କରୁଥିଲେ । ଗାନ୍ଧିଙ୍କର ଜୀବନଚର୍ଯ୍ୟା ଥିଲା ତାଙ୍କର ଜୀବନାଦର୍ଶନ ଠାରୁ ଅଗ୍ରଗାମୀ । ରବୀନ୍ଦ୍ରନାଥଙ୍କର ଚିନ୍ତାରେ ପର ଲାଗିଥିଲା ଓ କର୍ମ ପାଇଁ ଥିଲା ପାଦ । ପାଦ ଯେତେ ଦୃଢ ଓ ସଚଳ ଥିଲେ ବି ପକ୍ଷ ସାଂଗରେ ତ ଦୌଡ଼ି ପାରୁ ନଥିଲେ । ଗାନ୍ଧି ଥିଲେ କଠୋର ତପସ୍ୱୀ । ମାନବତାବାଦୀଙ୍କ ଠାରୁ ଅଧିକ ମାନବ ପ୍ରେମୀ, ସେ ତତ୍ତ୍ୱର ମଣିଷ ନଥିଲେ, ଥିଲେ କର୍ମର । ଅଗଣିତ ମାନବ ହୃଦୟରେ ସନ୍ତୋଷ ଆଣିଥିଲେ ସେ । ରବୀନ୍ଦ୍ରନାଥ ଥିଲେ ମାଟି ଓ ମଣିଷର ମହାକବି । ଏଠି ସେ ସ୍ୱର୍ଗ ଦେଖିଥିଲେ ଯାହା ଗାନ୍ଧିଙ୍କ ପାଇଁ ସମ୍ଭବ ନଥିଲା । ଆଧୁନିକ ଭାରତର ଏଇ ଦୁଇଟି ମୁହଁ - ଗୋଟିଏ କର୍କଶ ଅନ୍ୟଟି ମସୃଣ କିନ୍ତୁ ଉଭୟ ସମାନ ଭାବରେ ଭାସ୍ୱର । ଭାରତୀୟ ସାଧନାରେ ଜୀବନର ସତ୍ୟ ଉପଲବ୍ଧିର ଦୁଇ ଧାରର ପଥିକୃତ ପ୍ରତିନିଧି । ଅତି ଅଳ୍ପଲୋକ ଏ ଉଭୟଙ୍କର ପ୍ରଭାବ ପ୍ରାଣ ଭରି ହୃଦୟଙ୍ଗମ କରିଥିଲେ । ସନ୍ତୋପମ ଇଂରେଜ୍ ସି. ଏଫ୍. ଆଣ୍ଡ୍ରୁସ୍‌ଙ୍କ ଭାଗ୍ୟରେ ଏହା ଜୁଟିଥିଲା । ସେ ଉଭୟଙ୍କ ଭିତରେ ଥିବା ଅନ୍ତରର ସୂକ୍ଷ୍ମ ସଂପର୍କକୁ ଯଥୋଚିତ ବୁଝିଥିଲେ ଓ ଭଲ ପାଉଥିଲେ । ତାଙ୍କ ଭାଷାରେ ''ମୋର ଜୀବନରେ ବ୍ୟକ୍ତିଗତ ଭାବେ ମୁଁ ଟାଗୋରଙ୍କ ପରି ଅନ୍ୟ କାହାକୁ ଭେଟି ନାହିଁ ଯିଏ ବଂଧୁତାର ସର୍ବୋତ୍ତମ ପ୍ରୟୋଜନକୁ ଚରିତାର୍ଥ କରିପାରନ୍ତି । ବୌଦ୍ଧିକ ନିଷ୍ଠା ଓ ଆଧ୍ୟାତ୍ମିକ ଅନୁକଂପାରେ ତାଙ୍କ ହୃଦୟ ପୂର୍ଣ୍ଣ । ତାଙ୍କର ଉପସ୍ଥିତି ହିଁ ଆମପାଇଁ ସର୍ବଦା

ଅନୁପ୍ରେରଣା । ତାଙ୍କ ସହିତ ମିଶିବା, କୌଣସି ସୃଷ୍ଟିକର୍ମରେ ତାଙ୍କ ସହିତ ସହଯୋଗ କରିବାର ଆନନ୍ଦ ଭାଷାରେ ପ୍ରକାଶ କରିହେବନି । ମୋର ଜୀବନରେ ଏହା ଶ୍ରେଷ୍ଠ ସୁଯୋଗ । ବ୍ୟକ୍ତିଗତ ବଂଧୁତା କ୍ଷେତ୍ରରେ ମୋ ଭଳି ସୌଭାଗ୍ୟବାନ କେହି ନଥିବେ । କବିଙ୍କ ସହିତ ବଂଧୁତା ଛଡ଼ା ମୋର ଦ୍ୱିତୀୟ ବଂଧୁ ଥିଲେ ମହାତ୍ମା ଗାନ୍ଧି । ଏହାଠାରୁ ବଳି ଆନନ୍ଦ ଆଉ କ'ଣ ଥାଇପାରେ । ତାଙ୍କର ମହତ୍ ଆଧ୍ୟାତ୍ମିକ ପ୍ରତିଭା ମତେ ବିଶେଷ ଦିଗରେ ପ୍ରଭାବିତ କରିଥିଲା । ଆପଣା ଦିଗରେ ରବୀନ୍ଦ୍ରନାଥଙ୍କ ପରେ ସେ ଯେତିକି ମହନୀୟ ସେତିକି ସୃଷ୍ଟିଶୀଳ ଥିଲେ । ତାଙ୍କ ଜୀବନଚର୍ଯ୍ୟା ଥିଲା ସନ୍ୟାସୀର ଜୀବନ ପରି ସଂଯମଶୀଳ । ମଧ୍ୟଯୁଗୀୟ ଧର୍ମ ବିଶ୍ୱାସର ଶୁଦ୍ଧ ବାତାବରଣ ଥିଲା ତାଙ୍କ ଚତୁଃପାର୍ଶ୍ୱରେ । ଟାଗୋର୍ ପ୍ରଧାନତଃ ଆଧୁନିକ । ମହାତ୍ମା ଆମ ସମୟର ସେଣ୍ଟ ଫ୍ରାନ୍‌ସିସ୍''

ଶାନ୍ତିନିକେତନରୁ ଗାନ୍ଧିଜୀ ବିଦାୟ ନେବାର ନଅ ଦିନ ପରେ ବଙ୍ଗର ରାଜ୍ୟପାଳ ଲର୍ଡ କାର୍ ମାଇକେଲ ବ୍ରିଟିସ୍ ଏକାଡେମୀ ପକ୍ଷରୁ କବିଙ୍କୁ ନୋବେଲ ପୁରସ୍କାରର ମାନପତ୍ର ଓ ମେଡାଲ ପ୍ରଦାନ କରିବା ପାଇଁ ମାର୍ଚ୍ଚ 20 ରେ ସେଠାକୁ ଆସିଲେ । ବିଦେଶରେ ସୁଖ୍ୟାତି ଅର୍ଜନ କରି ରବୀନ୍ଦ୍ରନାଥ ଭାରତର ଇଂରେଜ ଶାସକମାନଙ୍କ ଦୃଷ୍ଟିରେ ଖୁବ୍ ସମ୍ମାନନୀୟ ହୋଇଯାଇଥା'ନ୍ତି । ଦିନଥିଲା, ଯେତେବେଳେ ସରକାରୀ କର୍ମଚାରୀମାନଙ୍କୁ ତାଗିଦ୍ କରାଯାଉଥିଲା ତାଙ୍କ ବିଦ୍ୟାଳୟକୁ ନିଜ ପିଲାଙ୍କୁ ପଢ଼ିବା ପାଇଁ ନ ପଠାଇବାକୁ । ବର୍ତ୍ତମାନ ବଙ୍ଗର ସର୍ବୋଚ୍ଚ ବ୍ରିଟିଶ୍ ଅଧିକର୍ତ୍ତା ତାଙ୍କୁ ସମ୍ମାନ ଦେଖାଇବାକୁ ଆସିଲେ । ତାଙ୍କୁ ଭବ୍ୟ ଅଭ୍ୟର୍ଥନା ଜଣାଇବା ପାଇଁ ଆଶ୍ରମରେ ସଜବାଜ ହେଲା, କବି ସମ୍ମାନିତ ଅତିଥିଙ୍କୁ ଆନ୍ତରିକ ସ୍ୱାଗତ କଲେ । 'ଦେଶପ୍ରେମୀମାନେ' ଏ କଥାକୁ ପସନ୍ଦ କଲେ ନାହିଁ । ବିଦେଶୀ ଶାସକଙ୍କ ପ୍ରତିନିଧିଙ୍କୁ ଅଭ୍ୟର୍ଥନା କରିବାରୁ କବିଙ୍କୁ ସମାଲୋଚନା କଲେ । ରବୀନ୍ଦ୍ରନାଥ ଜାଣିଥିଲେ, ସେ ଯାହା କହୁଛନ୍ତି, ତାହା ଦେଶର କିଛି ଲୋକଙ୍କୁ ଖରାପ ଲାଗିବ । ତାଙ୍କର ସଂସ୍କାରଧର୍ମୀ ଚିନ୍ତାପାଇଁ ଈର୍ଷାର ପାତ୍ର ହେବା ଓ ରକ୍ଷଣଶୀଳତାର ବିରୋଧ ପାଇଁ ନିନ୍ଦିତ ହେବା କେବେ ବନ୍ଦ ହେବ ନାହିଁ । ଏକଥା ଜାଣି ମଧ୍ୟ ସେ ସାଧାରଣରେ ସମାଲୋଚିତ ହୋଇ ଦୁଃଖିତ ହୋଇଥିଲେ । ଜନସାଧାରଣଙ୍କୁ ନିଜର କରିବାର ରାଜନୈତିକ କୌଶଳ ତାଙ୍କୁ ଜଣାନଥିଲା । ତଥାପି ନିଜ ଲୋକଙ୍କର ହୃଦୟ ଜୟ କରିପାରି ନଥିବାରୁ ସେ ଦୁଃଖ ଅନୁଭବ କରୁଥିଲେ । ଲୋକମାନଙ୍କ ଅନ୍ଧ ବିଶ୍ୱାସରେ ଅଂଶଗ୍ରହଣ କରୁନଥିବାରୁ ଲୋକେ ତାଙ୍କୁ କ୍ଷମା ଦେଉ ନଥିଲେ । କିନ୍ତୁ ଇଶ୍ୱରଙ୍କ ପ୍ରିୟ ଲୋକ ବୋଲି ସେମାନଙ୍କ ମନରେ ସୃଷ୍ଟି କରାଯାଉଥିବା ଏତେବଡ଼ ଦେଶଭକ୍ତି ନାମରେ ଏତେବଡ଼ ପ୍ରତାରଣାକୁ ସେ ମାନି ନେଇପାରୁ ନଥିଲେ ।

ଯାହା ହେଉ, ତାଙ୍କ ରଚନାରେ ଯଶର ଅହଂକାର ଓ ଶସ୍ତା ଲୋକପ୍ରିୟତା ବିରୁଦ୍ଧରେ ସାହସିକ ଚିତ୍ରଣ ଦେଖିବାକୁ ମିଳିଲେ ମଧ୍ୟ ବାସ୍ତବରେ ସେ ଅଯଥାର୍ଥ ସମାଲୋଚନାକୁ ମଧ୍ୟ ସହ୍ୟ କରି ଯାଉଥିଲେ । ଆଉ ଅଧିକାଂଶ ସମୟରେ ବିଦ୍ୱେଷକାରୀ ନହେଲେ ମଧ୍ୟ ସମାଲୋଚନା ଥିଲା ଅଯଥାର୍ଥ । 1 ଫେବୃୟାରୀ 1915ରେ ଆଣ୍ଡ୍ରୁସ୍‌ଙ୍କ ପାଖକୁ ଲେଖା ତାଙ୍କର ଗୋଟିଏ ଚିଠିରେ ସେ ଏଇ ସମ୍ବେଦନ ଶୀଳତାକୁ ବୁଝେଇଥିଲେ । ''ଆପଣ ଠିକ୍ କହିଛନ୍ତି । ମୁଁ କିଛି ଦିନ ଧରି ଗଭୀର ମନସ୍ତାପ ଓ କ୍ଳାନ୍ତି ଭିତରେ ଥିଲି । କିନ୍ତୁ ପୁଣି ସତେଜ ଓ ଦୃଢ଼ ହୋଇ ଉଠିଛି । ଇଚ୍ଛା କରୁଛି ଆଉ ଶହେବର୍ଷ ବଂଚିବି ଯଦି ସମାଲୋଚକମାନେ ମତେ ନିସ୍ତାର ଦିଅନ୍ତି, ସେତେବେଳେ ମୁଁ ଶାରୀରିକ ଭାବେ କ୍ଳାନ୍ତ ଓ ଦୁର୍ବଳ ଥିଲି, ତେଣୁ ଅଳ୍ପକଷ୍ଟ ଏପରି ଦୁର୍ବିସହ ହେଲା । ଯାହାହେଉ,

ମୁଁ ଖୁସି ଯେ ମୋ ଭିତରେ ଏ ଯାଏଁ ସେଇ ଶିଶୁଟି ଅଛି, ଯିଏ ଅପରର ପ୍ରଶଂସାର ସ୍ୱାଦ ଚାଖିବା ପାଇଁ ଉତ୍ସୁକ । ମୋ ସମାଲୋଚକଙ୍କ ଠାରୁ ମୁଁ ଖୁବ୍ ଉଚ୍ଚରେ ବୋଲି ଭାବିବା ଉଚିତ ନୁହେଁ । ମୁଁ ମଞ୍ଚ ଉପରେ ବସିବାକୁ ଚାହେଁନି । ତଳେ ସମାନ ଆସନରେ ମୋ ଶ୍ରୋତାମାନଙ୍କ ସାଙ୍ଗରେ ବସି ଶୁଣିବାକୁ ଚାହେଁ । ଯେତେବେଳେ ସେମାନେ ମୋ କଥାକୁ ଆଗ୍ରାହ୍ୟ କରୁଛନ୍ତି, ସେତେବେଳେ ସେମାନଙ୍କର ଅନାସ୍ଥାଭାବକୁ ମୁଁ ବୁଝିବାକୁ ଚାହେଁ । ଆଉ ଯେତେବେଳେ ମୁଁ କହେ ମୁଁ ତାହାକୁ ଭୃକ୍ଷେପ କରେନି, ତାକୁ କେହି ବିଶ୍ୱାସ ନ କର ।'' ଦଶ ବର୍ଷ ପୂର୍ବେ ସେ ଗୋଟିଏ କବିତାରେ କହିଥିଲେ, ''ସେମାନେ ତୁମକୁ ଆଜି କହନ୍ତି ପାଗଳ, କାଲି ପାଇଁ ଅପେକ୍ଷା କର ଓ ଶାନ୍ତରୁହ । ସେମାନେ ତୁମ ଉପରେ ଧୂଳି ଫିଙ୍ଗୁଛନ୍ତି, କାଲିକୁ ଅପେକ୍ଷା କର, ସେମାନେ ନିଶ୍ଚୟ ନିଜର ଭୁଲ ବୁଝିବେ, ତୁମକୁ ଫୁଲମାଳ ପିନ୍ଧାଇ ଦେବେ'' ସେଇ କାଲିଟି ଆସିବା ପାଇଁ ଅନେକ ଦିନ ଲାଗିଗଲା ।

ସେ ସତରେ ସତେଜ ଓ ଦୃଢ ହୋଇ ଉଠିଥିଲେ । ପୂର୍ବର ଅବସାଦ ଏବେ ଆଉ ନଥିଲା । ସେତିକି ବେଳେ 'ସବୁଜପତ୍ର' ପାଇଁ ଲେଖାଯାଉଥିବା ତାଙ୍କର ବିଖ୍ୟାତ ଚାରିଟି ଅଧ୍ୟାୟରେ ଏହି ପରିବର୍ତ୍ତନ ପ୍ରମାଣିତ ହୋଇଥିଲା, ପରେ 'ଚତୁରଙ୍ଗ' ନାମରେ ଉପନ୍ୟାସଟି ପ୍ରକାଶିତ ହେଲା । ସାଧାରଣଜ୍ଞାନର ସତେଜ ଓ ସଶକ୍ତ ରୂପ ଅତି ଚମତ୍କାର ଭାବରେ ଏଥିରେ ପ୍ରକାଶ ପାଇଥିଲା । ସଂକ୍ଷିପ୍ତ,ସୁସଂହତ ଓ ଉତ୍ତେଜନାପୂର୍ଣ୍ଣ ଏଇ ଉପନ୍ୟାସଟିରେ କାରୁଣ୍ୟ ଓ ବ୍ୟଙ୍ଗର ଅପୂର୍ବ ସମନ୍ୱୟ ଘଟାଇଛନ୍ତି ରବୀନ୍ଦ୍ରନାଥ । ଏଇ କ୍ଷୁଦ୍ର ଉପନ୍ୟାସଟି ରବୀନ୍ଦ୍ରନାଥଙ୍କର ଶ୍ରେଷ୍ଠ ରଚନା ଭିତରୁ ଗୋଟେ ଓ ଜଣେ ପ୍ରତିଷ୍ଠିତ ସମାଲୋଚକଙ୍କ ଭାଷାରେ ତୃଟି ଶୂନ୍ୟ ଏକକ କଳାସୃଷ୍ଟି । ଏଥିରେ କେବଳ ମାତ୍ର ଚାରିଟି ଅଧ୍ୟାୟ ଓ ଚାରିଟି ଚରିତ୍ର ଅଛି । ସେମାନଙ୍କ ମଧ୍ୟରୁ ଜଣେ ଗପଟି କହୁଛି । ଜଣେ ଉତ୍ସାହୀ ଆଦର୍ଶବାଦୀ ଯୁବକ ଶଚୀଶ ହେଉଛି ଏହାର ମୁଖ୍ୟ ଚରିତ୍ର, ଯାହାର ସତ୍ୟାନୁସନ୍ଧାନ ଓ ପରିତୃପ୍ତିର ଚିତ୍ର ବିଭିନ୍ନ ପର୍ଯ୍ୟାୟରେ ଏଥିରେ ଦିଆହୋଇଛି । କକା ଜଗମୋହନଙ୍କର ତତ୍ତ୍ୱାବଧାନରେ ସେ ବଡ ହୋଇଛି ଓ ତାଙ୍କର ଉଦାର ଓ ଯୁକ୍ତିବାଦୀ ମନର ପ୍ରଭାବରେ ଖୁବ୍ ଅଳ୍ପ ବୟସରେ ଶଚୀଶ ଜଣେ ନାସ୍ତିକ ଅଥଚ ମାନବିକତାବାଦୀରେ ପରିଣତ ହୋଇ ପାରିଛି । ପ୍ରଥମ ଅଧ୍ୟାୟରେ ଜଗମୋହନଙ୍କର ଈଶ୍ୱର-ଆଗ୍ରାହ୍ୟ ମାନବିକତାବାଦ ସହିତ ତାଙ୍କ ଭାଇଙ୍କର ଈଶ୍ୱର ବିଶ୍ୱାସୀ ସଂକୀର୍ଣ୍ଣତା ଓ ଅହେତୁକ ଲୋଭର ବିରୋଧାତ୍ମକ ଚିତ୍ର ଦିଆଯାଇଛି ।

ପିତାଙ୍କର ରୁଗ୍ଣ ନୈଷ୍ଠିକତାର ବିରୋଧ କରି ଶଚୀଶ କକାଙ୍କ ଜୀବନାଦର୍ଶର ଅନୁଗାମୀ ହୁଏ । ଥରେ ସେ ଜଣେ ଅନାଥ ବାଳିକାକୁ ଭେଟିଲା ଯିଏ ତା'ର ବଡ଼ଭାଇ ଦ୍ୱାରା ନିର୍ଯ୍ୟାତିତା ହୋଇ ବାହାରେ ବୁଲୁଥିଲା । ଅନ୍ତଃସତ୍ତ୍ୱା ଅବସ୍ଥାରେ ଥିବା ଝିଅଟିକୁ ସେ କକାଙ୍କ ଘରକୁ ନିଏ । କକା ତାଙ୍କୁ ଆଶ୍ରୟ ଦେଇ ନିଜ ଝିଅପରି ପାଳନ କରନ୍ତି । ଝିଅଟିର ଭବିଷ୍ୟତରେ ସୁରକ୍ଷା ପାଇଁ ଶଚୀଶ ତାକୁ ବିବାହ କରିବାକୁ ପ୍ରସ୍ତାବ ଦିଏ । କିନ୍ତୁ ଝିଅଟି ତା'ର ଆଶ୍ରୟଦାତାଙ୍କ ପ୍ରତି ଯଥେଷ୍ଟ କୃତଜ୍ଞ ଥାଇ ମଧ୍ୟ ଏଇ ପ୍ରସ୍ତାବରେ ରାଜି ନହୋଇ ଆତ୍ମହତ୍ୟା କରିବାକୁ ଶ୍ରେୟସ୍କର ମଣେ । କାରଣ ପ୍ରକୃତରେ ସେ ତା'ର ପୂର୍ବ ପ୍ରେମିକଙ୍କ ପ୍ରତି ଅତ୍ୟନ୍ତ ଅନୁରକ୍ତ ଥିଲା । ଏ ଘଟଣା ଶଚୀଶର ମାନବିକ ଦୃଷ୍ଟିଶୀଳ ମନରେ ଗଭୀର ଆଘାତ ଦିଏ । ତା' ପରେ ପରେ କଲିକତା ନଗରୀକୁ ମହାମାରୀ ପ୍ଲେଗ୍ ଆକ୍ରମଣ କରେ । ଯଥେଷ୍ଟ ଡାକ୍ତରଖାନା ନଥିବାରୁ ମାନବବାଦୀ ଦୟାଶୀଳ କକା ନିଜ ଘରଟିକୁ ହାସପାତାଳ କରି ଦିଅନ୍ତି ଓ ଗରୀବ ରୋଗୀଙ୍କର ସେବା କରୁ

କରୁ ଭୟଙ୍କର ରୋଗରେ ସଂକ୍ରମିତ ହୋଇ ମୃତ୍ୟୁବରଣ କରନ୍ତି । ତାଙ୍କ ରକ୍ଷଣଶୀଳ ଭାଇ ଏହା ଶୁଣି କହନ୍ତି ''ତା ପାଇଁ ଏହା ଠିକ୍ ହୋଇଛି ।''

କକାଙ୍କ ମୃତ୍ୟୁ ପରେ ଶଚୀଶ ଅଶାନ୍ତ ମନ ନେଇ ଘୁରି ବୁଲେ ଜୀବନର ଶୂନ୍ୟସ୍ଥାନ ପୂରଣ କାମନାରେ । ଶେଷରେ ଜଣେ ବୈଷ୍ଣବ ସନ୍ୟାସୀଙ୍କର ସାନିଧ୍ୟରେ ଆସି ସେ ତାଙ୍କର ଶିଷ୍ୟ ପାଲଟି ଯାଏ । କିଛିଦିନ ପାଇଁ ତା'ର ଏଇ 'ପଳାୟନବାଦୀ' ଜୀବନରେ ସେ ଖୁସିରେ ରହେ । ପୁଣି କିଛି ଦିନ ପରେ ଗୁରୁଙ୍କର ଅନିଚ୍ଛୁକ କ୍ରାନ୍ତିକାରୀ ଶିଷ୍ୟା ଜଣେ ଯୁବତୀ ଓ ସୁନ୍ଦରୀ ବିଧବା ତା'ର ଏକାଗ୍ରତା ଭଙ୍ଗକରେ । ଏଇ ଯୁବତୀ ସନ୍ୟାସିନୀ, ଦାମିନୀ ପୂର୍ବ 'ଚୋଖେରବାଲି' ଉପନ୍ୟାସର ବିନୋଦିନୀ ପରି ରକ୍ତମାଂସ ଭରା ନିଟୋଳ ଓ ଜୀବନ୍ତ ତଥା ବାସ୍ତବ ଏପରି ଏକ ବିରଳ ଚରିତ୍ରଟିଏ ଯାହାକୁ ଥରେ ପଢ଼ିସାରିଲା ପରେ ସହଜରେ ପାଠକ ଭୁଲିପାରେ ନାହିଁ । ଦାମିନୀ ଶଚୀଶକୁ ଭଲ ପାଉଥିଲା । କିନ୍ତୁ ଗୁରୁଙ୍କର ମର୍ଯ୍ୟାଦା ଓ ତାଙ୍କର ମମତା ପ୍ରତି ତା'ର ଆନୁଗତ୍ୟ ଥିବାରୁ ସେ ଟିକେ ଭୟ କରୁଥିଲା । ଶଚୀଶ ବୁଝିଥିଲା ଯେ ମାନବିକ ପ୍ରେମ କେବଳ ଏକ ଜାଲ ବା ବନ୍ଧନ ତେଣୁ ସେ ଦାମିନୀ ଠାରୁ ଦୂରେଇ ରହିବାକୁ ଚେଷ୍ଟା କରୁଥିଲା କିନ୍ତୁ ସଚେତନ ହୋଇପାରିଲା ନାହିଁ । ଥରେ ତାଙ୍କର ଦଳ ଯେତେବେଳେ ଗୋଟେ ଗୁହାରେ ରାତିରେ ଆଶ୍ରୟ ନେଇଥିଲେ ଶଚୀଶ ଶୋଇ ପାରିଲା ନାହିଁ । ଗୁମ୍ଫାରେ ଲୁଚି ରହିଥିବା କୌଣସି ଗୋଟେ ପଶୁ ତା' ଉପରେ ଆକ୍ରମଣ କଲା ଭଳି ସେ ଅନୁଭବ କଲା, ପାଦ ପାଖରେ ତାର କିଛି ଗୋଟେ ଲାଗୁଥିଲା । ଭୟରେ ଜୋରରେ ସେ ଗୋଟେ ଧକ୍କା ଦେଲା, ଧକ୍କାଟି ଲାଗିଲା ଦାମିନୀର ସ୍ତନରେ ।

ଦାମିନୀ ଚିନ୍ତାରୁ ମୁକ୍ତ ହୋଇ ନପାରି ତା ପ୍ରତି ଦାମିନୀର ସବୁ ପ୍ରେମ ଓ କାମନାକୁ ପରିହାର କରି ସେ ତା' ଠାରୁ ରକ୍ଷା ପାଇବାକୁ ଇଚ୍ଛା କଲା ସ୍ୱେଚ୍ଛାକୃତ ଭାବରେ । ନାରୀର ଅନ୍ତର୍ଦୃଷ୍ଟି ନେଇ ଦାମିନୀ ବୁଝି ପାରିଲା ଯେ ଶଚୀଶ କିପରି ନର୍କଗାମୀ ହୋଇଛି । ଆହୁରି ମଧ୍ୟ ଶଚୀଶଙ୍କର ମାନସିକତା ଭିତରଦେଇ ସେ ବୁଝିପାରିଲା ଯେ ସେ ଉଭୟଙ୍କ ଭିତରେ ଯେ ପାଶବିକ କାମନା ରହିଛି ତାକୁ ହିଁ କେବଳ ଶଚୀଶ ପ୍ରେମ ବୋଲି ଜାଣିଛି, ତେଣୁ ତା' ପ୍ରେମର ପ୍ରକୃତ ମୂଲ୍ୟ ସେ ବୁଝି ପାରୁନାହିଁ । ଶେଷରେ ଦାମିନୀ ତା ପିଛା ଛାଡିଦେଇ ଉପନ୍ୟାସଟିର ଚତୁର୍ଥ ଚରିତ୍ର ଶ୍ରୀବିଳାଶକୁ ବିବାହ କରିଛି । ଯିଏ ଉପନ୍ୟାସଟିର କାହାଣୀଟି କହୁଛି ଓ ଦାମିନୀକୁ ଖୁବ୍ ଭଲ ପାଇଛି । କିନ୍ତୁ ଦାମିନୀ ବେଶିଦିନ ସୁଖରେ ବିତାଇ ପାରିନାହିଁ, ଗୁମ୍ଫାରେ ସେଇ ରାତିରେ ସେ ଯେଉଁ ଧକ୍କା ଖାଇଥିଲା ତା'ରି ପୀଡାରୁ ସେ ଆଉ ମୁକ୍ତି ପାଇନାହିଁ, ଅଳ୍ପ ଦିନ ପରେ ତା'ର ମୃତ୍ୟୁ ହୋଇଛି । ତା' ଠାରୁ ମୁକ୍ତି ପାଇ ଶଚୀଶ କେବଳ ଦେହଜ କାମନାରୁ ନୁହେଁ ଧର୍ମାନୁସରଣରେ ଅବଶୋଷରୁ ମଧ୍ୟ ମୁକ୍ତି ପାଇଛି । ଏହାକୁ ସେ ମନେ କରିଛି ପଳାୟନ ଠାରୁ ଶ୍ରେୟସ୍କର । ତେଣୁ ପୁଣି ସେ କଲିକତାରେ ନିଜର ମାନବିକ ସେବାକାର୍ଯ୍ୟକୁ ଫେରି ଆସିଛି ଓ ଅଧିକ ବିଜ୍ଞ ଓ ଦୁଃଖବାଦୀ ଭାବରେ କାଳାତିପାତ କରିଛି ।

'ଚତୁରଙ୍ଗ' ଯେଉଁ ବର୍ଷ ପ୍ରକାଶ ପାଇଥିଲା ସେଇବର୍ଷ ରବୀନ୍ଦ୍ରନାଥଙ୍କର ସେ ସମୟର ବଡ ଉପନ୍ୟାସ ' ଘରେ ବାଇରେ' ମଧ୍ୟ ପ୍ରକାଶ ପାଇଥିଲା । ଏଥିରେ ତିନୋଟିଯାକ ଚରିତ୍ର ନିଜ ଚିନ୍ତା ଓ ଭାବନାକୁ ଡାଏରୀରେ ଲେଖି ରଖୁଥିଲେ । ଏଇ ଶତାବ୍ଦୀର ପ୍ରଥମ ଦଶକର ରାଜନୈତିକ ଘନଘଟାର ପୃଷ୍ଠଭୂମି ଉପରେ ଉପନ୍ୟାସଟି ରଚିତ । ଲେଖକ ନିଜେ ଏଇ ରାଜନୈତିକ ଆବର୍ତ୍ତ ଭିତରକୁ କିଛି ଦିନ ପାଇଁ ଟାଣି ହୋଇଥିଲେ । ଯେଉଁ ସମାଲୋଚକମାନେ ତାଙ୍କୁ

ପଳାୟନବାଦୀ କହି ସମାଲୋଚନା କରୁଥିଲେ, ଏଇ ଉପନ୍ୟାସଟି ସେମାନଙ୍କ ପାଇଁ ଥିଲା ଠିକ୍ ଉତ୍ତର । କିନ୍ତୁ ଏଇ ଉତ୍ତର ହେଲା ନିରର୍ଥକ ଓ ଆହୁରି ଅଧିକ କଟୁ କଥା ଶୁଣାଗଲା । ଏଥିରେ ଚିତ୍ରିତ ସଂଗ୍ରାମୀ ସ୍ୱଦେଶୀ ଜଣକ ଯାହାଙ୍କର ନିଜ ବଂଧୁଙ୍କୁ ପ୍ରତାରିତ କରିବା ଓ ତାଙ୍କ ବିଶ୍ୱସ୍ତ ପତ୍ନୀକୁ କୁପଥଗାମୀ କରେଇବାରେ କୌଣସି ଦ୍ୱିଧା ନଥିଲା, ତାର ଚରିତ୍ରକୁ ଉପନ୍ୟାସଟିରେ ଏଭଳି ନିଚୋଳ ଭାବରେ ବର୍ଣ୍ଣନା କରାଯାଇଥିଲା ଯେ ଲେଖକଙ୍କୁ ନୀତିଭ୍ରଷ୍ଟ ଓ ଦେଶଦ୍ରୋହୀ ଭାବରେ ନିନ୍ଦା କରାଯାଇଥିଲା । ଏଇ ଉପନ୍ୟାସ ପ୍ରକାଶର ତିନିବର୍ଷ ପର୍ଯ୍ୟନ୍ତ ଏହାକୁ ସମାଲୋଚକମାନେ ଯେ ଖଣ୍ଡ ଖଣ୍ଡ ଚିରିପକାଇ ନଷ୍ଟ କରିଦେଉଥିଲେ ଏହାହିଁ ସେମାନଙ୍କ ମନଉପରେ ଉପନ୍ୟାସଟିର ଗଭୀର ପ୍ରଭାବର ପରିଚୟ ।

ସମଗ୍ର ଉପନ୍ୟାସଟିର ପରିମଣ୍ଡଳ ଥିଲା ଉତ୍ତେଜନାପୂର୍ଣ୍ଣ । ଜାତୀୟ ଆନ୍ଦୋଳନ ପାଇଁ ଗୋଟିଏ ନିର୍ଦ୍ଦିଷ୍ଟ ଶ୍ରେଣୀର ଇଚ୍ଛା ଓ ଆଦର୍ଶକୁ କେନ୍ଦ୍ର କରି ଦୀର୍ଘ ଦିନରୁ ସୁପ୍ତ ହୋଇ ରହିଥିବା ହିଂସାତ୍ମକ କାମନା କ୍ରମଶଃ ରାଜନୈତିକ ଆକାଶରେ ଝଡ଼ ତୋଳୁଥିଲା । ପରସ୍ପର ବିରୋଧୀ ତର୍କବାଣର ଘର୍ଷଣରେ ନୂତନ ଚିନ୍ତାର ସ୍ଫୁଲିଙ୍ଗ ଅନ୍ଧକାରାଚ୍ଛନ୍ନ ଅବସ୍ଥାକୁ ଝଲସାଇ ଦେଉଥିଲା । ଏହା ଆତ୍ମୂଳକ ଏକ ଦ୍ୱନ୍ଦ୍ୱର କାହାଣୀ, ପୁରାତନ ଓ ନୂତନ ଭିତରେ ବାସ୍ତବ ରାଜନୀତି ଓ ଆଦର୍ଶବାଦ ଭିତରେ ସାଧ ଓ ସାଧନ ଭିତରେ ପ୍ରେମର ଦାବୀ ଓ ପ୍ରେମର ଦାନ ଭିତରେ ଘରର ନିଶ୍ଚିନ୍ତ ଆରାମ ଓ ବାହାରର ଅଶାନ୍ତ ଝଡ ଭିତରେ । କାବ୍ୟିକ ଇସ୍ତାହାର ହେଲେ ମଧ୍ୟ ଉପନ୍ୟାସଟି ଥିଲା ଗାନ୍ଧିବାଦୀ ଦର୍ଶନର ଏକ ଜୀବନ୍ତ ଦଲିଲ । ଅହିଂସା, ପ୍ରେମ ଓ ସତ୍ୟ ପ୍ରଭୃତି ଏଥିରେ ମୁଖ୍ୟ ଉପଜୀବ୍ୟ ଥିଲା । ଯେତେ ଭଲ ଭାବରେ ଗୃହୀତ ହେଲେ ବି ମନ୍ଦଉଦ୍ଦେଶ୍ୟ ଯେ ମନ୍ଦ ପରିଣାମକୁ ସୂଚୀତ କରାଏ ଏକଥା ପ୍ରତି ଗାନ୍ଧିଙ୍କର ସଚେତନ ସତର୍କବାଣୀ ଏଥିରେ ଅଭିବ୍ୟଂଜିତ । ଯେ କେହି ଏହାକୁ ପାଠକଲେ ଆପଣା ଛାଏଁ ବୁଝିପାରିବେ ଯେ ସବୁ ଆପାତଃ ବିରୋଧିତା ସତ୍ତ୍ୱେ ରବୀନ୍ଦ୍ରନାଥ ଓ ଗାନ୍ଧୀଙ୍କର କିପରି ଚିନ୍ତାର ସାମ୍ୟଥିଲା ।

ଉପନ୍ୟାସଟିର କଥାବସ୍ତୁ ତାଙ୍କର ସବୁ ଉପନ୍ୟାସ ପରି ସରଳ । ସେଇ ପୁରାତନ ତ୍ରିଭୁଜ । ଦୁଇଜଣ ପୁରୁଷ ଓ ଜଣେ ନାରୀ । ଜଣାଶୁଣା ଭଦ୍ରଲୋକ ନିଖିଲ, ବଡ ଜମିଦାରୀର ମାଲିକ, ସେଇ ଗୋଷ୍ଠୀର ଜଣେ ବ୍ୟତିକ୍ରମ ଥିଲେ । କହିବାକୁ ଗଲେ ଏତେ ଭଲ ଲୋକ ଯେ ବିଶ୍ୱାସ କରି ହେବନି । ଯଦିଓ ଟଲ୍‌ଷ୍ଟୟ ତାଙ୍କ ଜୀବନ ଓ କୃତିରେ ଏ ଗୋଷ୍ଠୀକୁ ବହୁ ପରିଚିତ କରାଇଛନ୍ତି ଓ ରବୀନ୍ଦ୍ରନାଥ ନିଜେ ପାରିବାରିକ ଜମିଦାରୀ ପରିଚାଳନା କଲାବେଳେ ଏହି ଭଳି ବଞ୍ଚିବା ପାଇଁ ଉଦ୍ୟମ କରିଥିଲେ । ଯାହାହେଉ ଉପନ୍ୟାସରେ ଏକ୍ଷ ଚରିତ୍ରଟି ବାସ୍ତବ ଅପେକ୍ଷା ବେଶୀ ଛାୟାଚ୍ଛନ୍ନ ଥିଲା । ନିଖିଲର ବଂଧୁ ସନ୍ଦୀପ ଥିଲେ ତା'ର ଆଶ୍ରୟପ୍ରାର୍ଥୀ । ସେ ଥିଲେ ବିପ୍ଳବୀ, ସ୍ୱଦେଶୀ, ଓଜସ୍ୱିନୀ ବକ୍ତା, କିନ୍ତୁ ନିର୍ଲଜ ଲମ୍ପଟ, ଅପର ପକ୍ଷରେ ସେ ଅଧିକ ବାସ୍ତବ ଓ ବିଶ୍ୱାସଯୋଗ୍ୟ । ତା'ଛଡ଼ା ତାଙ୍କର ଭାଷା ଏପରି ଚିତ୍ତହରଣକାରୀ ଥିଲା ଯାହା କେବଳ ରବୀନ୍ଦ୍ରନାଥ ହିଁ ତା ମୁହଁରେ ସଂଯୋଜନା କରି ପାରିଥିଲେ ।

ନିଖିଳର ପତ୍ନୀ ବିମଳା ଜଣେ ସାଧାରଣ ମହିଳା ଥିଲେ । ପରେ କିନ୍ତୁ ନିଜର କାମନା ଓ ଅହଂ ବଢ଼ିବା ସଙ୍ଗେ ସଙ୍ଗେ ସେ ଅସାଧାରଣ ହୋଇଉଠିଲେ । ତଥାପି ସେ ସମଧିକ ବାସ୍ତବ ଓ ଆକର୍ଷଣୀୟ । ଦିନେ ହଠାତ୍ ସନ୍ଦୀପର ଜ୍ୱାଳାମୟୀ ବକ୍ତୃତା ଶୁଣି ସେ ତାଙ୍କ ପ୍ରତି ଆକର୍ଷିତ ହୋଇ ଉଠିଥିଲେ । ଏ ଆକର୍ଷଣ କ୍ରମଶଃ ସନ୍ଦୀପର ଉଷ୍ମ ଜାନ୍ତବ ନିଶ୍ୱାସର ଆବେଶରେ ଅଧିକ

ଘନୀଭୂତ ହେଲା । ବିମଳା ନିଜ ଡାଏରୀରେ ଲେଖନ୍ତି ''ବହୁ ଦିନ ଧରି ମୁଁ ଗ୍ରାମ ଉପକଣ୍ଠର ଗୋଟେ କ୍ଷୁଦ୍ର ନଦୀଧାରା ହୋଇରହିଥିଲି କିନ୍ତୁ ହଠାତ୍ ସମୁଦ୍ରରୁ ଜୁଆର ଆସି ମୋ ବକ୍ଷକୁ ବିସ୍ତାରିତ କରିଦେଲା, ମୁଁ ଉତ୍‌ଫୁଲ୍ଲ ହୋଇ ଉଠିଲି, ମୋ କୂଳ ଉଚ୍ଛୁଳି ଉଠିଲା । ସମୁଦ୍ର ତରଙ୍ଗର ଉଦାର ଧ୍ୱନି ମୋର ପ୍ରମତ୍ତ ସ୍ରୋତ ଭିତରେ ପ୍ରତିଧ୍ୱନିତ ହେଲା । ମୋର ଧମନୀର ରକ୍ତ ପ୍ରବାହରେ ମୁଁ ସେଇ ଶବ୍ଦକୁ ଅନୁଭବ କରୁଥିଲି କିନ୍ତୁ ତା'ର ଅର୍ଥ ବୁଝି ପାରୁନଥିଲି ।'' ନିଖିଳ ନିଜର ପତ୍ନୀ ଓ ବଂଧୁଙ୍କ ସଂପର୍କ ବିଷୟରେ ଅବଗତ ହେଲେ ଓ ତାକୁ ସେ ସେଠି ବନ୍ଦ କରିପାରିଥାନ୍ତେ, କିନ୍ତୁ ସ୍ୱାଧୀନ ପ୍ରେମର ଆଦାନ ପ୍ରଦାନକୁ ସେ ଅଧିକ ମୂଲ୍ୟ ଦେଉଥିଲେ । ତା ପରେ ଏ ତିନିଙ୍କ ଭିତରେ ଯାହା ହେଲା ତାହା ପାଠକମାନେ ମୂଳ ଉପନ୍ୟାସ ପଢ଼ିବେ ଓ ଇଂରାଜୀ ଭାଷାନ୍ତର 'ହୋମ୍ ଆଣ୍ଡ ଦି ୱାର୍ଲ୍ଡ' ବହିରୁ ଓ ସତ୍ୟଜିତ୍ ରାୟ ନିର୍ଦ୍ଦେଶିତ ଚଳଚ୍ଚିତ୍ରରୁ ଜାଣିବେ ।

ଏହି ଉପନ୍ୟାସର ତାତ୍ପର୍ଯ୍ୟପୂର୍ଣ୍ଣ ନାମକରଣ କେବଳ ସେଥିରେ ନିହିତ ଥିବା ଗୋଟିଏ ଅର୍ଥକୁ ବହନ ନକରି ଅନେକ ଅର୍ଥର ସାର୍ଥକତମ ଇଙ୍ଗିତ ବହନ କରେ । ରବୀନ୍ଦ୍ରନାଥ ନିଜେ ଆପଣା ଘରର ପ୍ରେମ ଓ ବାହାର ବିଶ୍ୱର ପ୍ରଲୋଭନ ଭିତରେ ସର୍ବଦା ଆନ୍ଦୋଳିତ ହେଉଥିଲେ । ଆମୋଦପୂର୍ଣ୍ଣ ବିଦେଶ ଭ୍ରମଣର ସ୍ୱାଦ ଚାଖିବା ପରେ ଘରର ଗତ୍‌ଡାଳିକା ଜୀବନଯାତ୍ରା ନିରାଶ ଓ ବୈଚିତ୍ର୍ୟହୀନ ମନେ ହେଉଥିଲା । ବାରଂବାର ସେ ଅତିଷ୍ଠ ହୋଇ ଉଠୁଥିଲେ ''ମୁଁ ଖୋଲାପଥର ଆହ୍ୱାନ ଶୁଣିଛି, ଯଦିଓ ଅଧିକାଂଶ ରାସ୍ତା ବଂଦ ।'' ଜୁନ୍ 1915ରେ ଆଣ୍ଡ୍ରୁସ୍‌ଙ୍କ ପାଖକୁ ସେ ଲେଖିଛନ୍ତି ''ମୋର ମନ ବର୍ତ୍ତମାନ ଭ୍ରମଣଶୀଳ କିନ୍ତୁ ଦୁଃଖର ବିଷୟ ଯେ ମୁଁ ଏଠାରୁ ମୁକ୍ତି ପାଇପାରୁ ନାହିଁ । ତମ୍ବୁ ଭିତରେ ରହିବା ପରିବର୍ତ୍ତେ ମୁଁ ତାକୁ ବୋଝ କରି ଚାଲିଛି ।'' ସୁଦୂରର ସେଇ ଆଗମ ସଂଗୀତ ତାଙ୍କୁ ଆମନ୍ତ୍ରଣ ଜଣାଉଥିଲା । ନୂଆ ଜଗତକୁ ଜାଣିବାର ଅବକାଶ ଥିଲା ଓ ମିଳିତ ହେବାର ଥିଲା ସଦ୍ୟ ନୂତନ ମନ ସହିତ । ସେ ଅନୁଭବ କରୁଥିଲେ ତାଙ୍କର ନିଶ୍ଚୟ କିଛି କହିବାର ଅଛି ଓ ତାଙ୍କ ସ୍ୱର ଯେପରି ବିଶ୍ୱ ଚେତନାକୁ ସ୍ପର୍ଶ କରିପାରିବ । ୟୁରୋପ ସେତେବେଳେ ପାରସ୍ପରିକ କଳହରେ ପ୍ରମତ୍ତ । କିନ୍ତୁ ଜାପାନ ଓ ଆମେରିକା ଏ ସବୁରୁ ଅନେକ ଦୂରରେ ଓ ଶାନ୍ତ (ଯେପରି ସେ କଳ୍ପନା କରିଥିଲେ) । ସେଠାରେ ନିଶ୍ଚୟ ତାଙ୍କର ବିଶ୍ୱଭ୍ରାତୃତ୍ୱର ସନ୍ଦେଶକୁ ଲୋକେ ଶୁଣିବେ ଓ ପ୍ରାଚ୍ୟ ପାଶ୍ଚାତ୍ୟ ଉଭୟ ଗୋଲାର୍ଦ୍ଧକୁ ନେଇ ଯେ ଏଇ ପୃଥିବୀ ଗଠିତ - ଏକଥାକୁ ହୃଦୟଙ୍ଗମ କରିବା କେତେ ଜରୁରୀ ତାହା ବୁଝିବେ । 1915 ସାରା ବର୍ଷଯାକ ଜାପାନ ଭ୍ରମଣରେ ଯିବା କଥା କବିଙ୍କୁ ଘାରୁଥିଲା, ଏପ୍ରିଲ 4ରେ ରୋଦେନ୍‌ଷ୍ଟାଇନ୍‌ଙ୍କୁ ସେ ଗୋଟେ ଚିଠିରେ ଲେଖିଥିଲେ ''ଅନ୍ତତଃ ବର୍ତ୍ତମାନ ପାଇଁ ମୁଁ ଜାପାନ କଥା ଛାଡି ଦଉଛି । ତା'ର କାରଣ କିନ୍ତୁ ହଠାତ୍ କୌଣସି ସାହସ ବା ଉତ୍ସାହର ଅଭାବ ନୁହେଁ । ମାତ୍ର ସେଇ ଶୁଭ କାରଣ ଯାହା ଆଧୁନିକ ଯୁଦ୍ଧକୁ ବନ୍ଦ କରାଇଦିଏ । ମୋର ଆର୍ଥିକ ଅବସ୍ଥା ଭଲନୁହେଁ । ୟୁରୋପର ଅସୁବିଧାଜନକ ପରିସ୍ଥିତି ଏଥିର କାରଣ ।'' କିନ୍ତୁ ଜାପାନ ଯିବାର ଇଚ୍ଛାକୁ ସେ ଆଉ ବେଶୀ ଦିନ ଦୂରେଇ ରଖିପାରି ନଥିଲେ । 1916 ମେ ମାସରେ ବିଶ୍ୱ ଯୁଦ୍ଧ ଲାଗିଥିବା ବେଳେ ସେ ଆଣ୍ଡ୍ରୁସ୍ ଓ ପିଆରସନ୍‌ଙ୍କ ସହିତ ଜାହାଜରେ ଜାପାନ ଯାତ୍ରାକଲେ । ଯେଉଁ ଜାପାନୀ ଜାହାଜରେ ସେ ଗଲେ ତା'ର କ୍ୟାପଟେନ୍ ଓ କର୍ମଚାରୀମାନଙ୍କର ଶୃଙ୍ଖଳା, ପାରଦର୍ଶିତା ଓ ବଂଧୁତାରେ ସେ ମୁଗ୍ଧ ହୋଇଥିଲେ । ଦେଶୀ ଖାଦ୍ୟର ସ୍ୱାଦ ଯେପରି ଟିପଚଖାରୁ ଆରମ୍ଭ ହୁଏ ତାଙ୍କର ଜାପାନକୁ ଜାଣିବା ସେପରି ସେଇ ଜାପାନୀ ଜାହାଜରୁ ଆରମ୍ଭ ହୋଇଥିଲା ବୋଲି ସେ ଲେଖିଛନ୍ତି ।

ରେଙ୍ଗୁନରେ ଦୁଇଦିନ ପାଇଁ ଜାହାଜ ଅଟକି ଥିଲା । ପୁରୁଷଙ୍କ ଅପେକ୍ଷା ଅଧିକ କର୍ମନିପୁଣା ବର୍ମୀଜ ମହିଳାମାନଙ୍କର ହସ ହସ ମୁଖ କବିଙ୍କୁ ଆମୋଦିତ କରିଥିଲା । ହଂକଂରେ ସେଠାକାର ଅଧିବାସୀମାନଙ୍କର ଶାରୀରିକ ପରିଶ୍ରମ ଓ ଶୃଙ୍ଖଳିତ ଜୀବନଯାତ୍ରା ହେତୁ ସେମାନଙ୍କର ସୁନ୍ଦର ସୁଠାମ ଚେହେରା କବିଙ୍କୁ ଅଧିକ ଆନନ୍ଦିତ କରିଥିଲା । ଜେଟି ଉପରେ କାର୍ଯ୍ୟରତ ଚୀନ୍ ଶ୍ରମିକମାନଙ୍କର ଅର୍ଦ୍ଧନଗ୍ନ ଶରୀର ଖରାରେ ଝଲସୁଥିବା ଦେଖି ସେ ଲେଖିଥିଲେ ''ସେମାନଙ୍କ କୃଶକାୟ ଶରୀର ସୁଗଠିତ, କୌଣସି ଅଂଶରେ ଲେଶମାତ୍ର ଅତିରିକ୍ତ ମେଦ ନାହିଁ............ ବୀଣାର ସଂଗୀତ ପରି ସତେ ଯେପରିକି ପରିଶ୍ରମ ସେମାନଙ୍କ ଶରୀରରୁ ଆପଣାଛାଏଁ ଉଚ୍ଛୁଳି ଉଠୁଛି ।'' ତା ପରେ ସେ ଚୀନ୍‌ର ଭବିଷ୍ୟତ ବିଷୟରେ ଯାହା ଲେଖିଥିଲେ ତାହା ସ୍ମରଣୀୟ । ''ଏପରି ଶକ୍ତି, ଦକ୍ଷତା ଓ କର୍ମର ଆନନ୍ଦ ଗୋଟିଏ ସ୍ଥାନରେ ଏକତ୍ର ସମାବେଶିତ ହୋଇଥିବା ଦେଖି ମୁଁ ହୃଦୟଙ୍ଗମ କରିପାରୁଛି ଏହି ମହାନ୍ ଜାତିର ସମଗ୍ର ଭୂମିଭାଗରେ କେତେ ପରିମାଣର ଶକ୍ତି ରହିଛି । ଏପରି ଅମାପ ଶକ୍ତି ଯେତେବେଳେ ଆଧୁନିକ ଯାନ ପାଇବ ଅର୍ଥାତ୍ ବିଜ୍ଞାନ ଏହାର ଅକ୍ତିଆରକୁ ଆସିଯିବ ବିଶ୍ୱର ଆଉ କେଉଁଶକ୍ତି ଏହାକୁ ବାଧା ଦେବାରେ କ୍ଷମ ହେବ ? ସେତେବେଳେ ପ୍ରତିଭା ସହିତ ପାରଦର୍ଶିତା ମିଳିତ ହୋଇଯିବ । ଆଜି ଯେତେ ଦେଶ ପୃଥିବୀର ପ୍ରାଚୁର୍ଯ୍ୟକୁ ଭୋଗ କରୁଛନ୍ତି, ସେମାନେ ଚୀନ୍‌ର ଅଭ୍ୟୁତ୍ଥାନ ପ୍ରତି ଭୀତ ହୋଇ ଅଛନ୍ତି ଓ ତାକୁ ପ୍ରତିରୋଧ କରିବାକୁ ଇଚ୍ଛା କରୁଛନ୍ତି ।''

ରବୀନ୍ଦ୍ରନାଥ ଜାପାନରେ ତିନିମାସରୁ କିଛି ଊର୍ଦ୍ଧ୍ୱକାଳ ରହି ନାନା ସ୍ଥାନ ଭ୍ରମଣ କଲେ । ଜାପାନୀ ଜୀବନ ଓ ଜାପାନ ପ୍ରକୃତିର ବହୁ କଥା ତାଙ୍କୁ ଆକର୍ଷିତ କରିଥିଲା । ବିଶେଷତଃ ଜାପାନ ଅଧିବାସୀଙ୍କର ଶୃଙ୍ଖଳାବୋଧ, ଶାରୀରିକ ଓ ମାନସିକ ଧୈର୍ଯ୍ୟ ଓ ସହିଷ୍ଣୁତା, ମିତବ୍ୟୟିତା, ସୌନ୍ଦର୍ଯ୍ୟ ଅନୁରାଗ ଓ ସେଠାକାର ନାରୀମାନଙ୍କର ମନୋହାରିତା କବିଙ୍କୁ ମୁଗ୍ଧ କରିଥିଲା । ''ଏଠାରେ ପହଞ୍ଚିବା ପରଠାରୁ କେବେ କାହାକୁ ବାହାରେ ଗୀତ ଗାଇବା ଶୁଣିନାହିଁ'' ଏଇ ବିଷୟରେ ସେ ଡାଏରୀରେ ଲେଖିଛନ୍ତି ''ଏଇ ଲୋକଙ୍କ ହୃଦୟ ଜଳପ୍ରପାତ ପରି ଉତ୍ପ୍ଲାବିତ ନୁହେଁ, କିନ୍ତୁ ହ୍ରଦପରି ଧୀର ପ୍ରଶାନ୍ତ । ସେମାନଙ୍କର ଯେତେ କବିତା ମୁଁ ଶୁଣିବାକୁ ପାଇଲି ସବୁ ଛବିମୟ କବିତା, ସଂଗୀତମୟ ନୁହେଁ ।''

ଏଇ କବିତାଗୁଡିକର ସଂକ୍ଷିପ୍ତତାର ପ୍ରଭାବ କବିଙ୍କୁ ସାହାଯ୍ୟ କରିଥିଲା ଯେତେବେଳେ ସେ ଜାପାନୀ ତରୁଣୀମାନଙ୍କର ଅନୁରୋଧକୁ ଏଡେଇ ଦେଇ ନପାରି ସେମାନଙ୍କ ଅଟୋଗ୍ରାଫ୍ ବହିରେ କିଛି ଲିପିବଦ୍ଧ କରିବାକୁ ବାଧ୍ୟ ହୋଇଥିଲେ । ଏଇ ବିଚ୍ଛିନ୍ନ ପଦ ଓ କବିତା ପଂକ୍ତି ପରେ 'ଷ୍ଟ୍ରେ ବାର୍ଡ୍‌ସ' ନାମରେ ସଂକଳିତ ହେଲା । ଏଥିରେ କିଛି ତାଙ୍କର ବଙ୍ଗଳା କବିତାର ଅନୁବାଦ ଓ କିଛି ଥିଲା ଇଂରେଜୀରେ ଲେଖା ପଂକ୍ତି । ସେଥିରୁ ଅନେକ ଗୁଡିଏ ଖୁବ୍ ମନୋରଂଜକ ହେଲେ ବି ଉଚ୍ଚ ସାହିତ୍ୟ ସୃଷ୍ଟିର ଅନ୍ତର୍ଭୁକ୍ତ ନୁହେଁ । ସେଥିରୁ ଦୃଷ୍ଟାନ୍ତ ସ୍ୱରୂପ କିଛି ଧାଡି ଦେଖାଯାଉ ''ଉତ୍ତମଟି କୁ ମୁଁ ବାଛି ପାରେନି, ଉତ୍ତମଟି ମତେ ବାଛି ନିଏ ।'' ''ପ୍ରତ୍ୟେକ ଶିଶୁର ମୁହଁରେ ଫୁଟିଉଠେ, ଈଶ୍ୱର ମଣିଷଙ୍କ ସାଥୀ'' ''ଯିଏ ଭଲକାମ କରିବାରେ ବ୍ୟସ୍ତ ଥାଏ ତାକୁ ଭଲ ସାଜିବା ପାଇଁ ସମୟ ମିଳେନି'' ପୁଣି ଜାପାନର ଭବିଷ୍ୟତ ବିଷୟରେ ବିଜ୍ଞବାଣୀ ପ୍ରକାଶ କରି କହିଛନ୍ତି ''ତୁମର ମୂର୍ତ୍ତିସବୁ ଧୂଳିରେ ମିଶିରହି ପ୍ରମାଣ କରୁଛି ଭଗବାନଙ୍କ ସୃଷ୍ଟିରେ ଧୂଳି ତୁମ ମୂର୍ତ୍ତିଠାରୁ ମହତ୍ତର ।''

ବୁଦ୍ଧଙ୍କ ଦେଶର ଏଇ କବି-ମନିଷୀଙ୍କୁ ଜାପାନ ଜନଗଣ ଭବ୍ୟ ସମ୍ବର୍ଦ୍ଧନା ଦେଇଥିଲେ ।

କିନ୍ତୁ ଯେତେବେଳେ କବି ତାଙ୍କ ବକ୍ତୃତାରେ ଜାପାନୀମାନଙ୍କୁ ଚେତାଇ ଦେଇଥିଲେ ଯେ ପାଶ୍ଚାତ୍ୟ ସଭ୍ୟତାର କେବଳ ମାନବିକ ମୂଲ୍ୟବୋଧ ବ୍ୟତୀତ ତାର କ୍ଷମତାଲିପ୍ସା ଓ ଜାତିଗଠନ ନାମରେ ସାମୂହିକ ଅହଂକାରର ଜୟଗାନକୁ ଅନୁକରଣ କରିବା ଆଦୌ ସ୍ପୃହଣୀୟ ନୁହେଁ ସେତେବେଳେ କବିଙ୍କ ପ୍ରତି ସେମାନଙ୍କର କୌତୂହଳ ଶିଥିଳ ହୋଇ ଆସିଥିଲା । ''ସମଗ୍ର ମାନବ ଜାତିପ୍ରତି ବଦାନ୍ୟଭାବ ଦେଖାଇବାରେ ୟୁରୋପ ଯେପରି ମହାନତାର ପରିଚୟ ଦେଇଛି ଅନ୍ୟ ପକ୍ଷରେ ମାନବ ପ୍ରାଣରେ ଅସୀମ ଓ ଚିରନ୍ତନ ସମ୍ଭାବନାର ପରିପନ୍ଥୀ ଭାବରେ ଶକ୍ତି ଓ କ୍ଷମତାର ମୋହ ବଶ ହୋଇ ଆପଣା ସ୍ୱାର୍ଥ ସିଦ୍ଧି ପାଇଁ ସକଳ ପ୍ରକାର ମନ୍ଦକାର୍ଯ୍ୟ ଦିଗରେ ୟୁରୋପ ସେହିପରି ହୀନତାର ପରିଚୟ ମଧ ଦେଇଛି ।'' ଜାପାନୀମାନଙ୍କୁ ତାଙ୍କର ଆଧୁନିକପ୍ରବଣତା ପାଇଁ ସେ ପ୍ରଶଂସା କରିଥିଲେ କିନ୍ତୁ ସୂଚାଇ ଦେଇଥିଲେ ''ରୁଚିର ଦାସ ହେବା ଆଧୁନିକତା ନୁହେଁ, ମୁକ୍ତ ମନା ହେବା ହିଁ ପ୍ରକୃତ ଆଧୁନିକତା । ସ୍ୱାଧୀନ ଚିନ୍ତା ଓ କର୍ମରେ ଏହା ଆସେ, ୟୁରୋପୀୟ ମାଷ୍ଟରମାନଙ୍କ ଅଭିଭାବକତାରେ ତାହା ଆସେ ନାହିଁ । ବିଜ୍ଞାନରେ ଆଧୁନିକତା ଆସେ, ଜୀବନରେ ତା'ର ଭୁଲ ଉପଯୋଗରୁ ତାହା ଆସେ ନାହିଁ ।'' ତାଙ୍କ କଥା କିନ୍ତୁ ଆମ ପାଖରେ ବ୍ୟର୍ଥ ହୋଇଥିଲା । ସେ ସତରେ ଗୋଟିଏ ପରାଜିତ ଓ ଦାସତୁଲ୍ୟ ଜାତିର କବି ନଥିଲେ କି ?

1916 ସେପ୍ଟେମ୍ବରରେ କବି ସିଟଲ୍ ଅଭିମୁଖେ ଯାତ୍ରାକଲେ । ଯୁକ୍ତରାଷ୍ଟ୍ର ଆମେରିକାରେ ଏଇ ଦ୍ୱିତୀୟଥର ଭ୍ରମଣ ବେଳର ତାଙ୍କର ବକ୍ତୃତା ସବୁ 'ନେସ୍‌ନାଲିଜିମ୍ ଓ 'ପରସ୍‌ନାଲିଟ୍' ନାମକ ଦୁଇଟି ବହିରେ ସଂକଳିତ ହୋଇଛି । ଦ୍ୱିତୀୟ ବହିରେ ସଂକଳିତ ତାଙ୍କର ବକ୍ତୃତା ଗୁଡ଼ିକ ଖୁବ୍ ଆଦୃତ ହୋଇଥିଲା । ଏଥିରେ କଳା, ଶିକ୍ଷା ଓ ଦର୍ଶନ କ୍ଷେତ୍ରରେ ରବୀନ୍ଦ୍ରନାଥଙ୍କର ବ୍ୟକ୍ତିତ୍ୱର ପ୍ରତିଫଳନ ଓ ମାନବ ବ୍ୟକ୍ତିତ୍ୱ ଭିତରେ ଐଶ୍ୱରିକ ଚେତନାର ବିକାଶ ବିଷୟରେ ବହୁ ମୂଲ୍ୟବାନ୍ ଆଲୋଚନା ଦେଖିବାକୁ ମିଳେ । କିନ୍ତୁ ହୀନମନ୍ୟତା ଓ ସଂକୀର୍ଣ୍ଣ ସାଂସ୍କୃତିକଚେତନା ଭାବରେ ଜାତୀୟବାଦକୁ ତାଙ୍କର କ୍ରୁର ସମାଲୋଚନା ଆମେରିକାର ପତ୍ରପତ୍ରିକାରେ ଏହା ବିରୁଦ୍ଧରେ ଆକ୍ରମଣକୁ ଆହ୍ୱାନ କରିଥିଲା । ଡେଟ୍ରଇଟ୍ ଜର୍ନାଲ୍ ଏହା ସଂପର୍କରେ ସତର୍କ କରାଇଦେଇ ଲେଖିଥିଲା ''ଆମର ମହାନ୍ ଯୁକ୍ତରାଷ୍ଟ୍ରର ଅଗଣିତ ଯୁବ ସମାଜକୁ ଟାଗୋରଙ୍କ ଏପରି କଥାର ସାଂଘାତିକ ମାନସିକ ବିଷ ବିଭ୍ରାନ୍ତ କରି ବିପଥକୁ ଟାଣି ନେବ ।''

ଝଡ ଭଳି ଆମେରିକାନ୍ ଜୀବନର ଦ୍ରୁତଗତି ଓ ବ୍ୟସ୍ତତା ସାଂଗକୁ ଅଭ୍ୟସ୍ତ ନଥିବା ଅବିଶ୍ରାନ୍ତ ବକ୍ତୃତା କାର୍ଯ୍ୟକ୍ରମ ରବୀନ୍ଦ୍ରନାଥଙ୍କୁ କ୍ଳାନ୍ତ କରିପକାଇଥିଲା । ପୁଣି ସେ ସାନ୍‌ଫ୍ରାନ୍‌ସିସ୍‌କୋରେ ଥିଲାବେଳେ ନିଜ ଦେଶଲୋକଙ୍କ ଦ୍ୱାରା ଘଟିଯାଇଥିବା ଏକ ଅଘଟଣରେ ଆହୁରି ବ୍ୟଥିତ ହୋଇପଡିଥିଲେ । 'ଗଦର' ନାମକ ଏକ ବିପ୍ଳବୀ ଅନୁଷ୍ଠାନର କେତେଜଣ ଉତ୍ତେଜିତ ଦେଶପ୍ରେମୀ ଭାରତୀୟ ଯୁବକ କବିଙ୍କର ଜାତୀୟତାବାଦର ସମାଲୋଚନା କଥାଟିକୁ କଦର୍ଥ କରି ଏହାଦ୍ୱାରା ଭାରତୀୟ ଜାତୀୟତାବାଦୀ ଚେତନାକୁ ବିଶ୍ୱାସଘାତ କରାଯାଉଛି ବୋଲି କହିଥିଲେ । ପୂର୍ବବର୍ଷ କବି ବ୍ରିଟିଶ ସରକାରଙ୍କ ଦ୍ୱାରା 'ନାଇଟ୍' ଉପାଧି ପାଇଥାନ୍ତି । ଏଇ ଦୁଇଟି କଥାକୁ ଅହେତୁକ ଭାବରେ ଯୋଡିଦେଇ ସେଇ ଅତିଜାତୀୟତାପ୍ରେମୀ ଯୁବକମାନେ ଭାବିଲେ ଯେ ଏଇ ଭାରତୀୟ ନାଇଟ୍ କବି ବ୍ରିଟିଶର ଜଣେ ଏଜେଣ୍ଟ ଭାବରେ ନିଜ ଦେଶ ଓ ଜାତିକୁ ନିନ୍ଦିତ କରିବା ପାଇଁ ଆମେରିକା ଆସିଛନ୍ତି । ଅନ୍ୟପକ୍ଷରେ ବିନା ଦ୍ୱିଧାରେ ଯୁଦ୍ଧ ପ୍ରତ୍ୟାଖ୍ୟାନ କରିବା ପାଇଁ କବିଙ୍କର ଆହ୍ୱାନ କାଳେ ଆମେରିକୀୟଙ୍କ ମନକୁ ପ୍ରଭାବିତ କରିବ ସେଥିପାଇଁ

ବ୍ରିଟିଶ କର୍ତ୍ତୃପକ୍ଷ ମଧ୍ୟ କ୍ଷୁବ୍ଧ ହୋଇଥିଲେ । ତେଣୁ ସେମାନେ ମଧ୍ୟ ଅନ୍ୟ ଗୋଟିଏ ଗୁଜବ ପ୍ରଚାର କରୁଥିଲେ ଯେ ଏଇ ଭାରତୀୟ କବି ଜର୍ମାନୀ ପ୍ରଚାରର ସହାୟକ ଓ ବ୍ରିଟିଶ ତଥା ମିତ୍ରଶକ୍ତିର ଯୁଦ୍ଧ ପାଇଁ ଆମେରିକାର ସମ୍ବେଦନାକୁ ଶିଥିଳ କରିବା ପାଇଁ ଲାଗିଛନ୍ତି । ଏପରି ଦୁଇଆଡୁ ଭୁଲବୁଝାମଣାର ଶିକାର ହୋଇ କବି ଗଭୀର ଭାବରେ ଚିନ୍ତିତ ହୋଇ ପଡିଥିଲେ ଓ ଦେଶକୁ ଫେରିଆସିବାକୁ ଚାହୁଁଥିଲେ । ସେ ତାଙ୍କର ସବୁ ବକ୍ତୃତା କାର୍ଯ୍ୟକ୍ରମ ଓ ଭ୍ରମଣ ଅସମାପ୍ତ ଭାବେ ବାତିଲ କରିଦେଇ ଜାନୁୟାରୀ 1917 ରେ ଜାପାନ୍ ଅଭିମୁଖେ ଯାତ୍ରା କଲେ ।

ଫେରିବା ବାଟରେ ଜାପାନ୍‌ରେ ଗୋଟିଏ ମାସ କଟାଇ ରବୀନ୍ଦ୍ରନାଥ ମେ 1917 ରେ ଭାରତ ଫେରିଲେ । ଏଠି ସେ ଦେଖିଲେ ବିପ୍ଳବାତ୍ମକ ଜାତୀୟତାବାଦ ନୁହେଁ ବରଂ ଏକ ଅବଦମିତ ସ୍ୱଦେଶାନୁରକ୍ତି ଅନ୍ୟ ଏକ ଦେଶର ପାଦତଳେ ଲୋଟି ପଡୁଛି ଯେଉଁ ଦେଶର ଯୁବଗୋଷ୍ଠୀ ଅନ୍ୟତ୍ର ଆପଣାଦେଶର ମାନରକ୍ଷା ପାଇଁ ପ୍ରାଣବଳି ଦେଉଛନ୍ତି । ତଥାପି ସେତିକିବେଳେ ଭାରତ ସପକ୍ଷରେ ଜଣେ ସାହସୀ ବ୍ରିଟିଶ୍ ମହିଳାଙ୍କର ଉଦାତ୍ତ ସ୍ୱର ଶୁଣାଯାଇଥିଲା । ସେ ହେଲେ ଆନିବେସାନ୍ତ । ଭାରତୀୟ ସ୍ୱାଧୀନତା ସପକ୍ଷରେ ପ୍ରଚାର କରୁଥିବା ବେଳେ ମାଡ୍ରାସ ସରକାରଙ୍କ ଆଦେଶରେ ତାଙ୍କୁ ଅଟକ ରଖାଯାଇଥିଲା । ସେତେବେଳେ ରବୀନ୍ଦ୍ରନାଥ ଏଇ ଅଟକ ବିରୁଦ୍ଧରେ ସାଧାରଣରେ ପ୍ରତିବାଦ ଜଣାଇଥିଲେ । ଏପରି ଭାବରେ ପୁଣି ସେ ରାଜନୀତିର ଝଡ ଭିତରକୁ ଟାଣି ହୋଇ ଆସିଥିଲେ । ସେତେବେଳେ ରାଜନୈତିକ କେନ୍ଦ୍ରସ୍ଥଳ କେବଳ ବଙ୍ଗଦେଶଭିତରେ ସୀମିତ ରହିଲା ନାହିଁ । ବସ୍ତୁତଃ ନିଜ ଲୋକଙ୍କ ଦୃଷ୍ଟିରେ ସେ କ୍ରମଶଃ ରାଜନୈତିକ ଜଗତରେ ଏପରି ବିଶିଷ୍ଟ ହୋଇ ଉଠୁଥିଲେ ଯେ ଏକୁଟିଆ କୁଆଡେ ଯିବା ତାଙ୍କ ପାଇଁ ନିରାପଦ ହୋଇ ରହିଲା ନାହିଁ । ନିଜ ଲୋକଙ୍କର ଦୁଃଖ ଦୁର୍ଦ୍ଦଶା ଦେଖି ସେ ଅଧୀର ହୋଇ ଉଠୁଥିଲେ । ଚୁପ୍ ହୋଇ ରହିବା ତାଙ୍କପକ୍ଷେ ସମ୍ଭବ ନଥିଲା । କଲିକତାର ଗୋଟେ ବଡ଼ ସାଧାରଣସଭାରେ ସଦ୍ୟରଚିତ ଗୋଟେ ଦେଶ ବନ୍ଦନା ଗାଇ ସେ ଶ୍ରୋତାମାନଙ୍କ ହୃଦୟକୁ ଆଲୋଡିତ କରିଦେଇଥିଲେ । ସେଇ ବର୍ଷ ଶେଷଆଡ଼କୁ କଲିକତାରେ ଭାରତୀୟ ଜାତୀୟ କଂଗ୍ରେସର ବାର୍ଷିକ ଅଧିବେଶନର ଉଦ୍‌ଘାଟନ ଅବସରରେ କବି 'ଭାରତ ବନ୍ଦନା' ଶୀର୍ଷକ ଏକ ଦୀର୍ଘ କବିତା ଆବୃତ୍ତି କରିଥିଲେ । ସେଠି ସମବେତ ବହୁ ବିଶିଷ୍ଟ ରାଜନୈତିକ ନେତାମାନଙ୍କ ପକ୍ଷରୁ ସେ ସମ୍ବର୍ଦ୍ଧନା ପାଇଥିଲେ ।

କବିଙ୍କର ସ୍ୱାସ୍ଥ୍ୟ ଭଗ୍ନ ହୋଇଥିଲା । ମାନସିକ ଭାବରେ ସେ ଶ୍ରାନ୍ତ ହୋଇ ପଡ଼ିଥିଲେ । କେବଳ କାର୍ଯ୍ୟବ୍ୟସ୍ତତାରୁ ନୁହେଁ ତାଙ୍କ ଭିତରେ ଯେଉଁ ଅବିରାମ ଦ୍ୱନ୍ଦ୍ୱ ଚାଲିଥିଲା ତାହାହିଁ ଗଭୀର ଭାବରେ କବିଙ୍କୁ କ୍ଳାନ୍ତ କରି ପକାଇଥିଲା । ସେ ଦ୍ୱନ୍ଦ୍ୱ ତାଙ୍କର କବିସତ୍ତା ଓ ସ୍ୱଦେଶୀ ସତ୍ତା ଭିତରେ ବା କବି ଓ ଦୂରଦ୍ରଷ୍ଟା ଭିତରେ । ଯେତେବେଳେ ସେ କବି ସେତେବେଳେ କେବଳ ସେ ସୃଷ୍ଟି କରିବାକୁ ଚାହୁଁଥିଲେ, ପ୍ରକୃତି ଓ ଜୀବନର ଅଫୁରନ୍ତ ବୈଚିତ୍ର୍ୟକୁ ପ୍ରାଣଭରି ଦେଖିବାକୁ ଓ ଲେଖିବାକୁ । 'ଉଦ୍ଦେଶ୍ୟ ହୀନ ଭାବରେ ଆନନ୍ଦିତ ଓ ଉତ୍ତମ ହେବାକୁ' । କିନ୍ତୁ ଯେତେବେଳେ ସ୍ୱଦେଶୀ ଅଥବା ଦୂରଦୃଷ୍ଟିର ଭାବ ତାଙ୍କ ଭିତରେ ଜାଗ୍ରତ ହେଉଥିଲା ସେତେବେଳେ ସେ ଦେଖୁଥିଲେ ଭଗବାନଙ୍କ ଶଂଖ ମାଟିରେ ଧୂଳିଧୂସରିତ ହୋଇ ପଡିଛି ତେଣୁ ତାକୁ ଉଠାଇ ଆଣି ଯୁଦ୍ଧ ପାଇଁ ଡ଼ାକରା ଦେବା ତାଙ୍କର କର୍ତ୍ତବ୍ୟ । ତାଙ୍କ ଭିତରର ଏଇ ଦ୍ୱନ୍ଦ୍ୱ ବିଷୟରେ ସେ ସଚେତନ ଥିଲେ ଓ ଜାଣିଥିଲେ ଯେ ତାଙ୍କର କର୍ତ୍ତବ୍ୟ ଓ ପରମ ଧର୍ମ ହେଉଛି କବିଟିଏ ହେବା । ଭଗବାନଙ୍କର ସୈନିକଟିଏ ନହୋଇ ତାଙ୍କର ପ୍ରଚାରକଟିଏ ହେବା । ପୂର୍ବରୁ ଆଣ୍ଡ୍ରୁସ୍‌ଙ୍କ ପାଖକୁ ଲେଖା ଗୋଟିଏ

ଚିଠିରେ ସେ ଲେଖିଥିଲେ ''ମତେ ପ୍ରଚାର ଛାଡିବାକୁ ହେବ ଓ ପର ଉପକାର ପାଇଁ ଦୂତଟିଏ ହେବାକୁ ଚେଷ୍ଟା କରିବାକୁ ପଡିବ, ନିଜ ଅନ୍ତରର ଆଲୋକରେ ଆଲୋକିତ ହେବାକୁ ମୁଁ ଚାହେଁ, ହାତରେ ଆଲୋକ ବର୍ତ୍ତିକାଟିଏ କେବଳ ଧରିବାକୁ ଚାହେଁ ନାହିଁ'' ।

କିନ୍ତୁ ଆଲୋକ ବର୍ତ୍ତିକା ବି ସେ ଧରିବାରେ ସାହାଯ୍ୟ କରି ପାରିଲେନି । ଡ଼ାକ୍ତରମାନେ ତାଙ୍କୁ ସଂପୂର୍ଣ୍ଣ ବିଶ୍ରାମ ନେବାକୁ କହିଲେ । ଡ଼ାକ୍ତରମାନଙ୍କ ନିର୍ଦ୍ଦେଶକୁ ମାନିବାରେ ବି ସେ ବିଫଳ ହୋଇଥିଲେ । କାରଣ ଦିନ ପରେ ଦିନ ନିଜ ହାତରେ ସେ ବହୁ ସଂଖ୍ୟକ ଚିଠି ଲେଖୁଥିଲେ । ସେଥିରୁ ଗୋଟିଏ ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ ଥିଲା । ସେଥିରେ ସେ ଭାଷା ବିତର୍କ ସଂପର୍କରେ ଗାନ୍ଧିଜୀଙ୍କ ପ୍ରଶ୍ନର ଉତ୍ତର ଦେଇଥିଲେ । ଭାରତରେ ଆନ୍ତଃରାଜ୍ୟ ଯୋଗାଯୋଗର ମାଧ୍ୟମ ଭାବେ ହିନ୍ଦୀ ହିଁ ଏକମାତ୍ର ସମ୍ଭାବ୍ୟ ଜାତୀୟଭାଷା ବୋଲି ଗାନ୍ଧିଜୀଙ୍କ ସହିତ ଏକମତ ହୋଇ ସେ ଲେଖିଥିଲେ ''ଅବଶ୍ୟ ଏହା ମାଡ୍ରାସର ଜନ ସାଧାରଣଙ୍କ ପାଇଁ ଏକ ବିଦେଶୀ ଭାଷା ସଦୃଶ ।'' ଏଥିପାଇଁ ଓ ଆହୁରି ଅନେକ କାରଣରୁ ଯେତେବେଳ ପର୍ଯ୍ୟନ୍ତ ଏକ ନୂଆ ରାଜନୈତିକ ଦଳ ଏହାର ଗୁରୁତ୍ୱ ବୁଝି ନିରନ୍ତର ଅଭ୍ୟାସ ଦ୍ୱାରା ତାହାକୁ ସାଧାରଣ ବ୍ୟବହାର ସାପେକ୍ଷ କରାଇବା ଜାତୀୟ ଦାୟିତ୍ୱ ବୋଲି ଗ୍ରହଣ କରି ନାହାଁନ୍ତି ସେତେବେଳେ ଏପର୍ଯ୍ୟନ୍ତ ହିନ୍ଦୀ ଆମର ଜାତୀୟ କାର୍ଯ୍ୟଧାରାରେ ଅତିରିକ୍ତ ଭାଷା ହୋଇ ରହିବ'' ।

ଦେଶର ରାଜନୈତିକ ଅବସ୍ଥା ବେଳକୁ ବେଳ ଅସମ୍ଭାଳ ହୋଇ ଉଠିଲା । କବିଙ୍କର ଚେତାବାଣୀ ବାସ୍ତବରେ ରୂପାନ୍ତରିତ ହେଲା । ସାଂଗଠନିକ ଦକ୍ଷତାର ଅଭାବରୁ 'ତରୁଣ ବଂଗାଳି' ଉଗ୍ର ସ୍ୱଦେଶୀଙ୍କ କାର୍ଯ୍ୟ ସନ୍ତ୍ରାସବାଦୀ କାର୍ଯ୍ୟ ପନ୍ଥା ଧାରଣ କଲା । ବ୍ରିଟିଶ ସରକାର ୟୁରୋପରେ ନିଜର ବିଜୟ ବିଷୟରେ ସୁନିଶ୍ଚିତ ଥିଲେ ଓ ହିଂସା ଓ ପାଶବିକତାର ବାଟରେ ପ୍ରତିଶୋଧପରାୟଣ ହୋଇ ଉଠୁଥିଲେ । ହିଂସାର ପ୍ରତିହିଂସା ଓ ଘୃଣାର ଜବାବ ଅଧିକ ଘୃଣାରେ ଦିଆଯାଉଥିଲା । ମାନବ ଜାତିର ଏହି ଆଦିମ ତତ୍ତ୍ୱ ଆଧୁନିକ ଯୁଗରେ ବି ପ୍ରବଳ ହୋଇ ଉଠିଥିଲା । ରବୀନ୍ଦ୍ରନାଥ କେବେ ହିଂସା ଓ ଯୁଦ୍ଧରେ ବିଶ୍ୱାସୀ ନଥିଲେ, ଏପରିକି ନ୍ୟାୟୋଚିତ ଜାତୀୟ ଲକ୍ଷ୍ୟ ପାଇଁ ବି ସେ ଏସବୁର ପକ୍ଷପାତି ନଥିଲେ । ଏସବୁ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ସେ ଲୋକପ୍ରିୟତା ହରାଇଥିଲେ । କିନ୍ତୁ ବ୍ରିଟିଶ ଶାସନର ଦମନ ନୀତି ଦ୍ୱାରା ଏହି ସାହସୀ ତରୁଣମାନେ ଯେ ଭଳି ଭାବରେ କଷ୍ଟ ପାଇଥିଲେ ସେଥିରେ ସେ ଚୁପ୍ ହୋଇ ରହିପାରି ନଥିଲେ । ସଚେତନ ଭାବରେ ଏ କଥାର ପ୍ରତିବାଦ ସାଧାରଣରେ ସେ କରିଥିଲେ କେବଳ ତାହା ନୁହେଁ, ବ୍ୟକ୍ତିଗତ ଭାବରେ ସେ ସେମାନଙ୍କ ପାଇଁ ଯେ କିଭଳି ଲଢୁଥିଲେ ତତ୍କାଳୀନ ବଙ୍ଗର ରାଜ୍ୟପାଳଙ୍କ ଘରୋଇ ସଚିବଙ୍କୁ 18 ଫେବୃୟାରୀ 1918ରେ ଲେଖା ନିମ୍ନ ପ୍ରଦତ୍ତ ତାଙ୍କ ପତ୍ରରୁ ଏହାର ପ୍ରମାଣ ମିଳେ । ଯେତେବେଳେ ସେ ଅସୁସ୍ଥ ଥାଆନ୍ତି ଓ ଡ଼ାକ୍ତରମାନେ ତାଙ୍କୁ ସଂପୂର୍ଣ୍ଣ ବିଶ୍ରାମ ପାଇଁ ପରାମର୍ଶ ଦେଇଥା'ନ୍ତି, ସେତେବେଳେ ସେ ଉକ୍ତ ଚିଠିରେ ଲେଖିଥିଲେ ''ଗତଥର ଆପଣଙ୍କୁ ଲେଖିଲାବେଳେ ମୋର ମନେ ହେଉଥିଲା ଯେ ମୁଁ ଯଦି ସମାଜର ଭୁଲ ସୁଧାରିବା କାର୍ଯ୍ୟ ପରିତ୍ୟାଗ କରି କେବଳ ସାହିତ୍ୟରେ ମନୋନିବେଶ କରେ ତାହେଲେ, କାହାରି କିଛି କ୍ଷତି ହେବ ନାହିଁ । କିନ୍ତୁ ଏପରି ଅବସ୍ଥା ଆସେ ଯେତେବେଳେ ଆପଣାର ନିଭୃତ କୋଠରୀ ଭିତରେ ଶାନ୍ତି ଓ ସୁଖରେ ରହିବା ଦୁଃଖଦାୟକ ଓ ଲଜ୍ଜାକର ହୋଇଯାଏ । ବିଶେଷତଃ କାରାଗାରାରେ ଜଣେ ଅସହାୟ ସଂଗ୍ରାମୀଙ୍କ କରୁଣ କାହାଣୀ ନିର୍ଭରଯୋଗ୍ୟ ସୂତ୍ରରୁ ଜାଣିଲା ପରେ ଆପଣଙ୍କ ପାଖକୁ ପୁନରାୟ ଲେଖିବା

ପାଇଁ ବାଧ୍ୟହେଲି ।'' ଏହିଭଳି ଅନେକ ଘଟଣାରେ ସେ ଜଡ଼ିତ ହେଉଥିଲେ ଓ ଏସବୁ ତାଙ୍କୁ ମାନସିକ ବେଦନା ମଧ୍ୟ ଦେଉଥିଲା ।

ଏସବୁ କଷ୍ଟ ସାଙ୍ଗକୁ ନିଜର ଅତ୍ୟନ୍ତ ଆଦରର ବଡ ଝିଅ ବେଲାର ସାଂଘାତିକ ଅସୁସ୍ଥତା କବିଙ୍କର ମାନସିକ ଉଦ୍‌ବେଗ ବଢାଇ ଦେଇଥିଲା । ବେଲା ସେହିବର୍ଷ ମେ ମାସରେ ମୃତ୍ୟୁ ବରଣ କଲେ । ଫେବୃୟାରୀ 14 ରେ କବି ସେତେବେଳେ ଚୀନ୍‌ରେ ଥିବା ପିୟରସନଙ୍କ ପାଖକୁ ଲେଖିଥିଲେ ''ବେଲାର ଅବସ୍ଥା ଦିନକୁ ଦିନ ଖରାପ ଆଡ଼କୁ ଯାଉଛି । ମତେ ବାରଂବାର ଶାନ୍ତିନିକେତନରୁ କଲିକତା ଆସିବାକୁ ପଡୁଛି । ମୃତ୍ୟୁ ଜୀବନର ଅପର ଦିଗ ଯାହା ଅନିବାର୍ଯ୍ୟ ମୁଁ ମୃତ୍ୟୁକୁ କେବେ ଭୟ ଦୃଷ୍ଟିରେ ଦେଖେ ନାହିଁ । କିନ୍ତୁ ରୋଗ ବଡ ମାରାତ୍ମକ ଶତ୍ରୁ, ଯେତେବେଳେ ତା ସହିତ କିପରି ଲଢିବାକୁ ହେବ ଆମେ ଜାଣି ନଥାଉ, ସେତେବେଳେ ଆମ ମନ ବିଦ୍ରୋହ କରିଉଠେ ।''

ତାଙ୍କ ହୃଦୟରେ କିଭଳି ଭାବରେ ବିଦ୍ରୋହର ଝଡ଼ ଉଠିଥିଲା ତା'ର ପ୍ରମାଣ ମିଳେ ସେତେବେଳର ଲେଖା ତାଙ୍କର ଗଳ୍ପ ଓ କବିତାରେ ବର୍ଣ୍ଣିତ ଘଟଣାବଳୀଗୁଡିକରୁ । ସେଇବର୍ଷ 'ପଳାତକା' ନାମକ ଏକ ବହିରେ ଏହା ପ୍ରକାଶିତ । ଏହାର ଦୁଇ ବର୍ଷ ପୂର୍ବରୁ ପ୍ରକାଶିତ 'ବଳାକା' କାବ୍ୟ ଗ୍ରନ୍ଥରେ କବି ତାଙ୍କର ଶୂନ୍ୟଚାରୀ କଳ୍ପନାର ପକ୍ଷ ବିସ୍ତାର କରି ସୁଦୂର ସ୍ୱର୍ଗ ଆଡକୁ ଗତି କଲାବେଳେ ପ୍ରଶାନ୍ତ ଚିତ୍ତରେ ଦେଖୁଥିଲେ ନିତ୍ୟ ପରିବର୍ତ୍ତନଶୀଳ ବିଶ୍ୱ ପ୍ରକୃତିର ଅପରି ବର୍ତ୍ତନୀୟ ଶାଶ୍ୱତ ସୌନ୍ଦର୍ଯ୍ୟ । ସକଳ ବସ୍ତୁ ସେଠି ଅବିରାମ ଭାବେ ଗତିଶୀଳ । ଅନନ୍ତ ଆଡକୁ ପ୍ରଧାବିତ, କେହି ଜାଣେନି ତା'ର କାରଣ ଓ ଗନ୍ତବ୍ୟ ସ୍ଥଳ । କିନ୍ତୁ ସେହି ଚଳମାନ ଗତିରେ ଥାଏ ଏକ ସଜୀବ ଆନନ୍ଦ, ତା'ରି ଭିତରେ ନିହିତ ଥାଏ ତାର ଅନ୍ତିମ ସାର୍ଥକତା । କିନ୍ତୁ 'ପଳାତକା'ରେ କବି ଧରିତ୍ରୀକୁ ଓହ୍ଲେଇ ଆସିଛନ୍ତି । ଜୀବନରେ ହତାଶା ଓ ଭାଗ୍ୟର କ୍ରୁର ବିଦ୍ରୂପ ବିଷୟରେ, ଏହାର କ୍ଷଣିକ ଆନନ୍ଦ ଓ ପାର୍ଥିବ ଭଙ୍ଗୁର ସଂପଦ ବିଷୟରେ ଚିନ୍ତାରେ ଘାରିହୋଇଛନ୍ତି ।

ଏସବୁ କବିତାର ଭାବବସ୍ତୁ ଅତି ସାଧାରଣ । ମୁକ୍ତ ଓ ଅବାରିତ ଏ କବିତାର ଛନ୍ଦ । କବିଙ୍କର ଆବେଗ ଓ ଉଦ୍‌ବେଗ ଏଥିରେ ବିନା ଆୟାସରେ ସ୍ୱତଃ ପ୍ରକାଶିତ । ଭାଷା ଏହାର ସରଳ ଓ ଲୌକିକ । ଦୈନନ୍ଦିନ ଜୀବନର ଅକୁହା ଦୁଃଖ ପୂର୍ଣ୍ଣ ଛୋଟ ଛୋଟ କଥା, ମୁଖ୍ୟତଃ ହିନ୍ଦୁ ପରିବାରରେ ନାରୀର ଆବଦ୍ଧ ଜୀବନ, ତା'ର ନୈରାଶ୍ୟ, ନିଷ୍ଠା, ସତତା ଓ ସହନଶୀଳତା- ଏସବୁ ଥିଲା ସେ କବିତାର ନିର୍ଯ୍ୟାସ । ଅତିଶୟ ଭାବାଳୁତାରେ ନୁହେଁ, ଗଭୀର ସମ୍ବେଦନଶୀଳତା ଘେନି ଅତିସୂକ୍ଷ୍ମ ଭାବରେ ଏସବୁ ଏ କବିତାରେ ଚିତ୍ରିତ । ଯେଉଁ ବର୍ଷ ସେ ଦେଖିଥିଲେ ତାଙ୍କ ବଡ ଝିଅର ଶୋକ ଓ ମୃତ୍ୟୁ ସେଇ ବର୍ଷ ହିଁ ଏସବୁ କବିତା ରଚିତ ହୋଇଥିଲା । ତେଣୁ ବ୍ୟକ୍ତିଗତ ଦୁଃଖର କାରୁଣ୍ୟଭରା କ୍ରନ୍ଦନ ଏଥିରୁ ଶୁଭେ । କବି ପ୍ରାଣର ସକଳ ଆତ୍ମୀୟତା ଓ ଧୈର୍ଯ୍ୟ ଦେଇ ଅନୁଭବ କରିଥିବା ଦୁଃଖର ଗାଥା ତେଣୁ ଚିରକାଳ ଯେଉଁମାନେ ଜୀବନରେ ଦୁଃଖଭୋଗ କରିବା ପାଇଁ ବଂଚି ରହିଥାନ୍ତି ସେମାନଙ୍କ ପାଇଁ ଏହା ଗଭୀର ଅନୁକମ୍ପାର ଆଶ୍ୱାସନାବାଣୀ ହୋଇ ଉଠିଛି । ଗୋଟିଏ କବିତାରେ ହିନ୍ଦୁ ଯୌଥ ପରିବାରରେ ଅପରାଧର ଏକ ଶୋଚନୀୟ ଚିତ୍ର ବର୍ଣ୍ଣିତ । ବାଇଶ ବର୍ଷ ପତି ଓ ତାଙ୍କ ପରିବାରର ନିଷ୍ପାପର ସେବା କରିବାପରେ ହିଂସାଦ୍ୱେଷରୁ ସର୍ବଦା ଦୂରେଇ ରହୁଥିବା ସରଳ ବଧୂଟି ନିଜର ମୃତ୍ୟୁ ଶଯ୍ୟାରେ ଯେଉଁ ସ୍ୱଗତୋକ୍ତି କରୁଛି ତାଠାରୁ ବଳି ଦୁଃଖର କଥା ଆଉ କଣ ହୋଇପାରିବ ? ଆଜି ମୃତ୍ୟୁ ବେଳାରେ ସେ ଔଷଧ ଖାଇବାକୁ ପ୍ରତ୍ୟାଖାନ କରିଦେଉଛି । କାରଣ ବଂଚିବାଟା ହିଁ ତା ପାଇଁ ଏବେ ଏପରି ଗୋଟେ ମାରାତ୍ମକ

ରୋଗରେ ପରିଣତ ହୋଇ ଯାଇଛି ଯାହାକୁ କେବଳ ମୃତ୍ୟୁହିଁ ଭଲ କରିପାରିବ । କୋଠରୀର ସବୁ ଝରକା ଖୋଲାଛାଡ଼ି ଦେବାକୁ ସେ କହେ କାରଣ ମୁକ୍ତବାୟୁ ଅବାଧରେ ଘରେ ପଶି ପାରିବ । ସେ ଆଉ ଏକ ବୃହତ୍ତର ମୁକ୍ତିର ଅପେକ୍ଷାରେ ଉଦ୍‌ଗ୍ରୀବ । ଏବେ ମୃତ୍ୟୁ ଶଯ୍ୟାହିଁ ତା'ର ବିବାହ ଶଯ୍ୟା ଯେଉଁଠି ସେ ମୃତ୍ୟୁକୁ ଅପେକ୍ଷା କରୁଛି ଓ ଜୀବନରେ କେବେ ପାଇନଥିବା ସୁଖ ଏବେ ମୃତ୍ୟୁର ବାହୁ ବନ୍ଧନରେ ପାଇବା ପାଇଁ ଚାହୁଁଛି ।

ଅନ୍ୟ ଏକ କବିତାରେ ଛୋଟ ଝିଅ ମଂଜୁଳିର ସର୍ବଦା ହୁକାଟାଣୁଥିବା ଓ ନୀତିବାକ୍ୟ କହୁଥିବା ପିତା ତାକୁ ତାଠାରୁ ପାଞ୍ଚଗୁଣ ବୟସର ଜଣେ ଲୋକଙ୍କ ସହିତ ବାହାଦେଇଛନ୍ତି । ଅଳ୍ପ କିଛି ଦିନପରେ ସେ ବିଧବା ହୋଇ ଘରକୁ ଫେରେ ଓ ସେଇପରି ଜୀବନ କାଟେ । ଯୁବତୀ ଝିଅର ଏପରି ଦଶା ଦେଖି ତା ମା'ର ହୃଦୟ ଭାଙ୍ଗି ପଡ଼ିଲା । ସେ ଆଉ ବେଶୀ ଦିନ ବଂଚି ରହିଲେନି । ମା'ଙ୍କ ଅନ୍ତେ ମଂଜୁଳି ଦିନରାତି ବାପାଙ୍କ ସେବାରେ କଟାଇଲା । କିନ୍ତୁ ବୃଦ୍ଧ ବାତରୋଗୀ ବାପା ବିନା ପତ୍ନୀରେ ବେଶୀ ଦିନ ଚଳି ନପାରି ନିଜ ନୀତି ବଚନରୁ ସହମତ ଖୋଜି ପୁଣି ଯୁବତୀଟିଏ ବିବାହ ହୋଇଗଲେ । କିନ୍ତୁ ବିବାହ ପରେ ଘରକୁ ଫେରି ସେ ଦେଖିଲେ ଘର ଶୂନ୍ୟ । ମଞ୍ଜୁଂଳିର ମୋହାନ୍ଧତା ଦୂରହୋଇଛି । ସେ ଚତୁରୀ ପାଲଟି ଯାଇ ପଡୋଶୀ ଡାକ୍ତରଙ୍କ ସହିତ ଉଭାନ ହୋଇ ଯାଇଛି ଯାହାକୁ ସେ ମନେମନେ ପୂର୍ବରୁ ବହୁତ ଭଲ ପାଉଥିଲା ଓ ସେବି ମଂଜୁଳିକୁ ଖୁବ ଭଲ ପାଉଥିଲେ । କ୍ରୋଧୀ ବାପା ଝିଅର ଏପରି କାର୍ଯ୍ୟରେ କ୍ଷୁବ୍ଧ ହୋଇ ତାକୁ ଅଭିଶାପ ଦେଲା । ଏହି ପରି ପୂର୍ବୋକ୍ତ ଦୁଇଟି କବିତା ଯାଥାକ୍ରମେ 'ମୁକ୍ତି' ଓ 'ନିଷ୍କୃତି'ରେ ଦୁଇ ପ୍ରକାରେ ମୋକ୍ଷର ପଥ ସୂଚିତ ହେଇଛି ।

ଆଉ ଗୋଟିଏ ମର୍ମସ୍ପର୍ଶୀ କବିତାରେ ନାରୀ ହୃଦୟର ଦୟା ଓ ମାନବିକତା ସହିତ ପୁରୁଷର ଅହଂର ବିପରୀତାତ୍ମକ ଚିତ୍ର ଦିଆ ଯାଇଛି । କବିତାଟିର ନାଁ ''ଫାଙ୍କି'' । କବିତାଟି ଜଣେ ସ୍ୱାମୀ ଦ୍ୱାରା କୁହାଯାଇଛି ଯାର ପତ୍ନୀ ବିନୁ ବହୁଦିନ ଧରି ଅସୁସ୍ଥ ଥିବାରୁ ଜଳବାୟୁ ପରିବର୍ତ୍ତନ ପାଇଁ ଡ଼ାକ୍ତର ପରାମର୍ଶ ଦେଇଛନ୍ତି । ବିବାହିତ ଜୀବନରେ ଏଇ ପ୍ରଥମ ଥର ଶାଶୁ ଶ୍ୱଶୁର ଘରର ବନ୍ଦୀ ପରିବେଶରୁ ବାହାରକୁ ଆସିବାର ସୁଯୋଗ ପାଇଲା ବିନୁ । ସେଠି ଏପରିକି ସ୍ୱାମୀ ଠାରୁ ବି ସେ ଯାହା ପାଉଥିଲା ତାହା ଭଙ୍ଗାବାକ୍ୟରେ ପାଦପୂରଣ ପରି ଜୋରକରି ଟାଣି ଆଣିବା ଜିନିଷ । ଏବେ ଦୁହେଁ ମିଶି ରେଳଯାତ୍ରା କଲାବେଳେ ବିନୁର ମଳିନ ମୁହଁଟା ଆନନ୍ଦରେ ହଠାତ୍ ତେଜିୟାନ୍ ଦେଖାଯାଉଥିଲା । କୌଣସି ଷ୍ଟେସନ୍ ଧାରରେ ଟ୍ରେନ୍ ବଦଳାଇଥିଲା ବେଳେ ଏକ ହକରରସ୍ତ୍ରୀ ରୁକ୍ମିଣୀର କଥାରେ ବିଚଳିତ ହୋଇ ତାର ଝିଅର ବିବାହ ପାଇଁ ବିନୁ ସ୍ୱାମୀକୁ ତାକୁ ପଚିଶ ଟଙ୍କା ଦେବାପାଇଁ କହିଲା । ସ୍ୱାମୀ ଦେଇଛି ବୋଲି କହି ତାକୁ ଠକି ଦେଲା କିନ୍ତୁ ପ୍ରକୃତରେ ରୁକ୍ମିଣୀକୁ ଦୁଇଟଙ୍କା ଦେଇ ସେଠୁ ଶୀଘ୍ର ଛାଡ଼ି ଚାଲି ନଗଲେ ଷ୍ଟେସନ୍ କର୍ତ୍ତୃପକ୍ଷଙ୍କୁ ଜଣାଇଦେବ ବୋଲି ଭୟ ଦେଖାଇଥିଲା । ଜୀବନର ଶେଷ ଅବସ୍ଥାରେ ସ୍ୱାମୀଠାରୁ ସବୁ ସ୍ନେହ ଓ ମମତା ପାଇ ସକୃତଜ୍ଞ ଭାବେ ଦୁଇମାସ ପରେ ବିନୁର ଦେହାନ୍ତ ହୋଇଗଲା । କିନ୍ତୁ ପରିତପ୍ତସ୍ୱାମୀ ସେହିପରି ବିଶ୍ୱସ୍ତ ଓ ସ୍ନେହଶୀଳା ପତ୍ନୀ ପ୍ରତି ଛଳନା କରିଥିବାରୁ ନିଜେ ଶାନ୍ତି ପାଇପାରୁ ନଥିଲା । ଫେରିବା ବାଟରେ ପୂର୍ବୋକ୍ତ ଷ୍ଟେସନ୍‌ରେ ନିଜ ଭୁଲର ପ୍ରାୟଶ୍ଚିତ ପାଇଁ ସେ ରୁକ୍ମିଣୀକୁ ଉଦବେଗ ହୋଇ ଖୋଜିଲା, କିନ୍ତୁ ଆଉ ତାକୁ ପାଇଲା ନାହିଁ ।

୧୯୧୨ ଏପ୍ରିଲ 13 ତାରିଖରେ ଅମୃତସର ପାଖରେ ଜାଲିଆନାୱାଲାବାଗରେ

ଗଣହତ୍ୟାକାଣ୍ଡ ଘଟିଗଲା । ସେତେବେଳେ ଚାରିଆଡ଼େ ଜରୁରୀ କାଳୀନ କଡାକଡି ଅବସ୍ଥା । ସମ୍ବାଦ ପରିବେଷଣ ଉପରେ ଭୀଷଣ କଟକଣା ଜାରିଥାଏ । ଲୌହ କବାଟର ଅନ୍ତରାଳକୁ ଭେଦକରି ଏପରି ଏକ ନାରକୀୟ ଘଟଣାର ଗନ୍ଧସୁଦ୍ଧା ବାହାରକୁ ଆସିପାରି ନଥିଲା କେତେ ସପ୍ତାହ ଧରି । ଶେଷରେ ଯେତେବେଳେ ସମ୍ବାଦ ବାହାରିଲା ଓ ରବୀନ୍ଦ୍ରନାଥ ପ୍ରଥମେ ଏ ଖବର ଶୁଣିଲେ ସେ ଗଭୀର ଭାବରେ ମର୍ମାହତ ହୋଇ ପଡ଼ିଲେ । ଶାନ୍ତିନିକେତନରେ ତାଙ୍କର ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକ୍ରମ ବାତିଲ କରିଦେଇ କଲିକତା ଗଲେ । ସେଠି ରାଜନୈତିକ ନେତାମାନଙ୍କୁ ଡାକି ପ୍ରତିବାଦ ପାଇଁ ଏକ ସାଧାରଣ ସଭାର ଆୟୋଜନ କରିବାକୁ କହିଲେ । ସେଥିରେ ସେ ସଭାପତିତ୍ୱ କରିବା ପାଇଁ ଚାହିଁଲେ, କିନ୍ତୁ ନେତାମାନଙ୍କର ଅପାରଗତାରୁ ତାହା ହୋଇପାରିଲା ନାହିଁ । ତା' ପରେ ସେ ନିଜ ବିବେକାନୁମୋଦିତ କାର୍ଯ୍ୟ କଲେ । ସେ ତାଙ୍କର ବହୁପୂର୍ବରୁ ରଚିତ କବିତା ପଂକ୍ତିର ଆଦର୍ଶରେ କାର୍ଯ୍ୟକଲେ । ''ଯଦି ଡାକ ଶୁଣି କେହି ନ ଆସି ଭୀତହୋଇ ରହିଯାନ୍ତି ସେମାନେ ହତଭାଗା, ତେବେ ନିଜ ମୁହଁ ଖୋଲ, ନିଜେ ହିଁ ଏକଲା ଚାଲ ।'' କାହାକୁ କିଛି ନ କହି, ନିଜ ପୁଅକୁ ମଧ୍ୟ ଜାଣିବାକୁ ନ ଦେଇ ସେ 29 ମେ ରାତିରେ ଭାଇସ୍‌ରାୟ ଲର୍ଡ ଚେମସ୍‌ଫୋର୍ଡଙ୍କୁ ଚିଠି ଲେଖି ତାଙ୍କୁ ଦିଆଯାଇଥିବା ସମ୍ମାନଜନକ ନାଇଟ୍‌ହୁଡ୍ ଫେରାଇ ଦେଲେ । ପରଦିନ ସକାଳେ ଚିଠିଟି ଖବର କାଗଜରେ ପ୍ରକାଶ ପାଇଲା । କୌଣସି ସଭ୍ୟମାନବର ଇତିହାସରେ ଦ୍ୱିତୀୟ ଦୃଷ୍ଟାନ୍ତ ନ ଥିବା ନିକଟ ଅତୀତର ନୃଶଂସ ଘଟଣାର କଥା ମନେ ପକାଇ ଦେଇ ସେ ଲେଖିଥିଲେ, ''ମୋ ଦେଶର ଅଗଣିତ ଜନଗଣ ଦାରୁଣ ଦୁଃଖରେ ନିର୍ବାକ । ସେମାନଙ୍କ କ୍ଷୋଭ ଓ ତୀବ୍ର ପ୍ରତିବାଦର ସ୍ୱର ଉଚ୍ଚାରଣ କରିବାର ପରିଣତିକୁ ସମ୍ମୁଖୀନ ହେବାପରେ ସାମାନ୍ୟ କାର୍ଯ୍ୟ ଅନ୍ତତଃ ମୁଁ ଦେଶ ପାଇଁ କରିପାରିବି । ଏପରି ସମୟ ଆସିଛି, ଯେତେବେଳେ ପଦପଦବୀ ଆମକୁ ଲଜ୍ଜାରେ ମୁଖ ଅବନତ କରି ଦେଉଛି, ତାହା ଏକ ଅଶାଳୀନ ଉପହାସରେ ପରିଣତ ହୋଇଛି । ମୁଁ ମୋର ସବୁ ପଦଗୌରବ ପରିତ୍ୟାଗ କରି ମୋ ଦେଶ ସାଧାରଣ ଲୋକଙ୍କ ସହିତ ସମାନ ହୋଇ ରହିବାକୁ ଚାହେଁ, ଯେଉଁମାନେ ନିଜର ପାରଂପରିକ ସରଳତା ଯୋଗୁଁ ଆଜି ଏପରି ଅମାନବିକ ଅତ୍ୟାଚାରର ଶିକାର ହେଲେ ।''

ନାଇଟ୍‌ହୁଡ୍ ପ୍ରକୃତରେ ତାଙ୍କ ବ୍ୟକ୍ତିତ୍ୱ ଓ ମହତ୍ୱକୁ ଖୁବ୍ ବେଶୀ କିଛି ବଢ଼ାଇ ନଥିଲା । ତେଣୁ ତାହାର ପ୍ରତ୍ୟାଖ୍ୟାନ ଭିତରେ ନିଜ ଦେଶ ଲୋକଙ୍କର କ୍ଷୋଭ ଓ ଅନ୍ତର୍ଦାହକୁ ସେ ଯେପରି ସାହସିକ ଭାବରେ ପ୍ରକାଶ କଲେ ଯାହା ଭୟରେ ଅନ୍ୟମାନେ କରିପାରୁ ନଥିଲେ, ତାହା ଉପରୋକ୍ତ ଚିଠିକୁ ଏକ ଐତିହାସିକ ମର୍ଯ୍ୟାଦା ପ୍ରଦାନ କରେ । ଜାତିର ଆତ୍ମ ସମ୍ମାନ ବଜାୟ ରଖିବାରେ ଓ ଲୋକଙ୍କୁ ଆବଶ୍ୟକୀୟ ସାହସ ଓ ବିଶ୍ୱାସ ଦେବାରେ ଏହା ଥିଲା ଏକ ଉପକ୍ରମ । ଅଶ୍ରୁତପୂର୍ବ ଅକ୍ଷମଣୀୟ ଔଦ୍ଧତ୍ୟ ବୋଲି ବ୍ରିଟିଶ୍ ଶାସକ ଗୋଷ୍ଠୀ ଏକଥାକୁ ଭାବିଥିଲେ କିନ୍ତୁ ସେମାନଙ୍କ ପ୍ରତି ଏହାଥିଲା ଏକ ପ୍ରବଳ ଧକ୍କା ।

# ଅତିକାୟ ଭରତିଆ

*ଆକାଶଠୁଁ ନୀଡ଼ଯାଏଁ*
*ସବୁତ ତୁମରି ରଚନା ।*

ଯେଉଁ ଗାୟକ ପକ୍ଷୀ ନୀଡ ଓ ଆକାଶ ଭିତରେ ଏକା ଏକା ତୀର୍ଥ ଯାତ୍ରା କରି ସୁଖରେ ଥିଲା ସେ ଏବେ ଜଗତର ଜାଲରେ ପଡିଲା । ମୁକ୍ତିଦୂତ ନିଜେ ଏବେ ଆଉ ମୁକ୍ତ ହେବ ନାହିଁ । ନିଜେ ଭଲ ହେବା ହିଁ ଯଥେଷ୍ଟ ନୁହେଁ, ଭଲ କରିବା ଏକାନ୍ତ ଆବଶ୍ୟକ । ସେ ଜଗତ ଜିତିଲେ, ଜଗତ ବି ତାଙ୍କୁ ଜିତି ନେଲା । ସେ ପୃଥିବୀରେ ସର୍ବତ୍ର ନିଜର ଘର ଖୋଜିଲେ, ନିଜ ଘରକୁ ବି ସାରାଜଗତକୁ ନିମନ୍ତ୍ରଣ କରି ଆଣିଲେ । ଶିଶୁମାନଙ୍କ ପାଇଁ ଯେଉଁ ଶାନ୍ତିନିକେତନ ସାନ ବିଦ୍ୟାଳୟଟି ଥିଲା, ସେ ହେଲା ସାରା ବିଶ୍ୱର ବିଶ୍ୱବିଦ୍ୟାଳୟ । 'ବିଶ୍ୱଭାରତୀ', ଭାରତୀୟ ସଂସ୍କୃତିର ଏକ କେନ୍ଦ୍ର । ପ୍ରାଚ୍ୟ ବିଦ୍ୟା 'ତୀର୍ଥ ପ୍ରଙ୍ଗଣ' । ପ୍ରାଚ୍ୟ ଓ ପାଶ୍ଚାତ୍ୟର ମିଳନ କ୍ଷେତ୍ର । 'ଯତ୍ର ବିଶ୍ୱ ଭବତି ଏକ ନୀଡ଼ମ୍'– ଯେଉଁଠି ସାରା ଜଗତ ଏକ ନୀଡ଼ରେ ପରିଣତ ହୁଏ– ଏହି ମନ୍ତ୍ର କବି ବିଶ୍ୱଭାରତୀକୁ ଦେଲେ ।

ଜାପାନ ଓ ଆମେରିକା ଯୁକ୍ତରାଷ୍ଟ୍ର ଭ୍ରମଣ ସମୟରେ ତାଙ୍କ ମନରେ ବିଶ୍ୱଭାରତୀ କଳ୍ପନାର ଉଦୟ ହୋଇଥିଲା । 22 ଡିସେମ୍ବର 1918 । ଶାନ୍ତିନିକେତନରେ ଏକ ବିଶେଷ ଉତ୍ସବରେ ସେ ପ୍ରଥମେ ଏହା ସର୍ବସମକ୍ଷରେ ପ୍ରକାଶ କରିଥିଲେ । ଠିକ୍ ସେଇ ତିଥିରେ ତିନିବର୍ଷ ପରେ ବିଶ୍ୱ ଭାରତୀ ପ୍ରତିଷ୍ଠା ହେଲା । ଏହି ତିନିବର୍ଷ ଭିତରେ କଳା ଓ ବିଦ୍ୟା ଚର୍ଚ୍ଚାର ନାନା ଶାଖାରେ ବିଭାଗ ସବୁ ଖୋଲା ହୋଇଥିଲା, ସମୟ କ୍ରମେ ଏହାର ବିକାଶ ଘଟିଲା, କେତେ ନୂଆ ନୂଆ ବିଭାଗ ଯୁକ୍ତ ହେଲା । ଏହି ବିଶ୍ୱବିଦ୍ୟାଳୟ, ତାହାର ଅଗ୍ରଜାୟୀ ବିଦ୍ୟାଳୟ ଭଳି ଥିଲା କବିଙ୍କ କଳ୍ପନାର ସୃଷ୍ଟି । ସବୁ ସ୍ୱପ୍ନମୟ କଳ୍ପନା ଯେତେବେଳେ ବାସ୍ତବ ହୋଇ ଉଠେ, ତା'ର ଦିଶା ଥାଏ ଭବିଷ୍ୟମୁଖୀ । ରବୀନ୍ଦ୍ରନାଥ ସବୁବେଳେ ବିଶ୍ୱାସ କରୁଥିଲେ, ସାରା ଜଗତକୁ ଆଲୋକିତ କରିବା ପାଇଁ ପ୍ରତି ଜାତିର କର୍ତ୍ତବ୍ୟ ନିଜ ମନର ପ୍ରଦୀପ୍ତ ଜାଳି ରଖିବା । କୌଣସି ଜାତିର ଦୀପଟିକୁ ନିଭାଇ ଦେବା ଅର୍ଥ ଜଗତର ଦୀପାବଳୀ ଉତ୍ସବରେ ତାର ନାଯ୍ୟ ସ୍ଥାନରୁ ତାକୁ ବଂଚିତ କରିବା ।'' ଦିନେ ଭାରତର ଏଇ ମାନସିକତା ଥିଲା, ସେ ନିଜ ଆଲୋକରେ ଆଲୋକିତ ହେଉଥିଲା, ନିଜ ତେଲରେ ତାହାର ପ୍ରଦୀପ ପୂର୍ଣ୍ଣ ହୋଇଥିଲା । ଆଜି ବିଶ୍ୱବିଦ୍ୟାଳୟର ସ୍ନାତକମାନେ ଅନ୍ୟ ଜାତିର ମଇଳା କୁଣ୍ଡରୁ ଅହରଣ କରିଥାନ୍ତି ମାତ୍ର ।

''ଆମର ଅସୁବିଧା ହେଉଛି ମନକୁ ବିଶ୍ୱବିଦ୍ୟାଳୟ ଚିନ୍ତା ଆସିବା ମାତ୍ରେ କେମ୍ବ୍ରିଜ୍,

ଅକ୍ସଫୋର୍ଡ ଭଳି  କେତେ ଇଉରୋପୀୟ ବିଶ୍ୱବିଦ୍ୟାଳୟ କଥା ଭାବୁଁ । ତାହା ଆମର ସମସ୍ତ ଭାବନା କ୍ଷେତ୍ରକୁ ଅଧିକାର କରିବସେ । ଏସବୁ  ଅନୁଷ୍ଠାନର ଶ୍ରେଷ୍ଠ ଉପାଦାନ ସବୁକୁ ଏକତ୍ର କରି ବିଦ୍ୟୁତ୍ ତାପରେ ନିଖୁଣ ଭାବରେ ଢ଼ଳାଇ କରି ନେଲେ ଆମର ମୁକ୍ତିର ଦ୍ୱାର ଖୋଲିଯିବ ବୋଲି ଭାବୁଁ । କିନ୍ତୁ ଆମେ ଭୁଲି ଯାଉଁ, ଇଉରୋପୀୟ ବିଶ୍ୱବିଦ୍ୟାଳୟ ଗୁଡିକ ଜୀବନ୍ତ ଅନୁଷ୍ଠାନ, ଇଉରୋପୀୟ ପ୍ରାଣ ପ୍ରବାହର ଅଙ୍ଗ ରୂପେ ଏଗୁଡିକ ସ୍ୱାଭାବିକ ଭାବରେ ଜନ୍ମ ଲାଭ କରିଥିଲା । ଆଧୁନିକ ଶଲ୍ୟ ଚିକିତ୍ସାରେ ନାକ ବା ଅନ୍ୟତ୍ର କୌଣସି ସ୍ଥାନରେ ଦରକାର ହେଲେ ଅନ୍ୟ ଅଙ୍ଗରୁ ଚର୍ମ ଆଣି ଯୋଖି ଦିଆଯାଏ । କିନ୍ତୁ ଏଇ ଭାବରେ ଅନ୍ୟ ଦେହର ଉପାଦାନରେ ଏକ ସଂପୂର୍ଣ୍ଣ ମଣିଷ ତିଆରି କରିବା ବିଜ୍ଞାନର ସାଧ୍ୟାତୀତ । ଏହା କେବଳ ଆଜି ନୁହେଁ, କେବେ ଯେ ସମ୍ଭବ ହେବ ନାହିଁ  ଏହା ଦୃଢ଼ ଭାବରେ ଜାଣି ରଖିବା ଉଚିତ୍ ।''

ଭ୍ରମଣ ପାଇଁ କବି ଏବେ ନୂଆ ପ୍ରେରଣା ଲାଭ କଲେ । ଏହା ତାଙ୍କର ପ୍ରୟୋଜନ ଥିଲା । ସେ ଅସ୍ଥିରତା  ଅନୁଭବ କରୁଥିଲେ । ସାରା ପୃଥିବୀର ପ୍ରଶଂସା ତାଙ୍କ ପାଇଁ ଆସନ ଭଳି କାମ କରିଥିଲା । ସେ ଏହାହିଁ ଅଧିକରୁ ଅଧିକ ଲୋଡିଥିଲେ । ଅବଶ୍ୟ ଏହା ଠିକ୍ ଯେ ନିଜ ଯୋଜନାକୁ ସଫଳ କରିବାକୁ ସେ ପ୍ରଚାରର ଆଶ୍ରୟ ନେଲେ, ଅଧିକ ସମ୍ବଳ ସଂଗ୍ରହ ମଧ ତାଙ୍କର ଲକ୍ଷ୍ୟ ଥିଲା । ଅଧିକନ୍ତୁ ଏଇ ଭ୍ରମଣ ଥିଲା ଏକ ଆତ୍ମିକ ଓ ବ୍ୟକ୍ତିକ ପ୍ରୟୋଜନ । 1918 ଏପ୍ରିଲ 15 ତାରିଖରେ ଗୋଟିଏ ଚିଠିରେ ଏହା ସେ ମୁକ୍ତ ଭାବରେ ସ୍ୱୀକାର କରିଥିଲେ । ''ତୁମେ ବହିରେ ପଢ଼ିଥିବା କେତେ ଜାତିର ପକ୍ଷୀ ବର୍ଷର ଏକ ସମୟରେ ନୀଡ ଛାଡି  ସମୁଦ୍ର ପାରି ହୋଇଥାନ୍ତି । ମୁଁ ସେଇପରି ଜଣେ ଯାଯାବର ପକ୍ଷୀ । ସମୟ ସମୟରେ ମୁଁ ସମୁଦ୍ର ସେ ପାରିରୁ ଡାକ ଶୁଣେ । ମୋର ଡେଣା ଚଞ୍ଚଳ ହୋଇଉଠେ । ତେଣୁ ମୁଁ ପ୍ରଶାନ୍ତ ମହାସାଗର ପାରିହେବାକୁ ମେ' ମାସରେ ଗୋଟିଏ ଜାହାଜରେ ବ୍ୟବସ୍ଥା କରିଛି ।'' କିନ୍ତୁ କୌଣସି କାରଣରୁ ବିଦେଶ ଯାତ୍ରା ସମ୍ଭବ ହେଲା ନାହିଁ । କବି ନିଜ ଦେଶ ଭିତରେ ଭ୍ରମଣ କରି ମନରେ ସାନ୍ତ୍ୱନା ଲାଭ କରିଥିଲେ । ସେ ଦକ୍ଷିଣ ଭାଗରେ ନାନା ସ୍ଥାନରେ ବୁଲିଲେ, ବହୁ ସହରରେ ନିଜର ଶିକ୍ଷାଦର୍ଶ ପ୍ରସଙ୍ଗରେ ଭାଷଣ ଦେଲେ । ତା' ପରେ ଗଲେ ପଶ୍ଚିମ ଭାରତ ।  ଅହମଦାବାଦରେ ଗୁଜରାଟ ସାହିତ୍ୟ ସଭାରେ ସଭାପତିତ୍ୱ କରିଥିଲେ । ସାବରମତୀ କୂଳରେ ମହାତ୍ମାଗାନ୍ଧୀଙ୍କ ନବସ୍ଥାପିତ ଆଶ୍ରମରେ ଗାନ୍ଧିଜୀଙ୍କ ଗହଣରେ କିଛି  ଦିନ  କଟାଇଥିଲେ ।

ରବୀନ୍ଦ୍ରନାଥ ରାଜନୀତି ଓ ଶିକ୍ଷା କ୍ଷେତ୍ରରେ ନାନା ଭାବେ କର୍ମରତ ଥିଲେ । ଏହା 1917-1919 ମସିହା । ଏଇ ସମୟରେ କବି ଅଳ୍ପ କେତୋଟି ସାହିତ୍ୟ କୃତି ସୃଷ୍ଟି କରିଛନ୍ତି । ବଙ୍ଗଳା ଭାଷାରେ ଏଇ ସମୟରେ ଦୁଇଟି ପ୍ରଧାନ ଓ ମୌଳିକ ସୃଷ୍ଟି ହେଉଛି 'ପଳାତକା' ପ୍ରକାଶ  କାଳ 1918, ପରବର୍ତ୍ତୀ କାଳରେ 1922 ରେ ପ୍ରକାଶିତ 'ଲିପିକା' ଏଇ ସମୟରେ ସେ ନିଜ ବଙ୍ଗଳା ଲେଖା ଇଂରେଜୀରେ ଅନୁବାଦ କରିଥିଲେ । ନୋହିଲେ ଇଂରେଜୀରେ ବକ୍ତୃତା ସବୁ ଲେଖୁଥିଲେ । ସେ ସବୁ ହେଉଛି- ' ମାଇଁ ରେମିନିସେନ୍ସେସ୍,' 'ସେକ୍ରିଫାଇସ୍ ଆଣ୍ଡ ଦର୍ ପ୍ଲେଜ୍', 'ଦି ସାଇକ୍ଲ ଅଫ୍ ସ୍ପ୍ରି', 'ପାର୍ସନାଲିଟି ଆଣ୍ଡ ନେସନାଲିଜ୍ମ୍' । ସଂଖ୍ୟାରେ ଅଳ୍ପ ହେଲେ ବି ତାଙ୍କର ଏହି ସମୟର ବଙ୍ଗଳା ରଚନାରେ ନୂତନ ଶୈଳୀ, ଓ ନୂତନ ପରୀକ୍ଷାର ସାଫଲ୍ୟ, ଉନ୍ନତ ଭାବନା, କଳ୍ପନା ଓ ଅନୁଭବର ସମାବେଶ ଲକ୍ଷଣୀୟ ।'ପଳାତକା' କଥା ଆଗରୁ ଆଲୋଚିତ ହୋଇଛି । 1919 ରେ ରଚିତ 'ଲିପିକା' ସଂପୂର୍ଣ୍ଣ ନୂତନ ଧରଣର ସୃଷ୍ଟି । ସାନ ସାନ ରେଖାଚିତ୍ର ସ୍କେଚ୍-

କେତେକ ବର୍ଣ୍ଣନାତ୍ମକ, କେତେକ ପ୍ରତୀକାତ୍ମକ, କେତେକ ଭାବାତ୍ମକ, ବ୍ୟଙ୍ଗାତ୍ମକ, ଅଥବା ସ୍ମୃତି କଥା ମୂଳକ । ଏସବୁ ଗଦ୍ୟରେ ଲେଖା । କିନ୍ତୁ ଏ ଗଦ୍ୟରେ ଅଛି ଛନ୍ଦ,ସଙ୍ଗୀତ ଓ କବିତାର ସମସ୍ତ ରହସ୍ୟ-ସୌନ୍ଦର୍ଯ୍ୟ । ଗୀତାଞ୍ଜଳିର ଇଂରେଜୀ ଗଦ୍ୟାନୁବାଦରେ ଅଚେତନ ଭାବରେ ସେ ଯେଉଁ ସାଫଲ୍ୟ ଲାଭ କରିଥିଲେ, ବଙ୍ଗଳା ଗଦ୍ୟରେ ସେଇ ଅନଳଂକୃତ ଛନ୍ଦ ଓ ପ୍ରକାଶ ସୌନ୍ଦର୍ଯ୍ୟ ଫୁଟାଇବା ପାଇଁ ସଚେତନ ପ୍ରୟାସ କରିଥିଲେ । ପଇଁତ୍ରିଶ ବର୍ଷ ପୂର୍ବେ 1884 ଖ୍ରୀ:ଅ: ରେ ଭାଉଜଙ୍କ ମୃତ୍ୟୁରେ ରଚିତ ପୁଷ୍ପାଞ୍ଜଳିର ଶ୍ରଦ୍ଧାଞ୍ଜଳିରେ ସେ ଯେଉଁ ଗଦ୍ୟ କବିତା ରଚନା କରିଥିଲେ 'ଲିପିକା' ସେଇ ଧାରାକୁ ସ୍ମରଣ କରେଇ ଦେଇଥାଏ । ସେଇ ଆତ୍ମୀୟକୁ କବି ଭୁଲି ନାହାନ୍ତି । କବିଙ୍କ କୋମଳ ହୃଦୟର ମହାନ ଭାବନାରେ ତାହାରି ସ୍ମୃତି ଭାସି ଉଠିଚି ସତେ ଯେପରି ହଜିଲା ସଙ୍ଗୀତର ସ୍ୱର । ଜୀବନର ଅତିକ୍ରାନ୍ତ ଦୀର୍ଘ ପଥକୁ ପଛକୁ ଫେରି ଚାହିଁଛନ୍ତି । ଯେଉଁ ବେଦନା ପ୍ରଶାନ୍ତିମୟ ତାହାହିଁ କବି ପ୍ରଜ୍ଞା ଉଚ୍ଚାରଣ କରିଚି । ଏଥିରେ ଭାଗ୍ୟ ବିରୋଧରେ ଅଭିଯୋଗ ନାହିଁ, ନାହିଁ ଆତ୍ମ ନିବିଡ଼ନର ଅଧୀରତା ।

ସମୟ ସମୟରେ ଆତ୍ମ ପ୍ରଶଂସାର ସୂଚନା ପ୍ରକାଶ ପାଉଥିଲେ ବି ଏହି ସମୟରେ କବି ନିଜ ଭାବ ଓ କର୍ମରେ ଅନୁଭବ ଅପେକ୍ଷା ଚିନ୍ତା କୁ ବୌଦ୍ଧିକ ଅନାସକ୍ତି ଓ ସୂକ୍ଷ୍ମ ବିଚାର ବୋଧକୁ ପ୍ରାଧାନ୍ୟ ଦେଇଥିଲେ । ତାଙ୍କର ବ୍ୟଙ୍ଗ ରଚନାରେ କୌଣସି ପ୍ରକାର ତିକ୍ତତା ପରିବର୍ତ୍ତେ ପରିହାସ ଓ ବିଜ୍ଞ ଚେତାବନୀ ପ୍ରକାଶ ପାଇଥିଲା । ଏହାର ଏକ ଦୃଷ୍ଟାନ୍ତ ''ତୋତା (ଶୁଆ) କାହାଣୀ' । ଯେଉଁ ନିର୍ବିଚାର ପାଠ୍ୟ ପୁସ୍ତକ ସର୍ବସ୍ୱ ଶିକ୍ଷାକୁ ରବୀନ୍ଦ୍ରନାଥ ଆଜୀବନ ସମାଲୋଚନା କରିଥିଲେ, ସେଇ ଶିକ୍ଷାର ଅସାରତା ଏଥିରେ ପ୍ରତିପାଦିତ । କେବଳ ମନଖୁସିରେ ନାଚି ବୋବାଇ ସଭ୍ୟ ସମାଜର ରୀତି ଭାଙ୍ଗୁଥିଲା । ତେଣୁ ବିଚରା ପକ୍ଷୀର ଶିକ୍ଷା ଦରକାର । ସୁନା ପଞ୍ଜୁରୀ ତିଆରି ହେଲା । ଉପଯୁକ୍ତ ପ୍ରଣାଳୀରେ ଶିକ୍ଷା ଦେବା ପାଇଁ ଅନେକ ପଣ୍ଡିତ ନିଯୁକ୍ତ ହେଲେ । ଏତେ ବିପୁଳ ଅୟୋଜନ ହେଲା ଯେ ଯେଉଁମାନେ କିଛି ନା କିଛି କାମ ପାଇଲେ ସେମାନଙ୍କ ସମୃଦ୍ଧିର ସୀମା ରହିଲା ନାହିଁ । କିନ୍ତୁ ପକ୍ଷୀଟି ମଲା ''ରାଜା ତା' ଦେହରେ ହାତ ଦେବାମାତ୍ରେ ବହିର ପୃଷ୍ଠା ଶବ୍ଦ ଶୁଭିଲା'' ।

ଏଠାରେ ଆଉ ଦୁଇଟି ବ୍ୟଙ୍ଗ ରଚନା କଥା ଉଲ୍ଲେଖ୍ୟ-'ଘୋଡାର ବିଚାର' ଓ 'ବୁଢାର ଭୂତ' । ପ୍ରଥମଟିରେ ସେଇ ଲୋକର ବିଚାର କରାଯାଇଚି, ଯିଏ ନିଜର ଅର୍ଥ ଲାଳସା ଓ ଛଳ କୌଶଳ ଦ୍ୱାରା ଚାଳିତ ହୋଇ ପ୍ରକୃତିର ସବୁ ରୀତି ଲଂଘନ କରେ, ଜଡ ଜୀବନ୍ତ ସବୁ କିଛିକୁ ନିଜ ସ୍ୱାର୍ଥ ପାଇଁ ବ୍ୟବହାର କରେ । ଦେବତାଙ୍କ ନିଦ ଯେତେବେଳେ ଭାଙ୍ଗେ ସେମାନେ ଏହା ଦେଖି ମଣିଷ ଉପରେ କ୍ରୋଧ କରନ୍ତି । ସୃଷ୍ଟିକର୍ତ୍ତା ବ୍ରହ୍ମା ଥରେ ମଣିଷକୁ ଚେତାବନୀ ଶୁଣାଇ ଦେଲେ, ତୁମେ ଯଦି ମୋ ଘୋଡାକୁ ମୁକ୍ତ କରି ନଦେବ, ତେବେ ମୁଁ ବାଘଭଳି ନଖ ଓ ଦାନ୍ତ ତାକୁ ଦେବି । ମଣିଷ ପ୍ରତିବାଦ କରି କହିଲା, ''ଏହା ଦେବୋଚିତ କାର୍ଯ୍ୟ ହେବ ନାହିଁ । ଏଥିରେ ହିଂସ୍ରତା ବଢିବ ।'' ତର୍କଶାସ୍ତ୍ର ଓ ବୈଜ୍ଞାନିକ ପ୍ରମାଣ ଦେଇ ମଣିଷ ବ୍ରହ୍ମାକୁ ବୁଝାଇଲା ଘୋଡା ମୁକ୍ତି ପାଇବାର ଯୋଗ୍ୟ ନୁହେଁ । ଏହା ଦ୍ୱାରା ମନୁଷ୍ୟ ଉଦ୍‌ଭାବିତ ଘୋଟକ ଉନ୍ନୟନ ବିଦ୍ୟାର ଉନ୍ନତି ସମ୍ଭବ ହୋଇଚି । 'ବୁଢାରଭୂତ'ରେ ଅତୀତ ବର୍ତ୍ତମାନ ଉପରେ ସବାର ହୋଇଚି, ଜୀବନ୍ତର ହିତ ନ ଭାବି ଜାତୀୟ ସଂସ୍କୃତିର ବୃଥା ଆସ୍ଫାଳନ କରାଯାଇଚି ଓ ପରିବର୍ତ୍ତନକୁ ଅଯୌକ୍ତିକ ଭାବରେ ଭୟ କରାଯାଉଚି, ତାହାର ବିଦ୍ରୂପ କରାଯାଇଚି ।

ପାଶ୍ଚାତ୍ୟ ଜଗତରେ ରବୀନ୍ଦ୍ରନାଥଙ୍କର ଜଣେ ସମଧର୍ମୀ ବଂଧୁ ଥିଲେ । ତାଙ୍କୁ ଅବଶ୍ୟ ସେ ଜାଣି ନଥିଲେ । ସେ ହେଉଛନ୍ତି ରୋମାଁରୋଲାଁ । ସେ ନିକଟରୁ ଯୁଦ୍ଧର ବିଭୀଷିକା ଦେଖିଥିଲେ । ତାଙ୍କ ଦେଶ ଫ୍ରାନସ୍ ପ୍ରଥମ ବିଶ୍ୱ ଯୁଦ୍ଧରେ ଜଡିତ ଥିଲା । ଠିକ ରବୀନ୍ଦ୍ରନାଥଙ୍କ ଭଳି ସେ ଯୁଦ୍ଧ ଓ ଜାତୀୟତାର ବିରୋଧୀ ଥିଲେ ଓ ଅଧିକ ସାହସର ସହିତ ନିଜ ମତବାଦ ବ୍ୟକ୍ତ କରୁଥିଲେ । ''ସବୁଜାତି ପକ୍ଷରେ ସତ୍ୟର ସ୍ୱରୂପ ଏକ ଓ ଅଭିନ୍ନ । ମାତ୍ର ସବୁଜାତି ନିଜର ମିଥ୍ୟାକୁ ଜାତିର ଆଦର୍ଶ ବୋଲି କହିଥାନ୍ତି ।'' 1916 ରେ ଜାତୀୟତା ପ୍ରସଙ୍ଗରେ ଜାପାନରେ ପ୍ରଦତ୍ତ ରବୀନ୍ଦ୍ରନାଥଙ୍କ ବକ୍ତୃତା ତାଙ୍କୁ ବେଶ ପ୍ରଭାବିତ କରିଥିଲା । ସେ ତତ୍କ୍ଷଣାତ୍ ଆବିଷ୍କାର କରିଥିଲେ, ତାଙ୍କର ସମାନ ଆଦର୍ଶ ଅନୁସରଣକାରୀ ଆଉ ଜଣେ ଅଛନ୍ତି, ଯିଏ ତାଙ୍କରି ଭଳି 'ଯୁଦ୍ଧ ବିରୋଧୀ' ; ଘୃଣା ଓ ହିଂସା ଦ୍ୱାରା ଚାଳିତ ହୋଇ ପରସ୍ପରକୁ ହତ୍ୟା କରିବାରେ ମତ୍ତ ଜାତିମାନଙ୍କ ଉର୍ଦ୍ଧ୍ୱକୁ ଉଠି ମଣିଷର ଅଯୌକ୍ତିକତା ଓ ଅନ୍ଧ ଭାବାବେଗ ବିରୁଦ୍ଧରେ ଯୁଦ୍ଧରତ ମାନବାଦର୍ଶର ପକ୍ଷବାଦୀ । ରୋଲାଁ ରବୀନ୍ଦ୍ରଙ୍କ ଯୁଦ୍ଧ ବିରୋଧୀ ବକ୍ତୃତାର ଅଂଶ ବିଶେଷ ଫରାସୀ ଭାଷାରେ ଅନୁବାଦ କରିଥିଲେ ଓ ଯୁଦ୍ଧ କାଳରେ ରଚିତ ନିଜ ଲେଖାମାନଙ୍କରେ ସେ ସବୁରୁ ଉଦ୍ଧୃତି ଦେଉଥିଲେ । ଯୁଦ୍ଧ ଶେଷ ହେବାପରେ 1919 ମସିହାରେ ସେ '' ଆତ୍ମାର ସ୍ୱାଧୀନତା ଘୋଷଣା ପତ୍ର''ରେ ସ୍ୱାକ୍ଷର ପାଇଁ ରବୀନ୍ଦ୍ରନାଥଙ୍କୁ ଅନୁରୋଧ କରିଥିଲେ । ଏହି ଘୋଷଣାପତ୍ର (ଡିକ୍ଲାରେସନ ଅଫ୍ ଇଣ୍ଡିପେଣ୍ଡେନସ ଅଫ୍ ଦି ସ୍ପିରିଟ୍ ) ଇଉରୋପର ଲେଖକ ଓ ବୁଦ୍ଧିଜୀବୀ ଗଣ ପ୍ରଚାର କରିଥିଲେ ।

ରବୀନ୍ଦ୍ରନାଥ 1919 ମସିହା 29 ଜୁନ ଦିନ ଏହି ଘୋଷଣା ପତ୍ରରେ ନିଜର ସ୍ୱାକ୍ଷର ଦେଇଥିଲେ । ଏହାର ଠିକ୍ ଦୁଇ ମାସ ପରେ ରୋଲାଁ ତାଙ୍କୁ ଲେଖିଥିଲେ- ଆପଣଙ୍କ 'ନେସନାଲିଜିମ୍' (ଜାତୀୟତାବାଦ) ପଢି ମୁଁ ବହୁତ ଆନନ୍ଦିତ । ଆପଣଙ୍କ ମତ ମୁଁ ସଂପୂର୍ଣ୍ଣ ସମର୍ଥନ କରେ ଆପଣଙ୍କ ଏହି ମତବାଦ ଆଜି ଆମଠାରେ ଅଧିକ ପ୍ରିୟହୋଇ ଉଠିଚି,ଯେତେବେଳେ ମୁଁ ଶୁଣୁଚି ଆପଣ ପ୍ରତି ନିୟତ ଆପଣଙ୍କ ମହାନତା, ବିଜ୍ଞ ସମନ୍ୱୟବାଦିତା ଦ୍ୱାରା ଚାଳିତ ହୋଇ ଏହାର ପ୍ରସାର ଘଟାଉଛନ୍ତି...... । ଲଜ୍ଜାକର ବିଶ୍ୱଯୁଦ୍ଧରେ ଇଉରୋପର ବ୍ୟର୍ଥତା ପ୍ରମାଣିତ । ଯୁ ଦ୍ଧ ପରେ ଆଜି ସ୍ପଷ୍ଟ ହୋଇ ଉଠିଚି ଯେ ଇଉରୋପ ନିଜେ ନିଜକୁ ରକ୍ଷା କରି ପାରିବ ନାହିଁ । ଇଉରୋପର ଭାବଧାରାକୁ ଏସିଆ ଯେପରି ଗ୍ରହଣ କରିଚି । ଏସିଆର ଭାବଧାରାକୁ ଗ୍ରହଣ କରିବା ଇଉରୋପ ପକ୍ଷରେ ଆଜି ଏକାନ୍ତ ପ୍ରୟୋଜନ । ଏହି ଦୁଇ ମତାଦର୍ଶ ମନୁଷ୍ୟ ଜାତିର ମସ୍ତିଷ୍କର ଦୁଇ ଗୋଲାର୍ଦ୍ଧ । ଯଦି ଗୋଟିଏ ପାଖ ଆଘାତ ହୋଇ ଉଠେ, ତେବେ ସାରା ଦେହ ଭାଙ୍ଗି ପଡିବ ।''

ପୁତ୍ର ଓ ପୁତ୍ରବଧୂଙ୍କୁ ସାଙ୍ଗରେ ଘେନି 15 ମେ 1920 ମସିହାରେ ରବୀନ୍ଦ୍ରନାଥ ଇଉରୋପ ଯାତ୍ରା କଲେ । ଇଂଲଣ୍ଡରେ ସେ ପୁରୁଣା ବଂଧୁଙ୍କୁ ଭେଟିଲେ । କେତେ ତାଙ୍କ ନୂଆ ବଂଧୁ ହେଲେ । ଏଥିପାଇଁ ସେ ଖୁସି ହୋଇଥିଲେ । ତେବେ ସେ ଶୀଘ୍ର ଅନୁଭବ କଲେ ଯୁଦ୍ଧ ପୂର୍ବରୁ ଆସି ସେ ଯେପରି ଆତ୍ମୀୟତା ଓ ବନ୍ଧୁତ୍ୱ ଲାଭ କରିଥିଲେ, ସେ ପରିବେଶ ଆଉ ନାହିଁ । ଏଥି ଭିତରେ ଅନେକ ଘଟଣା ଘଟି ଯାଇଥିଲା । ଯୁଦ୍ଧର ନିନ୍ଦା, ଭାରତରେ ବ୍ରିଟିଶ ଶାସନ ବିରୁଦ୍ଧରେ ତୀବ୍ର ପ୍ରତିକ୍ରିୟା ଓ ନାଇଟ୍ ଉପାଧି ପ୍ରତ୍ୟାଖ୍ୟାନ - ଏ ସବୁକୁ ଇଂରେଜ ସହଜ ଭାବରେ ଗ୍ରହଣ କରିନଥିଲେ । ଇଂଲଣ୍ଡ ଉପକୂଳରେ ପାଦଦେବା ପୂର୍ବରୁ ରବୀନ୍ଦ୍ରନାଥ ଏହାର ସୁରାକ୍ ପାଇଥିଲେ । ବ୍ରିଟିଶ ମନୋଭାବ ପ୍ରସଙ୍ଗରେ ଜାହାଜରୁ ଗୋଟିଏ ଚିଠିରେ ଲେଖିଥିଲେ- '' ଏଠି ଲୋକେ

ଚାହାନ୍ତି ଆମେ ସେମାନଙ୍କ ଯୁଦ୍ଧ ଲଢୁ । ସେମାନଙ୍କ କାରଖାନାକୁ କଞ୍ଚାମାଲ ଯୋଗାଉଁ । କିନ୍ତୁ ସେମାନେ ଆମକୁ ତାଙ୍କ ଦୁଆର ବାହାରେ ଠିଆ କରି ରଖିବାକୁ ନୋଟିସ୍ ବୋର୍ଡ ଝୁଲାଇ ଥାନ୍ତି- 'ଏସିଆର ଆଗନ୍ତୁକ- ଏଠି ତୁମକୁ ଶାସ୍ତି ଦିଆଯିବ' । ମୋ ମନରେ ଏଇ ପରିବେଶରେ ଭାବାନ୍ତର ଜାତ ହୁଏ । ଏଇ ଶୈତ୍ୟ ଜଡିତ ରାଜ୍ୟରୁ ମୁଁ ମୋର ରୌଦ୍ର- ଉଦ୍‌ଭାସିତ ଶାନ୍ତିନିକେତନକୁ ଦେଖେ....... ଘର ବାହୁଡା ପାଇଁ ଉଛନ୍ନ ହୁଏ । ପୁଣି ଫେରିବା ଦିନ ଗଣିବାକୁ ଆରମ୍ଭ କରିଛି- ଲେଖିଥିଲେ ବି ତାଙ୍କର ଏହି ବିଦେଶ ଯାତ୍ରାରେ ବର୍ଷାଧିକ କାଳ ବିତିଥିଲା ।

ରବୀନ୍ଦ୍ରଙ୍କ ସହଯାତ୍ରୀ ଥିଲେ ଅଗାଖାଁ । ସେ ହାଫିସ୍ ଓ ଅନ୍ୟ ପାର୍ସିୟାନ୍ କବିଙ୍କ କବିତା ଶୁଣାଉଥିଲେ । କବି ଲଣ୍ଡନରୁ ଏକ ଆମୋଦଦାୟକ ଚିଠିରେ ଲେଖିଥିଲେ- ''କବି ହାଫିସ୍ ନିଜ ପ୍ରିୟତମାଙ୍କ ଚିବୁକର ଏକ ତିଳକଣା ଲାଗି ସମରକନ୍ଦ ଓ ବୋଖରାର ସମସ୍ତ ସମ୍ପଦ ଦେଇ ଦେଇ ପାରନ୍ତି । ମୁଁ ବି ସେଇପରି ମୋ ଶାନ୍ତିନିକେତନର ଟେକାଏ ମାଟି ପାଇଁ ସମସ୍ତ ଲଣ୍ଡନକୁ ଦେଇ ଦେଇପାରେ । ଅବଶ୍ୟ ଲଣ୍ଡନ ମୋର ସମ୍ପତ୍ତି ନୁହେଁ । କି ସମରକନ୍ଦ ଓ ବୋଖରାର ସମସ୍ତ ସମ୍ପଦ ପାର୍ସିୟାନ କବିଙ୍କର ନଥିଲା ।''

ଇଂରେଜ୍ ମାନଙ୍କର ନ୍ୟାୟବୋଧ ଓ ମାନବିକତା ବିଷୟରେ ତାଙ୍କର ପୂର୍ବ ଧାରଣା ବଦଳିଗଲା । ସେ ଯେତେବେଳେ ଦେଖିଲେ ଇଂରେଜ୍ ପାର୍ଲିଆମେଣ୍ଟ ନରଘାତକ ଜେନେରାଲ୍ ଡାୟାରଙ୍କୁ କ୍ଷମା ଦେଇଛି, ତାରିଫ୍ କରୁଚି । ତାଙ୍କ ମନରେ ଗଭୀର ବେଦନା ଜନ୍ମିଲା । ସେ ଲେଖିଥିଲେ- ''ପଶୁତ୍ୱର ନିର୍ଲଜ କ୍ଷମା ପାଇଁ ବକ୍ତୃତା, ସମ୍ବାଦ ପତ୍ରରେ ତାହାର ସମର୍ଥନ ଭୟଙ୍କର ଓ ବର୍ବରୋଚିତ ।'' ସେ ଗାନ୍ଧୀଙ୍କ ମତର ସମର୍ଥନ କରି ନିଜର ବିଶ୍ୱାସ ହରାଇ ପ୍ରକାଶ କରିଥିଲେ । ''ଆମର ପ୍ରକୃତ ମୁକ୍ତି ଆମ ନିଜ ହାତରେ ଅଛି ।'' କିନ୍ତୁ ଯେତେବେଳେ ସେ ଖାଣ୍ଟି ଇଂରେଜ ଭଦ୍ର ବ୍ୟକ୍ତିଙ୍କୁ ଭେଟୁଥିଲେ, ତାଙ୍କ ବିଶ୍ୱାସ ଫେରି ଆସୁଥିଲା । କିଛି ଦିନ ପୂର୍ବେ ସେ ଆଣ୍ଡ୍ରୁଜ୍‌ଙ୍କୁ ଗୋଟିଏ ଚିଠିରେ ଲେଖିଥିଲେ - ''ପାଶ୍ଚାତ୍ୟ ଦେଶରେ ଥିବା ବେଳେ ମୋର ମନେ ହୁଏ ମୋତେ ଚିରଜୀବନ୍ତ ମନୋଜଗତ ସ୍ୱାଗତ କରୁଚି । ଏଠି ମୁଁ ମୋର ଆକାଶ, ଆଲୋକ ଓ ଅବକାଶ ହରାଉଚି, ମାତ୍ର ମୋତେ ଯେଉଁମାନେ ଚାହାନ୍ତି, ମୁଁ ଯେଉଁମାନଙ୍କୁ ନିଜକୁ ଅର୍ପଣ କରିଦେଇ ପାରିବି, ସେମାନଙ୍କ ସଂପର୍କରେ ଆସୁଚି'' ଏଇ ଆତ୍ମ ସନ୍ତୁଷ୍ଟ ବିରୋଧରେ ସଂଶୟ ତାଙ୍କ ମନକୁ ଦଂଶନ କରିଥିବ, କାରଣ ସେ ପୁଣି ଲେଖିଥିଲେ ''କିଛି ଦିନ ପରେ ମୋ ବିଚାରଧାରା ସେମାନେ ଅଦରକାରୀ ମନେକରି ପାରନ୍ତି । ମୋ ବ୍ୟକ୍ତିତ୍ୱର ମହତ୍ୱ ସେମାନଙ୍କ ଠାରେ ଉଣା ହୋଇଯାଇ ପାରେ । କିନ୍ତୁ ଏଥିରେ କଣ ବା ଆସେ ଯାଏ ?'' ନିଜର ବ୍ୟକ୍ତିତ୍ୱ ଘେନି ତାଙ୍କର ଯେତେ ଗୌରବବୋଧ ଥାଉନା କାହିଁକି ସେ ମନ ପ୍ରାଣରେ ମାନବ ଅହଂକାରର ଅସାରତା ବିଷୟରେ ସଚେତନ ଥିଲେ । ସମୟର ଦୀର୍ଘ ପଥରେ କଣ ବା ଏସବୁର ମୂଲ୍ୟ ।

ଲଣ୍ଡନରେ ତାଙ୍କର ନୂତନ ବନ୍ଧୁମାନଙ୍କ ଭିତରେ ଥିଲେ ରୋମାଣ୍ଟିକ୍ ସୈନିକ ଆରବର ଲରେନ୍ସ । ସେ କବିଙ୍କୁ କହିଥିଲେ ଏବେ ସେ ଆରବ ଯିବାକୁ ଲଜ୍ଜାବୋଧ କରୁଛନ୍ତି । କାରଣ ବ୍ରିଟିଶ ସରକାରଙ୍କ ପକ୍ଷରୁ ଆରବୀମାନଙ୍କୁ ସେ ଯେଉଁ ପ୍ରତିଶ୍ରୁତି ଦେଇଥିଲେ ତାହା ସରକାର ରକ୍ଷା କରୁନାହିଁ । ଭାରତର ସମସ୍ୟା ଆଲୋଚନା ପ୍ରସଙ୍ଗରେ ସେ ରବୀନ୍ଦ୍ରନାଥଙ୍କୁ କହୁ ଥିଲେ, ଇଂରେଜଙ୍କ ଶ୍ରଦ୍ଧା ଲାଭ ପାଇଁ ଏକ ମାତ୍ର ପଥ ହେଉଛି ଇଂରେଜ ଯେତିକି ଆଘାତ ଦେଇଚି ତାର ଦ୍ୱିଗୁଣ ଆଘାତ ତାକୁ ଦେବା ଦରକାର । ତାହାହେଲେ ଇଂରେଜର ଚେତନା ଫେରିବ ଓ

ସେ ପ୍ରତିପକ୍ଷକୁ ନିଜର ଭାଇ ଭାବରେ ଗ୍ରହଣ କରିବ । ଏଇ ଭ୍ରମଣ କାଳରେ ସି. ଏଫ୍ ଆଣ୍ଡ୍ରୁସ୍‌ଙ୍କୁ ଲେଖା ଚିଠିରେ କେତେ ଶୀଘ୍ର ତାଙ୍କ ମନର ଆନନ୍ଦ ନିରାନନ୍ଦରେ ପରିଣତ ହୋଇଥିଲା, ତାହା ଦେଖିବାକୁ ମିଳେ । କବି, ଦେଶ ପ୍ରେମିକ, ଆନ୍ତର୍ଜାତିକ ସଂପ୍ରୀତିର ଭବିଷ୍ୟଦ୍ରଷ୍ଟା ଭାଷ୍ୟକାରଙ୍କ ମନରେ ନାନା ତୀକ୍ଷ୍ଣ ବିପରୀତଧର୍ମୀ ଭାବନା କିପରି ସ୍ଥାନ ପାଇଥିଲା, ତାହା ଲକ୍ଷ୍ୟ କରିବାର କଥା ।

ପ୍ୟାରିସ୍‌ରେ 'ମୁଶେଗିମେତ୍' ରେ ରବୀନ୍ଦ୍ରନାଥଙ୍କୁ ସମ୍ବର୍ଦ୍ଧନା ଦିଆ ଯାଇଥିଲା । ଏହିଠାରେ ତାଙ୍କର ବିଶିଷ୍ଟ ଦାର୍ଶନିକ ବାର୍ଗସଁ ଓ ଭାରତ ତତ୍ତ୍ୱବିଦ୍ ସିଲଭାଁ ଲେଭିଙ୍କ ସହିତ ପରିଚୟ ହୋଇଥିଲା । ପରେ ଲେଭି ପ୍ରଥମ ବିଦେଶୀ ପରିଦର୍ଶୀ ଅଧ୍ୟାପକ ଭାବରେ ଶାନ୍ତିନିକେତନ ଆସିଥିଲେ । ପ୍ୟାରିସରୁ ରବୀନ୍ଦ୍ରନାଥ ହଲାଣ୍ଡ ଯାଇଥିଲେ । ସେ ନାନା ଦର୍ଶନୀୟ ସ୍ଥାନ ବୁଲିଥିଲେ ଓ ବହୁ ସଂଖ୍ୟକ ଶ୍ରୋତା ତାଙ୍କ ଭାଷଣ ଶୁଣିବାକୁ ରୁଣ୍ଡ ହେଉଥିଲେ । ଏହାପରେ ସେ ଗଲେ ବେଲଜିୟମ୍ । ସେଠି ନିଜେ ରାଜା ତାଙ୍କୁ ସମ୍ବର୍ଦ୍ଧନା ଦେଇଥିଲେ । ସେଠାରୁ ଲଣ୍ଡନ ଫେରି ସେ ହଠାତ୍ ଆମେରିକା ଯିବାକୁ ସ୍ଥିର କଲେ । ତାଙ୍କର ଧାରଣା ଥିଲା ପ୍ରାଚ୍ୟର ବାଣୀ ଶୁଣିବାକୁ ଆମେରିକା ଉତ୍କର୍ଣ୍ଣ । ନିଉୟର୍କରେ ପହଞ୍ଚି କବି ସହର ମଧ୍ୟରେ ଓ ବାହାରେ ନାନା ସ୍ଥାନରେ ବକ୍ତୃତା ଦେଲେ । ବ୍ରୁକଲିନ୍ ସିଭିକ ଫୋରମରେ ତାଙ୍କର 'କବିଧର୍ମ' ବକ୍ତୃତା ବିଷୟରେ ନିଉୟର୍କରେ ଗୋଟିଏ ସମ୍ବାଦ ପତ୍ର ମନ୍ତବ୍ୟ କରିଥିଲା- '' ପ୍ରାଚ୍ୟର କବିଙ୍କ ବକ୍ତୃତା ଶୁଣିବାକୁ ଫୋରମ୍ ସଭାକକ୍ଷରେ ଏତେ ସଂଖ୍ୟକ ଶ୍ରୋତା କେବେ ଏକତ୍ର ହୋଇନଥିଲେ । ଶତଶତ ଶ୍ରୋତା ସ୍ଥାନ ନପାଇ ଫେରି ଥିଲେ ।'' କିନ୍ତୁ ବିଶ୍ୱଭାରତୀ ପାଇଁ ଅର୍ଥ ସଂଗ୍ରହ ଦିଗରୁ କବି ହତାଶ ହୋଇଥିଲେ ।

କବି ପ୍ରଥମେ ଆଶାବାଦୀ ଥିଲେ । ଯେଉଁ ନୂତନ ଓ ତରୁଣ ଆମେରିକା ପୁରାତନ ଇଉରୋପକୁ ଜାତୀୟବାଦୀ ଆତ୍ମଘାତୀ ଯୁଦ୍ଧରୁ ଉଦ୍ଧାର କରିଥିଲା, ମାନବ ସଂପ୍ରୀତି ବିକାଶ ପାଇଁ ଶାନ୍ତିନିକେତନରେ ପ୍ରତିଷ୍ଠିତ ତାଙ୍କର ଆନ୍ତର୍ଜାତିକ  ବିଶ୍ୱବିଦ୍ୟାଳୟର ସକ୍ରିୟ ଭୂମିକାକୁ ସ୍ୱୀକାର କରି ତାଙ୍କ ଆହ୍ୱାନକୁ ଗ୍ରହଣ କରିବ । ଆମେରିକାରେ କବି କହିଥିଲେ, ''ଭୌଗୋଳିକ ଭାବରେ ସୀମାବଦ୍ଧ କୌଣସି ଦେଶ ବିଶେଷ ପ୍ରତି ଆମର ଆନୁଗତ୍ୟ ନାହିଁ । ଆମର ଆନୁଗତ୍ୟ ସେଇ ସାର୍ବଜନୀନ ଜାତି ପ୍ରତି ଯେଉଁମାନେ ଜାତି ବିଶେଷର ବ୍ୟକ୍ତି ଭାବରେ ଜନ୍ମ ହୋଇଥିଲେ ବି ମହାନ୍ ମାନବତାର ବେଦୀରେ ତ୍ୟାଗପୂତ ଅର୍ଘ୍ୟ ଅର୍ପଣ କରନ୍ତି ।'' ସେ ଦୃଢ଼ ଭାବରେ ବିଶ୍ୱାସ କରୁଥିଲେ, ''ଅତୀତ ମାନବ ଗୋଷ୍ଠୀର ହୋଇପାରେ, ଭବିଷ୍ୟତ ପ୍ରତିଟି ମନୁଷ୍ୟ ପାଇଁ ଅଭିପ୍ରେତ ।'' କବିଙ୍କର ଏ ବିଶ୍ୱାସରେ ସତତା ଥିଲା, ଥିଲା ବଳିଷ୍ଠ ଭିତ୍ତି । ବର୍ତ୍ତମାନ ବା ଭବିଷ୍ୟତର କୌଣସି ବାଧା ଏହା ଟଳାଇପାରି ନଥିଲା । ଆମେରିକାରେ ତାଙ୍କର ନୈରାଶ୍ୟ ଓ ଅବସାଦ ମୂଳରେ ଥିଲା ଆମେରିକାରୁ ସମ୍ପଦ ଆହରଣ ବିଷୟରେ ଉଚ୍ଚାଶା । ତା'ଛଡା ନିଃସନ୍ଦେହରେ ଆମେରିକା ଜୀବନର ଅସ୍ଥିରତା ଓ କୋଳାହଳ ତାଙ୍କର ଚେତନାକୁ ବିମୂଢ଼ କରିଦେଇଥିଲା ।

ଏମିତି ଗ୍ରାମ୍ୟ ବିଚାର ମୂଳରେ ଭ୍ରାନ୍ତି ଥିବା ଅବଶ୍ୟମ୍ଭାବୀ । ଏଥିପାଇଁ କବିଙ୍କର କେତେକ ନିକଟ ପ୍ରିୟଜନ ଦାୟୀ । ସେମାନେ ଭାବୁଥିଲେ ଶାନ୍ତିନିକେତନରେ କବିଙ୍କ ଆଦର୍ଶକୁ ବାସ୍ତବାୟିତ କରିବା ପାଇଁ ଆମେରିକା ଡ଼ଲାର ଏକାନ୍ତ ପ୍ରୟୋଜନ । ଏଇ ଭ୍ରାନ୍ତି ପାଇଁ କବି ବହୁ ସମୟରେ ଗଭୀର ଦୁଃଖ ଓ ଲଜ୍ଜା ଅନୁଭବ କରୁଥିଲେ । ଡିସେମ୍ବର 13 ତାରିଖରେ ଆଣ୍ଡ୍ରୁସ୍‌ଙ୍କୁ ଲେଖା ଗୋଟିଏ ଚିଠିରେ ସେ ସ୍ୱୀକାର କରିଥିଲେ- '' ମୁଁ ମନେ ମନେ ଭାବି ସାନ୍ତ୍ୱନା ପାଇଥିଲି ଯେ ଏଇ କାମର

ଫଳ ଖୁବ୍ ମହତ୍ ଓ ସୁଦୂରପ୍ରସାରୀ ହେବ । କିନ୍ତୁ ମୋର ହୃଦୟ ଗଭୀରର ବାଣୀ ହେଉଛି ଜୀବନର ସାରଲ୍ୟ ଓ ସହଜ ପ୍ରଚେଷ୍ଟାରେ ହିଁ ସୁଖ ନିହିତ । ଆମେ ଯେତେବେଳେ ଆମ କାମରେ କିଂଚିତ ହେଲେ ସାଫଲ୍ୟ ଲାଭ କରୁ, ସେତେବେଳେ ତାହା ବଡ କି ଛୋଟ କାମ ସେ ବିଚାର ଅବାନ୍ତର ହୁଏ । ବଡ଼ପଣିଆ ଉପରେ ଆଖି ରଖିଲେ ଆମେ ସତ୍ୟ ଉପରୁ ବିଶ୍ୱାସ ହରାଇ ବସୁ ।''

ଚାରିଦିନ ପରେ କବି ପୁଣି ଲେଖିଥିଲେ- ''ଅର୍ଥ ସଂଗ୍ରହ ଇଚ୍ଛା ବଳବତୀ ହୋଇ ଝଡ ମୁଖରେ ଶୁଷ୍କ ପତ୍ର ଭଳି ଭଉଁରୀ ଖେଳୁଥିଲା ବେଳେ ମୋ ମନରେ-ଗୋଟିଏ ଛବି ଉଦୟ ହେଲା, ସୁଜାତା ବୁଦ୍ଧଦେବଙ୍କୁ ଗିନାଏ ଦୁଗ୍ଧ ଦେବାର ଚିତ୍ର । ଏହାର ବାଣୀ ମୋର ଅନ୍ତରର ଗଭୀରତାକୁ ଛୁଇଁଲା ।'' ''ଏଇ ଦୁଗ୍ଧ ବାଟିକ ତପସ୍ୟା ପରେ ମିଳିଲା ।''............ପ୍ରତି ସକାଳେ ମୁଁ ଝରକା ପାଖରେ ବସି ମନକୁ ମନ କହିଥାଏ- ପ୍ରତିଦିନ ନରବଳି ଦେଇ ଇଉରୋପ ଲୋକ ଯେଉଁ କୁତ୍ସିତ ମୂର୍ତ୍ତିର ପୂଜା କରିଥାନ୍ତି ମୁଁ ତାହା ଆଗରେ ମୋର ଶିର ନୁଆଁଇବି ନାହିଁ ।'' ମୋର ମନେ ପଡୁଚି, ଶିଲାଇଦହରେ ଥିବାବେଳେ ଦିନେ ସକାଳେ ଜଣେ ବୈଷ୍ଣବୀ ଆସି କହିଥିଲା, ''ତୁମେ କେବେ ତୁମ ତିନି ମହଲା ଉପରୁ ଓହ୍ଲାଇ ତୁମ ପ୍ରିୟତମାକୁ ତରୁତଳେ ଭେଟିବ ?'' ଠିକ୍ ଏଇ ମୁହୂର୍ତ୍ତରେ ମୁଁ ଏକ ବହୁତଳ ସୌଧ ଉପରେ ବସିଛି, ଯେଉଁଠିକି କୌଣସି ବୃକ୍ଷର ମର୍ମର ଶବ୍ଦ ଆସି ପରିବ ନାହିଁ । କିନ୍ତୁ ପ୍ରେମର ବାଣୀ ନୀରବରେ ଆସି ମତେ କହୁଚି, '' କେବେ ତୁମେ ମୋର ସବୁଜ ତୃଣ ପ୍ରାନ୍ତରକୁ ଅବତରଣ କରିବ, ଶୁଣିବ ପତ୍ରର ମର୍ମର, ସୌରଉଦ୍ଭାସିତ ଗଗନ ତଳେ ପାଇବ ନିଜର ମୁକ୍ତି, ଲଭିବ ଜୀବନ ସାରଲ୍ୟର କୋମଳ ସ୍ପର୍ଶ ?'' ମୁଁ ଟଙ୍କା ପଇସା ବିଷୟରେ କିଛି କହିବାକୁ ଗଲେ ତାହା ବେଦନା ଦାୟକ ଓ ଉପହାସକର ବୋଧ ହୁଏ । ଶବ୍ଦ ଲଜ୍ଜାରେ ହାର ମାନେ ।'' ତୃତୀୟ ଥର ଏହି ଆମେରିକା ଭ୍ରମଣରୁ କବି ବହୁ ସହସ୍ର ଡଲାର ପାଣ୍ଠି ସଂଗ୍ରହରେ ବ୍ୟର୍ଥ ହେଲେବି ବ୍ୟକ୍ତିଗତ ଭାବେ ମାନବୀୟ ସଂପର୍କ ସ୍ଥାପନ ଦିଗରୁ ନାନାରୂପେ ସଫଳ ହୋଇଥିଲେ । ଏହାର ମୂଲ୍ୟ ଅନେକ ବେଶୀ । ପୁରୁଣା ପରିଚୟ ଗଭୀର ହେଲା । ଯେଉଁମାନଙ୍କୁ ସେ ନୂଆ ପାଇଲେ ସେମାନଙ୍କ ଭିତରେ ଥିଲେ ଦୁଇଜଣ ମହୀୟସୀ ନାରୀ ହେଲେନ୍ କେଲର ଓ ଜେନ୍ ଆଡାମ୍ସ । ଡ଼ରୋଥି ଷ୍ଟ୍ରେଟ୍ ଓ ଲିଓର୍ବଡ଼ କେ, ଏଲମ୍ ହର୍ଷ୍ଟ ଦୁଇ ତରୁଣୀ ଓ ତରୁଣଙ୍କ ସଙ୍ଗେ ଆଜୀବନ ବନ୍ଧୁତ୍ୱର ଭିତ୍ତିପାତ ହେଲା । ଏହି ଦୁଇଜଣ ପରେ ବିବାହ ବନ୍ଧନରେ ଆବଦ୍ଧ ହୋଇଥିଲେ । ଏଇ ସମୟରେ ଏଲମ୍‌ହର୍ଷ୍ଟ କର୍ଣ୍ଣେଲ୍ ବିଶ୍ୱବିଦ୍ୟାଳୟରେ କୃଷି ବିଦ୍ୟାର ସ୍ନାତକ ଶ୍ରେଣୀ ଛାତ୍ର ଥିଲେ । କବି ଜଣେ ବନ୍ଧୁଙ୍କ ଠାରୁ ଏହି ତରୁଣ ଆଦର୍ଶବାଦୀ ଇଂରେଜ ଯୁବକଙ୍କ କଥା ଜାଣି ନିଉୟର୍କରେ ତାଙ୍କ ସଙ୍ଗେ ସାକ୍ଷାତ ପାଇଁ ତାରବାର୍ତ୍ତା ପଠାଇଥିଲେ । ପରବର୍ତ୍ତୀ କାଳରେ ଏହି ଇଂରେଜ ଯୁବକ ହୋଇଥିଲେ କବିଙ୍କର ପରମ ବଂଧୁ । ପଲ୍ଲୀଅର୍ଥନୀତି ଓ ଶିକ୍ଷାବିଧାନ ପାଇଁ ଶ୍ରୀନିକେତନରେ ଏକ କେନ୍ଦ୍ର ସ୍ଥାପନାରେ ସେ ଥିଲେ ରବୀନ୍ଦ୍ରନାଥଙ୍କର ପ୍ରଧାନ ସହଯୋଗୀ । ଶାନ୍ତିନିକେତନ ସାଂସ୍କୃତିକ ଓ ଆନ୍ତର୍ଜାତିକ କେନ୍ଦ୍ରର ଏହା ଥିଲା ଉପଯୁକ୍ତ ପ୍ରତିପାର୍ଶ୍ୱିକ ଅନୁଷ୍ଠାନ । ନିଜ ଦେଶକୁ ଫେରିଯିବା ପରେ ବି ଏଲମହର୍ଷ୍ଟ ଓ ତାଙ୍କର ସ୍ତ୍ରୀଙ୍କ ଉଦାର ଅର୍ଥାନୁକୂଲ୍ୟରେ ଏହା ପୁଷ୍ଟ ହେଉଥିଲା ।

1921 ମାର୍ଚ୍ଚ ମାସରେ ରବୀନ୍ଦ୍ରନାଥ ଆମେରିକାରୁ ଲଣ୍ଡନ ଫେରିଥିଲେ । ସେଠାରୁ ସେ ବ୍ୟୋମଯାନରେ ପ୍ୟାରିସ୍ ଯାଇଥିଲେ । ଏହା ଥିଲା ତାଙ୍କର ବ୍ୟୋମଯାତ୍ରାର ପ୍ରଥମ ଅନୁଭୂତି । ଯାହାଙ୍କୁ ସେ ବହୁଦିନରୁ ଭେଟିବାକୁ ଚାହୁଁଥିଲେ ସେଇ ରୋମାଁଲୋଲାଁଙ୍କ ସାକ୍ଷାତ ପାଇଲେ ।

ପ୍ୟାରିସ୍‌ରୁ ସେ ଗଲେ ଷ୍ଟ୍ରସବର୍ଗ । ସେଠାରେ ନୂତନ ପ୍ରତିଷ୍ଠିତ ଫରାସୀ ବିଶ୍ୱବିଦ୍ୟାଳୟରେ 'ବନବାଣୀ' ଶୀର୍ଷକ ବକ୍ତୃତା ଦେଇଥିଲେ । ସେଠାରୁ ଗଲେ ଜେନେଭା ରୁଷୋ ଇନ୍‌ଷ୍ଟିଚ୍ୟୁଟ୍‌ରେ 'ଶିକ୍ଷା' ପ୍ରସଙ୍ଗରେ ବକ୍ତୃତା ଦେବାକୁ । ଲୁସାର୍ନେ ନାମକ ସ୍ଥାନରେ ଛୁଟି କଟାଉଥିବା ବେଳେ ଜାଣିବାକୁ ପାଇଲେ ତାଙ୍କର ଷଷ୍ଠି ପୂର୍ତ୍ତି ଉତ୍ସବ ପାଳନ ପାଇଁ ଜର୍ମାନୀରେ ଏକ ସମିତି ପ୍ରତିଷ୍ଠା କରାଯାଇଛି । ବହୁ ଶ୍ରେଷ୍ଠ ସାହିତ୍ୟିକ ଓ ବୁଦ୍ଧିଜୀବୀ ଥିଲେ ଏହାର ଉଦ୍‌ଯୋକ୍ତା । ସେମାନେ ଜନ୍ମଦିନ ପାଳନ ସଂଗେ ସଂଗେ ବିଶ୍ୱଭାରତୀ ଗ୍ରନ୍ଥଗାରକୁ ଜର୍ମାନ ଭାଷାର ଶ୍ରେଷ୍ଠ କ୍ଲାସିକ୍ ଗ୍ରନ୍ଥଗୁଡିକୁ ଉପହାର ଦେଇଥିଲେ ।

ହାମ୍‌ବର୍ଗ ଓ କୋପେନ୍ ହେଗେନ୍‌ରେ ବକ୍ତୃତା କାର୍ଯ୍ୟକ୍ରମ ଓ ସଂକ୍ଷିପ୍ତ ଭ୍ରମଣ ଶେଷ କରି କବି ଯାଇଥିଲେ ସ୍ୱିଡିସ୍ ଏକାଡେମୀର ବହୁଦିନ ତଳରୁ ନିମନ୍ତ୍ରଣ କ୍ରମେ ଷ୍ଟକହୋମ୍ ଏକାଡେମୀରେ କବିଙ୍କର ବକ୍ତୃତା ଶୁଣି ଉପଶାଳାର ଆର୍ଚବିଶପ୍ ମନ୍ତବ୍ୟ କରି କହିଥିଲେ- ''ନୋବେଲ ପୁରସ୍କାର ସେଇ ଲେଖକଙ୍କ ପାଇଁ ଅଭିପ୍ରେତ, ଯେଉଁମାନେ ଏକାଧାରରେ ଶିଳ୍ପୀ ଓ ଭବିଷ୍ୟଦ୍ରଷ୍ଟା । ରବୀନ୍ଦ୍ରନାଥ ଠାକୁରଙ୍କ ଠାରୁ ଏହି ସର୍ତ୍ତ ଆଉ କେହି ଅଧିକ ପୂରଣ କରି ପାରି ନାହାନ୍ତି ।'' ଏହା ପରେ କବି ଗଲେ ବର୍ଲିନ୍ । ଜୁନ୍ ଦୁଇ ତାରିଖରେ ବିଶ୍ୱବିଦ୍ୟାଳୟରେ ବକ୍ତୃତା ଦେଲେ । ସ୍ଥାନୀୟ ସମ୍ବାଦ ପତ୍ର ବିବରଣୀ ଅନୁସାରେ- ''ରବୀନ୍ଦ୍ରନାଥ ଠାକୁରଙ୍କ ସାଧାରଣ ସଭାରେ ବୀର ପୂଜାର ଉତ୍‌ଥଳ ଉଦ୍ଦୀପନା ଦେଖିବାକୁ ମିଳିଲା । ଭିଡ ଭିତରେ ବହୁ ତରୁଣୀ ମୂର୍ଚ୍ଛାହତ ହେଲେ ।'' ଏତେ ସଂଖ୍ୟକ ଶ୍ରୋତା ପ୍ରଥମ ଦିନ କବିଙ୍କ ବକ୍ତୃତା ଶୁଣିବାକୁ ବ୍ୟର୍ଥ ହେଲେ ଯେ ସେମାନଙ୍କ ପାଇଁ କବି ପରଦିନ ପୁଣି ବକ୍ତୃତା ଦେଲେ । ମ୍ୟୁନିକ୍‌ରେ କବି ଟମାସ୍‌ମ୍ୟାନ ଓ ଅନ୍ୟ ବହୁ ବୁଦ୍ଧିଜୀବୀ ଲେଖକମାନଙ୍କୁ ଭେଟିଲେ । ଜର୍ମାନୀର ଯୁଦ୍ଧପର ଅର୍ଥନୀତି ଭାଙ୍ଗି ପଡିଥିଲା । ଲୋକଙ୍କ ଦୁରବସ୍ଥାରେ ସମବ୍ୟଥୀ କବି ଜର୍ମାନୀରୁ ପାଉଥିବା ସମସ୍ତ ଅର୍ଥ ମ୍ୟୁନିକ୍‌ର ନିରାଶ୍ରୟ ଶିଶୁଙ୍କ ପାଇଁ ଦାନ କରି ଦେଇଥିଲେ ।

କେବଳ କାୟକ୍ଲେଶ ନୁହେଁ ଜର୍ମାନ୍ ଭ୍ରମଣ କାଳରେ କବି ଆବେଗିକ ଆଘାତ ପାଇ ଶାନ୍ତି ନିକେତନର ଶାନ୍ତ କୋଳକୁ ଫେରିବାକୁ ଉଦ୍‌ବିଗ୍ନ ହୋଇ ପଡିଲେ । ବହୁ ନିମନ୍ତ୍ରଣ କବି ଏଡ଼ାଇ ଦେଇଥିଲେ ବି ଡ଼ର୍ମଷ୍ଟଡ୍‌ରେ ଅଭିନନ୍ଦନ ପାଇଁ ହେସର୍ ଗ୍ରାଣ୍ଡ ଡ୍ୟୁକ୍‌ଙ୍କ ନିମନ୍ତ୍ରଣ ପ୍ରତ୍ୟାଖାନ କରି ନଥିଲେ । ସେଠି ଥିଲେ ଜର୍ମାନ ଦାର୍ଶନିକ କାଉଣ୍ଟ ହେରମ୍ୟାନ କାଇଜାରଲିଙ୍ଗ୍ । ସେ 1911 ମସିହାରେ ଭାରତ ଆସିଥିବା ବେଳେ କବିଙ୍କ ସାନ୍ନିଧ୍ୟରେ ଆସିଥିଲେ । ବିଦେଶୀ ମାନଙ୍କ ମଧ୍ୟରେ ରବୀନ୍ଦ୍ର ପ୍ରତିଭାର ମୂଲ୍ୟ କଳନା କରିବାରେ ସେ ଥିଲେ ପ୍ରଥମ ବ୍ୟକ୍ତି । ତାଙ୍କର ଏହି ଆକଳନ ଥିଲା ଏକ ପ୍ରକାର ସହଜାତ । ରବୀନ୍ଦ୍ରନାଥଙ୍କୁ ସେ ଅକସ୍ମାତ ଥରେମାତ୍ର ଭେଟିଥିଲେ, ତାଙ୍କର ରଚନା ସହିତ ସେପରି ଘନିଷ୍ଠ ଭାବରେ ପରିଚିତ ନଥିଲେ । ତଥାପି ସେ ଥିଲେ ରବୀନ୍ଦ୍ର ନାଥଙ୍କ ପ୍ରତି ଏକାନ୍ତ ଶ୍ରଦ୍ଧାଶୀଳ । ପରିଚୟ ଯେତିକି ଗଭୀର ହେଲା କବିଙ୍କ ପ୍ରତି ତାଙ୍କର ଶ୍ରଦ୍ଧାର ସୀମା ରହିଲା ନାହିଁ । 1930 ମସିହାରେ ସେ ଲେଖିଥିଲେ, ''ମୋ ଜାଣିବାରେ ରବୀନ୍ଦ୍ରନାଥ ଶ୍ରେଷ୍ଠ ବ୍ୟକ୍ତି । ବିଶ୍ୱମୟ ଖ୍ୟାତିଠାରୁ ସେ ଅନେକ ବଡ । ଭାତରରେ ତାଙ୍କର ଦ୍ୱିତୀୟ କେହି ନାହିଁ । ବହୁ ଶତାବ୍ଦୀ ଧରି ସାରା ପୃଥିବୀରେ ଏପରି ବ୍ୟକ୍ତି ଜନ୍ମ ହୋଇନାହାନ୍ତି....... ମୋ ଜାଣିବାରେ ସେ ଶ୍ରେଷ୍ଠ ଜ୍ଞାନୀ, ବିଶ୍ୱଜନୀନ ଆଦର୍ଶବାଦୀ ଓ ପୂର୍ଣ୍ଣ ମାନବ ।''

କବି ଡର୍ମଷ୍ଟଡ୍‌ରେ ପୂରା ଗୋଟିଏ ସପ୍ତାହ ବିତାଇଲେ । ସେହି ସମୟରେ ତାଙ୍କର କୌଣସି

ଅନୁଷ୍ଠାନିକ କାର୍ଯ୍ୟକ୍ରମ, ବକ୍ତୃତା ବା ଅଭିନନ୍ଦନ ଗ୍ରହଣ ଆଦି ନଥିଲା । କିନ୍ତୁ ସେ ଯେଉଁ ପ୍ରାସାଦରେ ରହୁଥିଲେ ତାହା ସମ୍ମୁଖରେ ପ୍ରତିଦିନ ସକାଳେ ଓ ସନ୍ଧ୍ୟାରେ ଅସଂଖ୍ୟ ଲୋକ ଆସି ଜମା ହେଉଥିଲେ । କବିଙ୍କ ଠାରୁ ସେମାନେ ଯେଉଁ ପ୍ରଶ୍ନର ଉତ୍ତର ଚାହୁଁଥିଲେ କବି ତାହା ଦେଉଥିଲେ । କାରଣ କାଇଜର ଲିଙ୍ଗ ଭାଷାନ୍ତର କରୁଥିଲେ । କେବଳ ଲୋକଙ୍କ ଶ୍ରଦ୍ଧା ନୁହେଁ, ଦାର୍ଶନିକ ଓ ଅତିଭୌତିକ ବିଷୟରେ ଜର୍ମାନୀର ସାଧାରଣ ଜନତାଙ୍କ ଆଗ୍ରହ କବିଙ୍କୁ ମୁଗ୍ଧ କରିଥିଲା ।

ଜର୍ମାନୀରୁ କବି ଭିଏନା ଯାଇ ଦୁଇଟି ବକ୍ତୃତା ଦେଇଥିଲେ । ତା' ପରେ ଯାଇଥିଲେ ପ୍ରେଗ୍ । ସେଠାରେ ଭାରତ ତତ୍ତ୍ୱବିଦ୍ ଏମ ୱିଣ୍ଟରନିଜ୍ ଓ ଭି.ଲେସ୍‌ନିଙ୍କ ସଂଗେ ଗଭୀର ବନ୍ଧୁତ୍ୱ ପାଶରେ ଆବଦ୍ଧ ହୋଇଥିଲେ । ପରେ ଏ ଦୁହେଁ ବିଶ୍ୱଭାରତୀକୁ ପରିଦର୍ଶୀ ଅଧ୍ୟାପକ ରୂପେ ନିମନ୍ତ୍ରିତ ହୋଇଥିଲେ । କବିଙ୍କ ମୂଳ ବଙ୍ଗଳା ରଚନାର ପ୍ରଥମ ବିଦେଶୀ ଅନୁବାଦକ ଥିଲେ ପ୍ରଫେସର ଲେସନି । ସେ କବିଙ୍କର ଏକ ଜୀବନୀ ଜର୍ମାନ୍ ଭାଷାରେ ଲେଖିଥିଲେ । ଏହାର ଇଂରେଜୀ ଅନୁବାଦ ଯଥା ସମୟରେ କରାଯାଇଥିଲା । ଏଇ ବଂଧୁତ୍ୱ ଓ ସଂପର୍କ ଲାଗି କବି ଚେକୋସ୍ଲୋଭାକିଆର ବିଶେଷ ଅନୁରାଗୀ ଥିଲେ । ଏଇ ସବୁ ଭ୍ରମଣ ଯଥେଷ୍ଟ ପ୍ରୀତିପଦ ଥିଲେ ବି କବି ବିଶେଷ କ୍ଲାନ୍ତ ହୋଇ ଘରକୁ ବାହୁଡିବାକୁ ଚାହିଁଥିଲେ । ଚଉଦ ମାସ ପରେ 1921 ଜୁଲାଇ ମାସରେ କବି ଭାରତ ଫେରିଲେ ।

ସ୍ଥିର ଓ ଶାନ୍ତ ପରିବେଶକୁ ଫେରିବାକୁ କବିଙ୍କ କଳ୍ପନା ଶୀଘ୍ର ମରୀଚିକାରେ ପରିଣତ ହୋଇଥିଲା । ଭାରତରେ ସର୍ବତ୍ର ଅଶାନ୍ତି ଓ ଅସନ୍ତୋଷର ବହ୍ନି ଜଳୁଥିଲା । ଗାନ୍ଧିଜୀଙ୍କ ବ୍ୟକ୍ତିତ୍ୱର ଯାଦୁ ଲୋକଙ୍କୁ ଜାଗ୍ରତ କରିଥିଲା । ଶଇତାନୀ ଇଂରେଜରାଜତ୍ୱ ବିରୁଦ୍ଧରେ ସାରା ଭାରତରେ ଅସହଯୋଗ ଆନ୍ଦୋଳନ ଚାଲିଥିଲା । ଏମିତି ଜଣେ ମହାମାନବଙ୍କ ଆବିର୍ଭାବ ପାଇଁ କବି ନିଜ ସଙ୍ଗୀତ, କବିତା, ନାଟକ ଓ ନାନା ରଚନାରେ ପ୍ରଭୂତ ଇଂଗିତ ବହୁଦିନ ଧରି ଦେଇ ଆସୁଥିଲେ । ଯିଏ ମୂକ ମୁଖରେ ଦେବେ ଭାଷା, ନିରସ୍ତ୍ର ବାହୁରେ ଭରିଦେବେ ଅମାପ ଶକ୍ତି । ଗାନ୍ଧିଜୀଙ୍କ ଅହିଂସା ଆନ୍ଦୋଳନ ରବୀନ୍ଦ୍ରନାଥ ପୂର୍ଣ୍ଣ ପ୍ରାଣରେ ସମର୍ଥନ କଲେ । ଆଦର୍ଶ ସଂଗେ ବାସ୍ତବର କ୍ୱଚିତ ମେଳ ଦେଖାଯାଏ । ଜଣେ ଝଡକୁ ଯେତେ ଆନନ୍ଦରେ ଆହ୍ୱାନ କଲେ ବି, ଆଖିରେ ଯେତେବେଳେ ଧୂଳି ପଶିଯାଏ, ତାହା ଅସହ୍ୟ ହୁଏ ।

ରବୀନ୍ଦ୍ରନାଥଙ୍କ ଠାରୁ ମହାତ୍ମାଗାନ୍ଧି ଅବଶ୍ୟ ଅଧିକ ଖାଣ୍ଟି ଆଦର୍ଶବାଦୀ ଥିଲେ । ସେ ଥିଲେ ଜନ ସମାଜର ବିପ୍ଳବୀ ନେତା । ସମୟ ସମୟରେ ସେ ଘଟଣା ଓ ପରିସ୍ଥିତିକୁ ନାଟକୀୟ ଭାବରେ ଅତିରଂଜିତ କରି ଦେଉଥିଲେ । କୌଣସି ମତେ ଜନସାଧାରଣଙ୍କୁ ଜାଗ୍ରତ ଓ ଉଦ୍‌ବୁଦ୍ଧ କରିବା ଥିଲା ତାଙ୍କର ପ୍ରଧାନ କାମ । ସେ ସେନାପତି ନେଲସନ୍‌ଙ୍କ ଭଳି ନିଜର ଅନ୍ଧ ଆଖିରେ ଦୂରବୀଣ ଲଗାଇ ସତ୍ୟୋକ୍ତି କରି କହୁଥିଲେ କିଛି ଦେଖୁ ନାହାନ୍ତି । ମାତ୍ର ରବୀନ୍ଦ୍ର କେବଳ ଦ୍ରଷ୍ଟା ଥିଲେ, ସେ ପୁଣି ଯେମିତି ଇଗଲ ଆଖିରେ ସବୁକିଛି ଦେଖିପାରୁଥିଲେ । ଅସ୍ୱସ୍ତିବୋଧ କଲାଭଳି ଅନେକ କିଛି ତାଙ୍କ ଆଖିରେ ପଡୁଥିଲା । ଜନସାଧାରଣଙ୍କ ମନରେ ହଠାତ୍ ଦେଶପ୍ରେମର ଜୁଆର ଖେଳାଇ ଦିଆଯାଇଥିଲା । ଏହାର କୌଣସି ଐତିହାସିକ ସ୍ମୃତି ମଧ୍ୟ ସେମାନଙ୍କ ମନରେ ନଥିଲା । ତେଣୁ ସେମାନେ ନିଜର ସବୁକାମ ଏକାବେଳକେ ନିର୍ଭୁଲ ବୋଲି ଭାବୁଥିଲେ । ଯାହା କିଛି ବିଦେଶୀ ତାକୁ ଘୃଣା ଦୃଷ୍ଟିରେ ଦେଖୁଥିଲେ । ଯେଉଁ ଅନ୍ଧ ଜାତୀୟତା ବିରୋଧରେ ରବୀନ୍ଦ୍ରନାଥ ବିଦେଶରେ ପ୍ରଚାର କରିଥିଲେ, ସ୍ୱଦେଶରେ ତାହାର ପ୍ରଭାବ ବିସ୍ତାର ଦେଖି ମର୍ମ ବେଦନା ଅନୁଭବ

କଲେ । ଦି' ମାସ ପୂର୍ବେ ସେ ନିୟୁର୍କରୁ ଆଣ୍ଡ୍ରୁସ୍‌ଙ୍କୁ ଲେଖିଥିଲେ, ''ପରିପୂର୍ଣ୍ଣମାନବ ଦେଶପ୍ରେମିକ ଏପରିକି ନୀତିବାଦୀମଣିଷଠାରେ ନିଜକୁ ବଳି ଦେବା ଉଚିତ ନୁହେଁ । ମୋ ବିଚାରରେ ମଣିଷ ମହାନ୍ ଓ ନାନା ଦିଗରୁ ଅସୀମ ସମ୍ପଦର ଅଧିକାରୀ ।''

ମହାତ୍ମା ଗାନ୍ଧି ମଧ୍ୟ ଅନ୍ୟ କିଛି ବିଶ୍ୱାସ କରୁ ନଥିଲେ । ସେ ମଧ୍ୟ କହିଥିଲେ- ''ମୁଁ ସ୍ୱଦେଶ ପ୍ରେମୀ କାରଣ ମୁଁ ମଣିଷ ଓ ମାନବିକ ଗୁଣରେ ବିଶ୍ୱାସୀ । ମୋ ଦେଶପ୍ରେମ ଏକମୁଖୀ ନୁହେଁ । ଭାରତର ସ୍ୱାର୍ଥଲାଗି ମୁଁ ଇଂଲଣ୍ଡ ବା ଜର୍ମାନୀ କାହାକୁ ଆଘାତ କରିବି ନାହିଁ । ମାନବିକ ଆଦର୍ଶ ପ୍ରତି ଯାହାର ଆସ୍ଥା ଯେତିକି କମ ସେ ସେତିକି କମ ଦେଶପ୍ରେମିକ ।'' କିନ୍ତୁ ତାଙ୍କର ଅଗଣିତ ଅନୁଗାମୀ ମାନେ ଠିକ୍ ଏଇଭାବରେ କାମ କରୁନଥିଲେ । ଗୁରୁ ଯାହା ଦେବାକୁ ଚାହାନ୍ତି । ତାହା ଶିଷ୍ୟ ଗ୍ରହଣ କରନ୍ତି ନାହିଁ । ସେ ଯେତିକି ଯାହା ଚାହାନ୍ତି ଗ୍ରହଣ କରନ୍ତି ।

ଅସହଯୋଗ ସଂଗ୍ରାମର ଆହୁରି ବହୁ ଦିଗ ରବୀନ୍ଦ୍ରନାଥ ସହିପାରୁ ନଥିଲେ । ଉତ୍ତେଜିତ କର୍ମୀମାନେ ଯେଉଁଭଳି ବିଦେଶୀ ଲୁଗା ପୋଡିଥିଲେ ତାହା ସେ ଘୃଣା କରୁଥିଲେ । ରାଜନୈତିକ ନେତାମାନଙ୍କର ହାତ ଖେଳଣା ହୋଇ ଯେଉଁ ତରୁଣ ମାନେ ସ୍କୁଲ କଲେଜ ଛାଡୁଥିଲେ ସେମାନଙ୍କ ପାଇଁ କବି ବଡ ଚିନ୍ତିତ ହେଉଥିଲେ । ରବୀନ୍ଦ୍ରନାଥ ସୂତାକଟା ସମେତ ସବୁପ୍ରକାର ଭାରତର କୁଟୀରଶିଳ୍ପର ପୁନର୍ଜୀବନ ପାଇଁ ସବୁବେଳେ ଆହ୍ୱାନ ଦେଉଥିଲେ ବି ଭାତରରେ ସବୁ ଆର୍ଥିକ ସମସ୍ୟା ଚରଖା ଦ୍ୱରା ସମାଧାନ ହେବ ବୋଲି ଭାବୁ ନଥିଲେ । ସେ ଥରେ ପରିହାସରେ କହିଥିଲେ, ''ସେ କଥା ଅପେକ୍ଷା ଆହୁରି ସହଜରେ ସୂତା କାଟି ପାରିବେ । ସୂତା କାଟିବା ସପକ୍ଷରେ କଂଗ୍ରେସର ପ୍ରଚାର ଏକ ରାଜନୈତିକ କଥାକଟା । କଥାର ଚକ ଘୂରାଇବା ଅପେକ୍ଷା ଚରଖାର ଚକ ଘୁରାଇବା ସହଜ ।''

ମହାତ୍ମାଙ୍କ କଥା ଉଲ୍ଲେଖ ନ କରି ଓ ତାଙ୍କ ନେତୃତ୍ୱର କୌଣସି ସମାଲୋଚନା ନ କରି କଲିକତାରେ 'ଶିକ୍ଷାରେ ମିଳନ' ନାମକ ଏକ ବକ୍ତୃତାରେ ବୌଦ୍ଧିକ ଓ ନୈତିକ ଦିଗରେ ଭାରତ ଓ ପାଶ୍ଚାତ୍ୟ ଦେଶର ସହଯୋଗର ଆବଶ୍ୟକତା ଉପରେ କବି ନିଜର ବିଶ୍ୱାସ ପ୍ରକଟ କରିଥିଲେ । ବଙ୍ଗ ଦେଶରେ ମଧ୍ୟ ରବୀନ୍ଦ୍ରନାଥଙ୍କ ଏଇ ମତର ଅନେକ ବିରୋଧ କରିଥିଲେ । ବିଖ୍ୟାତ ବଙ୍ଗଳା ଔପନ୍ୟାସିକ ଶରତଚନ୍ଦ୍ର 'ଶିକ୍ଷାର ବିରୋଧ' ନାମରେ ଏକ ଲେଖା ପ୍ରକାଶ କରି ରବୀନ୍ଦ୍ରନାଥଙ୍କ ମତର ସମାଲୋଚନା କରିଥିଲେ । ଏଇ ଘଟଣା ପରେ 1921 ସେପ୍ଟେମ୍ବର 6 ତାରିଖରେ ମହାତ୍ମା କଲିକତା ଆସିଥିଲେ । କବିଙ୍କ ଜୋଡାସାଙ୍କୋ ଘରେ ଗାନ୍ଧି ଓ ରବୀନ୍ଦ୍ରଙ୍କ ମଧ୍ୟରେ ଦୀର୍ଘ ସମୟ ରୁଦ୍ଧଦ୍ୱାର ଆଲୋଚନା ହୋଇଥିଲା । ସେମାନଙ୍କ ଆଲୋଚନା ବେଳେ ତୃତୀୟ ଲୋକ କେବଳ ଥିଲେ ଦୀନବଂଧୁ ଆଣ୍ଡ୍ରୁଜ୍ । ଠିକ୍ କଣ ସବୁ ଆଲୋଚନା ହୋଇଥିଲା, ତାହାର ବିବରଣୀ ମିଳେ ନାହିଁ । ତେବେ ନିଜର ରାଜନୈତିକ କାର୍ଯ୍ୟକ୍ରମକୁ ସମର୍ଥନ ପାଇଁ ମହାତ୍ମା ରବୀନ୍ଦ୍ରନାଥଙ୍କୁ ପ୍ରବର୍ତ୍ତାଇବାକୁ ଆସିଥିଲେ । ଅବଶ୍ୟ ପରେ ଏହା ଜଣାପଡିଥିଲା ଯେ, ଦୁହେଁ ବିରୋଧ ମତ ପୋଷଣରେ ବିରୋଧୀ ନହୋଇ ବଂଧୁ ଭାବରେ ପରସ୍ପର ଠାରୁ ବିଦାୟ ନେଇଥିଲେ ।

ଗାନ୍ଧି ଓ ରବୀନ୍ଦ୍ରନାଥଙ୍କ ଆଳାପ ଆଲୋଚନା ସମୟରେ ଗାନ୍ଧିଙ୍କୁ ସମର୍ଥନ ପାଇଁ ବହୁ ସଂଖ୍ୟାରେ ଲୋକେ ରବୀନ୍ଦ୍ରନାଥଙ୍କ ବାସଭବନଠାରେ ସମବେତ ହୋଇଥିଲେ । ବିଶ୍ୱମାନବ ଦରଦୀ କବିଙ୍କୁ ଶିକ୍ଷା ଦେବା ପାଇଁ ସେମାନେ ବହୁ ପରିମାଣର ବିଦେଶୀ ବସ୍ତ୍ର ସଂଗ୍ରହ କରି କବିଙ୍କ ଗୃହର ଖୋଲା ଅଗଣାରେ ନିଆଁ ଲଗାଇଥିଲେ । ଲିଓନାର୍ଡ ଏଲମ୍‌ହର୍ଷ୍ଟଙ୍କ ଅନୁସାରେ

ରବୀନ୍ଦ୍ରନାଥ ଆଲୋଚନାର ସାରାଂଶ ତାଙ୍କ ଆଗରେ ପ୍ରକାଶ କରିଥିଲେ । ଗାନ୍ଧିଜୀ ଯେତେବେଳେ ତାଙ୍କ ଆନ୍ଦୋଳନ ସଂପୂର୍ଣ୍ଣ ଅହିଂସା ଉପରେ ପ୍ରତିଷ୍ଠିତ ବୋଲି ବୁଝାଉଥିଲେ, କବି ତାଙ୍କୁ ଡାକି ଦେଖାଇ ଦେଇ କହିଥିଲେ- ''ଗାନ୍ଧିଜୀ ବାରଣ୍ଡାକୁ ଆସି ଦେଖନ୍ତୁ ଆପଣଙ୍କ ଅହିଂସା ଅନୁଗାମୀମାନେ କଣ କରୁଛନ୍ତି । ସେମାନେ ଚିତ୍ତପୁର ରୋଡ ଦୋକାନରୁ ବିଲାତି ଲୁଗା ସବୁ ଲୁଟି ଆଣି ମୋ ଅଗଣାରେ ନିଆଁରେ ପୋଡୁଛନ୍ତି । ପାଗଳ ଧର୍ମାନ୍ଧ ଭଳି ଉଲ୍ଲାସରେ ଚିତ୍କାର କରୁଛନ୍ତି । ଏହାହିଁ ତେବେ କଣ ଅହିଂସା ?''

ଆଧୁନିକ ଭାରତର ଏହି ଦୁଇ ମହାମନା ବ୍ୟକ୍ତିଙ୍କ ଦୃଷ୍ଟିକୋଣର ପାର୍ଥକ୍ୟ ରୋମାଁରୋଲାଁ ଠିକ୍ ବୁଝିଥିଲେ । ଉଭୟଙ୍କୁ ସଶ୍ରଦ୍ଧ ଚିତ୍ତରେ କଳନା କରିବାର କଳ୍ପନା-ଶକ୍ତି ତାଙ୍କର ଥିଲା । ଏଠାରେ ତାଙ୍କ ଉକ୍ତିର ପୁନରାବୃତ୍ତି କରାଯାଇ ପାରେ ।

''ରବୀନ୍ଦ୍ରନାଥ ଓ ଗାନ୍ଧି ଉଭୟେ ଉଭୟଙ୍କୁ ପ୍ରଶଂସା କରୁଥିଲେ, ଶ୍ରଦ୍ଧା କରୁଥିଲେ, କିନ୍ତୁ ସେମାନଙ୍କ ଭାବଗତ ପାର୍ଥକ୍ୟ ଥିଲା, ଯେପରିକି ସେଣ୍ଟପଲ୍ ଓ ପ୍ଲାଟୋଙ୍କ ଭିତରେ, ଜଣେ ଯୀଶୁଭକ୍ତ ଓ ଜଣେ ଦାର୍ଶନିକ ଭିତରେ । ଗାନ୍ଧି ଧର୍ମୀୟ ବିଶ୍ୱାସ ଓ ଦୟାଧର୍ମରେ ଚାଳିତ ହୋଇ ଏକ ନୂତନ ମାନବତାର ପ୍ରତିଷ୍ଠା ଚାହିଁଥିଲେ । ଅନ୍ୟ ପକ୍ଷରେ ଆମେ ଦେଖୁ ରବୀନ୍ଦ୍ରନାଥଙ୍କର ଥିଲା ସ୍ୱାଧୀନ, ପ୍ରଶାନ୍ତ, ଉଦାର, ବୈଦ୍ଧିକତା । ସେ ଚାହୁଁଥିଲେ ସହୃଦୟତା ଓ ବୁଝାମଣା ମାଧମରେ ସମସ୍ତ ମାନବ ଜାତିର ଐକ୍ୟ ।''

''ରବୀନ୍ଦ୍ରନାଥ ସବୁବେଳେ ଗାନ୍ଧିଙ୍କୁ ଜଣେ ଋଷି ରୂପେ ଦେଖୁଥିଲେ ଓ ଭକ୍ତି କରୁଥିଲେ । ମୁଁ ଯେତେବେଳେ ମହାତ୍ମାଙ୍କ ସଂଗେ ଟଲଷ୍ଟୟଙ୍କୁ ତୁଳନା କରିବାକୁ ଯାଉଥିଲି, ରବୀନ୍ଦ୍ରନାଥ ମୋତେ ବୁଝାଇଦେଲେ ଉଭୟଙ୍କ ପାର୍ଥକ୍ୟ । ସେଇଦିନ ଠାରୁ ମୁଁ ମହାତ୍ମାଙ୍କୁ ଭଲ ଭାବରେ ବୁଝିପାରିଚି । ଗାନ୍ଧିଙ୍କ ଚିନ୍ତା ଆଲୋକିତ ଓ ଉଜ୍ଜ୍ୱଳ । ତାଙ୍କଠାରେ ସବୁ କିଛି ପ୍ରାକୃତିକ, ନିରାଭରଣ, ସହଜ, ଶୁଦ୍ଧ ଓ ତାଙ୍କର ସମସ୍ତ ସଂଗ୍ରାମ ପଛରେ ରହିଛି ଧର୍ମୀୟ ଆର୍ଷ ମହିମା । ଅନ୍ୟ ପକ୍ଷରେ ଟଲଷ୍ଟୟଙ୍କ କ୍ଷେତ୍ର ଇନ୍ଦ୍ରିୟାବେଗ ବିରୁଦ୍ଧରେ ସଗର୍ବ ବିଦ୍ରୋହ । ତାଙ୍କ ସମସ୍ତ କିଛି ହିଂସା, ଏପରିକି ଅହିଂସା ବି ହିଂସାତ୍ମକ ।''

''ତଥାପି ଏଇ ଦୁଇଜଣଙ୍କ ଭିତରେ ମତାନ୍ତର ବଢ଼ି ଚାଲିବା ଥିଲା ଅବଶ୍ୟମ୍ଭାବୀ ।.........ସେଇ ସମୟର ରବୀନ୍ଦ୍ରନାଥ ଥିଲେ କବି, ଇଉରୋପରେ ଏସିଆର ଆଧାତ୍ମିକତାର ଦୂତ । ସେ ଶାନ୍ତିନିକେତନରେ ସମଗ୍ର ବିଶ୍ୱର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାରେ ଜନସାଧାରଣଙ୍କ ସହଯୋଗ ଲୋଡୁଥିଲେ । ଜଣେ ପାଶ୍ଚାତ୍ୟ ଓ ପ୍ରାଚ୍ୟର ସହଯୋଗ ପାଇଁ ପ୍ରଚାର କରୁଥିବା ବେଳେ ସେଇ ମୁହୂର୍ତ୍ତରେ ଆଉ ଜଣେ ପ୍ରଚାର କରୁଥିଲେ ଅସହଯୋଗ । ଏହା ଭାଗ୍ୟର ପରିହାସ ନୁହେଁ ତ ଆଉ କଣ !''

''ତାଙ୍କ ଭାବନାକୁ ଅସହଯୋଗ ଶବ୍ଦଟା ଆଘାତ କରୁଥିଲା । କାରଣ ତାଙ୍କର ପ୍ରବୁଦ୍ଧ ମାନସିକତା ସାରା ପୃଥିବୀର ସଂସ୍କୃତି ଦ୍ୱାରା ପୁଷ୍ଟ ଥିଲା ।''

ଗାନ୍ଧି ନିଜକୁ ଏକଘରକିଆ କରି ରଖିବେ- ରବୀନ୍ଦ୍ରନାଥଙ୍କର ଏ ଭୟ ନଥିଲା, ସେ ଜାଣିଥିଲେ ଯେ ମହାତ୍ମାଗାନ୍ଧି ଏହାର ଉର୍ଦ୍ଧ୍ୱରେ । ଜାତୀୟତା ଜ୍ୱରାକ୍ରାନ୍ତ ତାଙ୍କର ଅନୁଗାମୀମାନେ ଆବେଗ ଓ ଅହଂକାର ଲୋକଙ୍କ ମନରେ ପ୍ରବେଶ କରାଇବେ ବୋଲି ସେ ଭୟ କରୁଥିଲେ । ଶାନ୍ତିନିକେତନରେ ତାଙ୍କର ଯେଉଁ ଛାତ୍ରମାନେ ମହାତ୍ମାଗାନ୍ଧିଙ୍କ ଅସହଯୋଗର ପ୍ରଭାବରେ ବିଚଳିତ

ହେଉଥିଲେ, ସେମାନଙ୍କୁ ରବୀନ୍ଦ୍ରନାଥ ନିଜର ମନକଥା ବୁଝାଉଥିଲେ । ସ୍କୁଲ କଲେଜ ପରିତ୍ୟାଗ କଲେ କଣ ହେବ ?- ସେ ପଚାରୁଥିଲେ । ଛାତ୍ରମାନେ କି ସ୍ୱାର୍ଥ ତ୍ୟାଗ କରିବା ପ୍ରୟୋଜନ ? ସଂପୂର୍ଣ୍ଣ ଶିକ୍ଷା ପାଇଁ ତ୍ୟାଗ ନ କରି ଅଶିକ୍ଷା ପାଇଁ ତ୍ୟାଗ । ସେ ରାଜନୈତିକ କ୍ଷେତ୍ରରେ ପଙ୍କିଳ ଜଳ ଭିତରକୁ ଛାତ୍ରମାନଙ୍କୁ ଟାଣି ନେବାକୁ ବିରୋଧ କରୁଥିଲେ । ଦଶବର୍ଷ ପୂର୍ବେ ଯେତେବେଳେ ସେ ନିଜେ ସ୍ୱଦେଶୀ ଆନ୍ଦୋଳନ ଚଳାଉଥିଲେ କେତେଜଣ ଛାତ୍ର ଆସି ପଢ଼ା ତ୍ୟାଗ କରି ସେଥିରେ ଯୋଗ ଦେବାକୁ ଚାହିଁଥିଲେ । କିନ୍ତୁ ରବୀନ୍ଦ୍ରନାଥ ସେଥିରୁ ସେମାନଙ୍କୁ ନିବୃତ କରିବାରୁ ସେମାନେ ତାଙ୍କର ଦେଶପ୍ରେମ ବିଷୟରେ ସନ୍ଦେହ ପ୍ରକାଶ କରି କ୍ରୋଧରେ ବିଦାୟ ନେଲେ ।

କଲିକତାରେ ଥରେ ସେ ଗୋଟିଏ ବକ୍ତୃତାରେ କହିଥିଲେ, "ଅନ୍ଧଅନୁସରଣ ବାହାର ସ୍ୱାଧୀନତା ନାଁରେ ଆତ୍ମାର ପ୍ରକୃତ ସ୍ୱାଧୀନତାକୁ କ୍ଷୁଣ୍ଣ କରିପାରେ ।" ଏହା ପରେ ମଡର୍ଣ୍ଣ ରିଭ୍ୟୁ ପତ୍ରିକାରେ 'କଲ ଅପ୍ ଦି ଟ୍ରୁଥ୍' ନାମରେ ପ୍ରକାଶିତ ହୋଇଥିଲା । ଏହା ଉପରେ ମତ ଦେଇ ରେମାଁରୋଲାଁ କହିଛନ୍ତି, "ରବୀନ୍ଦ୍ରନାଥଙ୍କ ମହତ୍ ବାକ୍ୟସବୁ ଯାହା ଏକ ଜାତି ଉଦ୍ଦେଶ୍ୟରେ ଚିରକାଳ ଉଚ୍ଚାରିତ, ତାହା ଥିଲା ଅତି ସୁନ୍ଦର ବାକ୍ୟ ମଧ୍ୟରେ ଅନ୍ୟତମ ସତେ ଯେମିତି ସୂର୍ଯ୍ୟାଲୋକର କବିତା. ମାନବୀୟ ଦ୍ୱନ୍ଦର ଅନେକ ଉର୍ଦ୍ଧ୍ୱରେ ତାର ସ୍ଥିତି । ମହାକାଳ ଦୃଷ୍ଟିରେ ରବୀନ୍ଦ୍ରନାଥଙ୍କ କଥା ଥିଲା ସତ୍ୟ । ଏଇ ଗାୟକ ପକ୍ଷୀ, ଏଇ ଅତିକାୟ ଭରତିଆ ଆମ ସମୟର ଜଣେ ଶ୍ରେଷ୍ଠ ସଂଗୀତଜ୍ଞ ଯାହା ହେଉନ୍ କହିଥିଲେ, "ସମୟର ଧ୍ୱଂସ ସ୍ତୂପ ଉପରେ ବସି ଗାଉଥାନ୍ତି । ସେ ମହାକାଳରେ ବଂଚନ୍ତି । କିନ୍ତୁ ଆମର ଅଧୁନାର ଦାବୀ ଯେ ସେ ସର୍ବଶ୍ରେ !"

Young India ରେ ପ୍ରକାଶିତ ଏକ ସ୍ତମ୍ଭରେ ଗାନ୍ଧିଜୀ କବିଙ୍କର ଏଇ ଆହ୍ୱାନର ଉତ୍ତର ଦେଇଥିଲେ । କବିଙ୍କୁ ବହୁମାନ ଦେଇ ସେ କହିଥିଲେ ନୈତିକ ଅଧୋଗତି ସଂପର୍କରେ କବିଙ୍କର ଏଇ ଚେତାବାଣୀକୁ ଶ୍ରଦ୍ଧାର ସହିତ ଶୁଣିବା ଉଚିତ । କିନ୍ତୁ ଏତେ ବେଶୀ ତାଙ୍କର ଯେ ଆଶଂକା, ତାହା ସ୍ପୃହଣୀୟ ନୁହେଁ । ଏଥି ସହିତ ରବୀନ୍ଦ୍ରନାଥଙ୍କର ଘରେ ନିଆଁ ଲାଗିଥିଲା ବେଳେ ବଂଶୀ ବଜାଇବା ଭଳି ଅତିବେଶୀ ନୈତିକ ଉଦ୍‌ବେଗକୁ ସେ ସତର୍କ କରିଥିଲେ ।

"କବି ଭବିଷ୍ୟତ ପାଇଁ ବଂଚନ୍ତି । ସେ ଚାହାନ୍ତି ଆମେ ବି ସେୟା କରୁ । ସକାଳେ ଉଠି ପକ୍ଷୀ ଈଶ୍ୱରଙ୍କର ବନ୍ଦନା ଗାଇ ଆକାଶକୁ ଉଡିଯାନ୍ତି ବୋଲି ସେ ଲେଖିଛନ୍ତି । ଏଇ ପକ୍ଷୀମାନେ ଗତ ରାତିରେ ଖାଇଥିଲେ, ଶୋଇଥିଲେ, ତାଙ୍କ ଶରୀରରେ ନୂଆ ରକ୍ତ ସଂଚାରିତ ହୋଇଥିଲା । ମାତ୍ର ମୋ ମନରେ ଅସହ୍ୟ ଦୁଃଖ ଜାତ ହୁଏ ଯେତେବେଳେ ମୁଁ ଦେଖେ ଦୁର୍ବଳ ପକ୍ଷୀକୁ ଯେତେ ଖେଂଚିଲେବି ସେମାନେ ଡେଣା ହଲାଇ ପାରନ୍ତିନି । ଭାରତୀୟ ଆକାଶରେ ମଣିଷ ପକ୍ଷୀଟି ଯେତେ ଛଳନା କରୁଛି ଯେ ସେ ବିଶ୍ରାମ କରୁଛି କିନ୍ତୁ ସେ ଦିନକୁ ଦିନ ଦୁର୍ବଳ ହୋଇ ପଡୁଛି । ଅଗଣିତ ଜନଗଣଙ୍କ ପାଇଁ ଏଠି ଏକ ବିନିଦ୍ର ନିସ୍ତଳଜ ଭୟବିହ୍ୱଳିତ ଅବସ୍ଥା ଲାଗି ରହିଛି । ମୁଁ ଦେଖୁଚି ପୀଡିତଙ୍କୁ କବୀରଙ୍କ ଗୀତ ଶୁଣାଇ ସାନ୍ତ୍ୱନା ଦେବା ଅସମ୍ଭବ ବ୍ୟାପାର ....

"ସେମାନଙ୍କୁ କାମ ଦେବାକୁ ପଡିବ ଯାହାଦ୍ୱାରା ସେମାନେ ମୁଠେ ଖାଇବାକୁ ପାଇପାରିବେ । ଖାଇବା ପାଇଁ କାମ କରିବା ମୋର ଦରକାର ନାହିଁ, ତଥାପି ମୁଁ କାହିଁକି ଚରଖା କାଟିବି- ଏକଥା ମତେ କେହି ପଚାରି ପାରନ୍ତି ମୋର ଉତ୍ତର ହେଉଛି, ମୁଁ ଯାହା ଖାଉଛି ତାହା ତ ମୋର ନୁହେଁ, ମୋ ଅଧିବାସୀଙ୍କୁ ଲକୁଟେଇ ମୁଁ ଖାଇବାକୁ ଚାହେଁ ନାହିଁ, ତୁମ ପକେଟ୍‌କୁ ଯେଉଁ ପଇସା ଆସୁଛି ତାର ଉତ୍ସ ବିଷୟରେ ସନ୍ଧାନ କର, ତାହା ହେଲେ ମୋ କଥା ତୁମେ

ବୁଝିପାରିବ । ପ୍ରତ୍ୟେକ ଲୋକଙ୍କୁ ସୂତା କାଟିବାକୁ ପଡିବ । ରବୀନ୍ଦ୍ରନାଥ ଠାକୁର ବି ଅନ୍ୟମାନଙ୍କ ଭଳି ସୂତା କାଟନ୍ତୁ । ତାଙ୍କ ବିଦେଶୀ ଲୁଗା ପୋଡି ଦିଅନ୍ତୁ । ଏହା ବର୍ତ୍ତମାନର କର୍ତ୍ତବ୍ୟ । ଭବିଷ୍ୟତ କଥା ଈଶ୍ୱର ବୁଝିବେ ।''

ରୋମାରୋଲାଁଙ୍କ ଭାଷାରେ ''ଏହି ଉକ୍ତି ଥିଲା ଅତ୍ୟନ୍ତ ଗମ୍ଭୀର ଓ କରୁଣ । ସ୍ୱପ୍ନ ସମ୍ମୁଖରେ ଜଗତର ଦୁଃଖ ମୁହଁ ଟେକି କାନ୍ଦୁଛି ଓ କହୁଛି ମ ତତେ କିପରି ତୁମେ ଅସ୍ୱୀକାର କରିବ ? କିଏ ଗାନ୍ଧିଜୀଙ୍କର ଏହି ଆବେଗ ପୂର୍ଣ୍ଣ କଥାକୁ ସହାନୁଭୂତିଶୀଳ ହୃଦୟରେ ନ ଶୁଣିବ ଓ ନମାନିବ ? କବିଙ୍କୁ ଗାନ୍ଧିଜୀଙ୍କର ଏହି ଉତ୍ତର ଥିଲା ଅତି ଉଦାର ଓ ସ୍ୱାଭିମାନବ୍ୟଂଜକ ତଥାପି ରବୀନ୍ଦ୍ରନାଥଙ୍କ ପ୍ରତିବାଦ ଭିତରେ ଯଥାର୍ଥତା ଥିଲା । ଆନ୍ଦୋଳନରେ ଶୃଙ୍ଖଳାର ଗୁରୁତ୍ୱ ସତ୍ତ୍ୱେ ସେ ନୀରବ ରହିଥିଲେ । ଗାନ୍ଧି ଚାହୁଁଥିଲେ କୌଣସି ଆଲୋଚନା ନ କରି ସ୍ୱଦେଶୀ ନିୟମ ପାଳନ କରିବା- ଯାହାର ପ୍ରଥମ ନିର୍ଦ୍ଦେଶ ଥିଲା ସୂତା କାଟିବା ।''

ଯେଉଁ ବ୍ୟକ୍ତିଙ୍କୁ ରବୀନ୍ଦ୍ରନାଥ ଏତେ ଶ୍ରଦ୍ଧା କରୁଥିଲେ ତାଙ୍କ ସହିତ ନିରର୍ଥକ ବିତର୍କ କରିବାକୁ ସେ ଚାହିଁନଥିଲେ । ରବୀନ୍ଦ୍ରନାଥ ବହୁପୂର୍ବରୁ ଆଶା କରୁଥିଲେ ଭାରତରେ ଗାନ୍ଧିଜୀଙ୍କର ଆବିର୍ଭାବ । ତେଣୁ ସେ ନିଜର ଆଶ୍ରମ ଭିତରେ ଶାନ୍ତ ରହିଥିଲେ । ରବୀନ୍ଦ୍ରନାଥ ନିଜେ କଣ ଆତ୍ମ ସମୀକ୍ଷା କରି ନାହାନ୍ତି, ''ଇତିହାସର ସଂକଟମୟ ମୁହୂର୍ତ୍ତରେ ତମେ ଯଦି ତମର ସମଯୋଦ୍ଧାଙ୍କ ସହିତ ପାଦ ମିଳାଇ ଚାଲି ନପାର ଓ ତାଙ୍କୁ କୁହ ଯେ ସେମାନେ ଭୁଲ କହୁଛନ୍ତି ଓ ତମେ ଠିକ୍ କହୁଛ, ତେବେ ସମାଜରେ ନିଜର ସ୍ଥାନ ଛାଡି କବିଙ୍କ ନିଭୃତ ନିଳୟକୁ ଫେରିଯାଅ । ସେତେବେଳେ ଜନ ସାଧାରଣଙ୍କ ବିଦ୍ରୁପ ଓ ବିରାଗ ସହିବା ପାଇଁ ପ୍ରସ୍ତୁତ ହୁଅ ।'' ନିଜର ନିଭୃତ ନିଳୟକୁ ଫେରିଯାଇ ସେ କିନ୍ତୁ ଝୁରି ନହୋଇ ଗାଇ ଚାଲିଲେ । ପରାଜୟର ଏଇ ଅନ୍ଧକାରମୟ ମୁହୂର୍ତ୍ତରେ ସେ ଦେଖିଲେ ଶୁଣାଯାଉଛି ଗୋଟେ ସ୍ୱର ''ତମର ସ୍ଥାନ ସଂସାର ସାଗରର ବେଳାରେ କ୍ରୀଡାରତ ଶିଶୁମାନଙ୍କ ଭିତରେ ଓ ମୁଁ ଅଛି ତମ ସାଙ୍ଗରେ ।'' କବି ସେତେବେଳେ ଅନେକ ଶିଶୁ କବିତା ଲେଖିଲେ । 1922 ରେ ସେଗୁଡିକ ''ଶିଶୁ ଭୋଳାନାଥ'' ନାମରେ ପ୍ରକାଶିତ ହେଲା । ଏହା ମନେ ପକାଇ ଦିଏ ଦୁଇ ଦଶକ ପୂର୍ବେ ରଚିତ ରବୀନ୍ଦ୍ରନାଥଙ୍କ ଶିଶୁ କବିତା ଯାହା 'କ୍ରେସେଣ୍ଟ ମୁନ୍' ନାମରେ ପ୍ରକାଶିତ ହୋଇଥିଲା ।

ଏଇ କବିତା ଗୁଡିକ ରଚନା ଭିତରେ ସେ ଆତ୍ମ ନିଗ୍ରହରୁ ସ୍ୱସ୍ତି ଖୋଜିଥିଲେ, ଏହା ପୂର୍ବରୁ ଯେତେବେଳେ ସେ ଥିଲେ ନ୍ୟୁୟର୍କରେ ସେ ଅନୁଭବ କରୁଥିଲେ, ''ମୋର ହୃଦୟ କ୍ଷୁଧାର୍ତ୍ତ, ଦିନ ରାତି ମୁଁ ଶାନ୍ତିନିକେତନର ସ୍ୱପ୍ନ ଦେଖୁଛି, ଯେଉଁ ଶାନ୍ତିନିକେତନ ସାରଲ୍ୟର ଅସୀମ ସ୍ୱାଧୀନ ବାୟୁମଣ୍ଡଳ ଭିତରେ ଫୁଲ ଭଳି ଫୁଟି ଉଠୁଛି । ଗଣିତର ରାକ୍ଷସୀ ବୋଝ ଆଗରେ ମଣିଷ ଆତ୍ମାର ଭୀତତ୍ରସ୍ତ ଭାବ ପ୍ରତିଦିନ ମୁଁ ଅନୁଭବ କରୁଛି । ଏହା ଅନବରତ ତାର ଶୀକାର ସବୁକୁ ତଡି ଚାଲିଛି । ଅଥଚ କାହାକୁ କେଉଁ ଆଡକୁ ନେଉନାହିଁ । ଏହା ଯୁଦ୍ଧର ଝଡ ଉଠଉଛି, କେବଳ ଭବିଷ୍ୟତ ଯୁଦ୍ଧର ଭୟ ବୁଣିବା ପାଇଁ ।'' ଦି'ବର୍ଷ ପରେ ଦକ୍ଷିଣ ଆମେରିକା ଯାତ୍ରାବେଳେ ସେ ଦିନଲିପିରେ ଲେଖିଥିଲେ, ଆମେରିକାରେ ସେ ଯେପରି ଶ୍ୱାସରୁଦ୍ଧ ହୋଇଥିଲେ, ତାହାର ପ୍ରତିକ୍ରୟା ସ୍ୱରୂପ ଏଇ କବିତା ଗୁଡିକ ଜନ୍ମ ଲାଭ କରିଥିଲା । ମଣିଷର ଅହଂକାରକୁ ବିଦ୍ରୁପ କରୁଥିବା ସେଇ ଭୋଳାନାଥଙ୍କ ମୂର୍ତ୍ତି ଯିଏ ନିର୍ଲିପ୍ତତା ଓ ଅନାଶକ୍ତିର ଶ୍ରେଷ୍ଠ ଦେବତା, ଯିଏ ତାଙ୍କର ସେଇ ତାଣ୍ଡବ ନୃତ୍ୟରେ ବିଶ୍ୱ ଭାଙ୍ଗନ୍ତି ଓ ଗଢନ୍ତି ତାଙ୍କର ଆଖି ଆଗରେ ଏଇ ଦୃଶ୍ୟ

ନାଚି ଉଠିଲା ମଣିଷର ଧନ ସଂପଦ, ବିଳାସବ୍ୟସନ ଓ କ୍ଷମତା ଏକୀଭୂତ କରିବାର ରାକ୍ଷସୀ କ୍ଷୁଧା ଓ ଅନ୍ଧ ଆତ୍ମ ପ୍ରସାଦ ଚିରଦିନ ରଖିବାର ସ୍ୱପ୍ନ ଲାଳସା ଦେଖି । ବହିର ପ୍ରଥମ କବିତା ହେଉଛି ଦେବ ଶିଶୁର ସମ୍ବୋଧ ଗୀତି, ସେ ଏଥିରେ ଚିରନ୍ତନ ଶିଶୁ ଭିତରେ ଭୋଳାନାଥଙ୍କୁ ଓ ଭୋଳାନାଥଙ୍କ ଭିତରେ ଚିରନ୍ତନ ଶିଶୁକୁ ଦେଖିଛନ୍ତି ।

ଏଇ କବିତା ଗୁଡିକ 19 ବର୍ଷ ପୂର୍ବେ ଲେଖା 'କ୍ରେସେଣ୍ଟ ମୁନ୍' ର କବିତା ଗୁଡିକ ଭଳି ଅତି ସୁନ୍ଦର । ମା' କୋଳରେ ଯେ ଶିଶୁଟି ଦରୋଟି କହେ ତା' ଭିତରେ ତା'ର ପ୍ରବୃତ୍ତିଗତ ପ୍ରଜ୍ଞାର ଅନ୍ତଃସ୍ରୋତ ପ୍ରବାହିତ ହେଉଥିବାର ସେ ଦେଖିଛନ୍ତି ।

''ମୁଁ ଶୁଏ ଓ ଜାଗେ, ପୁଣି ଶୁଏ ଓ ଜାଗେ, ମୁଁ ଭାବେ ମା' କାହିଁକି ଏମିତି ହୁଏ । ତୁ ଯେତେବେଳେ ମତେ ଶୋଇ ପକାଉ, ମତେ ହରାଇ ବସୁ । କିନ୍ତୁ ମା' ମତେ ତ ତୁ ହରାଉ ନାହୁଁ । ଯେମିତି ରାତିରେ ନଥାଏ ସୂର୍ଯ୍ୟ ଓ ଦିନରେ ନଥାଏ ତାରା ସବୁ ।''

''ତୁ କଣ ମୋର ମା ନୋହୁଁ, ଆଉ କାହାର ମା', ତୁ କ'ଣ ଭାବୁଛୁ ମା ମୁଁ ତତେ ଜାଣି ପାରିବି ନାହିଁ । ମୁଁ କ'ଣ ତଥାପି ତୋ କୋଳରେ ଲୁଚିବି ନାହିଁ ? କେଡ଼େ ମଜା ହୁଅନ୍ତା ଆମର ଯଦି ଦିଟା ଘର ହୁଅନ୍ତା, ଗୋଟେ ଘର ଦିନ ପାଇଁ, ଆଉ ଗୋଟିଏ ଘର ରାତି ପାଇଁ ? ଯେତେବେଳେ ସଂଧ୍ୟା ଆସନ୍ତା ମୁଁ ଚୁପ୍ ହୋଇ ତମ ଆଖିକୁ ବୁଜି ଧରି ପଚାରନ୍ତି ମୁଁ କିଏ ? ତମେ କହନ୍ତ, କେହି ଜଣେ ମୁଁ ଜାଣିଛି, କିନ୍ତୁ ଜାଣେନି ସେ କିଏ ?''

''ମାଆ ତୁ ପଚାରୁ ମୁଁ କେଉଁଠିକି ଯିବାକୁ ଚାହେଁ, ମୁଁ ଯେଉଁଠୁ ଆସିଛି ସେଠିକି ଯିବାକୁ ଚାହେଁ । କିନ୍ତୁ ଜାଣେନି କେଉଁଠୁ ଆସିଛି ? ଅନୁମାନ କରି ଚାଲିଛି । ମୋର ଏମିତି ବିଚଳିତ ଅବସ୍ଥା ଦେଖି ବାପା କହିଲେ, ସେ ରାଇଜ ମେଘ ସେପଟେ ଯେଉଁଠି ତାରା ଲୁଚି ଥାନ୍ତି । ତୁ କହିଲୁ ସେ ସ୍ଥାନ ଏଇ ମାଟି ତଳେ ଯେଉଁଠୁ ଫୁଲ ଫୁଟେ । ମାଉସୀ କହିଲା ସେ ଯାଗା ସମୁଦ୍ର ତଳେ ଯେଉଁଠି ମୁକ୍ତା ସବୁ ଲୁଚି ରହିଛି । କିନ୍ତୁ ଭାଇନା ମୋର ଚୁଟି ଟାଣି କହିଲା ସେ ଯାଗାଟା ପବନରେ ମିଳେଇ ଯାଇଛି ତୁ ଦେଖିବୁ କେଉଁଠି ? ତେଣୁ ମୁଁ ଭାବୁଛି ଏହା ସବୁଠି ଅଛି । କେବଳ ସ୍କୁଲ ମାଷ୍ଟର କହନ୍ତି ଏହା କେଉଁଠି ନାହିଁ ।''

''ସୋମବାର, ମଙ୍ଗଳବାର, ବୁଧବାର - ସେମାନେ କେତେ ଶୀଘ୍ର ଆସନ୍ତି । ସେମାନଙ୍କ ଘରେ ନିଶ୍ଚୟ ଉଡାଯାହାଜ ଥିବ କିନ୍ତୁ ରବିବାର କାହିଁକି ଏତେ ଡେରିରେ ଆସେ, ସେ କଣ ଗରୀବ ଘରର ପିଲା, କୁହ ମା ।''

ଏମିତି ସେ କବିତା ଚାଲେ । ଖୁସୀ ମନରେ ଲଘୁ ଆନନ୍ଦ ଦାୟକ ଛନ୍ଦ ଭିତରେ ଜଗତକୁ ଆନନ୍ଦମୟ କରି ତୋଳେ । କିନ୍ତୁ ଆମେ ଆଶ୍ଚର୍ଯ୍ୟ ହେଉ ଯେ ବୟସ୍କମାନେ ତାକୁ କାହିଁକି ନରକରେ ପରିଣତ କରନ୍ତି । ଏକଥା ଆହୁରି ସ୍ପଷ୍ଟ କରି କବି ତାଙ୍କ ଝିଆରୀ ଇନ୍ଦିରାଙ୍କୁ ଲେଖିଥିଲେ, ''ବୟସ୍କ ମନର ଦାୟିତ୍ୱର ମୁକ୍ତି ପାଇଁ ମୁଁ କବିତା ଗୁଡିକ ରଚନା କରିଥିଲି । ମୁଁ ଯେ ଦିନେ ଏଇ ଜଗତର ଖେଳପଡିଆରେ ଶିଶୁ ହୋଇ ଜନ୍ମ ହୋଇଥିଲି, ସେଇଥିରୁ ହିଁ ମୋ ଜୀବନର ଅର୍ଥ ଖୋଜି ମୁଁ ପାଇଛି । ମୋ ମନରେ ଏଇ କଥା ଯେ ବାରମ୍ବାର ଆସୁଥିଲା ତାହାହିଁ ଏହି କବିତାରେ ପ୍ରକାଶ କରିଛି । ବୟସ ବଢ଼ିବା ସଂଗେ ସଂଗେ ଦାୟିତ୍ୱବୋଧର ଚାପରେ ଭାରାକ୍ରାନ୍ତ ହୋଇଯାଉ । ଜୀବନରେ ଯେ ଖେଳର ସ୍ଥାନ ଅଛି ତାହାକୁ ଆମେ ହତାଦର କରୁ । କର୍ମ ଓ ଖେଳ ଭିତରେ ବିରୋଧ ଘଟାଇ ଆମେ ଗର୍ବ ଅନୁଭବ କରୁ । କିନ୍ତୁ ଆମେ ଭୁଲିଯାଉ ଯେ ଆମେ ବିଶ୍ୱସ୍ରଷ୍ଟାଙ୍କର

କୁତ୍ସାରଟନା କରୁ । ସେ ବିନାଶ୍ରମରେ କାମ କରି ଚାଲନ୍ତି, ସେ ପରମ ଆନନ୍ଦର ମୂଳାଧାର, କାରଣ ତାଙ୍କର କୌଣସି ଦାୟିତ୍ୱର ବୋଝ ନାହିଁ । ସେ ଲୀଳାମୟ ।''

କିନ୍ତୁ ଏଇ ଯେ ବିରତି ତାହା ସ୍ୱଳ୍ପ ଓ କ୍ଷଣସ୍ଥାୟୀ ଥିଲା । ଶାନ୍ତିନିକେତନ ତାଙ୍କ ଦୃଷ୍ଟିକୁ ଆଚ୍ଛନ୍ନ କରି ରଖିଥିଲା । ପାଞ୍ଚବର୍ଷ ବାହାରେ ରହି ପିୟାରସନ୍ 26 ସେପ୍ଟମ୍ବର ଶାନ୍ତିନିକେତନ ଫେରିଲେ ତାଙ୍କ ସହିତ ଆସିଥିଲେ ଲିଓନାର୍ଡ ଏଲମହର୍ଷ୍ଟ ଯାହାଙ୍କୁ ସେ ଆମେରିକାରେ ଭେଟି ଥିଲେ । ଶ୍ରୀନିକେତନରେ କୃଷିକେନ୍ଦ୍ର ପ୍ରତିଷ୍ଠା ପାଇଁ ରବୀନ୍ଦ୍ରନାଥ ତାଙ୍କୁ ଅନୁରୋଧ କରିଥିଲେ । ଏଥିପାଇଁ ସେ ପ୍ରଚୁର ଅର୍ଥ ସଂଗ୍ରହ ମଧ କରିଥିଲେ । ଡରୋଥି ଷ୍ଟ୍ରେଟ୍‌ଙ୍କ ବଦାନ୍ୟତା ଫଳରେ ଏ ଅର୍ଥ ମିଳିଥିଲା । ଏହା ପରେ ପରେ ଆସିଲେ ଫରାସୀ ପଣ୍ଡିତ ସିଲ୍‌ଭେନ୍ ଲେଭି, ବିଶ୍ୱଭାରତୀର ପରିଦର୍ଶୀ ଅଧ୍ୟାପକ ହୋଇ । ବିଶ୍ୱବିଦ୍ୟାଳୟରେ ଚୀନ୍ ଓ ତିବ୍ବତୀୟ ବିଭାଗ ଖୋଲିଲା । ନିଜେ କବି ଲେଭିଙ୍କ ଶ୍ରେଣୀରେ ପଢ଼ାଶୁଣିବା ପାଇଁ ଯୋଗ ଦେଉଥିଲେ ।

23 ଡିସେମ୍ବର 1921 ରେ ଆନୁଷ୍ଠାନିକ ଭାବରେ ବିଶ୍ୱଭାରତୀ ଉଦ୍‌ଘାଟିତ ହେଲା । ଗୋଟିଏ ଟ୍ରଷ୍ଟଡିଡ୍ ସାହାଯ୍ୟରେ ଶାନ୍ତିନିକେତନର ସମସ୍ତ ଜମି, କୋଠାବାଡି ଓ ସମ୍ପତ୍ତି ବିଶ୍ୱଭାରତୀକୁ ଦିଆଗଲା । ନିଜେ ରବୀନ୍ଦ୍ରନାଥ ତାଙ୍କର ସେପର୍ଯ୍ୟନ୍ତ ପ୍ରକାଶିତ ସମସ୍ତ ବଙ୍ଗଳା ବହିର ସ୍ୱତ୍ତ୍ୱ ବିଶ୍ୱଭାରତୀକୁ ଦାନ କଲେ । ନୋବେଲ ପୁରସ୍କାର ଟଙ୍କାତ ସେ ପୂର୍ବରୁ ଶାନ୍ତିନିକେତନ ବିଦ୍ୟାଳୟକୁ ଦେଇସାରିଥିଲେ । ଏଇ ସବୁ ଉତ୍ତେଜନାମୂଳକ ପରିସ୍ଥିତି ଭିତରେବି ବେଳେ ବେଳେ ଦେଶର ରାଜନୈତିକ ଦୃଶ୍ୟପଟ ଉପରେ ଚିନ୍ତା କରୁଥିଲେ । ତାଙ୍କର ଅନ୍ତଃଚେତନାକୁ ତାହା ଆନ୍ଦୋଳିତ କରୁଥିଲା । ସେଇ ଆନ୍ଦୋଳନ ପ୍ରକାଶିତ ହେଲା ଏକ ପ୍ରତୀକାତ୍ମକ ନାଟକ ଭିତରେ । ଏହା 1922 ପ୍ରଥମ ଭାଗରେ ସେ ଲେଖିଥିଲେ । ଏହି ନାଟକ ଗାନ୍ଧିଙ୍କ ବ୍ୟକ୍ତିତ୍ୱ ଓ ତାଙ୍କର ଅହିଂସା ସଂଗ୍ରାମ ପାଇଁ ଏକ ଶ୍ରଦ୍ଧାପୂତ ଶ୍ରଦ୍ଧାଞ୍ଜଳି । ଏହି ନାଟକଟି ହେଉଛି 'ମୁକ୍ତଧାରା' । ପ୍ରତିବେଶୀ ରାଜ୍ୟ ଉତ୍ତରକୋକୂଟ ଦ୍ୱାରା ଶିବ ତରାଇ ଉପରେ ରାଜନୈତିକ ନିଃପୀଡନର ପୃଷ୍ଠପଟ ଉପରେ ନାଟକଟି ରଚିତ । ଉତ୍ତରକୋଟର ଏକ ପାହାଡରୁ ଝରି ଆସୁଥିବା ଝରଣା ଧାର ଦ୍ୱାରା ଶିବତରାଇର ଜମି ସେଚିତ ହେଉଥିଲା । ତାଙ୍କ ଅଧୀନ ପ୍ରଜାମାନଙ୍କୁ ଆହୁରି ନିୟନ୍ତ୍ରଣରେ ରଖିବା ପାଇଁ ଏଇ ଜଳଧାରକୁ ରୋକି ଦେଇ ଉତ୍ତରକୋଟର ରାଜା ଗୋଟେ ନଦୀବନ୍ଧ ନିର୍ମାଣ କଲେ । କଳଘରର ଚୂଡା ପାହାଡ ଶୃଙ୍ଗରେ ଥିବା ଶିବ ମନ୍ଦିରର ତ୍ରିମୂଳ ଶିଖା ଠାରୁ ଆହୁରି ଉଚ୍ଚ ହୋଇ ଦିଗ୍‌ଭାଗରେ ଆଧିପତ୍ୟ ବିସ୍ତାର କରୁଥିଲା । ନାଟକଟିର ଆରମ୍ଭ ହେଉଛି ଉତ୍ତରକୋଟର ରାଜା ଓ ନାଗରିକ ମାନେ ଏଇ ଯନ୍ତ୍ର ରାଜାର ଶୁଭଉଦ୍‌ଘାଟନ ପାଇଁ ଆୟୋଜନ କରୁଛନ୍ତି । ଅଥଚ ଦୁଃଖୀ ପ୍ରଜାଙ୍କ କଥା ଭାବୁନାହାନ୍ତି ।

କିନ୍ତୁ ଯୁବରାଜ ସେଇ ଦୁଃଖୀ ପ୍ରଜାଙ୍କ ପ୍ରତି ଅତି ବଦାନ୍ୟ ଭାବ ଦେଖାଇଛନ୍ତି । ଏହି ଚ୍ରରିତ୍ର ଭିତରେ ସ୍ୱାଧୀନତା ଓ ନ୍ୟାୟ ପାଇଁ ଆନୁଗତ୍ୟ ଓ ଦେଶପାଇଁ ଆନୁଗତ୍ୟ ଭିତରେ ଯେଉଁ ମାନସିକ ନ୍ୟାୟ ତାହାହିଁ ଚିତ୍ରିତ ହୋଇଛି । ସେ ଦୃଢ଼ ସଂକଳ୍ପ କରିଛନ୍ତି ନିଜ ଜୀବନ ବିନିମୟରେ ବନ୍ଦୀ ହୋଇଯାଇଥିବା ମୁକ୍ତଧାରାକୁ ମୁକ୍ତକରିବା ପାଇଁ । ମୁକ୍ତଧାରା ମୁକ୍ତ ହୋଇଛି । ସେଇ ଜଳ ପ୍ରବାହରେ ଯୁବରାଜଙ୍କ ଦେହ ଭାସି ଯାଇଛି । ଇବ୍‌ସନ୍‌ଙ୍କ ଶେଷ ପର୍ଯ୍ୟାୟର ନାଟକ ଭଳି ଏଥିରେ ଥିବା ସମାଜିକ ଓ ରାଜନୈତିକ ମତାଦର୍ଶ ଏକ ପ୍ରକାର ରହସ୍ୟାବୃତ ଉଦ୍‌ବେଳନ ଭିତରେ ଲୟଲାଭ କରିଅଛି ।

ଏହି ନାଟକରେ କବି ଆଉ ଜଣେ ମହାନ୍ ଚରିତ୍ରର ଆବିର୍ଭାବ ଘଟାଇଛନ୍ତି । ସେ ମହର୍ଷି

ଧନଂଜୟ । ସେ ଯେପରି ମହାତ୍ମାଙ୍କ ପ୍ରତିରୂପ । 1909ରେ ପ୍ରକାଶିତ 'ପ୍ରାୟଶ୍ଚିତ' ନାଟକରେ ପ୍ରଥମେ ସେ ଶାସକଙ୍କ ଅନ୍ୟାୟ ଅନାଚାର ବିରୁଦ୍ଧରେ ଅହିଂସ ଭାବରେ ପ୍ରତିରୋଧ କରିବା ପାଇଁ ପ୍ରଜାମାନଙ୍କୁ ଉଦ୍‌ବୁଦ୍ଧ କରିଥିଲେ । ମନେ ହୁଏ, ଅନ୍ୟ କୌଣସି ନାଟକରେ କବିଙ୍କର ଏତେ ବଳିଷ୍ଠ ଭାବେ ତାଙ୍କର ରାଜନୈତିକ ଚେତନା ପ୍ରକାଶ ପାଇ ନାହିଁ । ବିଦେଶୀ ଶାସକ ବିରୁଦ୍ଧରେ ହେଉ ବା ସ୍ୱଦେଶୀୟ ସ୍ୱେଚ୍ଛାଚାରୀଙ୍କ ବିରୁଦ୍ଧରେ ହେଉ କବି ସବୁ ପ୍ରକାର ଲୁଣ୍ଠନ ଓ ଶୋଷଣର ବିରୋଧୀ । ସେ ସବୁର ସ୍ୱେଚ୍ଛାକୃତ ତ୍ୟାଗ ଦ୍ୱାରା ସବୁ ପ୍ରକାର ମନ୍ଦକାର୍ଯ୍ୟର ଅବସାନ ସମ୍ଭବ, ଏହି ବିଶ୍ୱାସ ନାଟକରେ ପ୍ରକାଶ ପାଇଛି । ନାଟକର କଥାବସ୍ତୁ ଅତି ସରଳ ଓ ସହଜ । ଏଥିରେ ବାହାର ଘଟଣାର ଚାପ ନାହିଁ, ଯଦିବା ଅନ୍ୟ ନାଟକ ପରି ଅଜଣା ପଥିକ କେତେବେଳେ କେମିତି ଆସିଛନ୍ତି ଯାଇଛନ୍ତି । କାରଣ କବି ମନେ କରୁଥିଲେ ପ୍ରକୃତ ରଂଗମଂଚ ଏହି ଜଗତ, ଯାହା ସାଧାରଣ ଲୋକଙ୍କ ଦ୍ୱାରା ପରିପୂର୍ଣ୍ଣ । ସର୍ବତ୍ର ଦେଖିବାକୁ ମିଳେ ସେଇ ଗମ୍ଭୀର ଦୃଶ୍ୟ, ଯାହା ମଣିଷର କୁଟିଳ କୌଶଳ ଆଦି ଯନ୍ତ୍ରର ପ୍ରତୀକ ଓ ଅନ୍ୟ ପକ୍ଷରେ ସାଧାରଣ ନରନାରୀଙ୍କ ଶୋଭାଯାତ୍ରା, ଯାହା ଭିତରେ ଅଛନ୍ତି ସ୍ୱେଚ୍ଛାଚାରୀ, ସେମାନଙ୍କ ଅନ୍ଧ ଆଜ୍ଞାକାରୀ, ଅଛନ୍ତି ଆଦର୍ଶବାଦୀ, ବିପ୍ଳବୀ ଓ ସେମାନଙ୍କର ଆଦେଶ ବହନକାରୀ ଓ ସାଧାରଣ ମଣିଷ ଯେଉଁମାନଙ୍କ ମୁହଁରେ ଲାଗି ରିହଥାଏ ହାସ୍ୟ ଓ ଅକୃତ୍ରିମ ଭାବ ।

ଏଇ ଅସାଧାରଣ ନାଟକ କେବେ ମଞ୍ଚସ୍ଥ ହୋଇ ନଥିଲା । 1922 ଜାନୁୟାରୀ ମାସରେ କେତେ ବନ୍ଧୁଙ୍କ ସମ୍ମୁଖରେ କବି ନିଜେ ଏହାକୁ ପଢ଼ି ଶୁଣାଇଥିଲେ । ଏହି ନାଟକ ମଞ୍ଚସ୍ଥ କରିବା ପାଇଁ ପ୍ରସ୍ତୁତ ହେଉଥିବାବେଳେ ମାର୍ଚ୍ଚ ମାସରେ ଖବର ଆସିଲା ମହାତ୍ମା ଗାନ୍ଧିଙ୍କୁ ବନ୍ଦୀ କରାଯାଇଛି ଓ ଛଅ ବର୍ଷ ଜେଲଦଣ୍ଡ ଦିଆଯାଇଛି । ଏଠି ଏହାର ପ୍ରସ୍ତୁତି ବନ୍ଦ ହେଲା ଓ ପରେ ଆଉ କେବେ ହୋଇ ନାହିଁ ।

# ପ୍ରାଚ୍ୟ ଓ ପାଶ୍ଚାତ୍ୟ

*ସକଳ ମାନବତାର  ଶ୍ରେଷ୍ଠତା ଅଟେ ମୋର*

ଶାନ୍ତିନିକେତନକୁ ସାରା ପୃଥିବୀର ସମଧର୍ମୀମାନଙ୍କର ଏକ ନୀଡରୂପେ ଗଢ଼ିବା ପାଇଁ ରବୀନ୍ଦ୍ରନାଥଙ୍କର ସ୍ୱପ୍ନ ସତ ହେବ ବୋଲି ମନେ ହେଉଥିଲା । ଯାହାକୁ ତପୋବନ ଭାବରେ ଆରମ୍ଭ କରାଯାଇଥିଲା ସେ ହୋଇଉଠିଲା ଏକ ବିଶ୍ୱଜନୀନ ମଧୁଚକ୍ର । ଅବଶ୍ୟ ଏଇ ସୁନ୍ଦର ମଧୁଚକ୍ରରୁ ଅଧିକ ମଧୁ ଉତ୍ପନ୍ନ ହେଲା ବା ଖାଲି ଗୁଂଜନ- ତାହା କହିବା କଷ୍ଟ । ଅବଶ୍ୟ ପରିବେଶ ଅନୁକୂଳ ଥିଲା- କବିଙ୍କୁ ଯାହା ଭଲ ଲାଗୁଥିଲା । ଶାନ୍ତିନିକେତନର ନିଜତ୍ୱକୁ କବି ମୂଲ୍ୟ ଦେଉଥିଲେ । ଶାନ୍ତିନିକେତନରେ ଅନେକ ଅଗ୍ରଯାୟୀ କାମ କରାଗଲା । ଯାହା କେବଳ ବିଶ୍ୱଭାରତୀର କାର୍ଯ୍ୟରେ ଲାଗିଲା ତାହା ନୁହେଁ, ଅନ୍ୟ ବିଶ୍ୱବିଦ୍ୟାଳୟମାନେ ତାର ଉପଯୋଗ କଲେ ।

ଅବଶ୍ୟ କବି ମନେ କଲେ  ଯେ ପୃଥିବୀ କ୍ରମଶଃ ଛୋଟ ହୋଇ ଆସୁଛି । ତେଣୁ ଲୋକଙ୍କର ହୃଦୟ ଜୟକରିବା ପାଇଁ ତାଙ୍କର ଅଧିକରୁ ଅଧିକ ଭ୍ରମଣ କରିବା ଆବଶ୍ୟକ । ପୃଥିବୀର କ୍ଷତ ଉପଶମ କରିବା ଭଳି ଆନନ୍ଦଦାୟକ ଅନୁଭୂତି ଠାରୁ ଅଧିକ କିଛି ହୋଇ  ନପାରେ । ଏମିତି ଧାରଣାର ବଶବର୍ତ୍ତୀ ହୋଇଥିବା ମହତ୍ ଲୋକମାନଙ୍କ ଭିତରେ ରବୀନ୍ଦ୍ରନାଥ ପ୍ରଥମ  ବା ଶେଷ ନୁହନ୍ତି ।  ହତଭାଗ୍ୟ ଲିଗ୍ ଅଫ୍ ନେଶନ୍ ବା ତାର ଉତ୍ତରାଧିକାରୀ ମିଳିତ ଜାତିସଂଘ ଯାହା କରିବା ପାଇଁ ଚାହୁଁଛି, ଆନ୍ତର୍ଜାତିକ ବୁଝାମଣା କ୍ଷେତ୍ରରେ ମିଶନାରୀ ସୁଲଭ ଉତ୍ସାହ ଘେନି କାର୍ଯ୍ୟ କରିବାରେ କିଛି ବାଧା ଥାଇ ନ ପାରେ । ସେ ସ୍ୱଦେଶରେ ଅପ୍ରିୟତାକୁ ବରଣ କରିନେଲେ । ଏକବିଶ୍ୱରେ ବିଶ୍ୱାସ ସ୍ଥାପନା କରି ତାଙ୍କୁ ନିନ୍ଦା ଅପବାଦର ସମ୍ମୁଖୀନ ହେବାକୁ ପଡ଼ିଥିଲା ।

ନିଜର ସୃଷ୍ଟିଶୀଳ ଅବକାଶ ଓ ଆଧ୍ୟାତ୍ମିକ ଶାନ୍ତିକୁ ବଳିଦେଇ ହାଟ ମଧ୍ୟରେ ବ୍ରହ୍ମଜ୍ଞାନ ବିତରଣ କରିବା' ହିଁ ଥିଲା  ତାଙ୍କ ପାଖରେ ଗୋଟିଏ ବିରାଟ ତ୍ୟାଗ । ଯେଉଁ ବୃକ୍ଷଟି ଅପେକ୍ଷା -କୃତ ଅଜ୍ଞାତ ପରିବେଶରେ ବଢ଼ିଥିଲା ସେଇ ବୃକ୍ଷଟି ଉଜ୍ଜ୍ୱଳ ଆଲୋକ ପାଇବା ପରେ ପୁଷ୍ପିତ ହେବ କି ନାହିଁ ବା ସମୂଳେ ନଷ୍ଟ ହୋଇଯିବ ? ସେ କଣ ପୁଣି ଥରେ ଆବେଗୋଷ୍ଣ ଏକନିଷ୍ଠ ଭକ୍ତି ଘେନି ବାଣୀସାଧନା କରିପାରିବେ ? ତାଙ୍କ ଜୀବନ ଦେବତା ସହିତ ଅନ୍ତରଙ୍ଗ ସଂଳାପ କରିବେ ? ଅତି ସାଧାରଣ ବୋଲି ମନେ ହେଉଥିବା ଦୃଶ୍ୟ ଓ ଧ୍ୱନି ସହିତ ଆନନ୍ଦ ବିଭୋର ହୋଇ ଭାବସଂପର୍କ ରଖି ପାରିବେ ? ତାଙ୍କର ସେହି ସରଳ ବଂଶୀଟିକୁ କହିପାରିବେ  'ସେ ଦିନ ପରି ଆଜି ବି ତୁ ସଂଗୀତରେ ପୂରି ଉଠିବୁ ?' ଭବିଷ୍ୟତ ବକ୍ତାଙ୍କ ପାଖରେ କବି, ଗାୟକଙ୍କ ପାଖରେ ସଙ୍ଗୀତଜ୍ଞ, ଧର୍ମ ପ୍ରଚାରକଙ୍କ ପାଖରେ ଭକ୍ତ ଯେମିତିକି ପରାଭବ ଅନୁଭବ କରୁଥିଲେ ।

'କ୍ଷୁଦ୍ର ସଙ୍ଗୀତଟି ଭିତରେ ଥିବା ଅନନ୍ତ ଅର୍ଥ' ବିସ୍ତୀର୍ଣ୍ଣ ପୃଥିବୀର ଅଶେଷ ପ୍ରଚାର ଭିତରେ ହଜି ଯାଉଥିଲା । ଏଇ ଭାବସଂକଟ ବିଷୟରେ କବିଙ୍କର ଗଭୀର ସଚେତନତା ଓ ସ୍ପର୍ଶକାତରତା ତାଙ୍କ ମନକୁ ବାରଂବାର ଆଘାତ ଦେଉଥିଲା । 26 ଫେବୃୟାରୀ 1921 ରେ ଚିକାଗୋରୁ ଆଣ୍ଡ୍ରୁସ୍‌ଙ୍କୁ ଲେଖିଥିବା ତାଙ୍କର ଗୋଟିଏ ଚିଠିର ନିମ୍ନ ଅଂଶରୁ (ଯାହା ଏକ ପ୍ରକାର ସ୍ୱୀକାରୋକ୍ତି) ଏହାର ସୂଚନା ମିଳେ ।

''ଯେତେବେଳେ ମୁଁ ଏଇ ଜଗତକୁ ଆସିଲି କେବଳ ବଂଶୀଟିଏ ଛଡା ମୋ ପାଖରେ ଆଉ କିଛି ନଥିଲା । ସଙ୍ଗୀତ ସୃଷ୍ଟି କରିବା ଥିଲା ତାର ଏକମାତ୍ର ମୂଲ୍ୟ । ମୁଁ ପଢ଼ା ଛାଡିଲି, ସ୍କୁଲ ଗଲି ନାହିଁ । କାମରେ ଅବହେଳା କଲି, କିନ୍ତୁ ସେଇ ବଂଶୀଟିକୁ ମୁଁ ସବୁ ଅଳସ ମୁହୂର୍ତ୍ତରେ ବଜାଇ ଥିଲି । ଜଣେ ଥିଲେ ମୋର ଚିରକାଳର ସାଥୀ । ସେ ବି ସୃଷ୍ଟି କରୁଥିଲେ, ପତ୍ରର ମର୍ମରରେ, ଜଳର ପ୍ରବାହରେ, ନକ୍ଷତ୍ରର ନୀରବତାରେ, ମାନବ ଜୀବନସ୍ରୋତର ଆଲୋକଛାୟା ଓ ହସକାନ୍ଦ ଭିତରେ । ଯେତେବେଳେ ଏଇ ଶାଶ୍ୱତ ବଂଶୀବାଦକ ଓ ତାଙ୍କର ସୃଷ୍ଟି ଦକ୍ଷତା ମୋର ସାଥୀ ହେଲେ ମୁଁ ବିଶ୍ୱର ଅନ୍ତଃସ୍ଥଳର ନିକଟବର୍ତ୍ତୀ ହୋଇଗଲି । ତାର ମାଟିର ଭାଷାକୁ ବୁଝିଲି, ଯାହା ମୁଁ ଗାଇଲି ପବନର ହିଲ୍ଲୋଳରେ, ପାଣିର ପ୍ରବାହରେ ଓ ଜୀବନର ସକଳ ବିଭାବରେ ତାହା ପୂରିଉଠିଲା ।'' ''କିନ୍ତୁ ଏବେ ମୋ ସ୍ୱପ୍ନ ଜଗତକୁ ଆସିଲେ ସ୍କୁଲ୍ ମାଷ୍ଟର । ବହୁତ ସରଳ ଥିବାରୁ ତାଙ୍କ ଉପଦେଶ ମୁଁ ମାନିନେଲି । ମୋ ବଂଶୀ ରଖି ଦେଲି । ଖେଳ ପଡିଆ ଛାଡିଲି, ଯେଉଁଠାରେ ଅସଂଖ୍ୟ ଶିଶୁ ଅନନ୍ତ ସମୟ ବିତାନ୍ତି ଖାଲି ସେଇ 'ତୁଚ୍ଛା' ଖେଳରେ । ସେଇ ମୁହୂର୍ତ୍ତରୁ ମୁଁ ବୁଢ଼ା ହୋଇଗଲି । ପ୍ରାଜ୍ଞତାର ବୋଝ ପିଠିରେ ବୋହି ଦ୍ୱାର ଦ୍ୱାର ସତ୍ୟକୁ ବିକି ବୁଲିଲି ।''

''ନିଜକୁ ବାରଂବାର ମୁଁ ପ୍ରଶ୍ନ ପଚାରିଛି କାହିଁକି ମୁଁ ଏ ଭାର ନେଲି ? କୋଳାହଳପୂର୍ଣ୍ଣ ପୃଥିବୀ ଯେଉଁଠି ନିଜ ନିଜର ସମ୍ପତ୍ତି ପାଇଁ ସମସ୍ତେ ବ୍ୟାକୁଳ ସେଠି ମୁଁ ମଧ କାହିଁକି ନିଜକୁ ସାମିଲ କଲି ? ଦେଶରୁ ଦେଶ ଆତ୍ମପ୍ରଚାରର ଗାଡି ଠେଲିବା କ'ଣ କବି ଜୀବନର ସାର୍ଥକତା ? ଏହା ଏକ ଦୁଃସ୍ୱପ୍ନ ପରି ମନେ ହୁଏ, ଗଭୀର ରାତିରେ ବିଛଣାରେ ଉଠି ବସି ଭୟ ପାଇ ମୁଁ ନିଜକୁ ପଚାରି ଉଠେ କାହିଁ ମୋ ବଂଶୀ ?''

''ସତ୍ୟନିଷ୍ଠ କବିଟିଏ ପ୍ରେମର ଫଳ ପାଏ, କିନ୍ତୁ ଯେଉଁ କବି ପଥଭୁଲା ହୁଏ ସେ ସସମ୍ମାନେ ସେଥିରୁ ବିଦାୟ ନିଏ । ତେଣୁ ମୁଁ ଆନ୍ତର୍ଜାତିକ ବିଶ୍ୱବିଦ୍ୟାଳୟ ଗଢ଼ିଲି- ବହୁତ ବଡ କାମ । କିନ୍ତୁ ମୋର ଛୋଟ ଛୋଟ ସଙ୍ଗୀତକୁ ମୁଁ ହରାଇଲି । ଏ କ୍ଷତି ଅପୂରଣୀୟ । ମୁଁ ଚାହେଁ କିପରି ମୋର ସେଇ ପୁରୁଣା ସଙ୍ଗୀତକୁ ଫେରି ପାଆନ୍ତି, ବ୍ୟସ୍ତ ଓ ଗୁଣୀଲୋକମାନେ ପୁଣି ମୋତେ ଅବହେଳା କରି କହନ୍ତେ 'ୟା ଦ୍ୱାରା କିଛି ହେବ ନାହିଁ ।''

ନୋବେଲ୍ ପୁରସ୍କାର ଓ ତାର ଫଳ ରୂପେ ପାଇଥିବା ଖ୍ୟାତି ଓ ଜନପ୍ରିୟତାର ଅଗ୍ନିଶିଖା ଯଦି ରବୀନ୍ଦ୍ରପ୍ରତିଭାର ଆଜନ୍ମ ରହସ୍ୟକୁ ଶୁଷ୍କ କରିଦେଇ ନଥାନ୍ତା ତେବେ କଣ ସିଏ ବଡ କବି ହୋଇପାରି ଥାନ୍ତେ ? ସମୁଦ୍ର ପାରି ହୋଇ ଧର୍ମ ପ୍ରଚାରକର ଇଚ୍ଛା ନେଇ ମଣିଷ ମାନଙ୍କୁ ପରସ୍ପରକୁ ବୁଝିବାରେ ସହାୟତା ନ କରି ଯଦି ରବୀନ୍ଦ୍ର ଆତ୍ମ ସମୁଦ୍ରକୁ ମନ୍ଥନ କରିଥାନ୍ତେ ତେବେ କଣ ତାଙ୍କର ଆଧାତ୍ମିକ ଦୃଷ୍ଟିଭଙ୍ଗୀ ଆହୁରି ଗଭୀରତାକୁ ସ୍ପର୍ଶ କରିପାରି ଥାନ୍ତା ? କିଏ କହି ପାରିବ, ଯଦି ଏହା ନଘଟି ଅନ୍ୟ କିଛି ଘଟିଥାନ୍ତା, ତେବେ କଣହୋଇଥାନ୍ତା ? ଏହା ସବୁ ବୃଥା ଅନୁମାନ, ଫରାସୀ ପ୍ରବାଦଟିଏ ଅଛି- ''ଯଦିର ସହାୟତାରେ ତମେ ପ୍ୟାରିସ୍ ସହରକୁ ଗୋଟିଏ ବୋତଲରେ

ରଖିଦେଇ ପାରିବ ।''

ବହୁ ଲୋଭ, ବାଧା ଓ ଭ୍ରାନ୍ତି ସତ୍ୱେ କେବେ ହେଲେ ସିଏ ବେଶିଦିନ ତାଙ୍କର ନିଜସ୍ୱ ବୃତ୍ତି ଠାରୁ ଦୂରେଇ ରହିପାରି ନାହାନ୍ତି । ତାହା ଥିଲା କବି ଓ ଗାୟକର ବୃତ୍ତି, ପ୍ରକୃତି ଓ ମାନବ ପ୍ରେମୀର ବୃତ୍ତି, ମର୍ତ୍ତ୍ୟରେ ସ୍ୱର୍ଗ ଦେଖୁଥିବା ଓ ମାନବକୁ ଈଶ୍ୱର ଭାବେ ସମ୍ଭାଷଣ କରୁଥିବା ଭକ୍ତର ବୃତ୍ତି । ଅବଶ୍ୟ କେହି କେହି କହନ୍ତି ପଶ୍ଚିମୀ ରୀତି ଓ କ୍ଷଣିକ ପ୍ରଚାରକର ଉତ୍ସାହ ତାଙ୍କର ବିରୁଦ୍ଧାଚରଣ ହେଲେ ବି ଏହା ତାଙ୍କର ଆତ୍ମାର ଜାଗରଣ ଓ ମନର ପରିସରକୁ ବିସ୍ତୃତ କରିବାରେ ସହାୟକ ଥିଲା । ଏଥିପାଇଁ ହେଉ କି ଏହାର ବ୍ୟତିରେକ ହେଉ ସତ୍ୟ ହେଲା, କବି କେବେ ହେଲେ ତାଙ୍କର ଲେଖନୀ ବନ୍ଦକରି ନଥିଲେ । ତାହା ତାଙ୍କର ସଚେତନ ଜୀବନର ଶେଷ ଦିନ ଯାଏଁ ସଚଳ ଥିଲା । ସର୍ବଦା ନୂତନ ଦିଗକୁ ଆବିଷ୍କାର କରି ସେ ବଙ୍ଗଳା ଭାଷା ଓ ସାହିତ୍ୟର ଶ୍ରେଷ୍ଠ ଆସନକୁ ଉଠି ପାରିଥିଲେ । ସୃଷ୍ଟିର ବନ୍ଧ୍ୟାତ୍ୱ ଆସିଥିବା ବେଳେ ବି ସେ ଯଥେଷ୍ଟ ଲେଖିଥିଲେ ଓ ତାହା ଯେଉଁ ମାନର ଥିଲା ଅନ୍ୟ ଯେ କୌଣସି ଲେଖକକୁ ବିଖ୍ୟାତ କରିବା ପାଇଁ ତାହା ଯଥେଷ୍ଟ ।

ଏହା ସତ ଯେ ବେଳେ ବେଳେ ମନେ ହୋଇଛି ତାଙ୍କର ଅନୁପ୍ରେରଣା କମି ଯାଉଛି । ଜୀବନୀଶକ୍ତି ସ୍ତିମିତ ହୋଇଛି ଓ ସିଏ ଜୀବନଠୁଁ କମ୍ ଗ୍ରହଣ କରିଛନ୍ତି । ସେସମୟରେ ତାଙ୍କ ରଚନା ହୋଇଛି ବିରକ୍ତି କର, ପୁନରାବୃତ୍ତିପୂର୍ଣ୍ଣ ଓ ଜୀର୍ଣ୍ଣ । ଅବିରତ ଭ୍ରମଣ, ପୁନଃ ପୁନଃ ଜନ ସମ୍ମୁଖରେ ଉପସ୍ଥିତି, ଚିନ୍ତାହୀନ ଜନସମୂହର ଖୋସାମତି ଓ ଉଚ୍ଚ ଆଦର୍ଶ ପାଇଁ ନିରନ୍ତର ସଂଗ୍ରାମ ( ଯାହା ବିଶ୍ୱଭାରତୀ ପାଇଁ ଅର୍ଥ ସଂଗ୍ରହର ଉପାୟ ଥିଲା ) ଥିଲା ତାଙ୍କ ଭଳି ଜଣେ ସୃଷ୍ଟିଶୀଳ ବ୍ୟକ୍ତିର ବିରୁଦ୍ଧାଚରଣ । କ୍ରମଶଃ ସେ ଏପରି କେତେଜଣ ପ୍ରଶଂସକଙ୍କ ଘେର ଭିତରେ ରହିଲେ ଯେଉଁମାନେ ନିଜତ୍ୱହୀନ ପରାଙ୍ଗପୁଷ୍ଟ ପାରିଷଦମାନଙ୍କଠାରୁ ଟିକିଏ ଉନ୍ନତ ହୁଏତ ଥିଲେ କିନ୍ତୁ କବି ଯାହା ଲେଖୁଥିଲେ, କହୁଥିଲେ ଓ କରୁଥିଲେ ସେ ସବୁକୁ ଆତ୍ମକ୍ଳାନ୍ତ ପ୍ରଶଂସା କରିବାରେ ସେମାନଙ୍କର ହେଳା ନଥିଲା । ସେମାନେ କବି ଓ ବାସ୍ତବ ଜଗତ ମଧ୍ୟରେ ଗୋଟିଏ ଭେଦ ପ୍ରାଚୀର ଗଢ଼ିଥିଲେ । ଏଇ ପ୍ରକାର ବିପଦ ପୃଥିବୀର ସର୍ବତ୍ର ଦେଖାଯାଏ । କିନ୍ତୁ ପାରଂପରିକ ପ୍ରତିମାପୂଜାର ଆବାସଭୂମି ଭାରତ ଭଳି କେଉଁଠି ଏତେ ମାରାତ୍ମକ ନୁହେଁ । ପ୍ରତିମାକୁ ଭାଙ୍ଗୁଥିବା ବ୍ୟକ୍ତିମାନେ ଏଠି ନିଜେ ପ୍ରତିମା ପାଲଟି ଯାଆନ୍ତି ।

ରବୀନ୍ଦ୍ରନାଥ ଏଇ ବିପଦରୁ ଉତ୍ତୀର୍ଣ୍ଣ ହୋଇଯାଇଥିଲେ । ଅନ୍ୟମାନେ ତାଙ୍କର ଗଢ଼ିଥିବା ପ୍ରତିମାକୁ ସେ ନିଜେ ଭାଙ୍ଗି ଦେଇଥିଲେ । ସେ ନିଜେ ବାନ୍ଧି ରଖିଥିବା ପାଦର ଶିକୁଳିକୁ ଛିଣ୍ଡାଇ ଦେଇଥିଲେ । ଆବିଷ୍କାର କରି ଚାଲିଥିଲେ ସୃଷ୍ଟିଶିଳତାର ନବ ନବ ଦିଗନ୍ତ । ପୂର୍ବର ସଫଳତାକୁ ଅତିକ୍ରମ କରି ତାଙ୍କର ସୃଷ୍ଟି ବଢ଼ି ଚାଲିଲା । କେବେ କେଉଁଠି ତାଙ୍କର ସୃଷ୍ଟିଶିଳତା ସ୍ଥାଣୁ ହୋଇ ରହି ନଥିଲା । ଯେତେ ଉଚ୍ଚ ଗିରିଶୃଙ୍ଗ ହେଉ ବା ଯେତେ ଶ୍ୟାମଳ ଚାରଣଭୂମି ହେଉ କେଉଁଠି ସେ ଅଟକି ରହୁ ନଥିଲା । ତାଙ୍କ ପ୍ରତିଭାର ଅଦମନୀୟ ଶକ୍ତିରେ ଓ ଅଜ୍ଞାତକୁ ଜାଣିବାର ଅକ୍ଳାନ୍ତ ଜୀଗିଷାରେ, ତାଙ୍କର ବୈଦ୍ଧିକ କ୍ଷମତା ଓ ଆଧାତ୍ମିକ ସତତା ଭିତରେ ଏହା ବହୁଧା ପ୍ରମାଣିତ । କିନ୍ତୁ ଏହି ନିଦର୍ଶନ ତଥାପି ବାକି ଥିଲା ।

ଏଇ ସମୟରେ କବି ଅବିଶ୍ରାନ୍ତ ଭାବରେ କାର୍ଯ୍ୟ କରି ଚାଲିଥିଲେ । ବିଦେଶରେ ଏପରିକି ଭାରତରେ ଉପସ୍ଥିତ ଥିବା ସମୟରେ ମଧ୍ୟ ତାଙ୍କର ବହୁ ସମୟ ଶାନ୍ତିନିକେତନ ବାହାରେ

କଟୁଥିଲା । ସମଗ୍ର ପୃଥିବୀ ଥିଲା ତାଙ୍କର ରଂଗମଞ୍ଚ ଆଉ ଶାନ୍ତିନିକେତନ ଥିଲା ପ୍ରସ୍ତୁତିକେନ୍ଦ୍ର । ଫେବୃୟାରୀ 1922 ରେ ମୋଲିୟେର ତୃତୀୟ ଶତବାର୍ଷିକୀ ପାଳନ କରି ଛାତ୍ର ଓ ଅଧ୍ୟାପକମାନେ ଶାନ୍ତିନିକେତନର ଆନ୍ତର୍ଜାତିକ ଗୁଣକୁ ଅଧିକ ପ୍ରତିଷ୍ଠା ଦେଲେ । ସେହି ବର୍ଷ ଜୁଲାଇ ମାସରେ ରବୀନ୍ଦ୍ରନାଥ କଲିକତାଠାରେ ଶେଲୀଙ୍କ ଶତବାର୍ଷିକୀ ଉତ୍ସବରେ ଅଧ୍ୟକ୍ଷତା କଲେ । ଅଗଷ୍ଟ ଓ ସେପ୍ଟେମ୍ବର ମାସରେ 'ବର୍ଷା ମଙ୍ଗଳ' ନାମକ ଗୋଟିଏ ନୂତନ ସଙ୍ଗୀତ ରୂପକ ଓ ଶାରଦୋତ୍ସବ ନାମରେ କବିଙ୍କର ଗୋଟିଏ ପୂର୍ବ ରଚିତ ନାଟକର ନୂତନ ଅଭିନୟ ରୂପ କଲିକତାରେ ମଞ୍ଚସ୍ଥ ହୋଇଥିଲା । ଏଇଭଳି ରଚନାରେ କବିତା, ସଙ୍ଗୀତ ଓ ନୃତ୍ୟର ମଧୁର ସମନ୍ୱୟ ଘଟିଥିଲା । ବର୍ଷର ବିଭିନ୍ନ ଋତୁରେ ମୁକ୍ତ ବାୟୁମଣ୍ଡଳରେ ଜୀବନକୁ ଆନନ୍ଦମୁଖର କରି ସାମୂହିକ ଭାବେ ଅଭିନୀତି ହେବା ପାଇଁ ଏ ନାଟକ ରଚିତ ହୋଇଥିଲା । ଏହା କୌଣସି ନିର୍ଦ୍ଦିଷ୍ଟ ରୀତିରେ ରଚିତ ହୋଇ ନଥିଲା । ଲୋକ ପରମ୍ପରା ସଙ୍ଗେ ବୌଦ୍ଧିକ ଚେତନା ସହଜ ଭାବରେ ଏଥିରେ ମିଳିତ ହୋଇଥିଲା । ଦାର୍ଶନିକତା ସଙ୍ଗେ ଲଘୁ ଚପଳତା, ଆଧ୍ୟାତ୍ମିକ ରହସ୍ୟବାଦ ସଙ୍ଗେ ସମସାମୟିକ ଜୀବନର ଧାରାବିବରଣୀକୁ ଏଥିରେ ଏକତ୍ର ଦେଖିବାକୁ ମିଳେ ।

ସେପ୍ଟେମ୍ବର 1922 ରେ ରବୀନ୍ଦ୍ରନାଥ ପଶ୍ଚିମ ଓ ଦକ୍ଷିଣ ଭାରତ ବୁଲିବା ପାଇଁ ଏକ ଦୀର୍ଘ ଭ୍ରମଣରେ ବାହାରିଲେ । ବମ୍ବେ, ପୁନା, ମାଡ୍ରାସ ଓ ଦକ୍ଷିଣ ଭାରତର ଆହୁରି କେତେକ ମୁଖ୍ୟ ସହର ବୁଲି ଶେଷରେ ସେ ସିଂହଳରେ ପହଞ୍ଚିଲେ । ସବୁଠି ତାଙ୍କର ସଂବର୍ଦ୍ଧନା ଉତ୍ସବ ପାଳିତ ହୋଇଥିଲା ଓ ଜନସାଧାରଣ ତାଙ୍କର ବକ୍ତୃତା ଶୁଣିବା ପାଇଁ ଅଧୀର ହେଉଥିଲେ । ଫେରିବା ବାଟରେ ସେ ଅହମଦାବାଦରେ ଗାନ୍ଧିଜୀଙ୍କ ସାବରମତି ଆଶ୍ରମକୁ ପୁଣି ଥରେ ଗଲେ । ସେତେବେଳେ ମହାତ୍ମା ଜେଲ୍‌ରେ ଥାନ୍ତି, ସେଠାରେ ଛାତ୍ର ଓ ଅନ୍ତେଃବାସୀ ମାନଙ୍କୁ ରବୀନ୍ଦ୍ରନାଥ ନିଜ ବକ୍ତୃତାରେ "ଗାନ୍ଧିଜୀ ପ୍ରତିନିଧିତ୍ୱ କରୁଥିବା ଆତ୍ମୋତ୍ସର୍ଗର ମହତ୍ତ୍ୱ" ବିଷୟରେ ବୁଝାଇଥିଲେ । ସରଳ ଓ ଆତ୍ମିକ ଏହି ବକ୍ତୃତାଟିରେ ମହାତ୍ମାଙ୍କ ବ୍ୟକ୍ତିତ୍ୱ ପ୍ରତି ତାଙ୍କର ଗଭୀର ଶ୍ରଦ୍ଧା ପ୍ରକଟିତ ହୋଇଥିଲା ।

ଶାନ୍ତିନିକେତନରେ ଦୁଇମାସ କଟାଇ ସେ ପୁଣି ଉତ୍ତର ଓ ପଶ୍ଚିମ ଭାରତ ଭ୍ରମଣରେ ବାହାରିଲେ । ପଶ୍ଚିମରେ କରାଚି ଓ ପୋର୍‌ବନ୍ଦରରେ ଗାନ୍ଧିଜୀଙ୍କ ଜନ୍ମସ୍ଥାନ କାଠିଆବାଡ ପର୍ଯ୍ୟନ୍ତ ଯାଇଥିଲେ । ଏପ୍ରିଲ୍‌ରେ ଶାନ୍ତିନିକେତନ ଫେରିବା ପରେ ସେ ଗ୍ରୀଷ୍ମ ଋତୁ କଟାଇବା ପାଇଁ ପୁଣି ଆସାମର ଶୈଳନିବାସ ଶିଲଂ ଗଲେ । ଏଠି କେବଳ ସେ ନିଷ୍କଳ ପରିବେଶରେ ରଚନା କରିବା ପାଇଁ ସୁଯୋଗ ପାଇ "ରକ୍ତ କରବୀ" ନାମରେ ଗୋଟିଏ ସୁନ୍ଦର ନାଟକ ରଚନା କରିଥିଲେ ଯାହା ପରେ 'ରେଡ୍ ଅଲିଣ୍ଡେରସ୍' ନାମରେ ଇଂରେଜୀରେ ଅନୂଦିତ ହୋଇ ପ୍ରକାଶିତ ହୋଇଛି ।

ପୂର୍ବୋକ୍ତ 'ମୁକ୍ତଧାରା' ନାଟକ ପରି ଏହି ନାଟକରେ ମଧ ଆଧୁନିକ ସଭ୍ୟତାର ମୌଳିକ ସମସ୍ୟାକୁ ନେଇ କବିଙ୍କର ଚିନ୍ତା ଲକ୍ଷ୍ୟକରାଯାଏ । ପୂର୍ବ ନାଟକଟିରେ ଔପନିବେଶିକ ସ୍ୱାର୍ଥ -ସାଧନ ପାଇଁ ପ୍ରଯୁକ୍ତି ଜ୍ଞାନର ଅମାନୁଷିକ ବ୍ୟବହାର (ଯନ୍ତ୍ର ପ୍ରତୀକରେ କଥିତ) ବିଷୟରେ କୁହାଯାଇଥିବା ବେଳେ ଶଂସିତ ନାଟକ ଆହୁରି ଗୁରୁତ୍ୱ ପୂର୍ଣ୍ଣ ମୌଳିକ ପ୍ରଶ୍ନକୁ ଅବତାରଣା କରିଛି । ଜୀବନର ମୁକ୍ତଧାରା ବର୍ତ୍ତମାନ ଏପରି ଏକ ଜଟିଳ ସମାଜର ଯାନ୍ତ୍ରିକ ବ୍ୟବସ୍ଥାର ସମ୍ମୁଖୀନ ହୋଇଛି ଯେଉଁଠି ମଣିଷ ରୋବଟ୍ ପାଲଟି ଯାଉଛି, ନାମ ସବୁ ସଂଖ୍ୟାରେ ପରିଣତ

ହେଉଛି । ବ୍ୟକ୍ତି ଓ ରାଷ୍ଟ୍ର ଭିତରେ, ସ୍ୱାଧୀନଚେତନା ଓ ବାଧ୍ୟତାମୂଳକ ବ୍ୟବସ୍ଥା ଭିତରେ ମୁକ୍ତ ବୁଦ୍ଧିମତା ଓ ଶୀଥିଳ ମାପ୍ ଚୁପ୍ ପ୍ରାଜ୍ଞତା ଭିତରେ ଚିରାଚରିତ ଦ୍ୱନ୍ଦ୍ୱ ଯାହା ବୈଜ୍ଞାନିକ ପ୍ରଗତିର ମନ୍ଦପରିଣତି ଭାବରେ ପରିଚିତ ତାହାହିଁ ଏଇ ନାଟକର ବିଷୟ ବସ୍ତୁ । ଏହାର ପ୍ରକାଶ ଭଙ୍ଗୀ ଅର୍ଦ୍ଧବାସ୍ତବ ଓ ଅର୍ଦ୍ଧ ଆଲଂକାରିକ । ତର୍କ ଓ ରହସ୍ୟବାଦ ଫେଣ୍ଟାଫେଣ୍ଟି ହୋଇ ଏଥିରେ ନାଟକୀୟ ଦ୍ୱନ୍ଦ୍ୱକୁ ସ୍ୱାଭାବିକ ଅପେକ୍ଷା ଅଧିକ ଉତ୍କଣ୍ଠା ପୂର୍ଣ୍ଣ କରିଛି । ଉପସଂହାର ଆଦୌ ହୃଦ୍ୟ ନୁହେଁ ବରଂ ବଡ ଜଟିଳ ଏବଂ ଦୁର୍ବୋଧ ।

ଯକ୍ଷପୁରୀ ରାଜ୍ୟ ସୁନା ଖଣି ଓ ବାଧ୍ୟତାମୂଳକ ଶ୍ରମ ଦ୍ୱାରା ଅଭିବୃଦ୍ଧି ଲାଭ କରିଥିଲା । ଏଠାରେ ରାଜା ଲୌହ କପାଟ ଭିତରେ ବାସ କରୁଥିଲେ । ସବୁ ରହସ୍ୟପୂର୍ଣ୍ଣ । ଭୀଷଣ ଓ ଭୟଙ୍କର । ସାଂକେତିକ ଭାବେ ଲୌହ ପରଦାର ଅନ୍ତରାଳରେ ସେ ଥିଲେ (ଚର୍ଚିଲ ଏ ସଙ୍କେତ ବିଷୟରେ ଭାବିବାର ବହୁ ପୂର୍ବରୁ) ଚାବୁକ୍ ଦେଖା କଠୋର ଶାସନ ଓ ଧାର୍ମିକ ମତାନ୍ଧତାର ଆଇନଗତ ପବର୍ତ୍ତନ ଭିତରେ ସେଠାର ପୋଲିସ୍ ବିଭାଗର ମୁଖ୍ୟ ରାଜାଙ୍କ ନାମରେ ଏ ଦେଶର ଶାସନ ଚଳାଇ ଥିଲେ । ପୀଡିତ ବ୍ୟକ୍ତି ଜଣେ କହିଲା ଭଳି ସେଇ ଏକା ଦଉଡିରେ ଚାବୁକ୍ ତିଆରି ହୁଏ ଓ ନାମ ମାଳା ମଧ୍ୟ ଗୁନ୍ଥା ହୁଏ । ଏଇ ''ଦୁର୍ଦ୍ଧର୍ଷ ଅଭିନବ ରାଜ୍ୟ''କୁ ଆସିଲା ଜଣେ କରିତ୍ କର୍ମା ଝିଅ । ନାଁ ତାର ନନ୍ଦିନୀ, ସେ କାହାକୁ ଭୟ କରେନି କିନ୍ତୁ ତାର ରୂପ ସମସ୍ତଙ୍କୁ ମୁଗ୍ଧ କରେ । ସେ ସବୁ କାଇଦା କାନୁନ୍ ଭାଙ୍ଗି ଦେଲା । କେବଳ ଶ୍ରମିକମାନଙ୍କୁ ବିପ୍ଳବୀ କଲା ନାହିଁ, ରାଜାଙ୍କୁ ନିଜ ଆତ୍ମ ଗୋପନ ଛାଡି ବାହାରି ଆସିବାକୁ ପ୍ରଲୋଭିତ କଲା । ବାହାରକୁ ଆସି ରାଜା ଯେତେବେଳେ ଦେଖିଲେ ତାଙ୍କର ଅନୁଚର ମାନେ ପ୍ରଜାଙ୍କର କି ଅବସ୍ଥା କରିଛନ୍ତି ସେ ନିଜେ ସେନାପତି ମାନଙ୍କ ବିରୁଦ୍ଧରେ ନେତୃତ୍ୱ ନେଲେ । ନନ୍ଦିନୀର ସେଇ ବିପ୍ଳବୀ ପ୍ରେମିକ ରଂଜନ ବାଧ୍ୟତା ମୂଳକ ଭାବେ ସୈନ୍ୟ ବାହିନୀରେ ଯୋଗ ଦେବାକୁ ପ୍ରତ୍ୟାଖ୍ୟାନ କରି ମୃତ୍ୟୁ ବରଣ କରିଥିଲା ।

ଦେଶ ପର୍ଯ୍ୟଟନର ପ୍ରବଳ ଉତ୍ସାହ ବର୍ତ୍ତମାନ କବିଙ୍କ ମନକୁ ଅଧିକାର କରି ବସିଲା । ନିଜ ଦେଶ ଭ୍ରମଣ ଛଡା ବର୍ତ୍ତମାନ ସେ ଚୀନ ଭ୍ରମଣରେ ଯିବା କଥା ଭାବିଲେ । ପ୍ରାୟ ସହସ୍ର ବର୍ଷ ପୂର୍ବେ ଏ ଦେଶର କେତେଜଣ ବୌଦ୍ଧ ସନ୍ନ୍ୟାସୀ ପ୍ରଭୁ ବୁଦ୍ଧଙ୍କର ଦୟା ଓ ଶାନ୍ତିର ବାଣୀ ବହନ କରି ସେଠାକୁ ଯାଇଥିଲେ । ଦୁଇ ଦେଶ ମଧ୍ୟରେ ସେଇ ଦିନଠାରୁ ଲୁଚି ରହିଥିବା ସାଂସ୍କୃତିକ ସମ୍ପର୍କକୁ ପୁନର୍ଜୀବିତ କରିବାକୁ ରବୀନ୍ଦ୍ରନାଥ ସ୍ଥିର କରିଥିଲେ ଏଥିରେ ସେ ବିଫଳ ହୋଇଥିଲେ । କାରଣ ଇତି ମଧ୍ୟରେ ଚୀନ୍ ଓ ଭାରତ ପରସ୍ପର ଠାରୁ ଏତେ ଦୂରେଇ ଯାଇଥିଲେ ଓ ନିଜ ନିଜ ସ୍ୱାତନ୍ତ୍ର୍ୟକୁ ଏତେ ଦୃଢ଼ିଭୂତ କରିସାରିଥିଲେ ଯେ ଏହା ଆଉ ସମ୍ଭବ ନଥିଲା । ଚୀନ୍‌ର ବୁଦ୍ଧିଜୀବୀ ମାନେ ପାରମ୍ପରିକ ଭାବ ଓ ମୂଲ୍ୟବୋଧ ପ୍ରତି ଅତିଷ୍ଠ ହୋଇ ପଡିଥିଲେ ଓ ପାଶ୍ଚାତ୍ୟ ଭାବଧାରାରେ ନିଜକୁ ଦୀକ୍ଷିତ କରି ସାରିଥିଲେ । ସେମାନେ ଉପଲବ୍ଧି କରିସାରିଥିଲେ ଯେ ଜାତୀୟ ଐକ୍ୟ, ବସ୍ତୁତାନ୍ତ୍ରିକ ସଚେତନତା ଓ ବିଜ୍ଞାନ ତଥା ପ୍ରଯୁକ୍ତିବିଦ୍ୟାର କଠୋର ଉପଯୋଗ ହିଁ କେବଳ ଅନ୍ଧକୂପ ଭିତରେ ପଡିଥିବା ସେମାନଙ୍କର ଏଇ ପ୍ରାଚୀନ ଦେଶକୁ ଉନ୍ନତିର ପଥ ଦେଖାଇ ପାରିବ । ରବୀନ୍ଦ୍ରନାଥଙ୍କର ରହସ୍ୟବାଦୀ ଅନ୍ତର୍ଦୃଷ୍ଟି ଅପେକ୍ଷା ବର୍ଟ୍ରାଣ୍ଡ ରସେଲ୍‌ଙ୍କ ଯୁକ୍ତିଧର୍ମୀ ସଂଶୟ-ବାଦକୁ ଏମାନେ ଅଧିକ ଗୁରୁତ୍ୱ ଦେଉଥିଲେ । ଭାରତୀୟ କବିଙ୍କୁ ସେମାନେ ଜଣେ ପ୍ରତିକ୍ରିୟାଶୀଳ ଆଦର୍ଶବାଦୀ ଓ ଅସାର କଳ୍ପନାବିଳାସୀ ଭାବରେ ଦେଖିଥିଲେ ଓ ତାଙ୍କ

ଭ୍ରମଣକୁ ବିରୋଧ ନ କଲେ ମଧ୍ୟ ଗୌଣ ଭାବରେ ନେଇଥିଲେ । ରବୀନ୍ଦ୍ରନାଥ ଏଇ ମନୋଭାବକୁ ବୁଝି ପାରିଥିଲେ । ନିଜ ଦେଶରେ ମଧ୍ୟ ଏଇ ଭଳି ଅବସ୍ଥା ସହିତ ସେ ଆଗରୁ ପରିଚିତ ଥିଲେ । ଚୀନ୍‌ରେ ସେ ଦେଇଥିବା ଅଧିକାଂଶ ବକ୍ତୃତା ଥିଲା ତାତ୍‌କାଳିକ । ସେଥିରେ ସେ ଚୀନ-ମାନସକୁ ଗଭୀର ଉପଲବ୍ଧି ଓ ସମ୍ବେଦନାର ସହିତ ସ୍ପର୍ଶ କରିଥିଲେ । ସେ ଖୁବ୍ ଅନ୍ତରଙ୍ଗ ଓ ବନ୍ଧୁତ୍ୱ ପୂର୍ଣ୍ଣ ଥିଲେ । ଥିଲେ ଅତୀତ ସ୍ମୃତିର ରୋମନ୍ଥକ । ଯୁଦ୍ଧ, ଦେଶ-ଦେଶ ମଧ୍ୟରେ ରାଜନୈତିକ ଦ୍ୱନ୍ଦ୍ୱ ଓ ଭୌତିକ ବିକାଶର ଅନୁଗମନର ଘୋର ବିରୁଦ୍ଧାଚରଣ ସତ୍ତ୍ୱେ ସେ ସବୁ ସମାଲୋଚନାକୁ ଅତିକ୍ରମ କରି ପ୍ରଗତିକାମୀ ବୁଦ୍ଧିଜୀବୀ ମାନଙ୍କୁ ନିଜର କରି ପାରିଥିଲେ ।

ଫେରିବା ବାଟରେ ଜାପାନରେ ଛଅ ସପ୍ତାହ କଟାଇ ଓ ସେଠି ବହୁ ସ୍ଥାନରେ ବକ୍ତୃତା ପ୍ରଦାନ କରି କବି ଜୁଲାଇ ମାସ ଶେଷ ଆଡକୁ ଭାରତ ଫେରିଲେ । ଚୀନ ଓ ଜାପାନ କୁ ତାଙ୍କ ଭ୍ରମଣ ଫଳରେ ଏସିଆ ମହାଦେଶ ଇତିହାସରେ ପ୍ରଥମ ଥର ପାଇଁ ଏସୀୟ ରାଷ୍ଟ୍ରମାନଙ୍କ ମଧ୍ୟରେ ଐକ୍ୟ ସ୍ଥାପନର ସଚେତନ ପ୍ରୟାସ ସେଇ ବର୍ଷ ସେପ୍ଟେମ୍ବର ମାସରେ ସାଂଘାଇରେ ଗଠିତ ଏସିଆଟିକ୍ ଆସୋସିଏସନ୍ ଦ୍ୱାରା ଆରମ୍ଭ ହେଲା । ଏଇ ଘଟଣା ବିଷୟରେ ବୋଷ୍ଟନ୍‌ରୁ ପ୍ରକାଶିତ 'ଖ୍ରୀଷ୍ଟୀୟାନ୍ ସାଇନସ୍ ମନିଟର' ଲେଖିଥିଲା ''ଏସିଆ ଭୂଖଣ୍ଡର ସାଂସ୍କୃତିକ ସାମ୍ୟ ମାଧ୍ୟମରେ ଏସିଆର ଦେଶ ମାନଙ୍କର ଗୋଟିଏ ସଙ୍ଗଠନ ମୁଣ୍ଡ ଟେକିବାକୁ ଯାଉଛି । ନିକଟ ଅତୀତରେ ରବୀନ୍ଦ୍ର ନାଥଙ୍କର ସୁଦୂରପ୍ରାଚ୍ୟ ଭ୍ରମଣ ଓ ପାଶ୍ଚାତ୍ୟ ବସ୍ତୁତାନ୍ତ୍ରିକତା ବିରୋଧୀ ଆଦର୍ଶବାଦ ପ୍ରଚାର ଏଇ ଘଟଣାକୁ ଯଥେଷ୍ଟ ପ୍ରଚୋଦିତ କରିଛି । ପ୍ରମୁଖ ସ୍ଥାନ ମାନଙ୍କରେ ଏସିଆଟିକ ଆସୋସିଏସନ୍ ଗଠନ ଦିଗରେ ଅଭିନବ ଉତ୍ସାହ ପ୍ରକାଶ ପାଇଛି । ଏହାର ପ୍ରଥମ କେନ୍ଦ୍ର ସ୍ଥାପିତ ହୋଇଛି ସାଂଘାଇରେ । ଏଇ ଆନ୍ଦୋଳନର ପ୍ରେରଣା ମୂଳତଃ ରବୀନ୍ଦ୍ରନାଥଙ୍କ ନିକଟରେ କୃତଜ୍ଞ କାରଣ ଏହାର ପ୍ରଧାନ ଆଭିମୁଖ୍ୟ ତାଙ୍କର ଆଦର୍ଶ ଉପରେ ଆଧାରିତ'', ପରେ କଲିକତାର ହିନ୍ଦୁସ୍ଥାନ, ଷ୍ଟାଣ୍ଡାର୍ଡ଼ ଯଥାର୍ଥରେ ଲେଖିଥିଲେ, ''23 ବର୍ଷ ପରେ ଦିଲ୍ଲୀରେ ଅନୁଷ୍ଠିତ ହୋଇଥିବା 'ଏସିଆ ସମ୍ପର୍କ ସମ୍ମିଳନୀ'ର ଏହା ଥିଲା ପୂର୍ବାନୁଷ୍ଠାନ ।'' ଦିଲ୍ଲୀର ସମ୍ମିଳନୀ ଭାରତ ସ୍ୱାଧୀନତା ପାଇବା ବର୍ଷ ଅନୁଷ୍ଠିତ ହୋଇଥିଲା । କିନ୍ତୁ ଆଶ୍ଚର୍ଯ୍ୟ ଜନକ ଭାବେ କବିଙ୍କର ଜନ୍ମଭୂମିରେ ଅନୁଷ୍ଠିତ ଏଇ ସମ୍ମିଳନୀରେ ତାଙ୍କ ନାମ ସୁଦ୍ଧା ନିଆଯାଇ ନଥିଲା । ରାଜନୈତିକ ମାନଙ୍କର ସ୍ମୃତି ବଡ କ୍ଷୀଣ ତ ।

ପ୍ରାୟ ଦୁଇମାସ ଘରେ ରହି ପୁଣି ପୃଥିବୀର ଅନ୍ୟ ଦିଗକୁ କବିଙ୍କର ଯାତ୍ରା ଆରମ୍ଭ ହେଲା । ପେରୁର ସ୍ୱାଧୀନତା ଶତବାର୍ଷିକୀ ଉତ୍ସବରେ ଯୋଗ ଦେବା ପାଇଁ ନିମନ୍ତ୍ରଣ ଆସିଥିଲା । ତେଣୁ 1924 ସେପ୍ଟେମ୍ବରରେ ଏଲ୍ମହାର୍ଷ୍ଟଙ୍କ ସାଙ୍ଗରେ ସେ ଏ ନୂଆ ଦେଶକୁ ଯାତ୍ରା କଲେ । ପୂର୍ବରୁ ଚୀନ୍ ଯାତ୍ରା ବେଳେ ଏଲ୍ମହାର୍ଷ୍ଟ ତାଙ୍କର ସଙ୍ଗୀ ଥିଲେ ଏବେ ମଧ୍ୟ ସିଏ ତାଙ୍କ ସାଙ୍ଗରେ ଗଲେ । ଜାପାନୀ ଜାହାଜ ହାରୁନାମାରୁରେ ସେ ଜଳଯାତ୍ରା ଆରମ୍ଭ କରିଲା ବେଳକୁ ଶରତ ଋତୁ ଆରମ୍ଭ ହେଉଥାଏ । ଶରତର ସଂଗୀତ କବିଙ୍କ ହୃଦୟରେ ଅନୁରଣିତ ହେଉଥାଏ । ସବୁକଥା ଭୁଲି ସେ ପୁଣି ଥରେ ପ୍ରେମିକ ଓ ଗାୟକ ହୋଇ ଉଠିଲେ । ନୀତି କଥା ନୁହେଁ ସହଜ ଓ ସାବଲୀଳ ଭାବରେ ତାଙ୍କ ଲେଖନୀରୁ କବିତା ଝରି ପଡିଲା । 63 ବର୍ଷୀୟ କବି ଜୀବନର ସନ୍ଧ୍ୟାରେ ଉପନୀତ, ସନ୍ଧ୍ୟା ସଂଗୀତର ଘନୀଭୂତ ବିଷଣ୍ଣ ସ୍ୱର ଏଇ କବିତା ଗୁଡିକୁ ପ୍ରାଣବନ୍ତ କରିଥିଲା । ସର୍ବଦା ଏଇଭଳି ମୁହୂର୍ତ୍ତ ତାଙ୍କ ମନରେ ପ୍ରଥମ ପ୍ରେମର ସେଇ ଅପାସୋରା ସ୍ମୃତି ଜାଗରିତ କରୁଥିଲା ।

ଭୁଲିବିନି କେବେ ବୋଲି କହିଥିଲି ମୁହିଁ
ଯେବେ ତୁମେ ଲୋତକଭରା ଆଖିରେ ମତେ ଚାହିଁ ରହିଥିଲ ।
କ୍ଷମା କର ଆଜି ଯଦି ମୁଁ ଭୁଲ୍ କରିଥାଏ ।
ବହୁ କାଳ ସେ ଦିନୁ ବିତି ଯାଇ ଅଛି........
ପ୍ରେମର ପ୍ରଥମ ସ୍ମୃତି ମୋ ହୃଦୟେ ଲେଖି ଥିଲା
ତୁମ ଲଜ୍ଜାଭରା ଭୀତତ୍ରସ୍ତ ଘନ କୃଷ୍ଣ ଆଖି ।
ତୁମର ସେ ହୃଦୟ ସନ୍ତକେ
ସମୟ ତୂଳିରେ ବୋଳା ଆଲୋକଛାୟାର ଛବି
ବାରମ୍ବାର ଦିଶେ, ଯଦି ଆଜିର ବସନ୍ତ ଭିତରେ ସେ ଦିନର
ସଂଗୀତ ନଥାଏ, ଯଦି ମୋର ଯନ୍ତ୍ରଣା ଦୀପରୁ
ନିଃଶବ୍ଦରେ ଶିଖା ଲିଭିଯାଏ
କ୍ଷମା କର ମତେ । ମୁଁ ଏହାଜାଣେ,
ଯେଣୁ ତମେ ମୋ ଜୀବନକୁ ଆସିଥିଲ ଥରେ,
ଜୀବନ ମୋ ଏଇପରି ଅଶେଷ ସଙ୍ଗୀତର ଫସଲରେ ଭରେ ।

ଆର୍ଜେଣ୍ଟିନା ଉପକୂଳ ପାଖରେ ଜଳଯାତ୍ରା କରୁଥିବା ସମୟରେ କବି ହଠାତ୍ ଅସୁସ୍ଥ ହୋଇ ପଡିଲେ ଓ ଜଣେ ହୃଦ୍ ବିଶେଷଜ୍ଞଙ୍କ ପରାମର୍ଶ କ୍ରମେ ବୁଏନସ୍ ଏଇରେସ୍‌ରେ ତାଙ୍କୁ କିଛିଦିନ ପାଇଁ ସଂପୂର୍ଣ୍ଣ ବିଶ୍ରାମ ନେବାକୁ ପଡିଲା । ସେଠାରେ କବିଙ୍କର ଜଣେ ହେଲେ ପରିଚିତ ନଥିଲେ । ମାତ୍ର ସୌଭାଗ୍ୟ କ୍ରମେ ଭିକ୍‌ଟୋରିଆ ଓକୋମ୍ପୋ ନାମ୍ନୀ ଜଣେ ବିଦୁଷୀ ଓ ରୂପସୀ ମହିଳା ତାଙ୍କୁ ଆତିଥ୍ୟ ଦେବାକୁ ଚାହିଁଲେ ଓ କବି ପ୍ଲେଟ ନଦୀ କୂଳରେ ସାନ୍‌ଇସିଦ୍ରୋଠାରେ ଥିବା ଭିକ୍ଟୋରିୟାଙ୍କର ଆକର୍ଷଣୀୟ ଶାନ୍ତ ଭିଲ୍ଲାଟିରେ ଆଶ୍ରୟ ପାଇ ଖୁସୀ ହେଲେ । ଡାକ୍ତରଙ୍କ ପରାମର୍ଶ କ୍ରମେ ପେରୁ ଯାତ୍ରା ବାତିଲ୍ ହେଲା । ଏଥିରେ କବି ଆଦୌ ମନସ୍ତାପ କରି ନଥିଲେ କାରଣ ଇତି ମଧ୍ୟରେ ସେ କବିର ସତ୍ତାରୁ ମହାପୁରୁଷର ସତ୍ତା ଆଡକୁ ନିଜକୁ ଉତ୍ତୋଳିତ କରିଥିଲେ । ବରଂ ଭିଲ୍ଲାଟିର ଅଳିନ୍ଦ ଉପରୁ ନଦୀକୁ ଦେଖିବାରେ ଓ ଜଣେ ସୁନ୍ଦରୀ ଅନୁରାଗିଣୀ ସେବିକା ପାଇ ଖୁବ୍ ଆନନ୍ଦ ଅନୁଭବ କରୁଥିଲେ । ଏହା ଥିଲା ପ୍ରକୃତରେ ଏକାନ୍ତ ଅନୁରାଗ । ଏଥିରେ ଜଣେ ନିଷ୍ଠାପର ଶିଳ୍ପପ୍ରାଣ ତରୁଣୀର ଗୋଟିଏ ଆଦର୍ଶ ପ୍ରତି ଅନୁରାଗ ଥିଲା, ନଥିଲା ଜଣେ ସମାଜସେବିକାର ବଡ ଲୋକଙ୍କୁ ଅଧିକାର କରି ନେବାର ଉଦଗ୍ର ଅଭିଳାଷ । ଏଇ ବାଧ୍ୟତାମୂଳକ ଛୁଟିଦିନ ଗୁଡିକ ଯେ ଅତ୍ୟନ୍ତ ସୃଷ୍ଟିଶୀଳ ହୋଇଉଠିଥିଲା ତାର ପ୍ରମାଣ ତାଙ୍କର ସାନ୍‌ଇସିଦ୍ରୋ ରହଣି କାଳରେ ରଚିତ କବିତା ଗୁଡିକର ତୀବ୍ର ଓ ମର୍ମସ୍ପର୍ଶୀ ଅନୁଭୂତିରୁ ମିଳେ । 1925 ରେ 'ପୂରବୀ' ନାମକରଣ ହୋଇ ଏଇ କବିତା ଗୁଡିକ ପ୍ରକାଶିତ ହେଲା । 'ପୂରବୀ' ଗୋଟିଏ ମଧୁର ସନ୍ଧ୍ୟାରାଗିଣୀର ନାମ । ସଂକଳନଟି ବିଜୟାଙ୍କୁ (ଭିକ୍ଟୋରିୟା ନାଁ ର ସଂସ୍କୃତ ଶବ୍ଦ) ଉତ୍ସର୍ଗ କରାଯାଇଥିଲା । ଏଇ ନାଁରେ ତାଙ୍କୁ କବି ଡ଼ାକୁଥିଲେ । ପ୍ରକାଶିତ ହେବା ପରେ କଲିକତାରୁ ଗୋଟିଏ ବହି ଭିକ୍‌ଟୋରିଆଙ୍କ ପାଖକୁ ପଠାଇ କବି ଲେଖିଥିଲେ- ''ତୁମ ପାଖକୁ ଏଇ ବଙ୍ଗଳା କବିତା ବହିଟି ପଠାଉଛି, ଯାହା ତୁମ ହାତରେ ନିଜେ ଦେବି ବୋଲି ଥରେ ଆଶା କରିଥିଲି । ବହିଟି ମୁଁ ତୁମକୁ ଉତ୍ସର୍ଗ କରୁଛି । ଯଦିଓ ତୁମେ ଏଥିରେ କଣ ଅଛି ଜାଣି ପାରିବ ନାହିଁ । ଏହାର ଅଧିକାଂଶ

କବିତା ମୁଁ ସାନ୍‌ଇସିଡ୍ରୋରେ ଥିଲା ବେଳେ ରଚିତ । ଆଶା କରୁଛି, ଏହାର କବି ତୁମ ସହିତ ଯେତେ ଦିନ ରହିଥିଲେ ବହିଟି ତା ଠାରୁ ଦୀର୍ଘଦିନ ତୁମ ପାଖରେ ରହିବାର ସୁଯୋଗ ପାଇବ ।''

କେଡେ ମଧୁର ଥିଲା ବିଜୟାଙ୍କ ସହ କଟାଇଥିବା ଦିନର ସ୍ମୃତି । କବିଙ୍କ ଭାଷାରେ ଯାହା ତାଙ୍କୁ 'ଆବୃତ' କରି ରଖିଥିଲା । ସାନ୍‌ଇସିଡ୍ରୋରେ ଲିଖିତ କବିତା ଗୁଡିକରେ ଏହାର ପ୍ରକାଶ କିପରି ପ୍ରାଣବନ୍ତ ନିମ୍ନ ଅଂଶରୁ ତାହା ଅନୁମିତ ହେବ । (ଦୁଃଖର ବିଷୟ ମୂଳଲେଖାର ଅନୁପମ ଉତ୍କର୍ଷ ଏଥିରେ ନାହିଁ ।)

''ଆନନ୍ଦର ପୁଷ୍ପଗୁଚ୍ଛ ନେଇ ହସି ହସି ସିଏ ଆସିଲେ । ଦୁଃଖର ଫଳ ଛଡା ଆଉ କିଛି ମୋର ନଥିଲା ! ମୁଁ ତାଙ୍କୁ ପଚାରିଲି : ' ଆମ ପାଖରେ ଯାହା ଅଛି ତାକୁ ଯଦି ପରସ୍ପର ମଧ୍ୟରେ ବଦଳକରୁ ତେବେ କିଏ ବେଶି ହରାଇବ ?' କୌତୁକ ଅନୁଭବ କରି ସେ କହିଲେ, 'ଆସ ବଦଳ କରିବା । ଅଶ୍ରୁସିକ୍ତ ବେଦନାର ଫଳ ତୁମର ଦିଅ, ନିଅ ମୋର ଫୁଲ ।' ତାଙ୍କୁ ଚାହିଁଲି, ଜାଣିଲି ସେ ଅପରୂପା ।''

ଧୀରେ ମୋ ବେଦନାର ଭାର ସେ ହାଲୁକା କରିଦେଲେ, ତାଳି ମାରି ହସି ଉଠିଲେ, ତାଙ୍କ ଫୁଲର ପ୍ରାଚୁର୍ଯ୍ୟ ମୋ ବକ୍ଷରେ ଧାରଣ କରିଲି । ଚାଲି ଯିବା ବେଳେ ସେ ହସିଲେ ଓ କହିଲେ 'ମୁଁ ଜିତିଲି' ।

ସୂର୍ଯ୍ୟ ମଝି ଆକାଶରେ । ପ୍ରଖର ତାପ । ଉତ୍ତପ୍ତ ଦିନ ଶେଷରେ ମଳିନ ଫୁଲ ସବୁ ଝରି ପଡିଲା ।''

ଷୋଳ ବର୍ଷ ପରେ, ମୃତ୍ୟୁର ଅବ୍ୟବହିତ ପୂର୍ବେ ବି ସ୍ମୃତି ଥିଲା ସତେଜ, ମୃତ୍ୟୁ ପାଇଁ ଅପେକ୍ଷା କରୁଥିବା ବୃଦ୍ଧ ଓ ଅସୁସ୍ଥ କବି ତାଙ୍କର ଶେଷ କବିତା ଗୁଡିକ ଭିତରୁ ଗୋଟିକରେ ଏଇ ସ୍ମୃତିକୁ ଲିପିବଦ୍ଧ କରିଛନ୍ତି ।

''ଆଉ ଥରେ ଯଦି ପାରେ
ଖୋଜି ନେବି ସେଇ ଆସନଟା,
ଯାହା କୋଳରେ ବିଛା ହୋଇଛି
ବିଦେଶର ଆଦରର କଥା ।
ଅତୀତର ବିଗତ ସପନ
ପୁଣି ସେଠି ଏକାଠି ହୋଇବ
ଅସ୍ଫୁଟ ଗୁଂଜନ ସ୍ୱରେ
ଆଉ ଥରେ ନୀଡ ରଚାଇବ
ସୁଖସ୍ମୃତି ଡାକି ଆଣି ତାକୁ
ଜାଗରଣ କରିବ ମଧୁର.....
ଭାଷା ଯାର ଥିଲା ନାହିଁ ଜଣା
ଆଖି ଯାର କହିଥିଲା କଥା
ଜଗାଇ ରଖିବ ଚିର ଦିନ, ସକରୁଣ ତାହାରି ବାରତା ।''

1925 ଜାନୁଆରୀ 4ରେ କବି ଓ ତାଙ୍କର ସାଥୀ ଏଲମ୍‌ହର୍‌ଷ୍ଟ ବିଜୟାଙ୍କୁ ବିଦାୟ ଜଣାଇ ବୁଏନ୍‌ସ ଏଇରେସ୍ ଛାଡିଲେ । ନିଜ ଦେଶ ତାଙ୍କ ଉପସ୍ଥିତି କାମନା କରୁଥିବା ବେଳେ ସେ ଏଠି

ଆମୋଦ କରୁଛନ୍ତି- ଏଥିପାଇଁ ସେ ନିଜକୁ ଅପରାଧୀ ମନେ କରୁଥିଲେ, ତେଣୁ ଶୀଘ୍ର ଫେରିବା ପାଇଁ ଠିକ୍ କଲେ । ନିଜ ଦେଶରେ ପହଞ୍ଚି ସେ ବୁଝି ପାରିଲେ ଯେ ସେଇ ଆନନ୍ଦ ପ୍ରକୃତରେ ଥିଲା ସୃଷ୍ଟିଶୀଳ । ସମୟ କ୍ରମେ ଦେଖାଯାଇଛି ଯେ ତାଙ୍କର ସାଧାରଣ ଉପକାର ଅପେକ୍ଷା ତାଙ୍କର ସୃଷ୍ଟି ହିଁ ଲୋକଙ୍କୁ ଢେର୍ ବେଶୀ ଆନନ୍ଦ ଦେଇ ପାରିଛି । ସେଇ ବର୍ଷ ଅଗଷ୍ଟ ମାସରେ ଶାନ୍ତିନିକେତନରୁ ଭିକ୍ଟୋରିଆ ଓକାମ୍ପୋଙ୍କୁ ଲେଖା ଗୋଟିଏ ଚିଠିରେ ଏଇ ଅନୁଭୂତି ଅତ୍ୟନ୍ତ ସୁନ୍ଦର ଭାବରେ କବି ପ୍ରକାଶ କରିଛନ୍ତି :

"ତୁମ ଚିଠିରେ ତୁମେ ଦୁଃଖ ପ୍ରକାଶ କରି ଲେଖିଛ ଯେ ମୁଁ ନଦୀ କୂଳରେ ସେଇ ମନୋରମ ଭିଲ୍ଲାଟିରେ ଗ୍ରୀଷ୍ମ ଶେଷ ପର୍ଯ୍ୟନ୍ତ ରହି ପାରିଲି ନାହିଁ । ତୁମେ ଜାଣନାହିଁ, ମୁଁ ଏହା କେତେ ଚାହୁଁଥିଲି । କର୍ତ୍ତବ୍ୟର ଆହ୍ୱାନ କ୍ରମେ ସେଇ ମଧୁର ମୁହୂର୍ତ୍ତ ଗୁଡିକୁ ଆଳସ୍ୟପୂର୍ଣ୍ଣ ଓ ନିରର୍ଥକ ଭାବି ମୁଁ ଏଠାକୁ ଚାଲି ଆସିଲି । କିନ୍ତୁ ଆଜି ଜାଣିପାରୁଛି ସେଠି ଥିଲାବେଳେ ସେଇ ଅଳସବେଳାର ଛାଇତଳେ କେତେ ଇଜ୍ଞା ଫୁଲର କବିତାରେ ମୋ ଝୁଡି ଭରି ହୋଇ ଯାଉଥିଲା । ମୁଁ ଭାବେ ଯେତେବେଳେ ମୋର ଶ୍ରମ-ସାଧିତ ଉପକାରୀ- କର୍ମର ଅଟ୍ଟାଳିକା ସବୁ ମହାକାଳରେ ହଜି ଯିବ, ତାର ବହୁ ପରେ ମଧ୍ୟ ଏଇ ରଚନା ଭିତରୁ ଅନେକ ସତେଜ ଓ ଉଜ୍ଜ୍ୱଳ ହୋଇ ରହିଥିବ ।"

ଦେଶକୁ ଫେରିବାର ଅଳ୍ପ କିଛି ଦିନ ପରେ କବିଙ୍କର ବଡଭାଇ ଜ୍ୟୋତିରୀନ୍ଦ୍ରନାଥ ଇହଜଗତରୁ ବିଦାୟ ନେଲେ । ତାଙ୍କର ସବୁଠାରୁ ପ୍ରିୟ ଏଇ ବଡ଼ ଭାଇଙ୍କର ମୃତ୍ୟୁ ତାଙ୍କୁ ଖୁବ୍ ବିଚଳିତ କରିଦେଇଥିଲା । ଜୀବନର ଦୁଃସମୟରେ ଏହି ଭାଇ ଥିଲେ ତାଙ୍କର ବନ୍ଧୁ ଓ ପରାମର୍ଶଦାତା । କିନ୍ତୁ ଏଇ ଶୋକ ଭାବକୁ ସେ ଆତ୍ମସ୍ଥ କରି ରଖିଥିଲେ । ସେତେବେଳକୁ ସେ ଏତେ ଜଣ ପ୍ରିୟଜନଙ୍କୁ ହରାଇ ସାରିଥିଲେ ଯେ, ମୃତ୍ୟୁ ତାଙ୍କ ପାଖରେ ଆଉ ଅଚିହ୍ନା ନଥିଲା । ସେ ବାରମ୍ବାର କହୁଥିଲେ, "ସକଳ ମୃତ୍ୟୁ ଓ ଦୁଃଖ ଭିତରେ ବି ଶାଶ୍ୱତ ସମୟର ବକ୍ଷରେ ଶାନ୍ତି ବିରାଜିତ ।" ସେଇ ବର୍ଷ ମେ ମାସରେ ମହାତ୍ମା ଗାନ୍ଧି ତାଙ୍କୁ ଦେଖିବା ପାଇଁ ଶାନ୍ତିନିକେତନ ଆସିଲେ । ଚରଖା ଓ ଖଦି ମାଧ୍ୟମରେ ତାଙ୍କର ସ୍ୱରାଜ ନୀତି ଆଡକୁ କବିଙ୍କୁ ଆକର୍ଷଣ କରିବା ପାଇଁ ପୁଣି ଥରେ ହୁଏତ ସେ ଚେଷ୍ଟା କରୁଥିଲେ, ରବୀନ୍ଦ୍ରନାଥ ତାଙ୍କୁ ପାରମ୍ପରିକ ଢଙ୍ଗରେ ଗଭୀର ଶ୍ରଦ୍ଧା ଓ ସମ୍ମାନର ସହିତ ସ୍ୱାଗତ କରିଥିଲେ । ଯେତେବେଳେ ତାଙ୍କ ପାଇଁ ନବ କିଶଳୟ ଓ ପୁଷ୍ପ ଗୁଚ୍ଛରେ ସୁସଜ୍ଜିତ ପ୍ରକୋଷ୍ଠକୁ ତାଙ୍କୁ ଘେନି ଯାଇଥିଲେ, ମହାତ୍ମା ସ୍ମିତ ହସି ପଚାରିଲେ, "ମୋତେ କାହିଁକି ଏଇ ମଧୁଶଯ୍ୟା ଘରକୁ ଆଣିଲେ ?" ଅଳ୍ପ ହସି କବି ଉତ୍ତର ଦେଇଥିଲେ, "କାରଣ ଆମ ହୃଦୟର ଚିରକାଳର ତରୁଣୀ ରାଣୀ ଶାନ୍ତିନିକେତନ ଆପଣଙ୍କୁ ଯେହେତୁ ବରଭାବରେ ସ୍ୱାଗତ କରୁଛି ।" ଗାନ୍ଧିଙ୍କ ପରିଦର୍ଶନ ଆପଣା ଉଦ୍ଦେଶ୍ୟ ସାଧନରେ ଉଭୟ ବିଫଳ ଓ ସଫଳ ଥିଲା । ଭାରତର ଅନୁନ୍ନତ ଗ୍ରାମୀଣ ଅର୍ଥନୀତିରେ ଅନ୍ୟାନ୍ୟ ବହୁ ପ୍ରୟୋଜନୀୟ ପଦ୍ଧତି ଠାରୁ ଚରଖା ଅଧିକ କିଛି ଥିଲା ବା ହେବ ବୋଲି ରବୀନ୍ଦ୍ରନାଥଙ୍କୁ ବୁଝାଇବା ପାଇଁ ଯଦି ସେ ଆଶା କରିଥିଲେ ତେବେ ସେଥିରେ ସେ ବିଫଳ ହୋଇଥିବେ । କିନ୍ତୁ ଅପର ପକ୍ଷରେ ଦୁଇ ପଥିକୃତଙ୍କ ମଧ୍ୟରେ ଏଇଭଳି ମିଳନ ଓ ମତବିନିମୟ ଯେତେ ଦ୍ୱନ୍ଦ୍ୱପୂର୍ଣ୍ଣ ହେଉ ପଛକେ ଉଭୟଙ୍କ ଭିତରେ ଗଭୀରତର ସମ୍ପର୍କ ପ୍ରତିଷ୍ଠା କରୁଥିଲା । ଉଭୟଙ୍କ ମନୋଭାବ ଓ ଦୃଷ୍ଟିଭଙ୍ଗିରେ ଯେତେ ଆପାତଃ ବିରୋଧ ଥାଉ ନା କାହିଁକି ସେ ଦୁଇଙ୍କର ଆତ୍ମ ଶକ୍ତି ସର୍ବଦା ମିଳିତ ହେଉଥିଲା । ପରେ ରବୀନ୍ଦ୍ରନାଥ 'ଦି କଲ୍ଟ ଅଫ୍ ଚରଖା' ନାମକ ଏକ ପ୍ରବନ୍ଧରେ ନିଜର ମତ ଉପସ୍ଥାପନ

କରିଥିଲେ । ଏହା 'ମଡ଼ର୍ଣ୍ଣ ରିଭ୍ୟୁ'ରେ ପ୍ରକାଶ ହେବା ପରେ ମହାତ୍ମା ଗାନ୍ଧି 'ୟଙ୍ଗଇଣ୍ଡିଆ' ରେ ଦି ପୋଏଟ୍ ଏଣ୍ଡ ଦି ଚରଖା ନାମକ ଏକ ଲେଖା ଲେଖି ଏହାର ଉତ୍ତର ଦେଇଥିଲେ ତାପରେ ରବୀନ୍ଦ୍ରନାଥ ଗୋଟିଏ ବ୍ୟକ୍ତିଗତ ଚିଠି ଲେଖି ମହାତ୍ମାଙ୍କୁ ପ୍ରତିଶ୍ରୁତି ଦେଇ କହିଥିଲେ, ''ଆପଣଙ୍କର ଭାବନାକୁ ଏକମାତ୍ର ସତ୍ୟ ବୋଲି ଭାବି ମୋତେ ଆପଣ ଯେତେ ଆଘାତ ଦେଲେ ବି ପାରସ୍ପରିକ ସମ୍ମାନ ବୋଧ ଉପରେ ପ୍ରତିଷ୍ଠିତ ଆମର ବନ୍ଧୁତା ସେ ଆଘାତକୁ ସହ୍ୟ କରି ନେବ ।'' ଏଇ ପ୍ରତିଶ୍ରୁତି ଶେଷ ପର୍ଯ୍ୟନ୍ତ ରହିଥିଲା ଏବଂ ମହାତ୍ମା ଓ କବିଙ୍କ ଭିତରେ ଥିବା ଗଭୀର ଆତ୍ମୀୟତା ବାହାରେ ସେ ଦୁହିଁଙ୍କ ମଧ୍ୟରେ ଘଟୁଥିବା ଦ୍ୱନ୍ଦ୍ୱକୁ ଅତିକ୍ରମ କରି ଯାଇଥିଲା । ଏହାର କୋଡିଏ ବର୍ଷ ପରେ କବିଙ୍କର ମୃତ୍ୟୁର ଚାରିବର୍ଷ କଟିଯିବା ପରେ ଶେଷଥର ପାଇଁ ଯେତେବେଳେ ମହାତ୍ମା ଶାନ୍ତିନିକେତନ ପରିଦର୍ଶନରେ ଆସିଥିଲେ ସେ କହିଥିଲେ, ''ଗୁରୁଦେବ ଓ ମୋ ଭିତରେ ଗୋଟେ ଦ୍ୱନ୍ଦ୍ୱ ଖୋଜି ପାଇବାର ମନୋଭାବ ନେଇ ମୁଁ ଯାହା ଆରମ୍ଭ କରିଥିଲି କୌଣସି ଦ୍ୱନ୍ଦ୍ୱ ନଥିବାର ଗୌରବମୟ ଆବିଷ୍କାର ରେ ତାହା ଶେଷ ହୋଇଥିଲା ।'' ଏଇ ଗୌରବ ମୟ ଆବିଷ୍କାର ଥିଲା ପାରସ୍ପରିକ ପ୍ରୀତି ଓ ସମ୍ମାନବୋଧ ।

୧୯୨୫ର ଶୀତ ଋତୁରେ ମୁସୋଲିନି ଚାହିଁଲେ ଭାରତୀୟ କବିଙ୍କ ସହ ସୌହାର୍ଦ୍ଦ୍ୟ ସ୍ଥାପନ କରିବା ପାଇଁ, ତେଣୁ ପ୍ରଭୂତ ମୂଲ୍ୟବାନ୍ ଇଟାଲୀୟ ପୁସ୍ତକ ଉପହାର ଦେଇ ସେ ଦୁଇଜଣ ପ୍ରାଚ୍ୟ ବିଦ୍ୟାବିତ୍ କାର୍ଲୋ ଫରମିସି ଓ ଗୁଇସେପ୍ ଟୁସିଙ୍କୁ ଇଟାଲୀରୁ ବିଶ୍ୱଭାରତୀକୁ ପରିଦର୍ଶୀ ଅଧ୍ୟାପକ କରି ପଠାଇଲେ । ସେଇ ବର୍ଷ ଶେଷରେ ଭାରତୀୟ ଦର୍ଶନ କଂଗ୍ରେସର କଲିକତାଠାରେ ଅନୁଷ୍ଠିତ ପ୍ରଥମ ଅଧିବେଶନରେ କବି ସଭାପତିତ୍ୱ କରି 'ଲୋକ ଧର୍ମ ଓ ଲୋକ ସଂସ୍କୃତିର ଦାର୍ଶନିକ ବୈଶିଷ୍ଟ୍ୟ' ବିଷୟରେ ବକ୍ତୃତା ଦେଇଥିଲେ । ସର୍ବଭାରତୀୟ ସଙ୍ଗୀତ ସମାରୋହରେ ଯୋଗ ଦେବା ପାଇଁ ସେ ଲକ୍ଷ୍ନୌ ଗଲେ । ନୂଆ ବର୍ଷ ଆରମ୍ଭର କିଛିଦିନ ପରେ ସଙ୍ଗୀତ ସମାରୋହ ଚାଲିଥିଲା ବେଳେ ତାଙ୍କ ବଡଭାଇ ଦ୍ୱିଜେନ୍ଦ୍ରନାଥଙ୍କ ମୃତ୍ୟୁ ଖବର ଆସିଲା । ଦ୍ୱିଜେନ୍ଦ୍ରନାଥ ଥିଲେ ଅମାୟିକ ଓ ଭଦ୍ର, ଦାର୍ଶନିକ ଓ ଗାଣିତିକ । ଗୋଟିଏ ପରେ ଗୋଟିଏ ଅତୀତର ସମ୍ପର୍କ ସବୁ ଛିନ୍ନ ହୋଇ ଆସୁଥିଲା । ଦ୍ୱିଜେନ୍ଦ୍ରନାଥ ଥିଲେ ପ୍ରକୃତରେ ଜଣେ ଦାର୍ଶନିକ ଯିଏ ନିଜର ବିପୁଳ ଶିକ୍ଷା ଓ ପାଣ୍ଡିତ୍ୟକୁ ଦାର୍ଶନିକ ସୁଲଭ ଦୃଷ୍ଟିରେ ଦେଖୁଥିଲେ । ସିଏ କେବଳ ମାତ୍ର ରବୀନ୍ଦ୍ରନାଥଙ୍କ ବଡଦାଦା (ବଡଭାଇ) ନଥିଲେ ପରନ୍ତୁ ଗାନ୍ଧି ଓ ଆଣ୍ଡ୍ରୁଜ୍‌ଙ୍କ ସମେତ ସମସ୍ତଙ୍କର ବଡ଼ଦାଦା ଥିଲେ । ବଡ଼ଦାଦାଙ୍କ ମୃତ୍ୟୁରେ ମହାତ୍ମା ମତବ୍ୟକ୍ତ କରିଥିଲେ, ''ବଡଦାଦାଙ୍କ ମୃତ୍ୟୁ ଜଣେ ବଡ ସାଧକ ଦାର୍ଶନିକ ଓ ଦେଶ ପ୍ରେମୀଙ୍କୁ ଛଡାଇ ନେଲା ।'' ସିଏ ଗାନ୍ଧିଙ୍କର ବେଶୀ ପ୍ରିୟ ଥିଲେ କାରଣ ତାଙ୍କର ଚରଖା କାର୍ଯ୍ୟକ୍ରମକୁ ସିଏ ପୂର୍ଣ୍ଣ ହୃଦୟରେ ସମର୍ଥନ କରୁଥିଲେ ।

ଢ଼ାକା ବିଶ୍ୱବିଦ୍ୟାଳୟର ଆମନ୍ତ୍ରଣ କ୍ରମେ ରବୀନ୍ଦ୍ରନାଥ କେତେ ଗୁଡିଏ ବକ୍ତୃତା ପ୍ରଦାନ କରିଥିଲେ ଓ ସେତେବେଳେ ପୂର୍ବ ବଙ୍ଗର ଅନେକ ସହର ବୁଲି ଦେଖିଥିଲେ । ଶାନ୍ତିନିକେତନକୁ ଫେରି ସେ ଗୋଟିଏ ଗଦ୍ୟ ନାଟକ 'ନଟୀର ପୂଜା' ଲେଖିଥିଲେ । ଏହି ନାଟକର ବିଷୟବସ୍ତୁ ଗୋଟିଏ ପୁରାତନ ବୌଦ୍ଧ କିମ୍ବଦନ୍ତୀ ଉପରେ ଆଧାରିତ । ପୂର୍ବରୁ ମଧ ଗୋଟିଏ କବିତାରେ ଏହାକୁ ସେ ରୂପ ଦେଇଥିଲେ । ପ୍ରତୀକାତ୍ମକ ଅବାସ୍ତବତା ଓ ବୌଦ୍ଧିକ ବିଳାସ ତାଙ୍କର କେତେକ ନାଟକକୁ ଜଟିଳ ପ୍ରହେଳିକା ପୂର୍ଣ୍ଣ ଅଥଚ ମୋହନୀୟ କରିଛି । କିନ୍ତୁ ଏଥିରୁ ମୁକ୍ତ ଏଇ ହୃଦୟସ୍ପର୍ଶୀ ନାଟକଟି କବିଙ୍କର ସହଜ ଓ ସରଳ ନାଟକ ମଧ୍ୟରେ ଅନ୍ୟତମ । ଏହାର ମୁଖ୍ୟ ଅଭିନୟ ଗୋଟିଏ

ସହଜ ସରଳ ଧାର୍ମିକ ଭାବପ୍ରବଣତାରେ କେନ୍ଦ୍ରିଭୂତ ହୋଇଛି ଯେଉଁଠି ଭକ୍ତିପୂର୍ଣ୍ଣ ଆତ୍ମତ୍ୟାଗର ଦୁଃଖାନ୍ତ ଦୃଶ୍ୟରେ ନାଟକର ପରିସମାପ୍ତି ଘଟିଛି ।

ବେଦର ଭ୍ରମଶୂନ୍ୟତା ଓ ହିନ୍ଦୁଧର୍ମର ଜାତି ପ୍ରଥାକୁ ବୁଦ୍ଧ ପ୍ରଥମେ ପ୍ରତିବାଦ କରିଥିଲେ । ଈଶ୍ୱରଙ୍କ ଉପାସନା ଏଇ ବା ସେଇ ଜାତିର ଏକାଧିପତ୍ୟ ଉପରେ ନିର୍ଭର କରି ନପାରେ । ଆଉ ତାହାର ପରିପ୍ରକାଶ କେବଳ ସେଇ ବୈଦିକ ଧାରାରେ ପର୍ଯ୍ୟବସିତ ହୋଇ ଚିରକାଳ ରହିନପାରେ । ସତ୍ୟର ଆହ୍ୱାନ ପାଖରେ ଆତ୍ମ ସମର୍ପଣ ଓ ଆତ୍ମୋତ୍ସର୍ଗ ହିଁ ପ୍ରକୃତ ଉପାସନା । ଋଷି ତାର ଜ୍ଞାନ, କର୍ମୀ ତାର କର୍ମ, କବି ତାର ଗୀତି ଓ ନିଷ୍ପାପର ନଟୀ ତା'ର ନୃତ୍ୟ ସମର୍ପଣ କରିଥାଏ ନିଜର ପ୍ରଭୁଙ୍କ ପାଖରେ । ଏହିପରି ଭାବରେ ନିଜର ନିଚୋଳ ଭକ୍ତି ଓ ସାଧନା ବଳରେ ନର୍ତ୍ତକୀ ତା ଜୀବନର ତଥାକଥିତ ନୀଚ୍ ସ୍ଥିତିରୁ ନିଜକୁ ମୁକୁଳାଇଚି ଓ ନିଜର ମୃତ୍ୟୁରେ ଆତ୍ମଶକ୍ତିର ଗୌରବକୁ ଯଥାର୍ଥତା ଦେଇଛି ।

ଏହି ନାଟକର ଅନ୍ୟ ଏକ ବୈଶିଷ୍ଟ୍ୟ ହେଲା ଏଥିରେ ପୁରୁଷ ଚରିତ୍ର ନାହିଁ । ଦର୍ଶକ -ମଣ୍ଡଳୀର ଦାବୀ ପୂରଣ ପାଇଁ ପରବର୍ତ୍ତୀ ସମୟରେ ଏହାର ଉପଦ୍‌ଘାତରେ ଜଣେ ବୌଦ୍ଧ ସନ୍ନ୍ୟାସୀର ଚରିତ୍ର ସଂଯୋଜିତ ହୋଇଥିଲା । ହିନ୍ଦୁ ଓ ମୁସଲ୍‌ମାନ ଉଭୟଙ୍କ ଭିତରେ ଭାରତୀୟ ସମାଜରେ ନାରୀ ମାନଙ୍କର ମଞ୍ଚାଭିନୟ ପ୍ରତି କଟୁଦୃଷ୍ଟିର କୁସଂସ୍କାର ରହି ଆସିଥିଲା । ନିଜ ବିଶ୍ୱବିଦ୍ୟାଳୟର ଛାତ୍ରୀ, ସମ୍ଭ୍ରାନ୍ତ ପରିବାରର ନାରୀ ମାନଙ୍କୁ କବି ନିଜେ ନାଟ୍ୟାଭିନୟ ଶିଖାଇ କଲିକତାରେ 1927 ଜାନୁୟାରୀରେ ଏହି ନାଟକଟି ମଞ୍ଚସ୍ଥ କରି ସେଇ କୁସଂସ୍କାର ମୂଳରେ ଆଘାତ କରିଥିଲେ । ବୃତ୍ତିଗତ ନର୍ତ୍ତକୀ ଛଡା ଅନ୍ୟମାନଙ୍କୁ ମଧ୍ୟ ସେ ମଞ୍ଚ ଉପରକୁ ଆଣି ପାରିଥିଲେ । ସେଇ ଦିନଠାରୁ ସେଇ ପୁରାତନ ପ୍ରଥା ଲୋପ ପାଇଗଲା ଓ ନୃତ୍ୟ ଯେ କେବଳ ସାଧାରଣ ମନୋରଞ୍ଜନର ଗୋଟିଏ ସମ୍ମାନ ଜନକ କାର୍ଯ୍ୟ ଭାବରେ ସ୍ୱୀକୃତି ଲାଭ କଲା ତା' ନୁହେଁ ଏହା ପାରମ୍ପରିକ ଭାରତୀୟ ସଂସ୍କୃତିର ଅନୁବର୍ତ୍ତନର ମାଧ୍ୟମ ଭାବରେ ଗୃହୀତ ହେଲା ।

# ଯାତ୍ରୀ ଦୂତ

*ପ୍ରଶଂସା ଲଜ୍ଜା ଦିଏ, ଯେଣୁ ତାହା ଚାହେଁ ଗୁପ୍ତଭାବେ ।*

ଆଂଶିକ ଭାବରେ ମୁସୋଲିନିଙ୍କ ପାରିଷଦମାନଙ୍କ ଦ୍ୱାରା ପ୍ରଶଂସିତ ହୋଇ ଓ ଆଂଶିକ ଭାବରେ ସେଇ ପ୍ରଚଣ୍ଡ ବ୍ୟକ୍ତିତ୍ୱ ଓ ସେଦେଶର ପ୍ରାଚୀନ ତଥା ଜୀବନ ସଂସ୍କୃତି ଉପରେ ତାଙ୍କର ପ୍ରଭାବକୁ ଦେଖିବାର କୌତୁହଳ ନେଇ ରବୀନ୍ଦ୍ରନାଥ ଇଟାଲିର ନିମନ୍ତ୍ରଣ ଗ୍ରହଣ କଲେ ଓ 15 ମେ 1926 ରେ ନେପଲସ୍ ଅଭିମୁଖେ ଜଳଯାତ୍ରା ଆରମ୍ଭ କଲେ । ଏ ବିଷୟରେ ସେ ନିଜେ ଲେଖିଛନ୍ତି : ‘‘ଦୂରରୁ ସମାଲୋଚନା କରିବା ନୁହେଁ ପାଖରୁ ଅନୁଧ୍ୟାନ କରିବା ପାଇଁ ମୁଁ ଚାହିଁଲି । ଏଇ ସୁଯୋଗ ପାଇ ମୁଁ ଆନନ୍ଦିତ ହେଲି । ନିଶ୍ଚିତ ଭାବରେ ଜଣେ ତୁଙ୍ଗ ବ୍ୟକ୍ତିଙ୍କର କାର୍ଯ୍ୟ ଓ ଇତିହାସରେ ସ୍ମରଣୀୟ ହୋଇ ରହିଲା ଭଳି ଗୋଟିଏ ଆନ୍ଦୋଳନକୁ ନିଜେ ଆଖିରେ ଦେଖିବା ସମ୍ଭବ ହେବ ।’’ ଫାସିବାଦ ଯେ ଇତିହାସରେ ସ୍ମରଣ ରହିବ ଏଥିରେ ସନ୍ଦେହ ନାହିଁ । ମାତ୍ର ଏଇ ଏକଛତ୍ରବାଦୀ ଯେ ଜଣେ ମହାମାନବ ଏଇ ଭ୍ରମଧାରଣା ସେ ସମୟର ବହୁ ପ୍ରବୀଣ ରାଜନୀତିଜ୍ଞ ମାନଙ୍କ ପରି ସାମୟିକ ଭାବରେ କବିଙ୍କୁ ପ୍ରଭାବିତ କରିଥିଲା ।

ନେପଲସ୍ ପହଞ୍ଚିବା ମାତ୍ରେ ସେଠାକାର ପ୍ରମୁଖ ରାଜକର୍ମଚାରୀମାନେ ମୁସୋଲିନିଙ୍କର ଏକ ସ୍ୱାଗତ ବାର୍ତ୍ତା ସହିତ କବିଙ୍କୁ ପାଛୋଟି ନେଇଥିଲେ । ସାତ ଜୁନ୍‌ରେ ରୋମର ରାଜ୍ୟପାଳ ତାଙ୍କ ରାଜଧାନୀରେ ଏକ ଜନସମାରୋହରେ କବିଙ୍କୁ ଚିରନ୍ତନ ନଗରୀ ପକ୍ଷରୁ ସମ୍ବର୍ଦ୍ଧନା ଜ୍ଞାପନ କରିଥିଲେ । ତା’ପର ଦିନ କବି ‘ଦି ମିନିଙ୍ଗ ଅଫ୍ ଆର୍ଟ’ ବିଷୟରେ ପ୍ରଥମ ସାଧାରଣ ବକ୍ତୃତା ଦେଇଥିଲେ । ଏଥିରେ ଶ୍ରୋତାମାନଙ୍କ ଭିତରେ ଉପସ୍ଥିତ ଥିଲେ ସ୍ୱୟଂ ମୁସୋଲିନି । ତା ପରେ କବି ରାଜା ତୃତୀୟ ଭିକ୍ଟର ଇମାନୁୟେଲଙ୍କ ଦ୍ୱାରା ଅଭିନନ୍ଦିତ ହୋଇଥିଲେ ଓ ନିଜର ‘ଚିତ୍ରା’ ନାଟକର ଇଟାଲୀୟ ଅଭିନୟ ଦେଖିଥିଲେ । କିନ୍ତୁ ରାଜା ଆଉ ଡିଉକ୍‌ଙ୍କୁ ଭେଟିବାଠାରୁ ଦାର୍ଶନିକ ବେନେଡେଟ୍ କ୍ରୋଚେଙ୍କ ସହିତ ସାକ୍ଷାତ କବିଙ୍କ ପାଇଁ ଅଧିକ ମାର୍ମିକ ଥିଲା । କ୍ରୋଚେ ସେତେବେଳେ ନେପଲ୍‌ସରେ ବାସ କରୁଥିଲେ । କେତେଜଣ ବଂଧୁ ତାଙ୍କୁ ରୋମ ନେଇ ଆସିବାରୁ ଏ ଉଭୟଙ୍କର ସେଠି ମିଳନ ହୋଇଥିଲା ।

ଯେତେବେଳେ ଇଟାଲିରେ ତାଙ୍କର ଭ୍ରମଣକୁ ପ୍ରାୟତଃ ରାଜକୀୟ ଭ୍ରମଣ ଭାବରେ ତାଙ୍କୁ ସମ୍ବର୍ଦ୍ଧିତ କରାଯାଉଥିଲା; ସେତେବେଳେ ସେ ଜାଣିପାରି ନଥିଲେ ଯେ ତାଙ୍କ ବକ୍ତୃତା ଓ ସାକ୍ଷାତକାରକୁ ବିକୃତିକରି ଫାସିଷ୍ଟ ଶାସନକୁ ପ୍ରୋତ୍ସାହିତ କରିବା ପାଇଁ ଇଟାଲୀୟ ଖବର କାଗଜରେ ପ୍ରକାଶ କରାଯାଉଥିଲା । କିନ୍ତୁ ସେ ଭିଲେନେଉରେ କିଛି ଦିନ ବିଶ୍ରାମ ନେବା ପାଇଁ

ସୁଇଜରଲ୍ୟାଣ୍ଡ ଯାଇ ପହଞ୍ଚି, ସେ ରୋମାରୋଲାଁଙ୍କଠାରୁ ଶୁଣିଲେ ଯେ କିପରି ଇଟାଲୀୟ ପ୍ରଚାରକଳ ତାଙ୍କୁ ପ୍ରତାରିତ କରିଛି ଓ ତାଙ୍କର କଥାକୁ ବିକୃତଭାବେ ପରିବର୍ତ୍ତନ କରି ନିଜର ସ୍ୱାର୍ଥ ସାଧନରେ ଲଗାଇଛି । ସେତେବେଳେ କବି ମୋହମୁକ୍ତ ହେଲେ ଓ ଯାହା ଶୁଣୁଛନ୍ତି ଆଉ ଯାହା ଦେଖି ଆସିଲେ ତାହା ଭିତରେ ତୁଳନା କରି ମନରେ ଦୁଃଖ ପାଇଲେ ପରେ ଜୁରିଚ୍‌ରେ ସେ ସିଗ୍‌ନୋରା ସାଲାଭାଡୋରୀଙ୍କୁ ଭେଟିଲେ, ଯିଏ ତାଙ୍କୁ ଫାସିଷ୍ଟମାନଙ୍କର ନୃଶଂସତା ଦ୍ୱାରା ଅଙ୍ଗେ ନିଭେଇଥିବା କରୁଣ କାହାଣୀ ଶୁଣାଇଲେ । ଭିଏନାରେ ମୋଡିଗ୍ଲିଆନି ମଧ୍ୟ ତାହାକୁ ସମର୍ଥନ କରିଥିଲେ । ଏହି ସବୁ ଘଟଣାରେ ଦାରୁଣ ଦୁଃଖ ପାଇ କବି ନିଜର ଇଟାଲୀ ଭ୍ରମଣ ବର୍ଣ୍ଣନା ଓ ଫାସିବାଦର ଦୃଢ଼ ପ୍ରତିବାଦ କରି 'ମଞ୍ଚେଷ୍ଟର ଗାର୍ଡିଆନ୍' କୁ ଚିଠିଟିଏ ଲେଖିଲେ । ଇଟାଲୀୟ ସଂବାଦ ପତ୍ରରେ, ଏହା ଦ୍ୱାରା ତାଙ୍କର ସ୍ୱରୂପ ସ୍ପଷ୍ଟ ହୋଇଗଲା ଓ ଏଥିପାଇଁ ତାଙ୍କୁ ବହୁତ ନିନ୍ଦା ଶୁଣିବାକୁ ପଡିଥିଲା ।

ଏଇ ସବୁ ଘଟଣାରେ କ୍ଷୁବ୍ଧ ଓ ଅପମାନିତ ହୋଇ କବି ଏଲମହାର୍ଷ୍ଟଙ୍କ ପାଖକୁ ଗୋଟିଏ ଚିଠିରେ ଲେଖିଛନ୍ତି, ''କୌଣସି ଭାବରେ ମୁଁ ଏପରି କେତେକ କଥାରେ ଅନିଚ୍ଛାକୃତ ଭାବରେ ସଂପୃକ୍ତ ହୋଇଗଲି ଯାହାଠାରୁ ଦୂରେଇ ରହିବା ଉଚିତ ଥିଲା ଏବଂ ମୁଁ ଦୁଃଖିତ ହେଉଛି ଯେ ମୁଁ ଏଇ ଶେଷଥର ପାଇଁ ଇଟାଲୀ ଭ୍ରମଣରେ ଆସିଥିଲି ।'' ତା ପରେ ନିଜର ହାଲୁକା ମନର ହାସ୍ୟରସିକତା ଦେଖାଇ ସେ ପୁଣି ଲେଖିଛନ୍ତି ''ଆପଣଙ୍କ ପାଖରେ ଯଦି ବ୍ୟୋମଯାନ ଥାଏ ମତେ ତାହା ଧାର ଦେଇ ପାରିବେ କି ? ଯଥାଶୀଘ୍ର ମୁଁ ଉତ୍ତରାୟଣକୁ (ଶାନ୍ତିନିକେତନରେ ତାଙ୍କ ବାସଭବନର ନାଁ) ଫେରିଯିବାକୁ ଚାହୁଁଛି । ଆଷାଢ଼ର ଘନ ବାଦଲ ଏବେ ଆମ ଆଶ୍ରମର ଚତୁର୍ଦ୍ଦିଗରେ ଘେରିରହି ଖୋଜୁଥିବେ ତାଙ୍କ କବି କୁଆଡେ ଯାଇଛନ୍ତି ଯିଏ ନିଜ ସଙ୍ଗୀତର ସୁରରେ ସ୍ୱାଗତ କରିଥାନ୍ତେ ମେଘମାଳାକୁ ଆଉ ମେଘ ସୃଷ୍ଟି କରି ଚାଲନ୍ତା ବର୍ଷାର ସଙ୍ଗୀତ ।''

କିନ୍ତୁ ସେଇ ସମୟରେ 'ବର୍ଷା ସଙ୍ଗୀତ' ଠାରୁ ମାନବିକ ପ୍ରଶଂସାର ସଙ୍ଗୀତ ନିଶ୍ଚୟ କବିଙ୍କୁ ବେଶୀ ମଧୁର ଲାଗୁଥିଲା । କବି ୟୁରୋପରେ ନିଜର ରହଣି ଆଉ ପାଞ୍ଚମାସ ବଢ଼ାଇ ଦେଲେ । ଜର୍ମାନୀ ଭ୍ରମଣ ବହୁତ ବ୍ୟସ୍ତବହୁଳ ଥିଲା । ସବୁଠି ତାଙ୍କର ବିପୁଳ ସମ୍ବର୍ଦ୍ଧନା ଆୟୋଜିତ ହୋଇଥିଲା । ରାଷ୍ଟ୍ରପତି ହିଡେନ୍‌ବର୍ଗ ମଧ୍ୟ ତାଙ୍କୁ ସ୍ୱାଗତ କରିଥିଲେ । ବୈଜ୍ଞାନିକ ଆଇନଷ୍ଟାଇନ୍‌ଙ୍କ ସହିତ କବିଙ୍କର ବନ୍ଧୁତା ଏଇଠାରୁ ଆରମ୍ଭ । ଗୋଟିଏ ସପ୍ତାହ ପ୍ରେଗ୍‌ରେ ରହିଥିଲେ । ସେଠି ତାଙ୍କର 'ଡାକଘର' ନାଟକର ଚେକ୍‌ଭାଷାନ୍ତର ଅଭିନୀତ ହୋଇଥିଲା । ତା ପରେ ଭିଏନା ବାଟେ ସେ ବୁଦାପେଷ୍ଟ ଗଲେ । ସେଠାରେ ବାଲାଟନ୍ ହ୍ରଦକୂଳରେ ଏକ ସ୍ୱାସ୍ଥ୍ୟ ନିବାସରେ କିଛି ଦିନ ରହିଥିଲେ । ଦୀର୍ଘ କ୍ଲାନ୍ତିକର ଭ୍ରମଣରେ ତାଙ୍କର ସ୍ୱାସ୍ଥ୍ୟ ଭାଙ୍ଗି ପଡିଥିଲା । ସେଇ ସ୍ୱାସ୍ଥ୍ୟନିବାସ ପାଖ ଉଦ୍ୟାନରେ ସେ ଯେଉଁ ଲେମ୍ବୁ ଜାତୀୟ ବୃକ୍ଷ ଚାରାଟି ରୋପଣ କରିଥିଲେ ତାହା ଏବେ ବି ତାଙ୍କ ଭ୍ରମଣର ସ୍ମୃତିସ୍ତମ୍ଭ ପରି ଠିଆ ହୋଇଛି । ସେଠାରେ କବି ବେଶୀଦିନ ରହିପାରି ନଥିଲେ । ପୁଣି ଯାତ୍ରା ଚାଲୁକରିଥିଲେ ।

ବେଲ୍‌ଗ୍ରେଡ୍, ସୋଫିଆ ଓ ବୁଚାରେଷ୍ଟରେ ସମ୍ବର୍ଦ୍ଧନା ସଭାରେ ବକ୍ତୃତା ଦେଇ ସେ ଏଥେନ୍‌ସ୍‌ରେ ଯାଇପହଞ୍ଚିଲେ । ସେଠି ଗ୍ରୀକ୍ ସରକାର ତାଙ୍କୁ Order of Redeemer ଉପାଧିରେ ଭୂଷିତ କଲେ । ତା ପରେ ସେ ଗଲେ କାଇରୋ । ସେତେବେଳେ ଚାଲୁ ରହିଥିବା ଇଜିପ୍‌ଟର ପାର୍ଲାମେଣ୍ଟ ଅଧିବେଶନ କବିଙ୍କ ସମ୍ମାନାର୍ଥେ ସ୍ଥଗିତ ରଖାଯାଇଥିଲା । ରାଜା ଫଏଦ୍

କବିଙ୍କୁ ବିଶ୍ୱଭାରତୀ ଗ୍ରନ୍ଥାଗାର ପାଇଁ ଅନେକ ଆରବି ଗ୍ରନ୍ଥ ଉପହାର ଦେଇଥିଲେ । ଡିସେମ୍ବରରେ କବି ସ୍ୱଦେଶକୁ ଫେରିଲେ ।

ଏଇ ଦୀର୍ଘ ଓ ବ୍ୟସ୍ତ ବହୁଳ ଭ୍ରମଣର କ୍ଳାନ୍ତି ଓ ଭଗ୍ନସ୍ୱାସ୍ଥ୍ୟ ଘେନି ଫେରିବା ପରେ କବି ଯେ କିପରି ତାଙ୍କର ପ୍ରିୟ ଶାନ୍ତିନିକେତନରେ ଶାନ୍ତି ଓ ସୁଖକୁ ଉପଭୋଗ କରିବାକୁ ବ୍ୟାକୁଳ ହୋଇ ଉଠିଥିବେ ଏହା ସହଜରେ ଅନୁମେୟ । 'ପୂରବୀ' ସଂକଳନର 'ଆଶା' ନାମକ ଗୋଟିଏ ଖୁବ୍ ସୁନ୍ଦର କବିତାରେ ସେ ପ୍ରକାଶ କରିଛନ୍ତି ତାଙ୍କର ଅନ୍ତରର ଆଶାଟିକୁ ଏଇ ଯେ ''ଧରଣୀର ଗୋଟେ କୋଣରେ ରହିବ ଆପଣାମନେ ଗୋଟେ ଘର'', ଆଉ ସେଠି ''ଧନ ନୁହେଁ, ମାନ ନୁହେଁ ଥିବ ଟିକେ ପ୍ରେମ'' । କିନ୍ତୁ ଏକ ପକ୍ଷରେ ''ଅଳସ ମୁହୂର୍ତ୍ତର ଛାୟାତଳେ'' ତାଙ୍କର ପ୍ରତିଭାର ଗୋଟିଏ ଅଂଶ ବିକଶିତ ହେଉଥିବାବେଳେ ଅପର ପକ୍ଷରେ ଆଉ ଏକ ଅଂଶ ''ପରୋପକାରିତାର କଷ୍ଟାର୍ଜିତ ଉତୁଙ୍ଗ ପ୍ରାସାଦ'' ଆଡକୁ ତାଙ୍କୁ କ୍ରମାଗତ ଟାଣୁଥିଲା । ଶାନ୍ତି ଓ ଗୌରବ କ୍ୱଚିତ ମିଳିତ ହୋଇଥାନ୍ତି, ଯେତେବେଳେ ବା ଏ ଦୁହିଁଙ୍କର ମିଳନ ହୁଏ ସହସା ସେମାନେ ବିଛିନ୍ନ ହୁଅନ୍ତି ।

ଏଇ ସମୟରେ ତାଙ୍କର କାବ୍ୟିକ ଓ ସାଙ୍ଗିତିକ ରଚନା ନଟରାଜ ଚେତନାକୁ ଆଧାର କରି ଗଢ଼ିଉଠିଥିଲା । 'ନଟରାଜ ଚତୁରଙ୍ଗ ଶାଳା' ନାଁରେ ଗୋଟିଏ ଗୀତିନାଟ୍ୟରେ ନଟରାଜଙ୍କ ମହାଜାଗତିକ ନୃତ୍ୟର ଆବର୍ତ୍ତରେ ବିଶ୍ୱକୁ ଧାରଣ କରିଥିବା ତତ୍ତ୍ୱକୁ କବି ରୂପ ଦେଇଥିଲେ । ଫେବୃୟାରୀ ମାସରେ ଏହା ଶାନ୍ତିନିକେତନରେ ପ୍ରଯୋଜିତ ହୋଇଥିଲା । ମାର୍ଚ୍ଚମାସରେ ସେ ପୁଣି ଥରେ ପଶ୍ଚିମ ଭାରତ ଭ୍ରମଣରେ ଗଲେ ଓ ଏହି ସମୟରେ ଭରତପୁର ଠାରେ ଏକ 'ହିନ୍ଦୀ ସାହିତ୍ୟ ସମ୍ମିଳନୀ'ରେ ସଭାପତିତ୍ୱ କରିଥିଲେ ।

ଶିଲଂର ମନୋରମ ଶୈଳ ନିବାସରେ ସେ ଗ୍ରୀଷ୍ମଋତୁ କଟାଇଲେ । ସେଠି ରବୀନ୍ଦ୍ରନାଥ 'ତିନି ପୁରୁଷ' ଲେଖା ଆରମ୍ଭ କରିଥିଲେ । ଏହା କବିଙ୍କର ବୃହତ୍ତମ ଉପନ୍ୟାସ ହୋଇପାରି ଥାନ୍ତା । ବିପୁଳ ସମ୍ଭାବନା ଘେନି ଏଇ ଉପନ୍ୟାସଟିକୁ କବି ଆରମ୍ଭ କରିଥିଲେ । ଏହାର ନାମକରଣରୁ ହିଁ ତାହା ସୂଚିତ । କବି ଏହାକୁ ପାରମ୍ପରିକ କାହାଣୀ କହିବା ଭଙ୍ଗୀରେ ଅତି ଚମତ୍କାର ଭାବରେ ଆରମ୍ଭ କରିଥିଲେ । ଏଥିରେ କୃତ୍ରିମ କାରିଗରୀ ବା ଛଳନାପୂର୍ଣ୍ଣ ଜଟିଳ ବାଗାଡମ୍ବର ନ ଥିଲା । ନିଜ ଦେଶର ଜନ ସାଧାରଣଙ୍କର ଜଣେ ସଂବେଦନଶୀଳ ସମୀକ୍ଷକ, ଜଣେ ନିପୁଣ ଗଳ୍ପସାଗର ଓ ଜଣେ ସାମାଜିକ ମନସ୍ତତ୍ତ୍ୱବିତ୍‌ଙ୍କର ଲେଖକଙ୍କ ଭିତରେ ସମନ୍ୱୟ ଘଟିଥିଲା ଏଇ ଉପନ୍ୟାସକୁ ଏକ ଅନନ୍ୟ ସୃଷ୍ଟି ଭାବରେ ରଚନା କରିବାରେ । ତେଣୁ କେତେକ ସମାଲୋଚକଙ୍କ ମତରେ ଏହି ଉପନ୍ୟାସଟି ''ରବୀନ୍ଦ୍ରନାଥଙ୍କ ରଚିତ ସମସ୍ତ ଉପନ୍ୟାସ ଭିତରେ ସର୍ବାଧିକ ସନ୍ତୋଷ ଜନକ ।'' ଟଲଷ୍ଟୟ ବା ବାଲଜାକ୍‌ଙ୍କ ପରି ରବୀନ୍ଦ୍ରନାଥ ଗୋଟିଏ ନିର୍ଦ୍ଦିଷ୍ଟ ସୃଷ୍ଟି ଜଗତରେ ଦୀର୍ଘ ସମୟ ପାଇଁ ସ୍ଥିର ହୋଇ ରହି ପାରୁ ନଥଲେ । କବି, ଗାୟକ ଓ ଶିକ୍ଷକ ଏଇ ତିନି ସତ୍ତା ଏକତ୍ରିତ ହୋଇ ଔପନ୍ୟାସିକଙ୍କୁ ଗୋଟିଏ କଥାବସ୍ତୁ ବା ଗୋଟିଏ ଧରଣର ଚରିତ୍ର ସୃଷ୍ଟି ମଧ୍ୟରେ ଆବଦ୍ଧ ହୋଇ ରହିବାକୁ ଦେଉ ନଥିଲା । ଫଳରେ ଏହି ବିଶାଳ ଗାଥାକୁ ତିନିଖଣ୍ଡରେ ରଚନା କରିବାର ଯୋଜନା କରିଥିଲେ ମଧ୍ୟ ଗୋଟିଏ ପୁରୁଷର କାହାଣୀ ଲେଖି କବି ତାର ସମାପ୍ତି କରିଥିଲେ ଓ ଦୁଇବର୍ଷ ପରେ ଉପନ୍ୟାସଟି 'ଯୋଗାଯୋଗ' ବୋଲି ଏକ ଭିନ୍ନ ନାମରେ ପ୍ରକାଶିତ ହୋଇଥିଲା ।

ରବୀନ୍ଦ୍ରନାଥଙ୍କର ପ୍ରାୟ ସମସ୍ତ ଉପନ୍ୟାସ ଭାରତୀୟ ହିନ୍ଦୁ ସମାଜରେ ଘଟୁଥିବା

ଅନିବାର୍ଯ୍ୟ ଦ୍ୱନ୍ଦ୍ୱ ଓ ବୈପରୀତ୍ୟକୁ ଚିତ୍ରଣ କରିଛି । ଯଦିଓ ମୂଳତଃ ଏଥିରେ ସାମାଜିକ ଓ ସାଂସ୍କୃତିକ ଦ୍ୱନ୍ଦ୍ୱ ସର୍ବତ୍ର ଥିଲା । କିନ୍ତୁ ବିଭିନ୍ନ ଉପନ୍ୟାସରେ ଭିନ୍ନ ଭିନ୍ନ ଦିଗରୁ ଏହା ଚିତ୍ରିତ ହୋଇଥିଲା । 'ଗୋରା'ରେ ଏହା ଥିଲା ଧାର୍ମିକ ଓ ବୌଦ୍ଧିକ ସଂଘାତପୂର୍ଣ୍ଣ ଓ 'ଘରେ ବାଇରେ' ରେ ଏହା ଥିଲା ରାଜନୈତିକ । 'ଯୋଗାଯୋଗ' ଉପନ୍ୟାସରେ ଚିତ୍ରିତ ହୋଇଥିବା ଏକ ନୂତନ ଅର୍ଥନୈତିକ ଶ୍ରେଣୀ ପୁରାତନ ଅଭିଜାତ ଜମିଦାରୀ ଘରେ ସୃଷ୍ଟି କରୁଥିବା ମୂଲ୍ୟବୋଧର ଦ୍ୱନ୍ଦ୍ୱର କଥା କହେ । ସଂପତ୍ତି ହରାଇଥିଲେ ମଧ୍ୟ ଅହଂକାରକୁ ଜାବୁଡି ଧରିଥିବା ସେଇ ରକ୍ଷଣଶୀଳ ଜମିଦାର ନିଜକୁ ଜଣେ ମନେମନେ ସାହୁକାର ଭାବି ଅର୍ଥ ଦ୍ୱାରା ସବୁ କିଛି ଆୟତ୍ତ କରିହେବ ବୋଲି ଧାରଣା କରୁଛି । ତାର ସୁନ୍ଦରୀ ଓ ଶୁଶୀଳା କନ୍ୟା କୁମୁଦିନୀ ଲକ୍ଷପତି ମଧୁସୂଧନକୁ ବିବାହ କରିଛି । କ୍ରୁର, ଜାନ୍ତବ ଓ ଦାମ୍ଭିକ ଏଇ ମଧୁସୂଧନ ଚରିତ୍ରଟି ରବୀନ୍ଦ୍ରନାଥଙ୍କର କତିପୟ ଜୀବନ୍ତ ପୁରୁଷ ଚରିତ୍ର ଭିତରେ ଅନ୍ୟତମ । ନିଜ ଇଚ୍ଛାରେ କି ମଣିଷ କି ଯନ୍ତ୍ର' ସମସ୍ତଙ୍କୁ ଚଳାଇବାରେ ସେ ଅଭ୍ୟସ୍ତ । କୁମୁଦିନୀ ତା'ର ପତ୍ନୀ ହୋଇଥିବାରୁ ତାକୁ ସେ ସହଜରେ ନିଜର କରିପାରିବ ବୋଲି କଳ୍ପନା କରୁଥିଲା, କିନ୍ତୁ ପରେ ପରେ ସେ ବୁଝି ପାରିଛି ଯେ କେବଳ ତାର ଶରୀରକୁ ପାଉଛି ସିନା କିନ୍ତୁ ପ୍ରକୃତରେ ତାକୁ ପାଇ ନାହିଁ ।

ଉପନ୍ୟାସର ମନସ୍ତାତ୍ତ୍ୱିକ ଗୁରୁତ୍ୱ ସ୍ୱାମୀର ସ୍ତ୍ରୀପ୍ରତି ମନୋଭାବର କ୍ରମାନ୍ୱୟ ଓ ଅଜ୍ଞାତ ପରିବର୍ତ୍ତନ ଉପରେ ନିର୍ଭର କରିଛି । ପ୍ରଥମରୁ ଏ ଦୁହିଁଙ୍କର ଜାନ୍ତବ, ହିଂସ୍ର ଓ ଉଚ୍ଛୃଙ୍ଖଳ ସଂପର୍କ କ୍ରମଶଃ ଶାନ୍ତି ଓ ସ୍ନେହପୂର୍ଣ୍ଣ ହୋଇଉଠିଛି । କିନ୍ତୁ ଜୀବନର ଅନ୍ୟ କୌଣସି କ୍ଷେତ୍ରରେ ଏଇ କୋମଳ ଅନୁଭୂତି ନଥିବାରୁ ସ୍ୱାମୀ ତାହା ବୁଝି ପାରି ନାହିଁ । ଅନ୍ୟକୁ ନିର୍ଯ୍ୟାତନା ଦେଉଥିବା ସେ ଦାମ୍ଭିକ ଚରିତ୍ରଟି ନିଜ ଉପରୁ ଆତ୍ମବିଶ୍ୱାସ ହରାଇଲା ଓ ଯାହା ପାଖକୁ ତାର ହାତ ପାଉନଥିଲା ତାକୁ କିପରି ପାଇବ ବୁଝିପାରୁ ନଥିଲା । ରବୀନ୍ଦ୍ରନାଥଙ୍କର ଅନ୍ୟ କେତେକ ଉପନ୍ୟାସ ପରି ଏହାର ମଧ୍ୟ ଉପସଂହାର ଅତି ବୈଚିତ୍ର୍ୟହୀନ । ଏହାର କାରଣ ହୋଇପାରେ ଯେ ସେ ହଠାତ୍ ଅନ୍ୟ ଏକ ସୃଷ୍ଟି ପ୍ରେରଣାରେ ଚାଳିତ ହୋଇ ଉପନ୍ୟାସଟିର ଦୀର୍ଘ ବର୍ଣ୍ଣନା ପ୍ରତି କ୍ଳାନ୍ତ ହୋଇ ପଡୁଥିଲେ ଓ ତାହାକୁ ଯେପରି ହେଉ ଶେଷ କରିଦେବାକୁ ଚାହୁଁଥିଲେ କିମ୍ବା ତାଙ୍କ ମନରେ ଭାବାନ୍ତର ଆସୁଥିଲା ଓ ସେ ଭୟ କରୁଥିଲେ ଯେ କୌଣସି ଚରିତ୍ର ତାଙ୍କ ଆୟତ୍ତ ବାହାରକୁ ଚାଲିଯାଇ ଆପଣା ବାଟରେ ଲେଖକଙ୍କ ନୈତିକ ଓ ସାମାଜିକ ନିଷେଧାଜ୍ଞାକୁ ଲଂଘନ କରିଯିବ ।

ଏଇ ଭଳି ଉପନ୍ୟାସ ରଚନାର ସାମାନ୍ୟ ସଫଳତା ଭିତରେ ମଧ୍ୟ ସେ ଅଧ୍ୟାତ୍ମିକ ଶୂନ୍ୟତା ଅନୁଭବ କରୁଥିଲେ । କିନ୍ତୁ ତା ଠାରୁ ବେଶି ଉଦବିଗ୍ନ ହୋଇପଡୁଥିଲେ କୌଣସି ଅଭିନବ ଅନୁଭୂତି ଆହରଣ କରିବା ପାଇଁ । ସ୍ରଷ୍ଟା ଅପେକ୍ଷା ପ୍ରଚାରକର ଉତ୍ସାହ ପୁଣି ତାଙ୍କ ଭିତରେ ବଳବତ୍ତର ହୋଇ ଉଠିଲା ଓ ଜୁଲାଇ 1927 ରେ ସେ ନବମ ଥର ପାଇଁ ବିଦେଶ ଭ୍ରମଣରେ ବାହାରିଲେ । ଏଇଥର ସେ ଗଲେ ଦକ୍ଷିଣପୂର୍ବ ଏସିଆର ପଡୋଶୀ ଦେଶମାନଙ୍କୁ । ସିଙ୍ଗାପୁର, ମାଲାକ୍କା, କୋଆଲାଲାମପୁର, ଇପୋ, ଟାଇପିଂ ଓ ପେନାଙ୍ଗରେ ବହୁ ଜନସମାବେଶରେ ସମ୍ବର୍ଦ୍ଧନା ଗ୍ରହଣ କରି ସେ ଇଣ୍ଡୋନେସିଆ ଅଭିମୁଖେ ଯାତ୍ରାକଲେ । ଜାହାଜରେ ଗଲାବେଳେ ଜାଭା ଉପରେ ରଚନା କରିଥିବା ଏକ ଦୀର୍ଘ କବିତାର ଇଂରାଜୀ ଭାଷାନ୍ତର ଜାକର୍ତ୍ତାଠାରେ ତାଙ୍କ ସମ୍ମାନାର୍ଥେ ଦିଆଯାଇଥିବା ଭୋଜି ସଭାରେ ସେ ପାଠ କରିଥିଲେ । ଜାଭାରେ ଅନ୍ୟମାନଙ୍କ ମଧ୍ୟରେ ସ୍ୱର୍ଗତ ରାଷ୍ଟ୍ରପତି ସୁକର୍ଣ୍ଣଙ୍କ ସହିତ ତାଙ୍କର ସାକ୍ଷାତ ହୋଇଥିଲା । ସୁକର୍ଣ୍ଣ ଥିଲେ ସେତେବେଳେ କମ୍

ଖ୍ୟାତ ଜଣେ ବିପ୍ଲବୀ ତରୁଣ । ଜାଭା ଓ ବାଲିର ନୃତ୍ୟ ନାଟିକା, କଳା ସଂସ୍କୃତି ଓ ଆମ ଦେଶ ସହିତ ସେ ସବୁର ଘନିଷ୍ଠ ସଂପର୍କ କବିଙ୍କୁ ମୁଗ୍ଧ କରିଥିଲା । ଆମ ଦେଶ ଓ ସେମାନଙ୍କ ଭିତରେ ରହିଥିବା ସାଂସ୍କୃତିକ ଯୋଗ ଯାହା ଦୀର୍ଘଦିନର ବ୍ୟବଧାନରେ ଶିଥିଳ ହୋଇ ପଡ଼ିଥିଲା କବିଙ୍କ ଏଇ ଭ୍ରମଣ ତାହାକୁ ପୁନର୍ଜୀବିତ କରିବାରେ ସମର୍ଥ ହେଲା । ତା ପରେ ବହୁ ଇଣ୍ଡୋନେସୀୟ ଛାତ୍ର ବିଶ୍ୱଭାରତୀ ପ୍ରତି ଆକର୍ଷିତ ହୋଇ ଆସିଲେ ଓ ଶାନ୍ତିନିକେତନରେ ପ୍ରଥମେ ଇଣ୍ଡୋନେସୀୟ ବାଟିକ୍ ଡ଼ିଜାଇନ ଓ ରଂଗ କରିବାର ପ୍ରଣାଳୀ ଆରମ୍ଭ ହୋଇ ପରେ ଦେଶର ବିଭିନ୍ନ ସ୍ଥାନକୁ ବ୍ୟାପିଲା । ତା ପରେ କବି ଥାଇଲାଣ୍ଡରେ ଅଳ୍ପ କିଛି ଦିନ ବ୍ୟାଙ୍କକ୍ ବିଶ୍ୱବିଦ୍ୟାଳୟରେ ଶିକ୍ଷା ସଂପର୍କରେ ଏକ ବକ୍ତୃତା ପ୍ରଦାନ କଲାପରେ ଡିସେମ୍ବର ମାସରେ ଭାରତ ଫେରି ଶାନ୍ତିନିକେତନର ବାର୍ଷିକ ଉତ୍ସବରେ ପୌରହିତ୍ୟ କରିଥିଲେ ।

ଅକସଫୋର୍ଡ ବିଶ୍ୱବିଦ୍ୟାଳୟର ନିମନ୍ତ୍ରଣ କ୍ରମେ ହେର୍‌ବର୍ଟ ବକ୍ତୃତା ଦେବା ପାଇଁ କବି ପୁଣିଥରେ ବିଦେଶ ଯାତ୍ରାରେ ବାହାରିଲେ । କିନ୍ତୁ ମାଡ୍ରାସ୍‌ରେ ପହଞ୍ଚି ହଠାତ୍ ଅସୁସ୍ଥ ହୋଇ ପଡିବାରୁ ଯାତ୍ରା ସ୍ଥଗିତ ରହିଲା । ଆଦ୍ୟାର୍‌ରେ ଆନିବେସାନ୍ତଙ୍କର ଅତିଥିଭାବେ ଗୋଟିଏ ସପ୍ତାହ କଟାଇ ସେ କୁନୁର୍‌ରେ କିଛି ଦିନ ରହି ସିଂହଳ ଯାତ୍ରା କଲେ । ମନରେ ଆଶା ଥିଲା ପୁଣି ଜଳଯାତ୍ରା ସହିତ ନିଜ ଶରୀରକୁ ଅଭ୍ୟସ୍ତ କରାଇ ସେଠାରୁ ୟୁରୋପ୍ ଯିବାକୁ ସମର୍ଥ ହେବେ । ବାଟରେ ଶ୍ରୀଅରବିନ୍ଦଙ୍କୁ ଦେଖିବା ପାଇଁ ସେ ପଣ୍ଡିଚେରୀରେ ଅଟକିଲେ । ଶ୍ରୀ ଅରବିନ୍ଦ ଜଣେ ତରୁଣ ବିପ୍ଲବୀ କ୍ରାନ୍ତିକାରୀ ଥିଲାବେଳେ କବି ତାଙ୍କୁ ଜାଣିଥିଲେ । ପୁଣି ସେଠାରୁ ଜଳଯାତ୍ରା ଆରମ୍ଭ କଲାପରେ କବି ନିଜର ମନୋଭାବକୁ ଏକ କବିତାରେ ପ୍ରକାଶ କରିଛନ୍ତି ''ବହୁ ବର୍ଷ ପୁର୍ବେ, ଅରବିନ୍ଦଙ୍କୁ ଦେଖିଥିଲି ରାଜନୈତିକ ବିପ୍ଳବୀବୀର ଭାବେ ଓ କହିଥିଲି ଅରବିନ୍ଦ, ରବୀନ୍ଦ୍ରଙ୍କ ନମସ୍କାର ନିଅ । ଆଜି ପୁଣି ତାଙ୍କୁ ଦେଖିଲି ପ୍ରଶାନ୍ତ ପ୍ରଜ୍ଞାରେ ଉପବେଶନରେ, ନିରବରେ ପୁନରାବୃତ୍ତି କଲି, ଅରବିନ୍ଦ ରବୀନ୍ଦ୍ରଙ୍କ ନମସ୍କାର ନିଅ ।''

କଲମ୍ବୋରେ ସେ ଦଶଦିନ ରହିବା ପରେ ବି ଶରୀର ବିଶେଷ ଭଲ ନ ହେବାରୁ ଇଂଲଣ୍ଡ ଯିବା ଆଶା ଛାଡି ଦେଇ ପୁଣି ଭାରତ ଫେରି ଆସି ବାଙ୍ଗାଲୋରରେ ତାଙ୍କର ପୁରାତନ ବଂଧୁ ସେତେବେଳେ ମହୀଶୂର ବିଶ୍ୱବିଦ୍ୟାଳୟର କୁଳପତି ଦାର୍ଶନିକ ସାର୍ ବ୍ରଜେନ୍ଦ୍ରନାଥ ସିଲଙ୍କର ଅତିଥି ହୋଇ ତିନି ସପ୍ତାହ ରହିଲେ । ସମୁଦ୍ର ଯାତ୍ରା ଛାଡିବା ପରେ ଆଉ କ୍ଳାନ୍ତି ଓ ଅବସନ୍ନ ଭାବ ରହିଲା ନାହିଁ । ପୂର୍ବର ଶକ୍ତି ଓ ସୃଷ୍ଟିଶୀଳତା ଫେରିପାଇଲେ କବି । ବାଙ୍ଗାଲୋରରେ ଅଳ୍ପଦିନ ରହିବା ଭିତରେ କବି 'ଯୋଗାଯୋଗ' ଉପନ୍ୟାସଟି ଶେଷ କଲେ ଓ କିଛି ଦିନ ପୂର୍ବେ କଲମ୍ବୋ ଯିବା ପଥରେ ଆରମ୍ଭ କରିଥିବା ଆଉ ଏକ ଉପନ୍ୟାସ 'ଶେଷେର କବିତା' ମଧ୍ୟ ଶେଷ କରିଥିଲେ ।

ପ୍ରାୟ କବିତା ଶୈଳୀରେ ଲେଖା ଏଇ ଉପନ୍ୟାସଟି ବଙ୍ଗଳା ପାଠକଙ୍କର ଅତିପ୍ରିୟ ଓ ନିଜସ୍ୱ ଧାରାରେ ଅନନ୍ୟ । ଏହାର ଆଧୁନିକ ପୃଷ୍ଠଭୂମି, କୌତୁକପ୍ରଦ ପରିହାସ ପୂର୍ଣ୍ଣ ଭାଷା, ଅଭିନବ ଶୈଳୀ, ନିଜ. ରଚିତ୍ର ମୁହଁରେ ନିଜକୁ ଉପହାସର ପାତ୍ର ଭାବରେ ବର୍ଣ୍ଣନା କରି କଠୋର ସମାଲୋଚିତ ହେବାର ନୂତନ କୌଶଳ ପ୍ରୟୋଗ, ସଂଳାପରେ ପ୍ରତ୍ୟୁତ୍ପନ୍ନମତିତାର ପରିଚୟ ଓ ପରିଶେଷରେ ଏକ ମାର୍ମିକ କବିତାରେ ପ୍ରକାଶିତ ବିୟୋଗାନ୍ତ ସ୍ୱର, ଯାହାକୁ ନେଇ ଉପନ୍ୟାସଟି ନାମିତ ହୋଇଛି- ଏସବୁ ଉପନ୍ୟାସଟିକୁ ତରୁଣ ପାଠକଙ୍କ ପାଖରେ ତତ୍‌କ୍ଷଣାତ୍ ଅତି ପ୍ରିୟ କରାଇପାରିଥିଲା । ବଙ୍ଗ ସାହିତ୍ୟର ବିଶିଷ୍ଟ ସମାଲୋଚକମାନେ ଏହି କ୍ଷୁଦ୍ର ଉପନ୍ୟାସଟିର

ପ୍ରଶଂସାରେ ମୁଖର ହୋଇଉଠିଥିଲେ । ପ୍ରଫେସର ଶ୍ରୀକୁମାର ବନ୍ଦ୍ୟୋପାଧ୍ୟାୟ କହିଛନ୍ତି; ''ଶେଷେର କବିତା' ଉପନ୍ୟାସଟି ଯେଉଁଭଳି କାବ୍ୟିକ ଶୈଳୀ ଓ ବିଶୁଦ୍ଧ କାବ୍ୟିକ ନିର୍ଯ୍ୟାସ ଘେନି ରଚିତ ବିଶ୍ୱ ସାହିତ୍ୟର ଇତିହାସରେ ବୋଧେ ତାହା ଦୁର୍ଲଭ ।'' ଡଃ ସୁକୁମାର ସେନ୍‌ଙ୍କ ମତରେ ''ଏହାର ପ୍ରେମ କାହାଣୀ ସତେ ଯେପରି କି ସବୁ ପ୍ରେମ କାହାଣୀକୁ ଶେଷ କରିଦେବା ପାଇଁ ରଚିତ ହୋଇଛି ।'' ଆହୁରି ଉଲ୍ଲେଖନୀୟ କଥା ହେଲା ଯେ ଲେଖକ ଏହି ଉପନ୍ୟାସଟି ଅନ୍ୟ ଏକ ଉପନ୍ୟାସ 'ଯୋଗାଯୋଗ' ପ୍ରାୟ ଏକା ସମୟରେ ଶେଷ କରିଥିଲେ ମଧ୍ୟ ଏ ଦୁଇଟିର ବିଷୟ ବସ୍ତୁ, ଶୈଳୀ, ବର୍ଣ୍ଣନା, ପ୍ରକାଶଭଙ୍ଗୀ, ଆବେଦନ ଓ ଭାଷା ସଂପୂର୍ଣ୍ଣ ଭିନ୍ନ ।

ଏହାର ନାୟକ ଦ୍ୱିତୀୟ ଦଶନ୍ଧିର ଅତ୍ୟାଧୁନିକ ଜଣେ ବଙ୍ଗାଳୀ ବୁଦ୍ଧିଜୀବୀ । ଅକସ୍‌ଫୋର୍ଡରେ ଶିକ୍ଷାଲାଭ କେବଳ ତା ଭିତରେ ଏକ ଆତ୍ମଶ୍ଳାଘା ଆଣିଦେଇ ନଥିଲା ସଯତ୍ନ-ବର୍ଦ୍ଧିତ ସ୍ୱାଭିମାନ ମଧ୍ୟ ତା ଠି ଭରି ରହିଥିଲା । ଫଳରେ ସବୁ ପ୍ରତିଷ୍ଠିତ ମତ ଓ ପ୍ରଚଳିତ ପରଂପରା ବିରୁଦ୍ଧରେ ତା ମନରେ ଏକ ଇଚ୍ଛାକୃତ ପ୍ରତିକୂଳତା ସୃଷ୍ଟି ହେଉଥିଲା । ସେ ଯାହାହେଉ, ଘଟଣାକ୍ରମେ ଆଧୁନିକ ଶିକ୍ଷାର ଭିନ୍ନ ଏକ ଅବଦାନ ଜଣେ ବିଚକ୍ଷଣ ବୁଦ୍ଧିମତୀ ଝିଅ ସହିତ ତାର ଦେଖା ସାକ୍ଷାତ ଓ ପ୍ରେମ ହେବାପରେ ତା'ର ଆତ୍ମମ୍ଭରିତାକୁ ଧକ୍‌କା ଲାଗିଥିଲା । ଝିଅଟିର ଗଭୀର ଅନୁଭୂତି ଓ ସୂକ୍ଷ୍ମ ଅବବୋଧ ଥିଲା । ଏହି ଅନୁଭୂତି ନାୟକ ଜୀବନରେ ଏତେଦୂର ଭିନ୍ନ ଥିଲା ଯେ ତାହା ଏକ ଧକ୍‌କା ପରି ଲାଗିଲା ଓ ତା' ଅନ୍ତରରେ ଥିବା ନିଷ୍ଠାପରତାକୁ ପ୍ରକାଶ କରାଇଲା । କାଳକ୍ରମେ ତା ଭିତରେ ଏକ ରୋମାଣ୍ଟିକ୍ ଭାବ ଦେଖାଦେଲା । ଏଇ ଦ୍ୱନ୍ଦ୍ୱ ତାକୁ ଏପରି ଗୋଟିଏ କରୁଣ ଚରିତ୍ରରେ ରୂପାନ୍ତରିତ କଲା ଯେ ତା ସ୍ୱଭାବବିରୁଦ୍ଧ କାର୍ଯ୍ୟ ସେ କରିଲା । ପୂର୍ବରୁ ନାସ୍ତିକ ଥିବା ଏଇ ଲୋକଟି ହଠାତ୍ ପୂଜକ ପାଲଟିଗଲା । ସେ ଏପରି ବଦଳି ଗଲା ଯେ ଝିଅଟି ଭାବିଲା ତାକୁ ନୁହେଁ ତା'ର ଏକ ଆଦର୍ଶ ପ୍ରତିମା ମନରେ ଗଢ଼ି ସେ ତାକୁ ଭଲ ପାଉଛି ଯାହା ସହିତ ତା'ର କୌଣସି ସଂପର୍କ ନାହିଁ । ଦୁଃଖମୟ ଭବିଷ୍ୟତକୁ ଆଶଂକା କରି ପ୍ରେମିକକୁ ତାର ବିଶ୍ୱାସର ଜଗତରୁ ମୁକ୍ତି ଦେଇ ଝିଅଟି ତା' ଠାରୁ ଦୂରେଇ ଗଲା । ଉପନ୍ୟାସର ପରିସମାପ୍ତିରେ ପ୍ରେମିକଠାରୁ ବିଦାୟ ନେବା ବେଳେ ଯେଉଁ କବିତାଟି ରଚିତ ସେଥିରେ ତା ହୃଦୟର ଗଭୀର ଓ ମାର୍ମିକ ଅନୁଭବ ପ୍ରକାଶିତ । ନିମ୍ନରେ କବିତାଟିର ଗୋଟିଏ ପଂକ୍ତିରେ ସେଇ ଭାବଗାମ୍ଭୀର୍ଯ୍ୟକୁ ଲକ୍ଷ୍ୟ କରାଯାଇ ପାରିବ ।

ତୁମର ହୋଇନି କିଛି କ୍ଷତି
ମର୍ତ୍ତ୍ୟର ମୃତ୍ତିକା ମୋର, ତାହା ଦେଇ ଅମୃତ ମୂରତି
ଯଦି ସୃଷ୍ଟି କରିଥାଅ, ତାହାରି ଆରତି
ହେଉତବ ସଂଧ୍ୟା ବେଳା
ପୂଜାର ସେ ଖେଳା
ବ୍ୟାଘାତ ନ ପାଉ ମୋର ପ୍ରତ୍ୟହର ମ୍ଳାନ ସ୍ପର୍ଶ ଲାଗି
ତୃଷାର୍ତ୍ତ ଆବେଗେ ଜାଗି
ଭ୍ରଷ୍ଟ ହେବନାହିଁ ତାର କେଉଁ ଫୁଲ ନୈବେଦ୍ୟର ଥାଳେ ।
ତୁମର ମାନସ ପାତ୍ର ସାଜିଲା ସମ୍ଭାରେ
ଯେ ଭାବ ରସର ପାତ୍ର ବାଣୀର ତୃଷାରେ

ତା ସଙ୍ଗେ ଦେବିନି ମିଶାଇ
ଯା ମୋର ଧୂଳିର ଧନ, ଆଖି ଜଳେ ଧୁଏ ଯାହା ମୁହିଁ
ତୁମକୁ ଯା ଦେଇଥିଲି ତା'ର
ପାଇଛ ନିଃଶେଷ ଅଧିକାର ।
ଏଥି ମୋର ତିଳେ ତିଳେ ଦାନ,
କରୁଣ ମୁହୂର୍ତ୍ତରାଜି ଗୂଣ୍ଡଷ ଭରି କରେ ପାନ ।
ହୃଦୟ-ଅଂଜଳି ତଳୁ ମମ
ଆଗୋ, ତୁମେ ନିରୂପମ,
ହେ ଐଶ୍ୱର୍ଯ୍ୟବାନ, ତୁମକୁ ଯା ଦେଇଥିଲି ସେ ତୁମର ଦାନ,
ଗ୍ରହଣ କରିଛ ଯେତେ ଋଣୀ ସେତେ କରିଛି ହାୟ ହେ ବଂଧୁ ବିଦାୟ ।

ବୃଦ୍ଧ କବି ନିଜର କଳ୍ପନା ଭିତରେ ରୋମାଣ୍ଟିକ ତାରୁଣ୍ୟକୁ ପୁନର୍ଜୀବିତ କରୁଥିଲେ । ସୃଷ୍ଟିର ଇନ୍ଧନ ସବୁ ସରି ଆସୁଥିଲା । ସେଥିରୁ ପୁଣି ଅଗ୍ନି ସ୍ଫୁଲିଙ୍ଗ ଜାତ କରାଇବା ପାଇଁ କୃତ୍ରିମ ଉଦ୍ଦୀପନାର ଆୟୋଜନ କରୁଥିଲେ । ତାଙ୍କର ତରୁଣ ସମସାମୟିକ ମାନେ ଏଇ ସଦ୍ୟ ନୂତନ ଉପନ୍ୟାସଟି ପଢ଼ି ଅଭିଭୂତ ହୋଇ ଉଠିଥିଲେ ଓ କବିଙ୍କୁ କିଛି ନୂତନ ପ୍ରେମ କବିତା ମିଶାଇ ତାଙ୍କର ଏକ ପ୍ରେମ ଗୀତି ସଂକଳନ କରିବା ପାଇଁ ଅନୁରୋଧ କରିଥିଲେ । କବିଙ୍କର ଅଜସ୍ର ସୃଷ୍ଟିଶୀଳ ମନ ପାଇଁ ଏଇ ଅନୁପ୍ରେରଣା ଯଥେଷ୍ଟ ଥିଲା । ଥରେ ନିଜ ବିଷୟରେ ଲଘୁ ମନ୍ତବ୍ୟ ଦେଇ ସେ କହିଥିଲେ, ସେ ସତେ ଯେମିତିକି ଗୋଟିଏ ସ୍ୱୟଂ ଚାଳିତ ଯନ୍ତ୍ର ଯାହା କେବେଠାରେ ଚାଲିବାକୁ ଆରମ୍ଭ କରିଥିଲା ଯେ ଏବେ ବି ସେହିପରି ଚାଲିଛି । ତେଣୁ ସଂକଳନ କରିବା ପରିବର୍ତ୍ତେ ସେ ଆଉ ଗୋଟିଏ ନୂଆ କାବ୍ୟଗ୍ରନ୍ଥ ରଚନା କରିଥିଲେ । ତାହାର ଅଧିକାଂଶ କବିତା ଥିଲା ପ୍ରେମାଶ୍ରିତ ଓ ନାମକରଣ କରାଯାଇଥିଲା 'ମହୁଆ' । ମହୁଆ ନାମଟି ବସନ୍ତ ଋତୁରେ ଫୁଟୁଥିବା ଏକ କଡା ବାସ୍ନାର ମଦ୍ୟ ତିଆରି ହେଉଥିବା ଫୁଲର ନାମାନୁସାରେ କରାଯାଇଥିଲା । ନାମକରଣ ଏହାର ଯଥାର୍ଥ ହୋଇଥିଲା । ଏଥିରେ କେତେକ କବିତାରେ ପ୍ରକାଶ ପାଇଥିଲା ଆବେଗୋଷ୍ଣଭାବ, ଯାହା ଜୀବନର ବାସ୍ତବ ଅନୁଭୂତିର କାରୁଣ୍ୟରୁ ନୁହେଁ ବରଂ ଆବେଗପ୍ରବଣ ମୁହୂର୍ତ୍ତର କୃତ୍ରିମ ନିଶାତୁର ଭାବରୁ ଜନ୍ମ । ସଂପୂର୍ଣ୍ଣ କୃତ୍ରିମ ନ ହୋଇପାରେ ଯେଣୁ କବିଥିଲେ ଜଣେ ଚିରନ୍ତନ ପ୍ରେମିକ । ପ୍ରେମ ଭିତରେ ପ୍ରେମର ସନ୍ଧାନ ଓ ଏକ ନୈର୍ବ୍ୟକ୍ତିକ ପ୍ରେମ ହିଁ ତାଙ୍କ ଜୀବନର ପରମ ଲକ୍ଷ୍ୟ ଥିଲା ।

1928ର ବର୍ଷାଋତୁରେ କବି ଶାନ୍ତିନିକେତନ ଓ ଶ୍ରୀନିକେତନରେ ଯଥାକ୍ରମେ 'ବୃକ୍ଷରୋପଣ' ଓ 'ହଳକର୍ଷଣ' ନାମରେ ଦୁଇଟି ଋତୁପର୍ବ ପ୍ରଚଳନ ଆରମ୍ଭ କରିଲେ । ଗୀତ ନାଚ ଓ ବେଦମନ୍ତ୍ର ଉଚ୍ଚାରଣ ଭିତରେ ପ୍ରକୃତିର ବନ୍ଦନା ଓ ତା'ର ଶାଶ୍ୱତ ତାରୁଣ୍ୟର ଜୟଗାନ କରି ସରଳ ଅଥଚ କଳାତ୍ମକ ଭାବରେ ପାଳିତ ହେଉଥିବା ଏଇ ପର୍ବ ଦୁଇଟି ଆଖପାଖ ଅଧିବାସୀ ଓ କଲିକତାରୁ ଦର୍ଶକମାନଙ୍କୁ ଆକୃଷ୍ଟ କରିଥାଏ । ରବୀନ୍ଦ୍ରନାଥ ଥିଲେ ଅରଣ୍ୟର ଅନୁରାଗୀ । ପଲ୍ଲୀ ଅଞ୍ଚଳରେ ଅରଣ୍ୟନଷ୍ଟ କରିବାର ସେ ଘୋର ବିରୋଧୀ ଥିଲେ । ସେ ଏହି ଉତ୍ସବ ମାଧ୍ୟମରେ ବୃକ୍ଷକୁ ଭଲପାଇବାର ଲୋକପ୍ରିୟ ପରମ୍ପରା ପ୍ରତିଷ୍ଠା କଲେ । ସେଥିରେ ସେ ସମର୍ଥ ହେଲେ । ଶାନ୍ତିନିକେତନର ଏକଦା ଊଷର କର୍କଶ ଭୂଇଁ କାଳକ୍ରମେ ଏକ ଉଦ୍ୟାନ ଆବାସରେ ପରିଣତ

ହେଲା । ବୃକ୍ଷରୋପଣ ମଧ୍ୟ ପରବର୍ତ୍ତୀ ସମୟରେ କେନ୍ଦ୍ର ଓ ରାଜ୍ୟ ସରକାରମାନଙ୍କ ଦ୍ୱାରା ପ୍ରୋତ୍ସାହନ ଲାଭ କରି ଏକ ଜାତୀୟ କାର୍ଯ୍ୟକ୍ରମ ରୂପେ ଆଦୃତି ଲାଭ କଲା । ତାଙ୍କର ଗୋଟିଏ ବିଶେଷ ଗୁଣର କବିତା ଗ୍ରନ୍ଥର ନାମ 'ବନବାଣୀ' । ଏଥିରେ କବି ବୃକ୍ଷ, ଲତା, ଫଳ, ପୁଷ୍ପ ଓ ଋତୁ ଚକ୍ରର ଆବର୍ତ୍ତନ ସହିତ ଏ ସବୁର ସମ୍ପର୍କ ବିଷୟରେ ବହୁ ସୁନ୍ଦର କବିତା ରଚନା କରିଥିଲେ ।

1928 ଥିଲା କବିଙ୍କ ଜୀବନରେ ଆଉ ଗୋଟିଏ ସଫଳ ବର୍ଷ । ଏଇ ବର୍ଷ ଭ୍ରମଣରେ ନ ଯାଇ ନିଜ ଦେଶରେ ରହିବାକୁ ତାଙ୍କ ସ୍ୱାସ୍ଥ୍ୟ ତାଙ୍କୁ ବାଧ କରିଥିଲା । ଏତିକି ବେଳେ ରବୀନ୍ଦ୍ର ନାଥ ଏକ ସଂପୂର୍ଣ୍ଣ ନୂତନ ଓ ଅଦୃଷ୍ଟପୂର୍ବ ସୃଷ୍ଟିଶିଳ୍ପରେ ପ୍ରଥମେ ପରୀକ୍ଷା ଆରମ୍ଭ କରିଥିଲେ । ତାହା ଥିଲା ଚିତ୍ରଶିଳ୍ପ । ଚିତ୍ର କଳାର କ୍ଷେତ୍ର ପ୍ରତି ସେ ବହୁବାର ଆକର୍ଷିତ ହୋଇଥିଲେ, କେବେ କେବେ ଦୂରରୁ ତାହା ପ୍ରତି ମୋହମୁଗ୍ଧ ଦୃଷ୍ଟିରେ ଚାହିଁରହୁଥିଲେ । ତାଙ୍କର ବହୁମୁଖୀ ପ୍ରତିଭାଶାଳୀ ବଡଭାଇ ଜ୍ୟୋତିରୀନ୍ଦ୍ର ଚିତ୍ର ଆଙ୍କୁଥିବା ବେଳେ ତରୁଣ ରବୀନ୍ଦ୍ର ବିସ୍ମିତ ଓ ଆକାଙ୍‌କ୍ଷିତ ଭଙ୍ଗୀରେ ଚାହିଁ ରହୁଥିଲେ । ପୁଣି ପରବର୍ତ୍ତୀ ସମୟରେ ତାଙ୍କ ପୁତୁରା ଅବନୀନ୍ଦ୍ରନାଥ ଓ ଗଗନେନ୍ଦ୍ରନାଥ ଚିତ୍ର ଶିଳ୍ପ କ୍ଷେତ୍ରରେ ସେମାନଙ୍କର ସୃଷ୍ଟିଦକ୍ଷତାକୁ ନୂତନ ଭାବେ ଆବିଷ୍କାର କଲାବେଳେ ସେ ସେମାନଙ୍କୁ ପ୍ରୋତ୍ସାହନ ଦେଇଥିଲେ । ତାହା ଫଳରେ ଆଧୁନିକ ଭାରତୀୟ ଚିତ୍ରଶିଳ୍ପରେ ନବଜାଗରଣର ସୂତ୍ରପାତ ସମ୍ଭବ ହୋଇଥିଲା । 'ଆଧୁନିକ' ଶବ୍ଦର ଅର୍ଥାନ୍ତର ଘଟିବା ପରେ ଏହି ଶିଳ୍ପ ଆନ୍ଦୋଳନ 'ବେଙ୍ଗଲ ସ୍କୁଲ ଅଫ୍ ଇଣ୍ଡିଆନ୍ ପେଇଣ୍ଟିଂ' ଭାବରେ ପରିଚିତ ହେଲା । କିନ୍ତୁ ଏ ପର୍ଯ୍ୟନ୍ତ କବି ନିଜେ କେବେ ତୂଳୀଧରି ନଥିଲେ ।

ସେ ତୂଳୀ ଧରିନଥିଲେ ମଧ୍ୟ କବିତା ରଚନା ସମୟରେ ନିଜ ଲେଖନୀରେ ହୁବହୁ ଚିତ୍ର ଆଙ୍କିବାର ଦୃଷ୍ଟାନ୍ତ ରହିଛି । ନିଜର କବିତା ପାଣ୍ଡୁଲିପି ଭିତରେ ଏପରି ବହୁ କୌତୁହଳ -ପୂର୍ଣ୍ଣ ଚିତ୍ର କବି ମୁକ୍ତ ଭାବରେ ଆଙ୍କି ଚାଲୁଥିଲେ । ଏସବୁ ଚିତ୍ର ମୁଖ୍ୟତଃ ରେଖାଚିତ୍ର ଥିଲା । କବି କହୁଥିଲେ,: ''ଏ ଗୁଡିକ ମୋ ପାଣ୍ଡୁଲିପିରେ ସାମୟିକ ଭାବେ ଖିଆଲି ମନର ସୃଷ୍ଟି ।'' ରଚ଼ନା କଲାବେଳେ କିଛି ଅଂଶ ବାଦ ଦେବା ପାଇଁ ବା କାଟିବା ପାଇଁ ଆବଶ୍ୟକ ହେଲେ କେବଳ ଗାରଟିଏ ପକାଇ କାଟିଦେଇ ଛାଡି ଦେବାକୁ ବା ଲିଭେଇବାକୁ ସେ ଭଲ ପାଉନଥିଲେ । ବାଦ ଦେବା ଅଂଶ ଗୁଡିକ ତାଙ୍କୁ ନିଜର ଆଶ୍ରୟ ଖୋଜିବୁଲୁଥିବା ''ବାରବୁଲା ଅନାଥ ନାରୀ'' ପରି ମନେ ହେଉଥିଲା । ସତେ ଯେମିତି ଏମାନେ ଲେଖକଙ୍କୁ କରୁଣ ଆବେଦନ କରୁଛନ୍ତି ସେମାନଙ୍କୁ ଏଇ ଅପ୍ରାସଙ୍ଗିକ ଅପାଂକ୍ତେୟ ଅବସ୍ଥାରୁ ରକ୍ଷା କରିବା ପାଇଁ । ତେଣୁ ନିଜର ସମ୍ବେଦନଶୀଳ ଲେଖନୀ ମୂନରେ ସେ 'ଏଇ ଅଗଣିତ ବିଚ୍ଛିନ୍ନ ଓ ଅସଂଲଗ୍ନ ଭାବକୁ' ଛନ୍ଦମୟ, କୌତୁକପ୍ରଦ ଓ ଅଦ୍ଭୁତ ଆକର୍ଷଣୀୟ କରିତୋଳିବା ପାଇଁ ଏପରି ଚିତ୍ର ଆଙ୍କୁଥିଲେ ।

ବର୍ତ୍ତମାନଠାରୁ ସେ ଆଉ ତାଙ୍କ ରଚ଼ନାର ବାଦଦେବା ଅଂଶକୁ ଛନ୍ଦମୟ ବା ସୁନ୍ଦର କରିବା ପାଇଁ କେବଳ ଆଙ୍କିଲେ ନାହିଁ, ବରଂ ନିଜର ରୁଚି ଅନୁସାରେ ଆଙ୍କି ଚାଲିଲେ । ନୂଆ ଖେଳନାଟିଏ ପାଇ ଶିଶୁଟିଏ ଯେପରି ଆପଣା ମନର ଆନନ୍ଦରେ ମାତି ଉଠେ, ଏଇ ନୂଆ ଖେଳଟିରେ କବି ଠିକ୍ ସେହିପରି ବିଭୋର ହୋଇଉଠୁଥିଲେ । ସୌଭାଗ୍ୟତଃ, ଚିତ୍ରଶିଳ୍ପୀ ଭାବରେ ତାଙ୍କର କୌଣସି ଔପଚାରିକ ପ୍ରଶିକ୍ଷଣ ନଥିଲା କି ପ୍ରସିଦ୍ଧି ନଥିଲା । ତେଣୁ ସେ କୌଣସି ବାଧା ନିଷେଧ ନମାନି, କୌଣସି ନିୟମ ଶୃଙ୍ଖଳାକୁ ଅବଲମ୍ବନ ନକରି ବିନା ଛଳନା ଓ ଆଡମ୍ବରରେ ଆଙ୍କି ପାରିଲେ । କେବଳ ଦୁର୍ଭାଗ୍ୟର ବିଷୟ ହେଲା କବି ଚିତ୍ରଶିଳ୍ପକୁ କେବେ ଗୁରୁତ୍ୱର ସହିତ

ବିଚାର ନ କରି ହାତ ପାଖରେ ଯେଉଁ କାଗଜ, ରଂଗ ଓ ଅନ୍ୟ ଉପକରଣ ପାଉଥିଲେ ସେଇଥିରେ ଆଙ୍କି ଦେଉଥିଲେ, ଯାହା ଫଳରେ ପରବର୍ତ୍ତୀ ସମୟରେ କେତେକ ଅତି ଉଚ୍ଚ ମାନର ଚିତ୍ର କଳାକୁ ସାଇତି ରଖିବା ସମସ୍ୟାପୂର୍ଣ୍ଣ ହୋଇ ଉଠିଛି । ସେ ଖୁବ୍ ଶୀଘ୍ର ସିଦ୍ଧହସ୍ତ ଭାବରେ ଚିତ୍ରକଳା କାର୍ଯ୍ୟ କରିପାରୁ ଥିଲେ । ତାଙ୍କର ଦୁଇଟି ସାହିତ୍ୟ ସୃଷ୍ଟିର ମଧ୍ୟାନ୍ତର ଭିତରେ ପ୍ରାୟତଃ ଗୋଟିଏ ଥରରେ ସେ ଚିତ୍ର କାର୍ଯ୍ୟ ଶେଷ କରୁଥିଲେ, ଏପରିଭାବରେ ଜୀବନର ଶେଷ ତେର ବର୍ଷରେ ସେ ଯେପରି ପ୍ରଚୁର ପରିମାଣର ଉଭୟ ଗଦ୍ୟ ଓ ପଦ୍ୟ ସାହିତ୍ୟ ରଚନା କରିଥିଲେ ସେହିପରି ଭାବରେ ପ୍ରାୟ 3000 ରଙ୍ଗ ଓ ରେଖା ଚିତ୍ର ଅଙ୍କନକରି ଚିତ୍ରକଳା ଜଗତକୁ ସମୃଦ୍ଧ କରିଥିଲେ । ଏ ସବୁକୁ ବିଚାର କଲେ ନିଶ୍ଚିତ ଭାବେ କବିଙ୍କର ଏହା ଏକ ସ୍ମରଣୀୟ ଅବଦାନ ବୋଲି ସ୍ୱୀକାର କରିବାକୁ ପଡ଼ିବ ।

ନିଜ ଚିତ୍ର କଳାକୁ ''ରେଖାର ଏକ କାବ୍ୟିକ ଉଚ୍ଚାରଣ'' ଭାବରେ ସେ ବର୍ଣ୍ଣନା କରିଛନ୍ତି । ପୁଣି ଗୋଟିଏ ଚିଠିରେ ସ୍ୱୀକାର କରିଛନ୍ତି ଯେ ''ମୋର ଚତୁର୍ଦିଗରେ ରେଖାଗୁଡ଼ିକର ଅଭିସଂପାତ ମତେ ତାହାରି ଭିତରକୁ ଟାଣିନେଲା ।'' ଏଇ ଚିତ୍ର କଳା ମଧ୍ୟରୁ ଅନେକରେ ଛନ୍ଦମୟତା ଓ ସାନ୍ଦ୍ର ଅନୁଭବ ବାରିହୁଏ ତଥାପି ତାଙ୍କ କବିତା ଓ ଚିତ୍ର କଳା ଭିତରେ କ୍ୱଚିତ୍ କିଛି ସାଦୃଶ୍ୟ ଦେଖିବାକୁ ମିଳେ । ବାସ୍ତବରେ, କବିଙ୍କର ଅନ୍ୟ କୌଣସି ଏକ ସତ୍ତା, ଗଭୀରତର ନହେଲେ ବି ଅଧିକ ଗୁପ୍ତ ଓ ସୁପ୍ତ ସତ୍ତା ଏଇ ନୂତନ କଳା ସୃଷ୍ଟି ମାଧ୍ୟମରେ ଆପଣାକୁ ଅଭିବ୍ୟକ୍ତ କରିବାକୁ ଚାହୁଁଥିଲା । ସାହିତ୍ୟ ରଚନା କ୍ଷେତ୍ରରେ ରବୀନ୍ଦ୍ରନାଥ ଥିଲେ ଜଣେ ସଚେତନ ଶିଳ୍ପୀ, ବିଚକ୍ଷଣ ବିଜ୍ଞାଣୀ, ନିଜର ପ୍ରକାଶ ମାଧ୍ୟମ ଓ ଉପକରଣ ଉପରେ ତାଙ୍କର ଅଦ୍ଭୁତ ନିୟନ୍ତ୍ରଣ ଥିଲା । ତେଣୁ ସେ ଯାହା ଯେପରି ଭାବରେ କହିବାକୁ ଚାହୁଁଥିଲେ କହିପାରୁଥିଲେ । ତେଣୁ ନିଜର ନିର୍ବାଚନନୈପୁଣ୍ୟରେ ଯାହା ସେ ରଚନା କରୁଥିଲେ ସବୁ ମହାନ୍ କୃତିଭଳି ତାହା ଥିଲା ରମଣୀୟ ଓ ମନୋରଞ୍ଜକ ଅନେକ ସମୟରେ ସାଧାରଣ କୃତି ଠାରୁ ଏସବୁ ଏପରି ଉନ୍ନତ, ମହାନ୍ ଓ ବୈଚିତ୍ର୍ୟପୂର୍ଣ୍ଣ ଥିଲା ଯେ ସେଥିରେ ବ୍ୟକ୍ତି ରବୀନ୍ଦ୍ରନାଥଙ୍କ ସ୍ୱର କେତେଦୂର ଭାଷିତ ଅଥବା ଉଦ୍‌ଭାସିତ ହୋଇଥିଲା- ସେଥିରେ ଭାରତୀୟ ଆତ୍ମା, ଓ ତାର ଜନଗଣଙ୍କର ଅଥବା ସମଗ୍ର ମାନବ ଜାତିର ଅବା ଜୀବନ ଓ ପ୍ରକୃତିଜଗତର ଅଥବା ସୁଦୂରର ସେଇ ରହସ୍ୟାଚ୍ଛନ୍ନ ଐଶ୍ୱରିକ ପ୍ରଜ୍ଞା ଏ ସବୁକୁ ସମନ୍ୱିତ କରି ପୁଣି ଏ ସବୁକୁ ଅତିକ୍ରମ କରି ଉର୍ଦ୍ଧାୟିତ ହୋଇଉଠିଥିବା ତାଙ୍କର ସୃଷ୍ଟି ଚେତନା ଯେ କୌଣସି ପାଠକଙ୍କୁ ଚକିତ କରୁଥିଲା । ଅବଚେତନରେ ଏକ ଉଚ୍ଚତର ଲକ୍ଷ୍ୟରେ ଚାଳିତ ହୋଇ ସଚେତନ ଭାବରେ ସେ ସରସ୍ୱତୀସାଧନାରେ ନିଜକୁ ଉତ୍ସର୍ଗ କରିଥିଲେ । କିନ୍ତୁ ଚିତ୍ର ଆଙ୍କିଲା ବେଳେ ସେ ଥିଲେ ସଂପୂର୍ଣ୍ଣ ସ୍ୱପ୍ନଚାରୀ । ଯାହା ମନକୁ ଆସୁଥିଲା ତାହାକୁ ତୂଳିରେ ରୂପ ଦେବାକୁ ପ୍ରୟାସ କରୁଥିଲେ । ବେଳେ ବେଳେ ନିୟମ ଶୃଙ୍ଖଳା ନମାନି ଖିଆଲି ତୂଳି ତାଙ୍କର ନିୟନ୍ତ୍ରଣର ବାହାରକୁ ଚାଲିଯାଉଥିଲା । କିମ୍ଭୂତକିମାକାର, ବିଷମ ବିଭ୍ରାନ୍ତ ଓ ନିଷ୍ଠୁର ନିର୍ମମ ଭାବ ଯାହାକୁ ସେ ସତର୍କ ଓ ସୁଚତୁର ଭାବରେ ନିଜ ସାହିତ୍ୟ ସୃଷ୍ଟିର ବାହାରେ ରଖିଥିଲେ ସେସବୁ ତାଙ୍କର ଚିତ୍ରାଙ୍କନ ଭିତରୁ ଉଙ୍କିମାରୁଥିଲା । ତାଙ୍କର କ୍ୟାନଭାସ୍ ଉପରେ କେବଳ ଦେବଦୂତ ଓ ଏରିୟଲ ନୁହନ୍ତି, ଶଇତାନ ଓ କ୍ୟାଲିବାନଙ୍କ ଖେଳ ମଧ ଦେଖିବାକୁ ମିଳେ ।

1929 ମାର୍ଚ୍ଚ ପହିଲାରେ କାନାଡାର ଜାତୀୟ ଶିକ୍ଷାସଂସ୍ଥାର ନିମନ୍ତ୍ରଣରେ ରବୀନ୍ଦ୍ରନାଥ କାନାଡା ଅଭିମୁଖେ ଯାତ୍ରା କଲେ । ଆମେରିକାର ବହୁ ବିଶ୍ୱବିଦ୍ୟାଳୟରୁ ସେ ନିମନ୍ତ୍ରଣ ପାଇଲେ ।

କାନାଡାରୁ କବି ଗଲେ ଲସ୍‌ଏଞ୍ଜେଲସ୍ । ସେଠି ପହଞ୍ଚି ନିଜର ପାସପୋର୍ଟ ହଜାଇ ଦେଇଥିବାରୁ କବିଙ୍କୁ ବହୁ ଅସୁବିଧାର ସମ୍ମୁଖୀନ ହେବାକୁ ପଡିଥିଲା । ବୈଦେଶିକ ବିଭାଗର କର୍ମଚାରୀମାନଙ୍କ ବ୍ୟବହାରରେ ସେ ଅପମାନିତ ବୋଧ କରିଥିଲେ, ତେଣୁ ଆମେରିକାର ସବୁ କାର୍ଯ୍ୟକ୍ରମ ବାତିଲ କରି କବି ସେଠାରୁ ଜାପାନ ଚାଲିଲେ । ଆମେରିକା ବିଷୟରେ ତାଙ୍କର ଧାରଣା ଖରାପ କରାଇବା ଦିଗରେ ଏହା ପ୍ରଥମ ଘଟଣା ନଥିଲା । ପୂର୍ବରୁ ଥରେ ଭ୍ରମଣ ସମୟରେ ଆତିଥ୍ୟ ଓ ବଂଧୁତାରେ ଭରପୁର ବୋଲି ଉଚ୍ଚଆଶା ପୋଷଣ କରିଥିବା ଏଇ ଦେଶରେ ସେ ଧୋକା ଖାଇଥିଲେ ।

ଜାପାନରେ ସେ ପ୍ରାୟ ଏକମାସ ରହିଥିଲେ । ଏ ଦେଶ ଓ ତାର ସାହସୀ ଶୃଙ୍ଖଳିତ ଅଧିବାସୀମାନଙ୍କୁ କବି ବହୁତ ଭଲପାଉଥିଲେ । ଏଥର କିନ୍ତୁ ସାମନ୍ତବାଦୀ ଅଭିଳାଷପ୍ରତି ସେମାନଙ୍କର ଇଚ୍ଛାକୃତ ବିଘ୍ନିତ ମାନସିକତା ଦେଖି କବି ଦୁଃଖ ଅନୁଭବ କରିଥିଲେ । ନିଜର ସ୍ୱଭାବ -ସୁଲଭ ଆତ୍ମଶକ୍ତି ଘେନି କବି ଗୋଟିଏ ସାଧାରଣ ସଭାରେ ସେମାନଙ୍କୁ ସତର୍କ କରାଇ କହିଥିଲେ ଯେ ''ଆଉ ଜୀବନ୍ତ ବାସ୍ତବ ହୋଇ ରହି ନଥିବା ସେଇ ଆଦର୍ଶର ପ୍ରେତ'' ଦେଶ ଦେଶ ଓ ଜାତି ଜାତି ଭିତରେ କେବଳ ବିଛିନ୍ନତାବାଦ ସୃଷ୍ଟି କରିବ । ସାଇଗନରେ ଖୁସିରେ କିଛି ସମୟ କଟାଇ ଓ ସମ୍ବର୍ଦ୍ଧନା ପାଇ କବି ଜୁଲାଇ ମାସରେ ଭାରତ ଫେରିଲେ, ତାଙ୍କରି କଥାରେ କହିଲେ, 'ଶାନ୍ତିନିକେତନ ଆକାଶରେ ଭାସି ବୁଲୁଥିବା ବର୍ଷଣ ମୁଖର ମେଘକୁ ସଙ୍ଗୀତର ଲହରିରେ ସ୍ୱାଗତ କରିବା ପାଇଁ ।'

1930 ଜାନୁୟାରୀରେ କବି ପଶ୍ଚିମ ଭାରତ ଭ୍ରମଣରେ ଯାଇ ବରୋଦାଠାରେ, ମ୍ୟାନ୍ ଏଣ୍ଡ ଆର୍ଟିଷ୍ଟ ଶୀର୍ଷକ ବକ୍ତୃତା ପ୍ରଦାନ କରି ଫେବୃୟାରୀ ପ୍ରଥମରେ ଶାନ୍ତିନିକେତନ ଫେରି ଆସିଲେ । ଅକ୍ସଫୋର୍ଡରେ ହିବାର୍ଟ ବକ୍ତୃତା ଦେବା ଉଦ୍ଦେଶ୍ୟରେ ମାର୍ଚ୍ଚ ମାସରେ ସେ ଇଉରୋପ ଯାତ୍ରା କରିଲେ । ପୂର୍ବରୁ ଅସୁସ୍ଥତା ବଶତଃ ସେ ଏଇ ବକ୍ତୃତା ଦେବା ସମ୍ଭବ ହୋଇପାରିନଥିଲା । ଏଥର ଯାତ୍ରା ଆହୁରି ତାତ୍ପର୍ଯ୍ୟପୂର୍ଣ୍ଣ ଥିଲା, ପ୍ୟାରିସ୍‌ର ପିଗାଲେ ଗ୍ୟାଲେରିରେ କବିଙ୍କର ଚିତ୍ରଶିଳ୍ପର ଏକ ପ୍ରଦର୍ଶନୀ ଅନୁଷ୍ଠିତ ହୋଇଥିଲା ଓ ତାଙ୍କର ଆର୍ଜେଣ୍ଟିନାର ଆତିଥ୍ୟକାରିଣୀ ଭିକ୍ଟୋରିଆ ବହୁ ଦୂରରୁ ପ୍ୟାରିସ୍ ଆସି ସେଠି ପ୍ରଦର୍ଶନୀର ସବୁ ଆୟୋଜନ କରିଥିଲେ । ପ୍ୟାରିସର ଚିତ୍ର ସମୀକ୍ଷକ ମାନଙ୍କ ଦ୍ୱାରା କବିଙ୍କର ଚିତ୍ରଶିଳ୍ପ ଖୁବ୍ ପ୍ରଶଂସିତ ହୋଇଥିଲା ଓ ସେମାନେ ଏ ସବୁକୁ ''ନିଷ୍ଠା ନିର୍ଭର ଓ ଗତାନୁଗତିକ ପ୍ରଭାବ ମୁକ୍ତ ବିଶୁଦ୍ଧ ଚିତ୍ରକଳା'' ଭାବରେ ବର୍ଣ୍ଣନା କରିଥିଲେ । ସେଇମାସ ଶେଷ ଭାଗରେ ଅକସ୍‌ଫୋର୍ଡଠାରେ ପ୍ରଦତ୍ତ ହୋଇଥିବା ହିବେର୍ଟ ବକ୍ତୃତା ପରବର୍ତ୍ତୀ ବର୍ଷ ''ଦି ରିଲିଜନ୍ ଅଫ୍ ମ୍ୟାନ୍' ନାମରେ ଡରୋଥି ଏଲମ୍‌ହାର୍ଷ୍ଟଙ୍କୁ ଉତ୍ସର୍ଗ କରାଯାଇ ପ୍ରକାଶ ପାଇଥିଲା । ବରମିଙ୍ଗହମ୍ ଓ ଲଣ୍ଡନ୍‌ରେ ନିଜର ଚିତ୍ର କଳା ପ୍ରଦର୍ଶନୀ ଶେଷ ହେବା ପରେ ରବୀନ୍ଦ୍ରନାଥ ଜୁଲାଇ ମାସରେ ବର୍ଲିନ୍ ଗଲେ । ଏଠାରେ ବୈଜ୍ଞାନିକ ଆଇନଷ୍ଟାଇନ୍‌ଙ୍କ ସହିତ ତାଙ୍କର କଥାବାର୍ତ୍ତା ଉଭୟଙ୍କ ଭିତରେ ବନ୍ଧୁତା ଓ ସମ୍ମାନ ବୋଧକୁ ଅଧିକ ଘନିଷ୍ଠ କରିଥିଲା । ଉଭୟଙ୍କ ଭିତରେ ହୋଇଥିବା ଏଇ ଆଲୋଚନାର ସାରାଂଶ 'ରିଲିଜନ୍ ଅଫ୍ ମ୍ୟାନ୍' ବହିରେ ପରିଶିଷ୍ଟ ଭାବରେ ଦିଆଯାଇଛି । ବର୍ଲିନ୍‌ର ମୋଲେର୍ ଗ୍ୟାଲେରୀରେ କବିଙ୍କର ଚିତ୍ର ପ୍ରଦର୍ଶନୀ ଓ ମ୍ୟୁନିକ୍‌ର ପ୍ରାଚୀନ ଟାଉନ୍ ହଲରେ ତାଙ୍କର ନାଗରିକ ସମ୍ବର୍ଦ୍ଧନା ଅନୁଷ୍ଠିତ ହୋଇଥିଲା । ଜର୍ମାନୀରେ କବି ବହୁସ୍ଥାନ ଭ୍ରମଣ କଲେ । ଓବେରାମେର୍‌ଗାଉଠାରେ 'ପ୍ୟାସନ୍' ନାଟକ ଦେଖିବାର ସୁଯୋଗ ପାଇଥିଲେ, କବିଙ୍କୁ

ଦେଖି ଦର୍ଶକମାନେ ସେଠି "କିପରି ଆମ ଧର୍ମ ଯାଜକଙ୍କ ଭଳି" ବୋଲି ଫୁସ୍‌ଫାସ ହେଉଥିଲେ ।

ଏଇ ପ୍ୟାସିଁନ୍ ନାଟକ ତାଙ୍କ ମନରେ କେତେ ଗଭୀର ପ୍ରଭାବ ପକାଇଥିଲା ତାହା ତାଙ୍କର "The Child" କବିତାରୁ ଲକ୍ଷ୍ୟ କରାଯାଇପାରେ । ଏହା ସେ ଜର୍ମାନୀରେ ଥିଲାବେଳେ ହିଁ ରଚନା କରି ଥିଲେ ଓ ଏହା ଥିଲା କବିଙ୍କର ସିଧାସଳଖ ଇଂରାଜୀରେ ରଚିତ ଏକ ମାତ୍ର କବିତା । ବାଇବେଲୀୟ ପ୍ରେରଣା ଓ ହିନ୍ଦୁ କଳ୍ପନାର ସମନ୍ୱୟରୁ ସମ୍ଭୂତ ଏଇ ମାର୍ମିକ ଗଦ୍ୟ କବିତାଟିରେ କବିଙ୍କର ମୁଖ୍ୟ କାବ୍ୟଭାବନା 'ଜୀବନ ପ୍ରୀତି' କୁ ପ୍ରକଟିତ କରିଛି । ଏଥିର ପ୍ରତୀକବାଦ ଯୀଶୁଙ୍କ କାହାଣୀ ପାଇଁ ଯେତିକି ପ୍ରଯୁଜ୍ୟ ଗାନ୍ଧିଙ୍କ ପାଖରେ ମଧ୍ୟ ସେତିକି । ସଂପୂର୍ଣ୍ଣ ଉଦ୍ଧାର କରିବା ପାଇଁ କବିତାଟି ଅତି ଦୀର୍ଘ । ଏଠାରେ ତାହା ବିଷୟରେ ଧାରଣା କରିବା ପାଇଁ ତାହାର ଏକ ଅଂଶ ଦିଆଗଲା ।

The man of faith moves on along pitiless paths
strewn with flints, over scorching sands.....
They follow him, the strong and the weak,
the aged and young.......
Some grow weary and footsore, some angry
and suspicious,
they ask at every dragging step,
How much farther is the end..............
It is night
The travellers spread their mats on the ground.....
A gust of wind blows out the lamp
and the darkness deepens like a sleep into a swoon.
Someone from the crowd suddenly stands up
and pointing to the leader with merciless finger
breaks out :
False prophet, thou hast deceived us !
Others take up the cry one by one,
women hiss their hatred and men growl
At last one bolder than others suddenly deals him a blow.
They cannot see his face, but fall upon him
in a fury of destruction.............
Suddenly they become still and gasp for breath
as they gaze at the figure lying dead.
The women sob out aloud and men hide their faces
in their hands.
a frew try to slink away unnoticed,

but their crime keeps them chained
to their victim.
They ask each other in bewilderment,
Who will show us the path ?
The old man from the East bends his head and says :
The Victim......
and they all stand up and mingle their voices and sing,
Victory to the victim !.................

ଜେନେଭାଠାରେ ପ୍ରାୟ ଗୋଟିଏ ମାସ କଟାଇ କବି ସୋଭିଏତ୍ ସରକାରଙ୍କ ନିମନ୍ତ୍ରଣ କ୍ରମେ ମସ୍କୋ ଗଲେ । ସୌଭାଗ୍ୟତଃ ସେଠାରୁ ଘରକୁ ଲେଖିଥିବା ଅନେକ ଚିଠିରେ ସେ ତାଙ୍କର ଅନୁଭବକୁ ବ୍ୟକ୍ତ କରିଥିଲେ, ଯାହା ପରେ 'ରୁଷିଆର ଚିଠି' ନାମରେ ପ୍ରକାଶ ପାଇଲା । ଏହି ଚିଠି ଗୁଡିକରେ ବୟୋବୃଦ୍ଧ କବିଙ୍କର ତରୁଣ ମନର ପରିଚୟ ସ୍ପଷ୍ଟ । ବୟସରେ ପ୍ରବୀଣ ହୋଇଯାଇଥିଲେ ମଧ୍ୟ ମନ ପ୍ରାଣରେ କବି ତଥାପି ଥିଲେ ତରୁଣ । ପ୍ରୌଢ଼ାବସ୍ଥା ଅପେକ୍ଷା ବାର୍ଦ୍ଧକ୍ୟରେ କବି ରକ୍ଷଣଶୀଳ ମନଭାବ ପରିତ୍ୟାଗ କରି ସମଧିକ ଉଦାର ଓ ସହନଶୀଳ ହୋଇଯାଇଥିଲେ । ଏକଥା ଶୁଣି ହୁଏତ ଆଶ୍ଚର୍ଯ୍ୟ ଲାଗିପାରେ, ସେ କିନ୍ତୁ ବୃଦ୍ଧ ବୟସରେ ଅଧିକ ସୁନ୍ଦର ଦେଖାଯାଉଥିଲେ । ତାଙ୍କର ଫଟୋଚିତ୍ରରୁ କେବଳ ନୁହେଁ ଉଭୟ ଅବସ୍ଥାରେ ତାଙ୍କୁ ଦେଖିଥିବା ତାଙ୍କର ସମସାମୟିକ ଲୋକଙ୍କଠାରୁ ଏହାର ସୂଚନା ମିଳେ । ତାଙ୍କ ଠାରୁ ଅଧିକ ବାସ୍ତବ ଭାବେ ଆଉ କେହି କହିପାରି ନ ଥାନ୍ତେ "ଆସ ମୋ ସାଙ୍ଗରେ ବୃଦ୍ଧ ହୁଅ, ସର୍ବୋତ୍ତମ ଆସିନି ଏବେବି, ଜୀବନର ଶେଷଧାପ ଯାହାପାଇଁ ହୋଇଥିଲା ତାହାର ଆରମ୍ଭ ।" ବାର୍ଦ୍ଧକ୍ୟର ରେଖା ତାଙ୍କ ମୁହଁକୁ ସିନା କୁଞ୍ଚିତ କରିଦେଇ ଥିଲା ହେଲେ ମନ ଥିଲା ସତେଜ ଓ ସୁନ୍ଦର ।

ବୟସ ବୃଦ୍ଧି ସହିତ ସେ ମଧ୍ୟ ଗାନ୍ଧିଜୀଙ୍କ ଭଳି ଆବିଷ୍କାର କରିଥିଲେ ଯେ ସତ୍ୟ ଯେ କୌଣସି ଧର୍ମଠାରୁ ଉଚ୍ଚତର ଓ ମାନବକଲ୍ୟାଣ ଯେ କୌଣସି ଦର୍ଶନ ଅପେକ୍ଷା ମହତ୍ତର । ତାହା ହୋଇନଥିଲେ 'ଗୀତାଞ୍ଜଳି'ର କବି ଓ ଭାରତୀୟ ଆଧ୍ୟାତ୍ମିକ ପରମ୍ପରାର ଏଇ ମହାନ୍ ପଥିକୃତ୍ ରୁଷ ଭ୍ରମଣକୁ କେବେ ତୀର୍ଥ ଯାତ୍ରା ଭାବେ ବର୍ଣ୍ଣନା କରି ନଥାନ୍ତେ । ଗୋଟିଏ ଚିଠିରେ ସେ ଲେଖିଥିଲେ, "ରୁଷ୍ ଆସିନଥିଲେ ଏ ଜନ୍ମର ତୀର୍ଥ ଯାତ୍ରା ଅସଂପୂର୍ଣ୍ଣ ରହି ଯାଇଥାନ୍ତା । ଏଠାରେ ଜନଜୀବନର ଭଲ ମନ୍ଦ ବିଚାର କରିବା ପୂର୍ବରୁ ଅଧିବାସୀ ମାନଙ୍କର ଅସମ୍ଭବ ସାହସିକତା ମତେ ଅଭିଭୂତ କରିଛି । ସନାତନ ପରମ୍ପରା ମନୁଷ୍ୟର ଅସ୍ଥିମଜ୍ଜାରେ, ମନ ପ୍ରାଣରେ ସହସ୍ର ପ୍ରକାରେ ଭରି ରହିଥାଏ । ତାହାର କେତେ ଦିଗରେ କେତେ ମହଲ କେତେ ଦ୍ୱାରରେ କେତେ ପ୍ରହରୀ କେତେ ଯୁଗରୁ କେତେ କର ଆଦାୟ କରି ତାର ଗନ୍ତାଘର ହୋଇଛି ପର୍ବତ ପ୍ରମାଣ । ଏଇ ରୁଷରେ ସେମାନେ ତାକୁ ଏପରି ଆମୂଳ ପରିବର୍ତ୍ତନ କରିଦେଇଛନ୍ତି ଯେ ଭୟ, ଭାବନା, ଶଂସୟ କିଛି ହିଁ ମନରେ ନାହିଁ ।"

ଏଇ ଦେଶ ବିଷୟରେ ବହୁ ବିପରୀତାତ୍ମକ ଖବର ସେ ଶୁଣିବାକୁ ପାଇଥିଲେ, ବୋଲସେଭିକ୍ ରାଜତ୍ୱର ନିର୍ଦ୍ଦୟ ଅତ୍ୟାଚାରର କରୁଣ କାହାଣୀ ଶୁଣିଥିଲେ । ସୁସଭ୍ୟ ଆରାମର ଅଭାବର କଥା କହି ଅନେକ ବଂଧୁ ତାଙ୍କ ଭ୍ରମଣକୁ ନିରୁତ୍ସାହିତ କରୁଥିଲେ । ସେଠାରେ ମୋଟାରୋଟା ଖାଦ୍ୟ ଓ ଅଶାଳୀନ ବ୍ୟବହାର ବିଷୟରେ ମଧ୍ୟ ସଚେତନ କରାଇ ଦେଇଥିଲେ ।

ଯାହା ତାଙ୍କୁ ସେଠି ଦେଖାଇ ଦିଆଯିବ ତାହା କେବଳ ମାତ୍ର ଉପର ଦେଖାଣିଆ ହେବ ବୋଲି ମଧ କହିଥିଲେ । କିନ୍ତୁ "ମନେ ମନେ ଭାବୁଥିଲେ, ଧନଶକ୍ତିରେ ଦୁର୍ଜୟ ପାଶ୍ଚାତ୍ୟ ସଭ୍ୟତାର ପ୍ରାଙ୍ଗଣ ଦ୍ୱାରରେ ଏଇ ରୁଷ୍ ଆଜି ନିର୍ଧନରେ ଶକ୍ତିସାଧନାର ଆସନ ପକାଇଛି ସମଗ୍ର ପଶ୍ଚିମ ମହାଦେଶର ଭ୍ରୁକୁଟି କୁଟିଳ କଟାକ୍ଷକୁ ସଂପୂର୍ଣ୍ଣ ଉପେକ୍ଷା କରି । ଏହା ଦେଖିବା ପାଇଁ ମୁଁ ଯିବିନି ପୁଣି କିଏ ଯିବ ? ସେମାନେ ଶକ୍ତିଶାଳୀର ଶକ୍ତିକୁ, ଧନଶାଳୀର ଧନକୁ ବିପର୍ଯ୍ୟସ୍ତ କରିଦେବାକୁ ଚାହାନ୍ତି, ସେଥିରେ ଆମେ ଭୟ କରିବୁ କେଉଁଥି ପାଇଁ ଆଉ ରାଗ କରିବୁ ବା କାହିଁକି ? ଆମର ଶକ୍ତି ବା ଅଛି କଣ, ଧନ ବା ଅଛି କେତେ ? ଆମେ ତ ଜଗତର ସବୁ ନିରନ୍ନ ନିଃସହାୟମାନଙ୍କ ଦଳର ।"

ଆଉ ଯାହା ହୁଅନ୍ତୁ ନା କାହିଁକି ରବୀନ୍ଦ୍ରନାଥ କେବେ ସାମ୍ୟବାଦୀ ଆଦର୍ଶରେ ବିଶ୍ୱାସୀ ନଥିଲେ । ଐତିହାସିକ ବିକାଶକ୍ରମରେ ସଂହତି ଓ ସହଯୋଗ କାମନା କରୁଥିବା ତାଙ୍କର ମନୋଭୂମି ପାଇଁ ମାର୍କସବାଦ ଓ ଦ୍ୱନ୍ଦାତ୍ମକ ବସ୍ତୁବାଦ ଥିଲା ଏକାନ୍ତ ପ୍ରତିବେଶୀ ପଦାର୍ଥ । ପ୍ରାତିସ୍ୱିକ ବିବେକବୋଧର ମୂଲ୍ୟ ଓ 'ମନୁଷ୍ୟର ଅସୀମ ବ୍ୟକ୍ତିତ୍ୱ' ଉପରେ ତାଙ୍କର ଗଭୀର ଆସ୍ଥା ଓ ବିଶ୍ୱାସ ଥିଲା । ତେଣୁ ଯେ କୌଣସି ବିରୋଧଶକ୍ତିର ଆମୂଳାନ୍ତ ହିଂସାତ୍ମକ ଦମନ ପାଇଁ ରାଜନୈତିକ ପଦକ୍ଷେପକୁ ସେ ଗ୍ରହଣ କରିପାରୁନଥିଲେ । ଯନ୍ତ୍ର ମଣିଷକୁ ପଦାନତ କରିବା ଘଟଣା ତାଙ୍କ ପାଇଁ ଥିଲା ଏକ ବିସମ୍ବାଦ । ପୁଣି ଦଳଯନ୍ତ୍ର ବା ପାର୍ଟି ମେସିନ୍ ଏହି କାର୍ଯ୍ୟ ଅନ୍ୟ ଯେ କୌଣସି ଯନ୍ତ୍ରଠାରୁ ଅଧିକ ନିର୍ଦ୍ଦୟ ଭାବରେ କରୁଥିବା ଶୁଣି ଆହୁରି ମର୍ମାହତ ହୋଇଥିବେ । ଅମାନବିକ ସାଧନ ଯେ ସର୍ବଦା ମାନବିକ ସିଦ୍ଧିକୁ ପ୍ରତିହତ କରେ- ଏକଥା ସେ ବିଶ୍ୱାସ କରୁଥିଲେ । ସୋଭିଏତ୍ ରୁଷରେ ଯାହା ସେ ଦେଖିଥିଲେ, ସେ କୌଣସି ପ୍ରକାରେ ତାହାର ଅନ୍ଧ ସମର୍ଥକ ନଥିଲେ । ଦଳ ଏକଛତ୍ର ବାଦର ନିର୍ଦ୍ଦୟ ବ୍ୟବସ୍ଥା ଓ ସୋଭିଏତ୍ ନୀତିରେ ନୈତିକ ବନ୍ଧନ ବିଷୟରେ ଯଥେଷ୍ଟ ସଚେତନ ଥିଲେ । କିନ୍ତୁ ଏଇ ବାଧା ବନ୍ଧନରେ ତାଙ୍କର ଚିନ୍ତାର ସ୍ୱାଚ୍ଛନ୍ଦ୍ୟ ଗତି ପ୍ରତିହତ ହୋଇନଥିଲା । ସେ ବୁଝିଥିଲେ ଯେ ଯୁଦ୍ଧ ଓ ବିପ୍ଳବରେ କେତେକ ନିର୍ଦ୍ଦିଷ୍ଟ ପରିମାଣର ବର୍ବରତା ରହିବ । କିନ୍ତୁ ରୁଷ୍ ବିପ୍ଳବ ପଛରେ ଥିବା ମହାନ୍ ସୃଷ୍ଟିଶୀଳ ଅଭିଳାଷ ତାଙ୍କର ଗଣଶିକ୍ଷା ଓ ଜନଜାଗରଣ ଭିତରେ ସମ୍ଭବ ହୋଇପାରିବ ବୋଲି ସେ ମନେକରିଥିଲେ ।

ସେଠାରୁ ଜର୍ମାନୀ ଫେରି କବି ଯୁକ୍ତରାଷ୍ଟ୍ର ଅଭିମୁଖେ ଚାଲିଲେ । ଏହା ଥିଲା ଆଧୁନିକ ସଭ୍ୟତାର ଏଇ କୁହୁକ ଭୂମିକୁ ତାଙ୍କର ଶେଷଯାତ୍ରା । ନଭେମ୍ବର 25ରେ ନ୍ୟୁୟର୍କର 400 ଜଣ ପ୍ରମୁଖ ନାଗରିକଙ୍କ ଦ୍ୱାରା କବିଙ୍କ ସମ୍ମାନାର୍ଥେ ଏକ ଭୋଜି ସଭାର ଆୟୋଜନ ହୋଇଥିଲା । କାର୍ନେଗି ହଲରେ ତାଙ୍କର ଏକ ସମ୍ବର୍ଦ୍ଧନା ସଭା ମଧ ଆୟୋଜିତ ହୋଇଥିଲା, ସେଠି କବି ଶିକ୍ଷା ସଂପର୍କରେ ଭାଷଣ ପ୍ରଦାନ କରିଥିଲେ, ତାଙ୍କର ଜଣେ ପ୍ରଶଂସକ ରୁଥ୍ ସେଣ୍ଟ ଡେନିସ୍‌ଙ୍କ ଦ୍ୱାରା ନୃତ୍ୟାବୃତ୍ତିର ମଧ ଆୟୋଜନ ହୋଇଥିଲା । ଏଥିରୁ ଆଦାୟ ହୋଇଥିବା ଅର୍ଥ କବି ସେତେବେଳର ସେଠାର ଅର୍ଥନୈତିକ ଅବସ୍ଥାକୁ ଦେଖି ନ୍ୟୁୟର୍କର ବେକାରମାନଙ୍କର ଉପକାର ପାଇଁ ଦାନ କରିଥିଲେ । ନ୍ୟୁୟର୍କ ଓ ବୋଷ୍ଟନ୍‌ରେ ତାଙ୍କର ଚିତ୍ରକଳାର ପ୍ରଦର୍ଶନୀ ଆୟୋଜନ ହୋଇଥିଲା । ତା' ପରେ ୱାସିଂଟନ୍‌ରେ କବିଙ୍କୁ ରାଷ୍ଟ୍ରପତି ହୁବେର୍ ସ୍ୱାଗତ ସମ୍ବର୍ଦ୍ଧନା ଦେଇଥିଲେ । ବିଭାଡି ନିଗଡରୁ ମାର୍କିନୀ ମନଭାବ କ୍ରମେ ମୁକ୍ତ ହୋଇଯାଇଥିଲା । ଦିନଥିଲା ଯେତେବେଳେ ରାଷ୍ଟ୍ରପତି ୱିଲ୍‌ସନ୍ ଭାରତରୁ କବିଙ୍କର ତାର ବାର୍ତ୍ତା ଗ୍ରହଣ କରିବାକୁ ମଧ ଅନୁଗ୍ରହ କରି ନଥିଲେ । ୱିଲ୍ ଡୁରାଣ୍ଟଙ୍କ ସହିତ ସାକ୍ଷାତ କରି କବି ଆନନ୍ଦିତ ହୋଇଥିଲେ । ତାଙ୍କର ଡିକେଣ୍ଟ୍ ଫର୍ ଇଣ୍ଡିଆ

ଗ୍ରନ୍ଥ ସେତେବେଳେ ବ୍ରିଟିଶ ସରକାରଙ୍କ ଦ୍ୱାରା ବଙ୍ଗଳାରେ ନିଷିଦ୍ଧ ଘୋଷିତ ହୋଇଥାଏ । ବହିଟି କବିଙ୍କୁ ଉପହାର ଦେଇ ଓ୍ୱିଲ୍‌ଡୁରାଣ୍ଟ ତା' ଉପରେ ଲେଖିଥିଲେ, ''ଭାରତ ଯେ କାହିଁକି ସ୍ୱାଧୀନ ହେବା ଉଚିତ, ଆପଣ ହିଁ କେବଳ ସେଥିପାଇଁ ଯଥେଷ୍ଟ ଓ ସନ୍ତୋଷଜନକ କାରଣ ।''

(You alone are sufficient reason why India should be free)

ଜାନୁୟାରୀ 1931ରେ କବି ଲଣ୍ଡନ ବାଟଦେଇ ଭାରତ ଫେରିଲେ । ଲଣ୍ଡନରେ ସେକ୍ସାଟର ପକ୍ଷରୁ ହାଇଡେପାର୍କ ହୋଟେଲ୍‌ରେ ତାଙ୍କୁ ଦିଆଯାଇଥିବା ମଧ୍ୟାହ୍ନ ଭୋଜନ ବେଳେ କବି ପ୍ରଖ୍ୟାତ ନାଟ୍ୟକାର ଜର୍ଜବର୍ଣ୍ଣାଡ' ଶ ଙ୍କ ସହିତ ଦୀର୍ଘ ଆଲୋଚନା କରିଥିଲେ । ଏହା ଥିଲା କବିଙ୍କର ଏକ ଦୀର୍ଘ ଓ କ୍ଳାନ୍ତ ଯାତ୍ରା କିନ୍ତୁ ବର୍ଣ୍ଣାଢ୍ୟ ଓ ସଫଳ ଅନୁଭୂତିରେ ଭରା । ପାଶ୍ଚାତ୍ୟ ଜଗତକୁ ସେ ବିଭିନ୍ନ ସମୟରେ ବହୁ ଭାବରେ ଦେଖିଛନ୍ତି ଓ ରଖି ଯାଇଛନ୍ତି ବୈଚିତ୍ର୍ୟମୟ ସ୍ମୃତିର ସମ୍ଭାର, ଯାହା ଫିକା ପଡିପାରେ କିନ୍ତୁ କଦାପି 'ନୁହେଁ ଫିଙ୍ଗିବାର' । ସେତେବେଳେ ସେ କଣ ଜାଣିଥିଲେ ଯେ ଏହା ହିଁ ପାଶ୍ଚାତ୍ୟକୁ ତାଙ୍କର ଶେଷ ଯାତ୍ରା ଥିଲା ! ଆଉ ପଶ୍ଚିମାକାଶ ପାଇଁ ତାଙ୍କର ଜୀବନ ସୂର୍ଯ୍ୟ ଅସ୍ତ ଯାଇଥିଲା ।

# ଶେଷ ଫସଲ

*ଯିବାର ଦିନ ଏଇ କଥାଟି ଯେନ୍ହେ ମୁଁ ଯାଏ କହି*
*ଯାହା ଦେଖିଛି, ଯାହା ପାଇଛି ତୁଳନା ତାର ନାହିଁ ।*

ଜଣେ ହୁଏତ ପ୍ରଶ୍ନ କରିପାରେ, ଯିଏ ହିଂସାପ୍ରତି ନିଜର ସବୁ ବିରୋଧ ସତ୍ତ୍ୱେ ଦିନେ ରୁଷର ବୈପ୍ଳବିକ ପରିବର୍ତ୍ତନକୁ ସ୍ୱାଗତ କରିଥିଲେ, ଏବେ ନିଜ ଦେଶରେ ମହାତ୍ମାଗାନ୍ଧିଙ୍କ ନେତୃତ୍ୱରେ ଚାଲିଥିବା ଅହିଂସା ଗଣ ଆନ୍ଦୋଳନ ପ୍ରତି ସେ ସେହିପରି ଉତ୍ସାହ ପ୍ରଦର୍ଶନ କରିନଥିଲେ କାହିଁକି ? କିନ୍ତୁ ପ୍ରକୃତରେ ନିଜ ଦେଶର ରାଜନୈତିକ ଓ ସାମାଜିକ ଆନ୍ଦୋଳନ ପ୍ରତି ରବୀନ୍ଦ୍ରନାଥଙ୍କର ଅସୀମ ସମ୍ବେଦନା ଥିଲା- ସେ କ'ଣ ନିଜେ ଏ ସବୁକୁ ଆଂଶିକଭାବେ ପ୍ରେରଣା ଯୋଗାଇ ନଥିଲେ ? ଆଉ ନିଜ ଜୀବନ କାଳ ଭିତରେ ଭାରତର ବା ବିଦେଶର ଯେ କୌଣସି ନେତା ବା ଅଧିନାୟକଙ୍କ ଅପେକ୍ଷା ସେ ମହାତ୍ମା ଗାନ୍ଧିଙ୍କୁ ଉଚ୍ଚତର ଆସନରେ ବସାଇ ନଥିଲେ ? ଅନ୍ୟ ପକ୍ଷରେ ସେ ମହାତ୍ମାଙ୍କ ଚିନ୍ତାଧାରାରେ ଓ ସମାଜ ଦର୍ଶନରେ ଯେଉଁ ମଧ୍ୟଯୁଗୀୟ ପ୍ରତିକ୍ରିୟାଶୀଳ ଭାବ ଲକ୍ଷ୍ୟ କରିଥିଲେ ସେଥିରୁ ତାଙ୍କର ଭୟ ହେଉଥିଲା ଯେ ମହାତ୍ମାଙ୍କ ଅନୁଗାମୀମାନେ ହୁଏତ ସେ ସବୁର ଅପବ୍ୟବହାର କରିପାରନ୍ତି । ମହାତ୍ମା ହୁଏତ ନିଜର ସବୁ ସଂକୀର୍ଣ୍ଣତାର ଉର୍ଦ୍ଧ୍ୱକୁ ଯାଇଛନ୍ତି କିନ୍ତୁ ତାଙ୍କ ଅନୁଗାମୀମାନଙ୍କ ଦ୍ୱାରା ଏହା କଣ ସମ୍ଭବ ? ତାଙ୍କର ଏପରି ଶଙ୍କା କେତେଦୂର ଯଥାର୍ଥ ତାହା ଇତିହାସର ବିଚାର ଉପରେ ଛାଡି ଦେବାକୁ ହେବ ।

ବିଂଶ ଶତାବ୍ଦୀର ଆଗମନ ବେଳକୁ ରବୀନ୍ଦ୍ରନାଥ ନିଜେ ସ୍ୱଦେଶୀ ଚେତନାରେ ଗଭୀର ଭାବରେ ନିମଗ୍ନ ହୋଇରହିଥିଲେ, ଭାରତୀୟ ଐତିହ୍ୟର ଗୌରବର କାହାଣୀ ବାରମ୍ବାର ବଖାଣୁଥିଲେ, ତାର ପାରମ୍ପରିକ ଶୁଦ୍ଧତା ଭିତରେ ତାର ଶକ୍ତି ଓ ଐତିହ୍ୟ କଳ୍ପନା କରୁଥିଲେ । କିନ୍ତୁ ଅଳ୍ପ ସମୟ ପରେ ଆପଣା ଅନ୍ତରର କୋମଳତମ ପ୍ରବୃତ୍ତି ତାଙ୍କର ଚିନ୍ତାକୁ ସୂକ୍ଷ୍ମ ଓ ସୁକୁମାର କରି ଦେଇଥିଲା । ସେ ପ୍ରକୃତ ମୁଖ ଓ ମୁଖା ଭିତରେ ପାର୍ଥକ୍ୟ ବୁଝିପାରିଥିଲେ ଓ ଉପଲବ୍ଧି କରିଥିଲେ ସବୁ ଅନନ୍ୟଗୁଣ ଥିଲେ ହେଁ ଭାରତବର୍ଷ ଯେ ସମଗ୍ର ମାନବ ସମାଜର ଏକ ଅଂଶ ଓ ଅନ୍ୟ ଯେ କୌଣସି ଅଂଶ ଭଳି ଏହାକୁ ସମସ୍ତଙ୍କ ସହିତ ଯେ ଦୌଡିବାକୁ ପଡିବ, ଏହାକୁ ମାନିନେବାକୁ ହେବ । ଅତୀତର ପ୍ରେତ ଛାୟା ଅପେକ୍ଷା ବର୍ତ୍ତମାନର ଯୁଗ ସ୍ପନ୍ଦନ ଯେ ମାନବ ସମାଜକୁ ଅଧିକ ଦିଗ୍‌ଦର୍ଶନ ଦେଇପାରିବ ଏଥିରେ ସନ୍ଦେହ ନାହିଁ । ସତ୍ୟାନୁରାଗ ଓ ଜୀବନପ୍ରୀତି ହିଁ ମନୁଷ୍ୟର ପ୍ରକୃତ ଧର୍ମ, ମହାତ୍ମା ଗାନ୍ଧି ମଧ ଏହି କଥା ଅନୁଭବ କରି କହିଥିଲେ- ''ଯଦି ଭଗବାନଙ୍କର ସଂପୂର୍ଣ୍ଣତମ ବର୍ଣ୍ଣନା ଦେବା ମଣିଷ ପକ୍ଷେ ସମ୍ଭବ ହୁଏ, ତାହେଲେ ମୋ ସିଦ୍ଧାନ୍ତରେ

ତାହା ହେବ ଭଗବାନ 'ସତ୍ୟ' । କିନ୍ତୁ ଦୁଇ ବର୍ଷ ପୂର୍ବେ ଆଉ ଗୋଟିଏ ପାଦ ଆଗେଇ ଯାଇ ମୁଁ କହିଥିଲି ସତ୍ୟ ହିଁ ଭଗବାନ ।

ନିଜର ଏକ ପ୍ରସିଦ୍ଧ ଓ ସୁନ୍ଦର କବିତା 'ଶାଜାହାନ'ରେ କବି ବର୍ଣ୍ଣନା କରିଛନ୍ତି ଯେ ତାଜମହଲ ଅପେକ୍ଷା ତାର ନିର୍ମାତା ଆହୁରି ଅଧିକ ମହିୟାନ, କୀର୍ତ୍ତି ଅପେକ୍ଷା କର୍ତ୍ତା ମହାନ୍ । ଭାରତ ବର୍ଷ ମଧ୍ୟ ତାର ଅତୀତକୁ ସ୍ମୃତିସ୍ତମ୍ଭ ଭଳି ପଛରେ ପକାଇ ଆଗେଇ ଯାଇପାରିବ । ଗୋଟିଏ ନବଜାତ ଶିଶୁର ଲାଳନ ଦୋଳନ ଭିତରେ ମାନବ ସମାଜର ଚିରନ୍ତନ ଐତିହ୍ୟ ଯେପରି ଜୀବନ୍ତ ଭାବରେ ପରିପୋଷିତ, ମୃତ ବ୍ୟକ୍ତିର ଶୋକସନ୍ତପ୍ତ ସ୍ମୃତି ଚାରଣ ଭିତରେ ସେପରି ନୁହେଁ । ନିଜର ଚିତ୍ରକଳା ଭିତରେ କିନ୍ତୁ ରବୀନ୍ଦ୍ରନାଥ ସଂପୂର୍ଣ୍ଣ ଭାବରେ ପରମ୍ପରା ବିମୁଖଥିଲେ । ନିଜର କବିତା ଓ ଗଦ୍ୟ ରଚନାରେ ପ୍ରଜ୍ଞା, ପାଣ୍ଡିତ୍ୟ ଅଥବା ସିଦ୍ଧ ମନସ୍ୱିତାର ପରିଚୟ ଦେଉନଥିଲେ । ଯେତିକି ଯେତିକି ସେ ବୃଦ୍ଧ ହୋଇଯାଉଥିଲେ ସେତିକି ସେତିକି ଅଭିନବ ଚିନ୍ତା ଓ କଳ୍ପନା ତାଙ୍କ ମନକୁ ଚିତ୍ରିତ କରୁଥିଲା । ଦୀର୍ଘ ବିଦେଶ ଭ୍ରମଣ ପରେ ତାଙ୍କର ପ୍ରଥମ ସୃଷ୍ଟି ହେଲା 'ନବୀନ' ନାମକ ଏକ ଗୀତିନାଟ୍ୟ ।

ସେତେବେଳେ ଭାରତବର୍ଷ ଅତ୍ୟନ୍ତ ଦୁଃସମୟ ଭିତର ଦେଇ ଗତିକରୁଥିଲା । ସ୍ୱାଧୀନତା ଆନ୍ଦୋଳନର ଗୁପ୍ତ ବୈପ୍ଳବିକ କାର୍ଯ୍ୟପ୍ରତି ସମର୍ଥନ ଓ ସମ୍ବେଦନା ଥିବା ସନ୍ଦେହରେ ଶହ ଶହ ବଙ୍ଗାଳୀ ଯୁବକ କନ୍‌ସନ୍‌ଟ୍ରେସନ୍ କ୍ୟାମ୍ପ ମାନଙ୍କରେ ସଢୁଥାନ୍ତି । ହିଜଲିର ଏପରି ଗୋଟିଏ କ୍ୟାମ୍ପରେ ଗାର୍ଡମାନେ ବିନା ଦ୍ୱିଧାରେ ଦୁଇ ଜଣ ଯୁବକଙ୍କୁ ମାରିଦେଲେ । ଏ ଦାରୁଣ ସମ୍ବାଦ ବାହାରେ ପ୍ରଚାରିତ ହେବାପରେ ରବୀନ୍ଦ୍ରନାଥ ମର୍ମାହତ ହୋଇପଡିଥିଲେ ଓ କଲିକତାରେ ଏକ ବଡ ସାଧାରଣ ସଭାରେ ଶୋକ ପ୍ରକାଶ କରିଥିଲେ । ଏହାର କିଛି ଦିନ ପୂର୍ବରୁ ସେ ବକ୍‌ସାରର ଆଉ ଗୋଟିଏ କ୍ୟାମ୍ପରେ ଥିବା ବନ୍ଦୀମାନଙ୍କ ପାଖକୁ ଅଭିବାଦନ ମୂଳକ କବିତାଟିଏ ଉପହାର ପଠାଇଥିଲେ । ପ୍ରାଶାସକୀୟ ଅପାରଗତା ଯୋଗୁଁ ଉତ୍ତରବଂଗରେ ବନ୍ୟା ହୋଇ ଭୟଙ୍କର ପ୍ରାକୃତିକ ବିପର୍ଯ୍ୟୟ ଘଟିଗଲା । ବନ୍ୟାବିଧ୍ୱସ୍ତ ଅଞ୍ଚଳରେ ଲୋକମାନଙ୍କର ସାହାଯ୍ୟାର୍ଥେ କବି ପୂର୍ବ ବର୍ଷ ଜର୍ମାନୀରେ ରଚନା କରିଥିବା ଇଂରାଜୀ କବିତା 'ଦି ଚାଇଲ୍‌ଡ୍' ର ବଙ୍ଗଳା ନାଟ୍ୟାଭିନୟ 'ଶିଶୁତୀର୍ଥ' କଲିକତାରେ ମଞ୍ଚସ୍ଥ କରିଥିଲେ ।

1932 ଜାନୁୟାରୀ ଚାରି ତାରିଖରେ କଲିକତାର ନାଗରିକ ମାନଙ୍କ ଦ୍ୱାରା ରବୀନ୍ଦ୍ର ନାଥଙ୍କ ସତୁରିତମ ଜନ୍ମ ଦିନ ଉପଲକ୍ଷେ ଆୟୋଜିତ ଉତ୍ସବକୁ କବିଙ୍କ ନିର୍ଦ୍ଦେଶାନୁସାରେ ସଂକ୍ଷିପ୍ତ ଓ ନିରାଡମ୍ବର ଭାବରେ ପାଳନ କରାଯାଇଥିଲା । କାରଣ ଠିକ୍ ଏତିକି ବେଳେ ଲଣ୍ଡନରୁ ଗୋଲଟେବୁଲ ବୈଠକରେ ଯୋଗଦେଇ ଫେରିବାର ମାତ୍ର ସପ୍ତାହକ ଭିତରେ ମହାତ୍ମା ଗାନ୍ଧି ଗିରଫ୍ ହୋଇଥିବା ଖବର ଆସି ପହଞ୍ଚିଥିଲା । ଏ ପର୍ଯ୍ୟନ୍ତ ରବୀନ୍ଦ୍ରନାଥଙ୍କ ମନରେ ବ୍ରିଟିଶ୍ ପ୍ରଶାସନ ଓ ଆଇନ୍‌କାନୁନ୍ ପ୍ରତି ଆସ୍ଥା ଥିଲା । ଏବେ ସେ ବିଲାତର ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ରାମସେ ମାକ୍‌ଡୋନାଲ୍‌ଡଙ୍କ ପାଖକୁ ଏକ ତାର ବାର୍ତ୍ତାରେ "ଇଂରେଜ୍ ଶାସକ ଗୋଷ୍ଠୀ ଓ ଆମ ଭିତରେ ଏକ ସ୍ଥାୟୀ ଅନ୍ତର ସୃଷ୍ଟି କରୁଥିବା ଏକଚାଟିଆ ନିଷ୍ପେଷଣନୀତି" ବିରୁଦ୍ଧରେ ପ୍ରତିବାଦ ଜଣାଇ ଥିଲେ । ଜାନୁୟାରୀ 26 ତାରିଖରେ ସେ ଯେଉଁ ପ୍ରେସ୍‌ଇସ୍ତାହାର ଦେଇଥିଲେ ତାହା ସରକାରୀ ନିୟନ୍ତ୍ରଣ ଯୋଗୁଁ ସଂପୂର୍ଣ୍ଣ ପ୍ରକାଶ ପାଇ ପାରି ନଥିଲା । କବି ଖୁବ୍ ବ୍ୟଥିତ ଓ ବିଚଳିତ ହୋଇପଡ଼ିଥିଲେ । ଏଇ ଅନୁଭବକୁ ସେ 'ପ୍ରଶ୍ନ' ନାମକ ଏକ କବିତାରେ ପ୍ରକାଶ କରିଥିଲେ ।

ଭଗବାନଙ୍କୁ ସମ୍ବୋଧନ କରି ସେ ଲେଖିଥିଲେ "ଦୂତ ମାନଙ୍କୁ ସେ ଯୁଗେ ଯୁଗେ ପଠାଇଥାନ୍ତି ଏ ମର୍ତ୍ତ୍ୟରେ ଦୟା ଓ ପ୍ରେମ ପ୍ରଚାର କରିବା ଲାଗି । ସେମାନେ ପୂତପ୍ରାଣ ଓ ଆମର ନମସ୍ୟ । କିନ୍ତୁ ବର୍ତ୍ତମାନ ଯୁଗରେ ସେମାନଙ୍କ ବାଣୀ ସତେ ଯେପରିକି ହାସ୍ୟରେ ପରିଣତ ହେଲାଣି । ତେଣୁ ମୁଁ ପଚାରିବାକୁ ଚାହେଁ ହେ ଭଗବାନ ! ତମେ ନିଜେ କ'ଣ ତମର ଏଇ ପ୍ରାଣୀମାନଙ୍କୁ କ୍ଷମା ଦେବାରେ ସମର୍ଥ ହୁଅ ଯେଉଁମାନେ ତମ ବାୟୁମଣ୍ଡଳକୁ ବିଷାକ୍ତ ଓ ତମ ଆଲୋକକୁ ଅନ୍ଧକାରମୟ କରିପକାଇଛନ୍ତି ?"

ମର୍ମାହତ କବି କିଛି ଦିନ ପାଇଁ ଖରଦାଠାରେ ଗଙ୍ଗାକୂଳରେ ଏକ କୋଠାରେ ବିଶ୍ରାମ ନେଲେ । ସେଠି ସେ ନିଜର ଓ ଅନ୍ୟ ଚିତ୍ରଶିଳ୍ପୀମାନଙ୍କର ଚିତ୍ରକଳା ଦ୍ୱାରା ପ୍ରତ୍ୟକ୍ଷ ଭାବରେ ଅନୁପ୍ରେରିତ ହୋଇ ଅନେକ କବିତା ରଚନା କରିଥିଲେ । ଏଗୁଡିକ ପରବର୍ତ୍ତୀ ସମୟରେ 'ବିଚିତ୍ରିତା' ନାମରେ ପ୍ରକାଶ ପାଇଥିଲା ଓ ଶିଳ୍ପୀ ନନ୍ଦଲାଲ ବୋଷଙ୍କୁ ଉତ୍ସର୍ଗୀତ ହୋଇଥିଲା ।

ବୟସ ଓ ବ୍ୟସ୍ତ ବହୁଳ ଜୀବନର ଭାର ରବୀନ୍ଦ୍ରନାଥଙ୍କ ଶରୀରକୁ କ୍ରମଶଃ ସ୍ଥବିର କରି ପକାଇଥିଲା । ତାଙ୍କର ସଳଖ ପୃଷ୍ଠଦେଶ ଓ ମଜବୁତ ସ୍କନ୍ଧ କ୍ରମଶଃ ବଙ୍କା ହୋଇ ଆସୁଥିଲା । ଯେତେବେଳେ ସେ ବୁଝିପାରୁଥିଲେ ଯେ ତାଙ୍କର ଆଉ ବିଦେଶ ଯାତ୍ରା ସମ୍ଭବ ନୁହେଁ, ଠିକ୍ ସେତିକି ବେଳକୁ ଇରାନର ରାଜା ରେଜାଶାହା ପେହ୍ଲାବିଙ୍କଠାରୁ ତାଙ୍କ ଦେଶ ଭ୍ରମଣ କରିବା ପାଇଁ ସେ ନିମନ୍ତ୍ରଣ ପାଇଥିଲେ । "ଏକ ପଡୋଶୀ ରାଷ୍ଟ୍ରର ମୁଖ୍ୟଙ୍କ ନିମନ୍ତ୍ରଣକୁ ଏଡାଇ ହେବ ନାହିଁ"- ସେ ନିଜ ଦିନଲିପିରେ ଲେଖିଥିଲେ । ଶେଷରେ ଏପ୍ରିଲ୍ 11, 1932ରେ ସେ ପୁତ୍ରବଧୂ ପ୍ରତିମାଦେବୀଙ୍କ ସହିତ ପେର୍ସିଆ ବାହାରିଲେ । ପ୍ରତିମାଦେବୀ ଆଦରର ଝିଅପରି ବୃଦ୍ଧ କବିଙ୍କର ସେବା ଯତ୍ନ କରୁଥିଲେ । ଦୀର୍ଘ ଯାତ୍ରାର କଷ୍ଟକୁ ଏଡାଇବା ପାଇଁ ସେମାନେ ବ୍ୟୋମଯାନରେ ଯାତ୍ରାକଲେ ।

ବସାଇର୍‌ରୁ ସେମାନେ ସ୍ଥଳପଥରେ ଶିରାଜ୍ ଗଲେ । ସେଦେଶର ଦୁଇ ପ୍ରଧାନ କବି ହାଫିଜ୍ ଓ ସାଃଦିଙ୍କ ସମାଧି ପୀଠରେ ସେମାନଙ୍କ ପ୍ରତି ଶ୍ରଦ୍ଧାଜଣାଇ କବି ଖୁସି ହେଲେ । ଇସ୍‌ପାହାନ୍‌ରେ ଅଳ୍ପ ସମୟ କଟାଇ ସେମାନେ 29 ଏପ୍ରିଲ୍‌ରେ ଯାଇ ତେହେରାନ୍‌ରେ ପହଞ୍ଚିଲେ । ସେଠାର ପ୍ରାଶାସନିକ ଓ ଜନସାଧାରଣଙ୍କ ସ୍ୱାଗତ ସମ୍ବର୍ଦ୍ଧନା କବିଙ୍କୁ ଅଭିଭୂତ କରିଥିଲା । ସେଠାର ସମ୍ବାଦପତ୍ରମାନ ତାଙ୍କୁ 'ପୂର୍ବାକାଶର ଉଜ୍ଜ୍ୱଳତମ ତାରକା' ରୂପେ ବର୍ଣ୍ଣନା କରିଥିଲେ । କବି ସେଠି ଅବସ୍ଥାନ କରୁଥିବା ବେଳେ ତାଙ୍କର ଜନ୍ମଦିନ ପାଳିତ ହୋଇଥିଲା । ପ୍ରାଚ୍ୟର ପ୍ରାଚୁର୍ଯ୍ୟ ପୂର୍ଣ୍ଣ ରୀତିରେ ତେହେରାନ୍‌ର ସାହା ଓ ଜନସାଧାରଣଙ୍କ ପକ୍ଷରୁ ତାଙ୍କ ପ୍ରତି ଦିଆଯାଇଥିବା ଶ୍ରଦ୍ଧା ଓ ସମ୍ମାନରେ ବିହ୍ୱଳିତ ହୋଇ କବି ତାଙ୍କର ବିଦାୟକାଳିନ ବକ୍ତୃତାରେ ନିଜର ଆନନ୍ଦକୁ ବ୍ୟକ୍ତ କରିଥିଲେ । ଭାରତ ଫେରିବା ବାଟରେ ସେ ବାଗଦାଦ୍‌ରେ ଅଟକିଥିଲେ । ସେଠି ଇରାକ୍‌ର ରାଜା ଫଇଜାଲ୍‌ଙ୍କ ଦ୍ୱାରା ସମ୍ବର୍ଦ୍ଧିତ ହୋଇଥିଲେ ଓ ଦିନଟିଏ ବେଦୁଇନ୍ କ୍ୟାମ୍ପରେ କଟାଇ ଥିଲେ । ଏହାଥିଲା ତରୁଣ ଜୀବନରୁ ତାଙ୍କର ଏକ ଅଭିଳାଷ । 'ଓଃ ମୁଁ ହୋଇଥାନ୍ତି କି ବେଦୁଇନ୍‌ଟିଏ !' ତାଙ୍କର ଗୋଟିଏ ପ୍ରାଥମିକ କବିତାରେ ସେ ଆଶା ପ୍ରକାଶ କରିଥିଲେ ।

ଗୋଲାପ ଓ ନାଇଟିଙ୍ଗେଲ୍‌ର ଦେଶରୁ ଫେରିବା ବେଳକୁ ଦାରୁଣ ଶୋକସମ୍ବାଦଟିଏ ତାଙ୍କୁ ଅପେକ୍ଷା କରିଥିଲା । ତାଙ୍କର ଏକମାତ୍ର ନାତି ନୀତୀନ୍ଦ୍ର ଖୁବ୍ ବୁଦ୍ଧିମାନ ଓ ବିଚକ୍ଷଣ ଯୁବକ ଯାହାକୁ ସେ ପୁସ୍ତକଛପା ବିଷୟରେ ଆଧୁନିକ ପ୍ରଶିକ୍ଷଣ ନେବାପାଇଁ ଜର୍ମାନୀ ପଠାଇଥିଲେ ସେ

ସାଂଘାତିକ ଅସୁସ୍ଥ ହୋଇପଡିଲା । ଶେଷରେ ସେ ଅଗଷ୍ଟ 7 ତାରିଖରେ ଜର୍ମାନୀରେ ମୃତ୍ୟୁବରଣ କଲା । ଦୂର ଦେଶରେ ଏକ ମାତ୍ର ନାତିର ଦେହାନ୍ତ କବିଙ୍କ ପାଇଁ ଥିଲା ଏକ ଦାରୁଣ ଧକ୍କା । କିନ୍ତୁ କବି ଏପରି ଅନେକ ଦୁଃଖ ଓ ବିଚ୍ଛେଦ ଅଙ୍ଗେନିଭେଇଥିଲେ, ଶୋକ ସନ୍ତାପ ଭିତରୁ ପୁଣି ନୂଆ ଶକ୍ତି ସଂଚୟ କରି ଜୀବନ ପ୍ରତି ଦୃଢ଼ ବିଶ୍ୱାସକୁ ସେ ଫେରିପାଉଥିଲେ । ''ସୁଦୂରରୁ ତମେ ଦିଶ ଭୟଙ୍କର ତୁମର ସେ ନିଦାରୁଣ ରୂପଘେନି'' - ଗୋଟିଏ ସୁନ୍ଦର କବିତାରେ କବି ଲେଖିଥିଲେ । ''କଂପିତ ହୃଦୟରେ ମୁଁ ତୁମ ସମ୍ମୁଖରେ ଠିଆ ହେଲି, ତୁମର ସେ ଗମ୍ଭୀର ମୂର୍ତ୍ତି ସମ୍ମୁଖରେ ତା ପରେ ଏକ ଧକ୍କା ଖାଇଲି । ମୁଁ ଥରି ଥରି ଭୟରେ ପ୍ରଶ୍ନ କଲି- - ଆଉ ଅଧିକ କ'ଣ ? ଶେଷ ବଜ୍ରପାତ ଏବେ ସୁଦ୍ଧା ପଡିବାକୁ ବାକି ? ଯଦି ତାହା ପଡେ, ଏଇ ଶେଷତ ? ମୁଁ ପଚାରିଲି । ଆଉ ଅଧିକ ନାହିଁ ? ଭୟ ଛାଡିଗଲା । ତୁମ ବଜ୍ର ଯେତେବେଳେ ଉପରେ ସଚଳ, ତୁମେ କେତେ ବୃହତର ଦିଶ । ଆଉ ଯେତେବେଳେ ତୁମେ ତଳକୁ ଓହ୍ଲାଇ ଆସ ମୋ ପାଖକୁ, ଆଉ ଅଧିକ ବିସ୍ତାରିତ ହେବା ପାଇଁ ବାଟ ନଥାଏ । ତୁମେ ବଡ ହୋଇପାର, କିନ୍ତୁ କେବେ ମୃତ୍ୟୁ ଠାରୁ ବଡନୁହଁ । ଏବେ କିନ୍ତୁ ମୁଁ ମୃତ୍ୟୁଠାରୁ ବି ବଡ । ଏଇ ମୋର ଶେଷ କଥା ।''

ଯେତେବଡ଼ ବାଧା ହେଉ- କବି ତାକୁ ପୂର୍ଣ୍ଣତଃ ଅଙ୍ଗୀକାର କରି ମଧ କେବେ ହେଁ ମନ ଭାଙ୍ଗି ଦେଉନଥିଲେ । ମାନସିକ ଅବସାଦକୁ ସେ ଯେକୌଣସି ଶାରୀରିକ ରୋଗଠାରୁ ବଡ ଭାବରେ ଗ୍ରହଣ କରୁଥିଲେ । ଦୁଃଖ ଓ ପରାଜୟ ଜୀବନର ଅବିଚ୍ଛେଦ୍ୟ ଅଙ୍ଗ ତେଣୁ ପୁରୁଷୋଚିତ ସାହସ ଘେନି ଏହାକୁ ଗ୍ରହଣ କରିବାକୁ ପଡିବ । ଦୁଃଖର ଅସହ୍ୟ ମୁହୂର୍ତ୍ତରେ କ୍ରୋଧରେ ଅନ୍ଧ ହେବା ବା କାପୁରୁଷ ପରି ଯନ୍ତ୍ରଣାରେ କାତର ହୋଇ ପଡିବା ଯାହା କେତେକ କବିଙ୍କ ଆତ୍ମଚରିତ ଓ ସାନ୍ତ୍ୱନା ଭିତରେ ପ୍ରକାଶ ପାଇଥାଏ । ତାହା ରବୀନ୍ଦ୍ରନାଥଙ୍କ ପ୍ରକୃତିର ବିରୋଧୀ ଥିଲା । ଏପରି ଭାବପ୍ରବଣତା ଯଦିବା କେତେବେଳେ ତାଙ୍କ ଭିତରେ ଦେଖାଦେଇଥିଲା ତାହା ଥିଲା ଅନ୍ୟମାନଙ୍କ ପ୍ରତି ଓ ଜୀବନପ୍ରତି ତାଙ୍କର ମମତାବୋଧ, ମାତ୍ର ନିଜ ପାଇଁ ନୁହେଁ । ଜୀବନକୁ ଭଲପାଇବା ଥିଲା ତାଙ୍କର ଶ୍ରେଷ୍ଠ ଅନୁଭବ । ତାଙ୍କର ଜୀବନ ଦର୍ଶନ ଥିଲା ଏଇ ଭାବ ଧାରାରେ ଉଦ୍‌ବୁଦ୍ଧ । ଜୀବନକୁ ଭଲପାଇବାର ଆନନ୍ଦ ଓ ସୂକ୍ଷ୍ମ ଅନୁଭୂତିକୁ ରୂପଦେବାର ଦକ୍ଷତା ଏ ଦୁଇଟି ତାଙ୍କ ପ୍ରତି ଈଶ୍ୱରଙ୍କର ଆଶୀର୍ବାଦ ଥିଲା ଓ ଜୀବନରେ ସେ କେବେ ଏଥିପ୍ରତି ଅକୃତଜ୍ଞ ହୋଇନଥିଲେ । ବ୍ୟକ୍ତିଗତ ଦୁଃଖରେ ମ୍ରିୟମାଣ ଥିଲାବେଳେ ବି ସେ ରଚନା କରିଥିଲେ-

ପୁଣି ଥରେ ଉଠିଲି ମୁଁ ଜାଗି
ରାତିଗଲା ପାହି, ମୁଦ୍ରିତ ଚକ୍ଷୁ ମେଲି
ଧରଣୀ ଚାହିଁଛି ଆଲୋକ ମାଗି
ଅଶେଷ ଆଶ୍ଚର୍ଯ୍ୟ ରହିଛି ଲାଗି ।........
ଏ ସତ୍ୟ ବୃକ୍ଷର ବଲ୍‌କଲ ଉପରେ
ଶତାବ୍ଦୀର ଅଭ୍ରାନ୍ତ ସ୍ୱାକ୍ଷର । ଦେଖିଛି ସେ
ଧୂଳିରେଯେ ମିଶିଛନ୍ତି କେତେ ରାଜା ଆଉ ବୀର ।
ଆଜି ତା'ର ଛାୟା ତଳେ
ଆଉ ଦିନଟିଏ ପାଇଁ ମୁହିଁ ବସି ଅଛି ହେଳେ ।
ଜାଣିଛି ଏତକ

ଅଦେଖା ଅଶୁଣା ଭାବେ ଅହରହ ଘୁରୁ ଅଛି
ସମୟର ଚକ ।

ଅଦୃଶ୍ୟ ଓ ଅଶ୍ରାବ୍ୟଭାବେ ଏଇ ଘୂର୍ଣ୍ଣାୟମାନ ଚକ୍ରର ଗତିଶୀଳ ସଙ୍ଗୀତ ପ୍ରତି ସେ ଚିର ଆକର୍ଷିତ ହେଉଥିଲେ । ଅତୀତକୁ ସେ ମୁଖ ଫେରାଇ ଚାହିଁଲାବେଳେ ଦେଖନ୍ତି ତାଙ୍କର ସେଇ ବାଗ୍‌ଦେବୀଙ୍କୁ, ତାଙ୍କ ଜୀବନର ସକଳ ଐଶ୍ୱର୍ଯ୍ୟ ଓ ପ୍ରାଚୁର୍ଯ୍ୟର ଅଧିଷ୍ଠାତ୍ରୀ ସେ । ସକଳ ହସ ଓ କାନ୍ଦ ଭିତରେ ସେ ତାଙ୍କୁ ବାଟ କଡାଇଛନ୍ତି ବହୁ ପଥ ଦେଇ । ଏଇ ଭଳି ବନ୍ଧୁର ଓ ମସୃଣ ଜୀବନ ପଥରେ ଗତିକଲାବେଳେ ଯେତେ ସବୁ ସୃଷ୍ଟି ତାଙ୍କ ଅନ୍ତରରୁ ଉତ୍ସରିତ ହୋଇଛି ସେ ବାଗ୍‌ଦେବୀଙ୍କ ପାଦପୀଠରେ ତାହା ସମର୍ପଣ କରିଛନ୍ତି । କିନ୍ତୁ ଆଜି କାହିଁକି ସେ ସ୍ମିତ ବଦନରେ ହାତରେ ଝୁଡି ଟିଏ ଧରି ଏଇ ଗୋଧୂଳି ବେଳାରେ ଠିଆ ହୋଇଛନ୍ତି ? ଆହୁରି କ'ଣ ନିଜକୁ ସେ ଅଜାଡି ଦେବେ ସଂପୂର୍ଣ୍ଣ ଶୂନ୍ୟ ହେବା ପର୍ଯ୍ୟନ୍ତ ?

ଏଇ କବିତାଟି ଓ ଆହୁରି ଅନେକ କବିତା 1932 ରେ 'ପରିଶେଷ' ନାମରେ ପ୍ରକାଶିତ ହୋଇଥିଲା । କେତେକ ସ୍ମୃତି ବହୁଳ, କେତେକ ଦୁଃଖାର୍ଦ୍ର, କେତେକ ମାଦକତା ଭରା ପୁଣି 'ଗୋଟିଏ ପ୍ରଶ୍ନ' ଭଳି କେତେକ କ୍ରୋଧାନୁରଞ୍ଜିତ, ଏହି ପରି ବିଭିନ୍ନ ବିଷୟକୁ ଘେନି ରଚିତ ଏଇ କବିତା ଗୁଡିକରେ ମଗ୍ନ କାରୁଣ୍ୟର ପ୍ରଜ୍ଞାଦୀପ୍ତ ପ୍ରକାଶ ଦେଖିବାକୁ ମିଳେ । ନାମ କରଣରୁ ବୁଝାଯାଏ ଏଇ ସମୟକୁ କବି ବୋଧହୁଏ ତାଙ୍କର ସୃଷ୍ଟିଶୀଳ ଜୀବନର ଶେଷ ବୋଲି ଭାବୁଥିଲେ । କିନ୍ତୁ ପ୍ରକୃତରେ ଏହାଥିଲା 1914 ରେ 'ବଳାକା' ରଚନା ସମୟରୁ ଆରମ୍ଭ ହୋଇଥିବା ଗୋଟିଏ ନିର୍ଦ୍ଦିଷ୍ଟ ପର୍ଯ୍ୟାୟର ଶେଷ । ଏହାର ଆରମ୍ଭ ଓ ଶେଷ ଉଭୟ ଥିଲା ସମାନ ଭାବରେ ସୁନ୍ଦର ଓ ମୁଗ୍ଧକର । କିନ୍ତୁ ପ୍ରକୃତରେ ଏଠି ତାଙ୍କର ସୃଷ୍ଟିମୟ ଜୀବନର ଶେଷ ହୋଇନଥିଲା । ଆଉ ଗୋଟିଏ ପର୍ଯ୍ୟାୟ ଆରମ୍ଭ ହେବାକୁ ଯାଉଥିଲା, ଯାହାର ସମ୍ଭାବିତ ରୂପ କବି ପୂର୍ବୋକ୍ତ କବିତାରେ କଳ୍ପନା କରିଥିଲେ । ସେଠି ଅଧିଷ୍ଠାତ୍ରୀ ବାଗ୍‌ଦେବୀଙ୍କୁ ମ୍ଳାନ ଅବସ୍ଥାରେ ସ୍ମିତ ବଦନରେ ଶୂନ୍ୟ ପାତ୍ର ଧରି ଉଭା ହୋଇଥିବା ସେ ଦେଖିଥିଲେ ।

ବୃଦ୍ଧ କବି ସହସା ଜୀବନର ମୌଳିକ ଶ୍ରେଷ୍ଠତ୍ୱ ଫେରି ପାଇଲେ । ନୂତନତାର ସନ୍ଧାନରେ ତାଙ୍କର ପ୍ରାଣ ବ୍ୟାକୁଳ ହୋଇ ଉଠିଲା । ଗଦ୍ୟରେ ସଙ୍ଗୀତର ସ୍ୱର ଲହର ଫୁଟାଇବା, ଗତାନୁଗତିକ ଏଇ ସାଧାରଣ ବ୍ୟବହୃତ ଉସର ଭୂଇଁରେ ସଙ୍ଗୀତର ମଧୁ ମୂର୍ଚ୍ଛନାର ସମ୍ଭାବନା ତାଙ୍କ ମନକୁ ଆନ୍ଦୋଳିତ କରି ତୋଳିଥିଲା । ଯେତେ କର୍କଶ କଠିନ ଓ ଅସମତଳ ହେଲେ ମଧ ସେ ତାଙ୍କର କାବ୍ୟଶ୍ରୀକୁ ସେଥିରେ ସହଜରେ ପ୍ରୋଥିତ କରି ସେଥିରୁ ସଙ୍ଗୀତର ଧ୍ୱନି ଝଙ୍କାର ଶୁଣାଇ ପାରିଥିଲେ । 'ପୁନଶ୍ଚ' (1932) 'ଶେଷ ସପ୍ତକ' (1935), 'ପତ୍ରପୁଟ' (1936) ଓ 'ଶ୍ୟାମଳୀ' (1936) - ଏପରି ଚାରୋଟି ଭିତରେ ଏଇ ଧାରାର ସର୍ବୋତ୍କୃଷ୍ଟ ପ୍ରକାଶ ଦେଖିବାକୁ ମିଳିଲା । ପୂର୍ବର କାବ୍ୟଧାରାକୁ ସେ ସମ୍ପୂର୍ଣ୍ଣ ରୂପରେ ଭୁଲି ଯାଇ ନଥିଲେ । ଛନ୍ଦମୟ ଓ ମୁକ୍ତଛନ୍ଦ ବହୁ କାବ୍ୟ ଗ୍ରନ୍ଥ ରଚନା କରି ସେ ଏ ସମୟରେ ପ୍ରକାଶ କରିଥିଲେ । କିନ୍ତୁ 1932 ଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଏଇ ନଅ ବର୍ଷ ମଧରେ ତାଙ୍କର ସମଗ୍ର ରଚନା ଭିତରେ ତାଙ୍କର କାବ୍ୟ ପ୍ରତିଭା ଏକ ନୂତନ କୋଟୀକୁ ଯେ ପହଞ୍ଚିଥିଲା, ଏହା ନିଶ୍ଚିତ । ସେତେବେଳେ ତାଙ୍କର ଚିନ୍ତା ଆଧାତ୍ମିକ ଦର୍ଶନର ସମୁନ୍ନତ ସ୍ତରରେ ବିଳସିତ ହେଉଥିଲା । ଆଉ ତାଙ୍କର ଆଖି ଆଗରେ ଘଟିଯାଇଥିବା ଘଟଣା ସମୂହକୁ ସେ ଅଧିକରୁ ଅଧିକ ସହୃଦୟତା ଓ ସଂବେଦନା ଘେନି ଦେଖୁଥିଲେ ଓ ସେସବୁ ଭିତରେ

ଅନ୍ତଃସୌନ୍ଦର୍ଯ୍ୟର କେନ୍ଦ୍ରଟିକୁ ଖୋଜୁଥିଲେ ।

ଭାଗ୍ୟତଃ ପାଶ୍ଚାତ୍ୟ ଜଗତରେ ତାଙ୍କ ପ୍ରତି ଥିବା ପ୍ରଶଂସାର ବାତାବରଣ କ୍ରମଶଃ ଫିକା ପଡିଆସିଥିଲା ଓ ତାଙ୍କର ସୁନାମ ଏକଦା ଉଦ୍‌ଭାସିତ ହୋଇଥିବା ଗୋଟିଏ ଉଲ୍‌କା ପିଣ୍ଡର ଲିଭି ଆସୁଥିବା ସ୍ମୃତିଠାରୁ ହୁଏତ ଟିକିଏ ମାତ୍ର ବେଶୀ ଥିଲା । ବିଶ୍ୱକୁ ପୁନର୍ଗଠନ କରିବା ପାଇଁ ନିଜର ମତକୁ ପ୍ରଚାର କରିବାର ଉଦଗ୍ର କାମନା ତାଙ୍କ ଭିତରେ ଆସ୍ତେ ଆସ୍ତେ ଲିଭି ଆସୁଥିଲା । ଥରେ ସେ ସ୍ମରଣ କରି ଲେଖିଥିଲେ ''ପ୍ରଚାରକ ଜଣେ ନିର୍ଦ୍ଦିଷ୍ଟ ମତବାଦର ବିଧିବଦ୍ଧ ପ୍ରବକ୍ତା ।'' ''ଦିନର ସବୁ ସମୟରେ ଶ୍ରୋତାମାନେ ଆସି ପ୍ରଶ୍ନ କରୁଥିଲେ । ଅଭ୍ୟାସବଶତଃ ସେ ଯେଉଁ ଉତ୍ତର ଦେଇ ଚାଲିଥିଲେ କ୍ରମଶଃ ତାହା ସଜୀବତା ହରାଉଥିଲା ଓ ପ୍ରାଣହୀନ ଶବ୍ଦର କୁହେଳି ଭିତରେ ଭାବ ଲୁପ୍ତପ୍ରାୟ ହୋଇ ଯାଇଥିଲା । ମୋ ମତରେ ଲୋକଙ୍କ ଧାରଣା ବିଶେଷତଃ ଯେଉଁ ଲୋକମାନେ ସାମର୍ଥ୍ୟକୁ ଅପେକ୍ଷା ନ କରି ଅନ୍ୟମାନଙ୍କୁ ସାହାଯ୍ୟ କରିବା ପାଇଁ ଆଗଭର ହେଉଥାନ୍ତି ସେମାନଙ୍କ ଧାରଣା ଅପେକ୍ଷା ଏହା ଥିଲା ଅଧିକ ମୂଲ୍ୟହୀନ । ମୁଁ ଭାବେ କବିଟିଏ ହେବାଠାରୁବଳି ଆଉ ନିରାପଦ କିଛି ନାହିଁ । କାରଣ କବିମାନେ ହିଁ ଅନ୍ୟମାନଙ୍କର ପ୍ରୟୋଜନକୁ ଭ୍ରୂକ୍ଷେପ ନକରି ଆପଣାର ସୃଷ୍ଟିମୟ ମୁହୂର୍ତ୍ତପ୍ରତି ସତ୍ୟନିଷ୍ଠ ହୋଇଥାନ୍ତି ।''

ଏପରି ଶୁଭ ମୁହୂର୍ତ୍ତର ଅପେକ୍ଷା ଥିଲା । ନିଜର ଓ ନିଜ ପାଠକମାନଙ୍କର ସୌଭାଗ୍ୟ ଯେ ଏଇ ସମୟଠାରୁ ସେ ନିଜର ମାତୃଭୂମି ଓ ତା'ରି ବାୟୁମଣ୍ଡଳ ଭିତରେ ଆବଦ୍ଧ ହୋଇ ରହିଲେ । ଏହା ଯେ ଏକ ମହତ୍ ଆଶୀର୍ବାଦ ଥିଲା ଏକଥା ପ୍ରମାଣିତ ହେଲା । ବହୁବର୍ଷ ପୂର୍ବେ ସେ ଥରେ ଲେଖିଥିଲେ-

ରୂପ ସାଗରରେ ବୁଡିଥିଲି ମୁଁ
ଅରୂପ ରତନ ଆଶା କରି,
କୂଳେ କୂଳେ ଆଉ ଘୂରିବିନି ଦିନେ
ଭସାଇ ମୋଅର ଜୀର୍ଣ୍ଣ ତରୀ ।

ଭ୍ରମଣ ବନ୍ଦ ହୋଇଯିବା ପରେ ବର୍ତ୍ତମାନ ସେ ଆହୁରି ଗଭୀରକୁ ଯାଇ ରତ୍ନ ସଂଗ୍ରହ କରିପାରିଲେ ।

ବଙ୍ଗ ସାହିତ୍ୟର ବହୁ ପ୍ରସିଦ୍ଧ ସମାଲୋଚକଙ୍କ ମତରେ ଜୀବନର ଶେଷ ଦଶକରେ ହିଁ ରବୀନ୍ଦ୍ରନାଥଙ୍କର ଶ୍ରେଷ୍ଠ କୃତି ସବୁ ରଚିତ ହୋଇଥିଲା । ଏହା ପାଠକର ମନୋଭାବ, ରୁଚି ଓ ପସନ୍ଦ ଉପରେ ନିର୍ଭର କରେ । କିନ୍ତୁ ଯାହା ନିର୍ବିବାଦରେ ସତ୍ୟ ତାହା ହେଲା ସେ ତାଙ୍କର ଦୀର୍ଘ ସୃଷ୍ଟିଶୀଳ ଜୀବନରେ ବହୁକୋଟୀକୁ ଛୁଇଁଛନ୍ତି । ପ୍ରତ୍ୟେକଟି ଅନ୍ୟଠାରୁ ଭିନ୍ନ । ଯିଏ ଯେଉଁ ଦିଗରୁ ତାକୁ ଦେଖେ ତାହା ତାକୁ ଶୀର୍ଷତମ ମନେହୁଏ । ଆଉ ଯେହେତୁ କବି ଜୀବନର ଶେଷ ଭାଗରେ ମାପିଥିବା ଏଇ କୋଟୀ ତାଙ୍କ ପାଠକମାନଙ୍କ ପାଖରେ ନିକଟତମ ଥିଲା ଓ ବୃଦ୍ଧ ବୟସରେ ଭଗ୍ନ ସ୍ୱାସ୍ଥ୍ୟ ଘେନି ସେଇ ଶୀର୍ଷରେ ପହଞ୍ଚିବା ଅଧିକ ବୀରତ୍ୱପୂର୍ଣ୍ଣ ଓ ଗୌରବମୟ ଥିଲା, ତାହା ସମସ୍ତଙ୍କ ପାଖରେ ସର୍ବଶ୍ରେଷ୍ଠ ମନେହେବା ସ୍ୱାଭାବିକ । କିନ୍ତୁ ପରବର୍ତ୍ତୀ ସମୟରେ ରବୀନ୍ଦ୍ରନାଥ କେବଳ କବିତା ପ୍ରତି ଦୃଷ୍ଟି ନଦେଇ ଆହୁରି ଅନେକ କାର୍ଯ୍ୟ କରୁଥିଲେ । ତେଣୁ ସେଥିରୁ କେତେକରେ ନିଷ୍ଠାର ଅଭାବ ଥାଇପାରେ ।

1932 ସେପ୍ଟେମ୍ବର 20 ତାରିଖରେ ବ୍ରିଟିଶ୍ ପ୍ରଧାନ ମନ୍ତ୍ରୀଙ୍କର ସାଂପ୍ରଦାୟିକତା ପାଇଁ ପୁରସ୍କାର ଘୋଷଣାର ପ୍ରତିବାଦ କରି ଜେଲରେ ଥାଇ ମହାତ୍ମାଗାନ୍ଧି ଆମରଣ ଅନଶନ ଆରମ୍ଭ

କରିଥିବା ଶୁଣି ସମସ୍ତେ ସ୍ତମ୍ଭୀଭୂତ ହୋଇଯାଇଥିଲେ । ଏହି ପୁରସ୍କାର ଜାତି ଓ ଅଜାତିଙ୍କ ଭିତରେ ବିଭେଦ ସୃଷ୍ଟି କରିବା ପାଇଁ ଉଦ୍ଦିଷ୍ଟ ଥିଲା । ସେହି ଦିନ ଭୋର ତିନିଟା ବେଳେ ଅନଶନ ଆରମ୍ଭ କରିବା ପୂର୍ବରୁ ମହାତ୍ମା ରବୀନ୍ଦ୍ରନାଥଙ୍କ ପାଖକୁ ଲେଖିଥିଲେ-

''ପ୍ରିୟ ଗୁରୁଦେବ, ବର୍ତ୍ତମାନ ମଙ୍ଗଳବାର ପ୍ରାତଃ ତିନିଟା । ମୁଁ ଏକ ଭୟଙ୍କର ବିପଦ ଭିତରକୁ ପ୍ରବେଶ କରୁଛି । ଏଥିପାଇଁ ଆପଣଙ୍କ ଆଶୀର୍ବାଦ ଓ ଶୁଭେଚ୍ଛା କାମନା କରୁଛି । ଆପଣ ମୋର ଜଣେ ପ୍ରକୃତ ଶୁଭେଚ୍ଛୁବନ୍ଧୁ, କାରଣ ଆପଣ ନିଜର ଚିନ୍ତାକୁ ସଦୟ ଚିତ୍ତରେ ମୁକ୍ତ ଭାବରେ ପ୍ରକାଶ କରି ଆସିଛନ୍ତି । ଯଦି ଆପଣ ମୋର କର୍ମପନ୍ଥାକୁ ଆନ୍ତରିକ ଭାବେ ଅନୁମୋଦନ କରୁଥାନ୍ତି ମତେ ଆଶୀର୍ବାଦ କରନ୍ତୁ । ତାହା ମତେ ଅଧିକ ଶକ୍ତି ଓ ଧୈର୍ଯ୍ୟ ଦେବ ।'' କିନ୍ତୁ ଏଇ ଚିଠି ପଠାଇବା ପୂର୍ବରୁ ସେ କବିଙ୍କ ବାର୍ତ୍ତା ପାଇଲେ । ''ଭାରତ ବର୍ଷର ଜାତୀୟଐକ୍ୟ ଓ ସାମାଜିକ ସଂହତି ପାଇଁ ମୂଲ୍ୟବାନ ଜୀବନକୁ ଉତ୍ସର୍ଗ କରିବା ମଧ୍ୟ ଶ୍ରେୟସ୍କର । ଆମେ ଦୁଃଖାଭିଭୂତ ଅନ୍ତରରେ ଗଭୀର ଶ୍ରଦ୍ଧା ଓ ସମ୍ମାନର ସହିତ ଆପଣଙ୍କର ମହତ୍ତମ ତପସ୍ୟାକୁ ଅନୁସରଣ କରିବୁ ।''

ସେପ୍ଟେମ୍ବର 24 ରେ ରବୀନ୍ଦ୍ରନାଥ ଆଉ ଦୂରେଇ ରହି ନପାରି ୟେର ବେଡ଼ା ଜେଲ୍‌ରେ ମହାତ୍ମାଙ୍କୁ ଦେଖା କରିବା ପାଇଁ ପୁନା ଅଭିମୁଖେ ଗଲେ । ଇତି ମଧ୍ୟରେ ବ୍ରିଟିଶ୍ ସରକାର ମୁଖ୍ୟ ଦାବୀକୁ ବୁଝି ସମାଧାନ ନୀତିକୁ ମାନି ନେଇଥିଲେ, ମହାତ୍ମା ତେଣୁ 26 ତାରିଖରେ ଅନଶନ ଭଙ୍ଗ କରିଲେ । ସେତେବେଳେ ଜେଲ୍‌ରେ ଗୁରୁଦେବ ତାଙ୍କ ପାଖରେ ବସିଥିଲେ ତା ପରେ ଏକ ସାଧାରଣ ବିବୃତି ଦେଇ ମହାତ୍ମା ଗାନ୍ଧି କହିଥିଲେ, ''ଭଗବାନଙ୍କ ନାମରେ ଅନଶନ ଆରମ୍ଭ ହୋଇଥିଲା, ତାଙ୍କର ନାମରେ ପୁଣି ଗୁରୁଦେବଙ୍କ ଉପସ୍ଥିତିରେ ଭଙ୍ଗ କରାଗଲା.........ଅନଶନ ଭଙ୍ଗ ହେବାପରେ କବି ନିଜର ଏକ ବଙ୍ଗଳା ଭକ୍ତିଗୀତ ଗାନ କରିଥିଲେ, ଗୀତଟି ଥିଲା ଗୀତାଞ୍ଜଳିର ମୌଳିକ କବିତା- ''ହୃଦୟ ଯହିଁ ଶୁଷ୍କ ହୁଏ କରୁଣାଧାରାରେ ଆସ ।''

କଲିକତା ବିଶ୍ୱବିଦ୍ୟାଳୟ ରବୀନ୍ଦ୍ରନାଥଙ୍କୁ ବଙ୍ଗଳା ସାହିତ୍ୟର ପ୍ରଫେସରପଦ ମଣ୍ଡନ କରିବାକୁ ଅନୁରୋଧ କଲେ । ଏହି ପଦରେ ରହି ସେ 'କମଳା' ବକ୍ତୃତା ମାଳା ପ୍ରଦାନ କରିଥିଲେ । ବଙ୍ଗଳାରେ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ଶବ୍ଦ ପଞ୍ଜି ସଂକଳନ ପାଇଁ ଗୋଟିଏ ପ୍ରକଳ୍ପ ସେ ନିଜର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ପରିଚାଳନା କରିଥିଲେ । ଏଇ ବିଷୟପ୍ରତି ଦୀର୍ଘ ପଚାଶବର୍ଷ ପୂର୍ବେ ନିଜର ଯୁବାବସ୍ଥାରେ ସେ ଆଗ୍ରହ ଦେଖାଇଥିଲେ । ବହୁ ମର୍ଯ୍ୟାଦାପୂର୍ଣ୍ଣ ବକ୍ତୃତା ପ୍ରଦାନ ଓ ବିବିଧ କାର୍ଯ୍ୟବ୍ୟସ୍ତତା ଭିତରେ ମଧ୍ୟ ସେ ଦୁଇଟି ନୂତନ ନାଟକ ରଚନା କରିଥିଲେ । ଗୋଟିଏ ପୂର୍ବ ରଚିତ କ୍ଷୁଦ୍ରଗଳ୍ପ ଉପରେ ଆଧାରିତ ଆନନ୍ଦଦାୟକ ହାସ୍ୟରସାତ୍ମକ ନାଟକ 'ତାସେରଦେଶ' ଓ ଆଉ ଗୋଟିଏ ବୌଦ୍ଧ ଜନଶ୍ରୁତି ଉପରେ ଆଶ୍ରିତ ଦୁଇ ଚରିତ୍ର ବିଶିଷ୍ଟ ନାଟକ 'ଚଣ୍ଡାଳିକା' । ବୁଦ୍ଧଙ୍କର ମାନସଶକ୍ତି କିପରି ତାଙ୍କର ଜଣେ ଭକ୍ତକୁ ଗୋଟିଏ ଚଣ୍ଡାଳ ବାଳିକାର ସ୍ଖଳନରୁ ବଂଚାଇପାରିଥିଲା- ଏଇ ଜନପ୍ରିୟ ଜନଶ୍ରୁତିଟି କବି ରବୀନ୍ଦ୍ରନାଥଙ୍କ ଲେଖନୀସ୍ପର୍ଶରେ ଆଧ୍ୟାତ୍ମିକ ମହତ୍ତ୍ୱ ବହନ କରୁଥିବା ଏକ ସୁନ୍ଦର ମନସ୍ତାତ୍ତ୍ୱିକ ନାଟକରେ ରୂପ ଗ୍ରହଣ କରିଥିଲା । କିମ୍ବଦନ୍ତୀର ପବିତ୍ର ବ୍ୟକ୍ତିଟିକୁ କଳୁଷିତ କରୁଥିବା ସେଇ ସ୍ଖଳିତ ନାରୀଟି ରବୀନ୍ଦ୍ରନାଥଙ୍କ ନାଟକରେ ଜଣେ ସଚେତନ ଓ ସ୍ୱାଭିମାନୀ ବାଳିକା ହୋଇ ଦେଖାଦେଇଛି ଯିଏ ଜନ୍ମ ସୂତ୍ରରେ ନୀଚ ହେଲେ ମଧ୍ୟ ତାର ଭାଗ୍ୟ ବିଷୟରେ ସଚେତନ ହୋଇପାରି ସବୁ ମଣିଷ ପରି ନିଜକୁ ସମାନ ମନେ କରିଛି ଓ ନିଜ ହୃଦୟର କାମନା ଓ ପ୍ରେମର ଶକ୍ତି ବିଷୟରେ ସଜ୍ଞାନ ହୋଇଉଠିଛି ।

'ତାସେରଦେଶ' ଓ 'ଚଣ୍ଡାଳିକା' ନାଟକ ଦୁଇଟି ସେପ୍‌ଟେମ୍ବର ମାସରେ କଲିକତାରେ ମଞ୍ଚସ୍ଥ ହୋଇଥିଲା । ଏହାପରେ କଲିକତା ବିଶ୍ୱବିଦ୍ୟାଳୟରେ କବି 'ଛନ୍ଦ' ବିଷୟରେ ଏକ ଦୀର୍ଘ ବକ୍ତୃତା ପ୍ରଦାନ କରିଥିଲେ । ତା ପରେ ସେ ଶାନ୍ତିନିକେତନର ଗୋଟିଏ ଦଳକୁ ଘେନି ବମ୍ବେ ଯାତ୍ରା କଲେ । ସେଠି ସରୋଜିନୀ ନାଇଡୁ ଓ ଅନ୍ୟ କେତେକ ରବୀନ୍ଦ୍ରପ୍ରେମୀଙ୍କ ଦ୍ୱାରା ଆୟୋଜିତ ରବୀନ୍ଦ୍ର ସପ୍ତାହରେ ଅଂଶ ଗ୍ରହଣ କରିବାର ଥିଲା । ବମ୍ବେରୁ ସେ ସମୁଦ୍ର କୂଳରେ ଅବସ୍ଥିତ ଓ୍ୱାଲ୍‌ଟିଅର ବିଶ୍ୱବିଦ୍ୟାଳୟକୁ ଗଲେ । ସେତେବେଳେ ସେଠାକାର କୁଳପତି ଡଃ ରାଧାକ୍ରିଷ୍ଣନ୍ ତାଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇଥିଲେ । ସେଠି ଦେଇଥିବା ତାଙ୍କର ବକ୍ତୃତା ପରେ 'ମ୍ୟାନ' ବହି ଭାବରେ ପ୍ରକାଶିତ ହୋଇଥିଲା । ସେଠାରୁ ସେ ଗଲେ ହାଇଦ୍ରାବାଦ । ସେଠି ସେ ନିଜାମ୍‌ଙ୍କ ଦ୍ୱାରା ଅଭିନନ୍ଦିତ ହୋଇଥିଲେ । ନିଜାମ୍ ପୂର୍ବରୁ ବିଶ୍ୱଭାରତୀକୁ ଇସ୍‌ଲାମିକ୍ ଷ୍ଟଡିସ୍‌ରେ ପ୍ରଫେସରପଦ ପ୍ରତିଷ୍ଠା ପାଇଁ ବେଶ୍ ଅର୍ଥ ଦାନ କରିଥିଲେ । ତାପରେ ଡିସେମ୍ବର ମାସରେ କଲିକତା ଫେରି ଆସି କବି ସିନେଟ୍ ହଲରେ 'ଭାରତ ପଥିକ ରାମମୋହନ' ଶୀର୍ଷକ ବିଖ୍ୟାତ ବକ୍ତୃତା ପ୍ରଦାନ କରିଥିଲେ । ସେଇବର୍ଷ ଶେଷ ହେବା ପୂର୍ବରୁ ତାଙ୍କର ଦୁଇଟି ଉପନ୍ୟାସ 'ଦୁଇବୋନ୍' ଓ 'ମାଲଞ୍ଚ' ଓ ଗୋଟିଏ ଗଦ୍ୟ ନାଟକ 'ବାଂଶରୀ' ପ୍ରକାଶିତ ହୋଇଥିଲା । ବହୁ ସାଧାରଣ କାର୍ଯ୍ୟକ୍ରମ ଓ ରାଜନୈତିକ ଘଟଣାର ବିଶୃଙ୍ଖଳା ସତ୍ତ୍ୱେ ଏଇ ବର୍ଷଟି ତାଙ୍କର ସାହିତ୍ୟିକ ଜୀବନ ପାଇଁ ଏକ ସଫଳତାର ବର୍ଷଥିଲା ।

'ଦୁଇବୋନ୍' ଗୋଟିଏ କ୍ଷୁଦ୍ର ମନସ୍ତାତ୍ତ୍ୱିକ ଉପନ୍ୟାସ । ଗତାନୁଗତିକ ତିନୋଟି ଚରିତ୍ରକୁ ନେଇ ଏହା ଗତିଶୀଳ । ଦୁଇ ଭଉଣୀ ଜଣେ ବ୍ୟକ୍ତିକୁ ପ୍ରେମ କରନ୍ତି । ଏଥିରେ ଲେଖକ ଯେପରି ଦେଖାଇବାକୁ ଚାହାନ୍ତି ଯେ ପୁରୁଷଟି ନାରୀ ଭିତରେ ଏକାଧାରାରେ ମାତୃତ୍ୱର ସ୍ନେହ ଓ ପ୍ରଣୟିନୀର ପ୍ରେମ ଦେଖିବାକୁ ଚାହେଁ । ଏ ଉଭୟ ପାଇବା ଲୋକଟି ନିଶ୍ଚୟ ଭାଗ୍ୟବାନ । କିନ୍ତୁ ମନୁଷ୍ୟର ସ୍ୱଭାବ ଓ ସମାଜ ଭିନ୍ନପ୍ରକାର । ଜଣକ ପାଖରେ ସର୍ବଦା ଉଭୟ ଗୁଣ ରହିବା ସମ୍ଭବ ନୁହେଁ । ଆଉ ପ୍ରେମ ଅତିବେଶୀରେ ଆଂଶିକ ପୂର୍ଣ୍ଣତା ଆଣିପାରେ । ସଚଳ ହୃଦୟ କେବେ ହତାଶାକୁ ଏଡାଇଦେଇ ପାରେନି । ଏଇ ଉପନ୍ୟାସରେ ପୁଣି ଦୁଇ ପ୍ରତିଦ୍ୱନ୍ଦୀ ଦୁଇ ଭଉଣୀ ହୋଇଥିବାରୁ ପରିସ୍ଥିତି ଅଧିକ ଜଟିଳ ହୋଇପାରିଛି । ଦୁଇ ଭଉଣୀ ନିଜ ନିଜ ରୂପ ଓ ଗୁଣରେ ସମାନ ଭାବରେ ପ୍ରଶଂସନୀୟ । ଉପନ୍ୟାସ ଭିତରେ ମନସ୍ତାତ୍ତ୍ୱିକ ଦ୍ୱନ୍ଦକୁ ଲେଖକ ଚତୁରତାର ସହିତ ଦକ୍ଷ ଭାବରେ ଚିତ୍ରଣ କରିଛନ୍ତି । ପ୍ରେମ ଓ ବିବାହ ଭିତରେ ଥିବା ବିନୀତ ଭାବ ଭିତରେ, ମୁକ୍ତି ଓ ବନ୍ଧନହୀନତା ଭିତରେ, ଭାବପ୍ରବଣ ଶୂନ୍ୟତା ଓ ନୈତିକହୀନତା ଭିତରେ ଯେଉଁ ଦ୍ୱନ୍ଦ୍ୱ ତାକୁ ଲେଖକ ସୂକ୍ଷ୍ମ ଭାବରେ ବର୍ଣ୍ଣନା କରିଛନ୍ତି ।

'ମାଲଞ୍ଚ' ଉପନ୍ୟାସଟି କ୍ଷୁଦ୍ରତର କିନ୍ତୁ ଅଧିକ ନାଟକୀୟ । ଉପନ୍ୟାସଟି ଏତେ ସଂଳାପଧର୍ମୀ ଯେ ଯେକେହି ପାଠକଲେ ଭାବିବେ ଲେଖକ ଏହାକୁ ନାଟକ ନ କରି ଉପନ୍ୟାସ କଲେ କାହିଁକି ? 'ଦୁଇବୋନ୍' ସହିତ ଏହାର କଥାବସ୍ତୁ ପ୍ରାୟ ସମଧର୍ମୀ । ଏଠି ବି ଦୁଇ ନାରୀ ଓ ଜଣେ ପୁରୁଷ । କିନ୍ତୁ ଏଠି ପ୍ରତିଦ୍ୱନ୍ଦୀ ପତ୍ନୀର ଭଉଣୀ ନୁହେଁ । ସ୍ୱାମୀର ସଂପର୍କୀୟ ଭଉଣୀ । ଏ ଉପନ୍ୟାସର ମନସ୍ତାତ୍ତ୍ୱିକ ପଟଭୂମି ଭିନ୍ନ ପ୍ରକାରର ।

ନିଜ ବଗିଚାପ୍ରତି ଗଭୀର ଭାବରେ ଅନୁରକ୍ତ ଥିବା ଜଣେ ମାଳିକୁ ନିରଜା ଖୁସିରେ ବିବାହ କଲା । ଦିନକୁ ଦିନ ନିରଜା ମଧ୍ୟ ସେଇ ବଗିଚାକୁ ଭଲ ପାଇଲା ଓ ତାରି ଭିତରେ ସ୍ୱାମୀକୁ ଏକାନ୍ତ ନିଜର କରିପାରିଲା । ସ୍ୱାମୀ ତା'କୁ ଅନୁରୂପ ସ୍ନେହ କଲା ଓ ଦୁହିଁଙ୍କର ସଂପର୍କ

ବନ୍ଧୁମାନଙ୍କୁ ଈର୍ଷାପରାୟଣ କରିପକାଇଲା । ଖୁସୀ ଥିବାରୁ ନିରଜା ସର୍ବଦା ବଦାନ୍ୟ ଥିଲା । କିନ୍ତୁ ଭାଗ୍ୟର ବିପର୍ଯ୍ୟୟ । ଏପରି ଦଶବର୍ଷ ଅବାରିତ ଖୁସୀର ଦିନ କଟିଗଲା ପରେ ସେ ଶଯ୍ୟାଶାୟୀ ହୋଇ ପଙ୍ଗୁ ହୋଇଗଲା ଓ ସ୍ୱାମୀର କାର୍ଯ୍ୟରେ ଆଉ ସହାୟକ ହେବାର ଆଶା ରହିଲା ନାହିଁ । କେବଳ ଶେଯ ଉପରୁ ପାଖ ଝରକା ବାଟେ ସେ ତାର ଅତୀତର ସୁଖସଂପଦକୁ ଦେଖିପାରୁ ଥିଲା ।

ଏଇ ଟିକକ ସାନ୍ତ୍ୱନା ତାର ଘୋର ତିକ୍ତତାରେ ପରିଣତ ହେଲା ଯେତେବେଳେ ତାର ସ୍ୱାମୀ ନିଜର ଜଣେ ସଂପର୍କୀୟ ଯୁବତୀ ଭଉଣୀ ସରଳାର ସାହାଯ୍ୟ ନେଇ ବଗିଚାରେ କାମ କଲା । ଆଉ ଜଣେ ସୁନ୍ଦରୀ ସ୍ୱାସ୍ଥ୍ୟବତୀ ଯୁବତୀକୁ ବଗିଚାରେ ନିଜ ସ୍ଥାନରେ କାମ କରିବାର ଦେଖି ନିରଜା ମନରେ ଖରାପ କଥା ଚିନ୍ତା କଲା ଓ ଭୟଙ୍କର ଭାବରେ ଦ୍ୱେଷପରାୟଣ ହୋଇ ଉଠିଲା । ତା'ର ଏଇ ଆଶଙ୍କା ମନରେ ଘନୀଭୂତ ହେଲା ଓ ତାର ଶାରୀରିକ ଯନ୍ତ୍ରଣା ଅପେକ୍ଷା ଏଇ ଘଟଣା ତା ପାଇଁ ଥିଲା ଅଧିକ ଦୁଃଖଦାୟକ । ପୂର୍ବରୁ ଖୁସି ଥିଲାବେଳେ ସ୍ନେହଶୀଳାଥିବା ଏହି ମହିଳାଟି ଅବିଚାରିତ ଭାବରେ ପ୍ରତିଶୋଧ ପରାୟଣା ହୋଇଉଠିଲା । ଏଇ ଆତ୍ମସ୍ଖଳନ ବିଷୟରେ ସଚେତନ ହୋଇ ମଧ୍ୟ ସେ ସେଥିରୁ ଉଦ୍ଧାର ପାଇ ପାରିଲା ନାହିଁ । ତା ଭାଗ୍ୟରେ ଦୁଇ ଦିଗରୁ ଦୁଃଖ ଆସି ଜୁଟିଥିଲା । ପ୍ରଥମେ ସ୍ୱାସ୍ଥ୍ୟରୁ ଓ ପରେ ପ୍ରେମରୁ ବଂଚିତ ହେଲା । ଏପରି ଏକ ଶକ୍ତି-ହୀନତାରେ ଅବସନ୍ନ ହୋଇ ତାର ଜୀବନ ଶେଷ ହେଲା ଯେ ତାକୁ ଭଲ ପାଇବା ବା କ୍ଷମା ଦେବା ସମ୍ଭବ ହୋଇ ପାରିଲାନି ।

'ବାଂଶରୀ' ବୁଦ୍ଧିଦୀପ୍ତ ସଂଳାପଭରା ଗୋଟିଏ ବିଚକ୍ଷଣ ନାଟକ । ଏଥିରେ କଲିକତାର ଅଭିଜାତ ସଂପ୍ରଦାୟର ସୌଖିନ ଚଳଣି, ବଡଲୋକୀ ଛଳନା ଓ ଉଦ୍ଧତ ପଣିଆର ଚିତ୍ରଣ ଦେଖାଯାଏ । ପ୍ରେମ କରିବାର ଶକ୍ତି ବୌଦ୍ଧିକ ପରିହାସ ଭିତରେ ଅପବ୍ୟୟିତ ହୋଇ ଯେଉଁ ଟ୍ରାଜେଡି ଆସିଛି ତାକୁ ଏଥିରେ କମେଡି ଭିତରେ ପରିବେଷଣ କରାଯାଇଛି । ଲେଖକ ଏହାର ପ୍ରଯୋଜନ ପାଇଁ ଚିନ୍ତା କରିଥିଲେ ମଧ୍ୟ କେବେ ଏହା ମଞ୍ଚସ୍ଥ ହୋଇପାରିନଥିଲା । କାରଣ ହୁଏତ ଲେଖକ ଏହାର ମଞ୍ଚସଫଳତା ବିଷୟରେ ନିଶ୍ଚିତ ନଥିଲେ । ସେଥିରେ ଯେଉଁ ଚରିତ୍ର ଓ ଜୀବନଧାରାର ଚିତ୍ରଣ କରାଯାଇଥିଲା ସେଥି ସହିତ ଲେଖକଙ୍କର ସମ୍ପର୍କ ଥିଲା ଅତ୍ୟନ୍ତ କ୍ଷୀଣ । କେବଳ ଶୁଣାଶୁଣିରୁ ସେ ଯାହା ସଂଗ୍ରହ କରିଥିଲେ । ସେତେବେଳକୁ ରବୀନ୍ଦ୍ରନାଥ ଏତେ ବୃଦ୍ଧ ଓ ବିଖ୍ୟାତ ହୋଇ ସାରିଥିଲେ ଯେ ଯେଉଁ ସବୁ ଚରିତ୍ର ଓ ଘଟଣା ସମାଜରେ ସୃଷ୍ଟି ହୋଇ ଚାଲିଥିଲା ତା' ସହିତ ତାଙ୍କର ଯୋଗସୂତ୍ର ନଥିଲା ବା ସେ ସେସବୁକୁ ଗଭୀର ଭାବରେ ଅନୁଧ୍ୟାନ କରିପାରୁ ନଥିଲେ । ଦିନକୁ ଦିନ ପ୍ରେମ ବିଷୟରେ ତାଙ୍କର ଚିତ୍ରଣ ବୌଦ୍ଧିକତାରେ ଭାରାକ୍ରାନ୍ତ ହୋଇ ଉଠୁଥିଲା । ତତ୍ତ୍ୱରେ ଶକ୍ତ ହେଉଥିଲା କିନ୍ତୁ ସୂକ୍ଷ୍ମ ଅନୁଭବକୁ ପ୍ରକାଶ କରିବାର ଶକ୍ତି ସେଥିରେ କମି ଆସୁଥିଲା । କେବଳ ରକ୍ତ ମାଂସର ଶରୀର ନୁହେଁ ହୃଦୟ ତାଙ୍କର ମଧ୍ୟ ବାର୍ଦ୍ଧକ୍ୟ ପ୍ରପୀଡିତ ହୋଇଯାଇଥିଲା । କେବଳ ମସ୍ତିଷ୍କଟି ଥିଲା ଚିରଚଞ୍ଚଳ ଓ କର୍ମକ୍ଷମ ।

ଜାନୁୟାରୀ 1934 ରେ ସେ ଶାନ୍ତିନିକେତନ ଫେରିଆସିବାର ମାତ୍ର ପନ୍ଦର ଦିନ ପରେ ଜବାହାରଲାଲ ନେହେରୁ ଓ ତାଙ୍କ ପତ୍ନୀ କମଳା ସେଠାକୁ ଆସିଲେ । ଜବାହରଲାଲ ନିଜର ସାହସିକ ସ୍ୱଦେଶାନୁରକ୍ତି, ବୌଦ୍ଧିକ ସତତା, ମାନବିକ ବିଚାରବୋଧ ଓ ଆନ୍ତର୍ଜାତିକ ସହଯୋଗିତା ପାଇଁ କବିଙ୍କର ପ୍ରଶଂସାଭାଜନ ଥିଲେ । ତାଙ୍କୁ ଓ ତାଙ୍କ ପତ୍ନୀଙ୍କୁ ଗୋଟିଏ ସର୍ବସାଧାରଣ ସଭାରେ ସ୍ୱାଗତ ସମ୍ବର୍ଦ୍ଧନା କରାଗଲା । ଏତିକି ବେଳେ ଜାନୁୟାରୀ 15ରେ ଉତ୍ତର ଭାରତରେ ଏକ ଭୟଙ୍କର

ଭୂମିକମ୍ପ ହୋଇ ବିହାରର ବହୁ ସହରରେ ଧନ ଜୀବନ ନଷ୍ଟ ହୋଇଥିଲା । ଗାନ୍ଧିଜୀ ସେତେବେଳେ ଦକ୍ଷିଣ ଭାରତ ଭ୍ରମଣ କରୁଥିଲେ । ସେ ଗୋଟିଏ ସାଧାରଣ ବିବୃତ୍ତି ଦେଇ କହିଲେ ଯେ ଭାରତରେ ଅସ୍ପୃଶ୍ୟତା ରୂପକ ପାପପ୍ରତି ଏହି ବିପର୍ଯ୍ୟୟ ହୋଇଛି ଏକ ଦୈବ ଶାସ୍ତି , ''ମୋ ଭଳି ଜଣେ ବ୍ୟକ୍ତି ଏହି ଭୂମିକମ୍ପକୁ ଅସ୍ପୃଶ୍ୟତା ପାପ ପାଇଁ ଏକ ଦୈବ ପ୍ରେରିତ ଶାସ୍ତି ବୋଲି ବିଶ୍ୱାସ କରିବା ଛଡା ଅନ୍ୟ ଉପାୟ ନାହିଁ...... ମୋ ପାଇଁ ବିହାରର ଏଇ ବିପର୍ଯ୍ୟୟ ଓ ଅସ୍ପୃଶ୍ୟତା ନିବାରଣ ପ୍ରଚାର ଭିତରେ ଏକ ସୂକ୍ଷ୍ମ ସଂପର୍କ ଅଛି ବୋଲି ମୋର ମନେ ହୁଏ ।''

ଲୋକମାନଙ୍କ ମନରେ ଥିବା-ପାପବୋଧର ଫାଇଦା ଉଠାଇ ସେମାନଙ୍କ ମନରେ ଭୟ ସଂଚାର କରିବାର ପୁରୋହିତ-ସୁଲଭ କୌଶଳକୁ ମହାତ୍ମାଗାନ୍ଧୀ ଆଶ୍ରୟ କରିଥିବା ଦେଖି ରବୀନ୍ଦ୍ରନାଥ ଖୁବ୍ ଆଘାତ ପାଇଥିଲେ ଓ ଗୋଟିଏ ସାଧାରଣ ବିବୃତ୍ତିରେ କହିଥିଲେ, ''ଯେଉଁ ନିରୀହ ଜନଗଣ ଅସ୍ପୃଶ୍ୟତାକୁ ଏକ ସାମାଜିକ ଚଳଣି ଭାବରେ ଅନ୍ଧାନୁସରଣ କରି ଆସୁଛନ୍ତି ସେମାନେ ଯେ ବିହାରର କେତେକ ସ୍ଥାନରେ (ସତେ ଯେପରିକି ସ୍ୱତନ୍ତ୍ର ଭାବରେ ତାଙ୍କର ଅସନ୍ତୋଷ ପାଇଁ) ଈଶ୍ୱରଙ୍କ ଅଭିଶାପ ସ୍ୱରୂପ ବିପର୍ଯ୍ୟୟକୁ ନେଇ ଆସିଛନ୍ତି, ଏପରି ଭାବରେ ସେମାନଙ୍କୁ ମହାତ୍ମା ଦୋଷାରୋପ କରୁଥିବା ଦେଖି ମୁଁ ବ୍ୟଥିତ ଓ ବିସ୍ମିତ ହେଲି । ଏହା ଆହୁରି ଦୁର୍ଭାଗ୍ୟକର ଯେ ଏ ଭଳି ଏକ ଅବୈଜ୍ଞାନିକ କଥା ତାତକାଳିକ ଆମ ଦେଶର ବହୁ ଲୋକଙ୍କ ଦ୍ୱାରା ଗୃହୀତ ହୋଇଯାଇ ପାରିଲା ।'' ଯାହାହେଉ ଗାନ୍ଧିଜୀ ତାଙ୍କର ବିଶ୍ୱାସକୁ ଇଂରାଜୀ ସାପ୍ତାହିକ ହରିଜନ ପତ୍ରିକାରେ ଗୋଟିଏ ଲେଖାରେ ପୁଣି ଦୋହରାଇ ଥିଲେ ।'' ମୋ ମତରେ ଭୂମିକମ୍ପ ଈଶ୍ୱରଙ୍କର ଖିଆଲି ଖେଳନୁହେଁ ବା କୌଣସି ଅନ୍ଧଶକ୍ତିର ପ୍ରତିଫଳ ନୁହେଁ । ଆମେ ଈଶ୍ୱରଙ୍କର ନିୟମ ଓ କାର୍ଯ୍ୟପ୍ରଣାଳୀ ବିଷୟରେ କିଛି ଜାଣୁ ନା ।'' ଏଇ ବିତର୍କିତ ଘଟଣା ବିଷୟରେ ଜବାହରଲାଲ ନେହରୁଙ୍କର ମତ ପ୍ରଣିଧାନଯୋଗ୍ୟ ଓ ସ୍ମରଣୀୟ । ''ଭୂମିକମ୍ପ ସ୍ଥାନ ପରିଦର୍ଶନ କରିବାର ଅବ୍ୟବହିତ ପୂର୍ବରୁ ଗଭୀର ଦୁଃଖର ସହିତ ଗାନ୍ଧିଜୀଙ୍କର ଉକ୍ତି ପଢ଼ିଲି । ଭୂମିକମ୍ପକୁ ଅସ୍ପୃଶ୍ୟତା ପାପର ପ୍ରତିଫଳ ବୋଲି ସେ କହିଛନ୍ତି । ଏହା ଏକ ମର୍ମନ୍ତୁଦ ଆକ୍ଷେପ । ଏ ବିଷୟରେ ରବୀନ୍ଦ୍ରନାଥଙ୍କର ଉତ୍ତରକୁ ମୁଁ ସ୍ୱାଗତ କରୁଛି ଓ ଏହା ସହିତ ସପୂର୍ଣ୍ଣରୂପେ ଏକମତ । ବୈଜ୍ଞାନିକ ଦୃଷ୍ଟିକୁ ଯେ ଏହାଠାରୁ ଅଧିକ ବିରୋଧ କରାଯାଇ ପାରେ, ଏହା ଅକଳ୍ପନୀୟ ।''

କବି ଅଧୀର ହୋଇଯାଇଥିଲେ, ସୁଦୂର ପାଇଁ ତାଙ୍କର ପିପାସା ସବୁଦିନ ଭଳି ପ୍ରବଳ ଥିଲା । କିନ୍ତୁ ସେ ବୟୋବୃଦ୍ଧ ହୋଇଯିବା ଫଳରେ ଭ୍ରମଣକ୍ଷମ ନଥିଲେ । ନଚେତ୍ ସେ ସେୟା ଚାହିଁଥାଆନ୍ତେ । ବୟସ ସାଙ୍ଗକୁ ଅର୍ଥ ସମସ୍ୟା ବି ଥିଲା । ସେ ଖୁବ୍ ନିରାଡମ୍ବର ଭାବରେ ଚଳୁଥିଲେ ଓ ସବୁ ପ୍ରକାର ବାହ୍ୟ ଆଡମ୍ବର ଓ ଆଭିଜାତ୍ୟକୁ ଦୂରେଇ ରଖୁଥିଲେ, ପୈତୃକ ସଂପତ୍ତିରୁ ଯାହା ଆୟ ମିଳୁଥିଲା ତାହା ହୁଏତ ବ୍ୟକ୍ତିଗତ ଓ ପରିବାର ପରିଚାଳନା ପାଇଁ ଯଥେଷ୍ଟ ହୋଇ ଥାନ୍ତା । କିନ୍ତୁ ତାଙ୍କର ବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟ ଖର୍ଚ୍ଚ ତୁଲାଇବା ପାଇଁ ତାହା ଥିଲା ଅଳ୍ପ । ବଙ୍ଗଳା ବହିରୁ ମିଳୁଥିବା ସ୍ୱତ୍ତ୍ୱଧନ ମଧ୍ୟ ଅତ୍ୟନ୍ତ ସ୍ୱଳ୍ପ ଥିଲା । - କବିତା ପୁସ୍ତକ ଆଦୌ ଲାଭଜନକ ପ୍ରକାଶନ ନଥିଲା ତା ସାଙ୍ଗକୁ ନିଜ ଦେଶର ସୀମିତ ପାଠକ ଗୋଷ୍ଠୀଙ୍କର ପୁସ୍ତକକ୍ରୟ କ୍ଷମତା ମଧ୍ୟ ନୈରାଶ୍ୟଜନକ । ନୋବେଲ ପୁରସ୍କାର ପାଇବା ପରେ ସେଇଅର୍ଥ ଓ ଇଂରାଜୀ ତଥା ଅନ୍ୟାନ୍ୟ ବିଦେଶୀ ପ୍ରକାଶନ ଗୁଡିକରୁ ବେଶ୍ ଗୋଟେ ବଡ ଧରଣର ଅର୍ଥାଗମ ହୋଇଥିଲା କିନ୍ତୁ ସେସବୁ ତାଙ୍କର ବାରମ୍ବାର ବିଦେଶ ଗସ୍ତ ଓ ଜର୍ମାନୀରେ ମୁଦ୍ରାସ୍ଫିତୀ ଯୋଗୁଁ ତାଙ୍କ ବହିର ମୂଲ୍ୟ ଭରଣାରେ

ଖର୍ଚ୍ଚ ହୋଇଯାଇଥିଲା ।

1934 ବେଳକୁ ପାଶ୍ଚାତ୍ୟରେ ରବୀନ୍ଦ୍ରନାଥ ଏକ ଜୀବନ୍ତ ସତ୍ତା ଅପେକ୍ଷା ଅଧିକ ସ୍ମୃତି ପାଲଟି ଯାଇଥାନ୍ତି । ସେସବୁ ଦେଶରୁ ପାଉଥିବା ତାଙ୍କର ସ୍ୱତ୍ୱ ଯଥେଷ୍ଟ କମିଯାଇଥାଏ । ଅନ୍ୟ ପକ୍ଷରେ ଶାନ୍ତିନିକେତନରେ ତାଙ୍କର ବିଶ୍ୱବିଦ୍ୟାଳୟ ଏପରି ଭାବରେ ଅଭିବୃଦ୍ଧି ଲାଭ କରିଥାଏ ଯେ ଏକ ଶ୍ୱେତହସ୍ତୀରେ ପରିଣତ ହୋଇଥାଏ । ଏକଥା ସମସ୍ତେ ସ୍ୱୀକାର କରୁଥିଲେ ମଧ୍ୟ କେହି ତାଙ୍କୁ ସାହାଯ୍ୟ କରିବା ପାଇଁ ଆଗେଇ ଆସୁ ନଥାନ୍ତି । ଯେଉଁ କବି ଦିନେ ତାଙ୍କର ଜନସାଧାରଣଙ୍କୁ ଅତୁଳନୀୟ ସଂପଦଦାନ କରିଥିଲେ ସେ ଏବେ ନିଜର ବିଶ୍ୱବିଦ୍ୟାଳୟକୁ ଦାରିଦ୍ର୍ୟରୁ ବଂଚାଇବା ପାଇଁ ସାହାଯ୍ୟ ଭିକ୍ଷା କରିବା ଭଳି ଦୁଃଖଦ ଅବସ୍ଥାକୁ ଆସିଗଲେ । ଯେଉଁ ବିଶ୍ୱବିଦ୍ୟାଳୟ କବିଙ୍କର ଏକାନ୍ତ ପ୍ରିୟଶିଶୁ ହୋଇ ଗଢ଼ିଉଠିଥିଲା ତାହା ଏବେ ବହୁବ୍ୟୟୀ ସଂସ୍ଥାରେ ପରିଣତ ହେଲା । ତାରି ପାଇଁ ତାଙ୍କୁ ଶେଷ ଜୀବନରେ ଚିନ୍ତା କରିବାକୁ ପଡିଲା । ଏପରିକି ଉପହସିତ ହେବାକୁ ହେଲା । ଏହା ବ୍ୟତୀତ ତାଙ୍କ ଜୀବନ ହୋଇଥାନ୍ତା ମୁକ୍ତ ଓ ମର୍ଯ୍ୟାଦା ପୂର୍ଣ୍ଣ । ତାଙ୍କର ଅଭିଯାତ ମନ ପାଇଁ ଅର୍ଥ ଭିକ୍ଷା କରିବା ଏକ ଅପମାନ ବୋଧ ହେଉଥିଲା, ପୁଣି ଏ ଦେଶରେ ଯେଉଁଠି ଧନୀଲୋକେ କେବଳ ପୁରୋହିତଙ୍କ କରକମଳରେ ବା ରାଜନୈତିକ ମୁଣିରେ ଧନ ଅଜାଡି ଦେବାକୁ ଚାହାଁନ୍ତି, ସେଠି ଏହା ଥିଲା ଏକାନ୍ତ କଠିନ ।

ବୃଦ୍ଧ କବିଙ୍କ ପାଖରେ ଅର୍ଥ ଉପାର୍ଜନର ଏକମାତ୍ର ଉପାୟଥିଲା ବିଦ୍ୟାଳୟକୁ ଆୟକ୍ଷମ କରିବା । ଅଭିନୟ ଓ ନୃତ୍ୟ ପାଇଁ ବିଭିନ୍ନ ଦଳ ଗଠନ କରି ସେମାନଙ୍କୁ ବିଭିନ୍ନ ସହରକୁ ପଠାଇ ଅର୍ଥାଗମରେ ସାହାଯ୍ୟ କରିବା ସମ୍ଭବ ହେଲା । ସେମାନେ ବହୁ ସହରରେ ନିଜର ନାଟକ ଓ ବ୍ୟାଲେ ନୃତ୍ୟ ମଞ୍ଚସ୍ଥ କରୁଥିଲେ । ତା ସହିତ କବିଙ୍କ ଭିତରେ ଲୁଚିରହିଥିବା ଅଭିନୟ କଳାକୁ ମଞ୍ଚ ଉପରେ ଦେଖିବାର ଉତ୍କଣ୍ଠା ମଧ୍ୟଥିଲା । କବିଙ୍କର ଅନ୍ୟସବୁ ସୃଷ୍ଟି ସଂପଦ ତୁଳନାରେ ତାଙ୍କର ଗୀତ ଓ ନୃତ୍ୟାଭିନୟ ଅଧିକ ଲୋକପ୍ରିୟତା ଅର୍ଜନ କରିଥିଲା । ଏଇ ଦୁଇ ସୃଷ୍ଟିକଳା ସହିତ କବିଙ୍କର ଚିତ୍ରଶିଳ୍ପକୁ ହିଁ ଦେଶର ବିପୁଳ ଜନସାଧାରଣ, ଏପରିକି ବଙ୍ଗଳା ଜାଣିନଥିବା ଅସଂଖ୍ୟ ଲୋକେ ଉପଭୋଗ ଓ ଆଦର କରୁଥିଲେ । ଆଉ ସେତେବେଳେ ସେଇ ମହାନ୍ କବି-ମନୀଷୀଙ୍କୁ ଦଳେ ମଞ୍ଚକଳାକାର, ଗାୟକ ଓ ନୃତ୍ୟଶିଳ୍ପୀଙ୍କୁ ଘେନି ସାରାଦେଶ ଘୂରିବୁଲୁଥିବାର ଅଭାବନୀୟ ଦୃଶ୍ୟ ସମସ୍ତେ ଆନନ୍ଦ-ବିସ୍ମୟ ଚିତ୍ତରେ ଉପଭୋଗ କରୁଥିଲେ । ସେ ଅନ୍ୟ ଯାହା ହଅନ୍ତୁ ପଛେ ପ୍ରଥମତଃ ଥିଲେ ପ୍ରକୃତରେ ଜଣେ କଳାପ୍ରାଣ ବ୍ୟକ୍ତି । ପ୍ରଚଣ୍ଡ ସୃଷ୍ଟିଶୀଳ ଓ ଶିକ୍ଷାପ୍ରବଣ । ଅନ୍ୟସବୁ ଦିଗ ସହିତ ଏଇ ଭ୍ରମଣର ଯେଉଁ ମୁଖ୍ୟ ଆଭିମୁଖ୍ୟ ସାଧିତ ହୋଇଥିଲା ତାହା ହେଲା ଏ ପର୍ଯ୍ୟନ୍ତ ଅବହେଳା କରାଯାଉଥିବା ଓ ପ୍ରାଧାନ୍ୟ ଲାଭ କରୁନଥିବା ଭାରତୀୟ ସଂସ୍କୃତିରେ ସଂହତି ଶିକ୍ଷା, ଯାହା ଏହାରି ମାଧ୍ୟମରେ ଜନଗଣଙ୍କ ଭିତରେ ସଚେତନ ଭାବରେ ଶିକ୍ଷା ଦିଆଯାଇ ପାରିଥିଲା ।

ପୂର୍ବରୁ ଥରେ ବମ୍ବେକୁ ବାଦ ଦେଲେ ଏପରି ସାଂସ୍କୃତିକ ପରିଭ୍ରମଣରେ ପ୍ରଥମ ଥର ପାଇଁ କବି ଯାଇଥିଲେ ତାଙ୍କର ପ୍ରିୟ ସୁନ୍ଦର ସିଂହଳ ଦ୍ୱୀପକୁ । ସିଂହଳରେ ଅବସ୍ଥାନ କାଳରେ କବି ତାଙ୍କର ଶେଷ ଉପନ୍ୟାସ ‘ଚାରି ଅଧ୍ୟାୟ’ ଲେଖା ଶେଷ କରିଥିଲେ । ଅଭିନୀତ ହେବାପାଇଁ ସଫଳ ଭାବରେ ନାଟ୍ୟରୂପ ଦିଆଯାଇ ପାରିଥିବା ଏଇ କ୍ଷୁଦ୍ର ଓ ଶକ୍ତିଶାଳୀ ଉପନ୍ୟାସଟିରେ ପୂର୍ବରୁ ‘ଘରେବାଇରେ’ ଉପନ୍ୟାସରେ ଭିନ୍ନ ଏକ ପୃଷ୍ଠ ଭୂମିରେ କଥିତ ସେଇ ମାନବିକ ମୂଲ୍ୟବୋଧ ଓ ରାଜନୈତିକ ଆଦର୍ଶର କଥା ବସ୍ତୁକୁ କବି ପୁଣି ଫେରି ଆସିଛନ୍ତି । ଏହାର ପୃଷ୍ଠଭୂମି ହେଉଛି

ବଙ୍ଗର ବିପ୍ଳବାତ୍ମକ ଆନ୍ଦୋଳନର ଗୁପ୍ତ ପରିବେଶ । ଏଇ ଘଟଣାରେ ନିହିତ ବୀରତ୍ୱ ଓ ସଂତ୍ରାସବାଦୀ ଭୂମିକାର ବିପରୀତରେ ପ୍ରେମର ନୈରାଶ୍ୟ ଓ ମାନବିକ ମୂଲ୍ୟବୋଧର କ୍ରମବିଲୟ ଚିତ୍ରିତ ହୋଇଛି । ନୈରାଶ୍ୟବାଦୀ ଆଦର୍ଶର ଏଇ ଦୁଃଖାନ୍ତ କାହାଣୀରେ ରାଜନୈତିକ ବୀରତ୍ୱକୁ ଅନୁପ୍ରେରିତ ଓ ସ୍ଥାୟୀ କରିରଖୁଥିବା କାରଣର ଲେଖକ ଯେଉଁ ବିଶ୍ଳେଷଣ କରିଛନ୍ତି ତାହା ଭିତରେ ଗଭୀର ମନସ୍ତାତ୍ତ୍ୱିକ ବୀକ୍ଷା ଚମତ୍କାର ଶକ୍ତିଶାଳୀ ଓ ଜୀବନ୍ତ ଭାଷାରେ ପ୍ରକାଶଲାଭ କରିଛି । ଉପନ୍ୟାସଟି ବଙ୍ଗଳାରେ ବିତର୍କର ଝଡ ସୃଷ୍ଟି କରିଥିଲା ଓ ଲେଖକଙ୍କୁ ମଧ୍ୟ ନିର୍ଦ୍ଦୟଭାବେ ନିନ୍ଦା କରାଯାଇଥିଲା । ସେ ଏଥିରେ କୁଆଡେ ଘରର ବହୁ ଅକୁହା ସତ୍ୟକଥାକୁ ପଦାରେ ପକାଇ ଦେଇଥିଲେ ।

1932 ରୁ 1936 ଏଇ ପାଞ୍ଚ ବର୍ଷ ମଧ୍ୟରେ ଭାରତ ବର୍ଷର ଅନେକ ସ୍ଥାନ ଓ ଇରାକ୍ ଭ୍ରମଣ ସତ୍ତ୍ୱେ ରବୀନ୍ଦ୍ରନାଥ ସାତଖଣ୍ଡ କବିତା ଗ୍ରନ୍ଥ, ଦୁଇଟି ଉପନ୍ୟାସ, ଗୋଟିଏ ନାଟକ ପ୍ରକାଶ କରିଥିଲେ ଓ ପାଞ୍ଚଟି ନୃତ୍ୟନାଟିକା 'ଶାପମୋଚନ', 'ଚଣ୍ଡାଳିକା', 'ତାସେର ଦେଶ' (1933) 'ଚିତ୍ରାଙ୍ଗଦା' ଓ 'ଶ୍ୟାମା'ର (1936) ସଙ୍ଗୀତ ରଚନା ଓ ନିର୍ଦ୍ଦେଶନା ଦେଇଥିଲେ । ବହୁ ପୂର୍ବରୁ ରଚିତ ଗୋଟିଏ କ୍ଷୁଦ୍ର ଗଳ୍ପର କଥାବସ୍ତୁ ଉପରେ ଆଧାରିତ 'ତାସେର ଦେଶ' ବ୍ୟତୀତ ଅନ୍ୟ ଚାରୋଟି ନାଟକର କାହାଣୀ ହିନ୍ଦୁ ବା ବୌଦ୍ଧ କିମ୍ବଦନ୍ତୀରୁ ସଂଗୃହୀତ ହୋଇଥିଲା ଯାହା ପୂର୍ବରୁ ସେ କବିତାରେ ଲେଖିଥିଲେ । ପ୍ରାଚୀନ କଥନିକାରୁ କଙ୍କାଳଟି ଆହରଣ କରି ସେଥିରେ କେବଳ ସଙ୍ଗୀତ ଓ ନୃତ୍ୟର ନୁହେଁ ବରଂ ନାଟକୀୟ ଉତ୍‌କଣ୍ଠା ଓ ଗଭୀର ମନସ୍ତାତ୍ତ୍ୱିକ ଓ ନୈତିକ ଉପାଦାନର ରକ୍ତ ମାଂସ ଯୋଡି ତାହାକୁ ନୂତନ ଭାବରେ ଜୀବନ୍ତ କରି ଠିଆ କରାଇଥିଲେ । ସେଇ ସମୟଠାରୁ ଏଇ ନୃତ୍ୟନାଟିକା ନିର୍ଦ୍ଦିଷ୍ଟ ଭାବରେ ବ୍ୟାଲେ ବା ଅପେରାର ଅଂଶ ବିଶେଷ ନହୋଇ ମଧ୍ୟ ଭାରତରେ ପ୍ରାଧାନ୍ୟ ଲାଭ କରିଥିଲା ।

'ମାଳଞ୍ଚ' ଓ 'ଚାର ଅଧ୍ୟାୟ' (ଉଭୟ ଉପନ୍ୟାସ 1934)', 'ବାଂଶରୀ' (1933) ଓ ଦୁଇଟି କାବ୍ୟଗ୍ରନ୍ଥ 'ପରିଶେଷ' (1932) ଓ ବିଚିତ୍ରିତା (1933) ବିଷୟରେ ପୂର୍ବରୁ କୁହାଯାଇଅଛି । ଅନ୍ୟ ପାଞ୍ଚଟି କବିତା ଗ୍ରନ୍ଥ ମଧ୍ୟରୁ ଚାରୋଟି ଗଦ୍ୟ କବିତା । ଗଦ୍ୟ କବିତା ପୂର୍ବରୁ ସମୟେ ସମୟେ କବି ପରୀକ୍ଷାମୂଳକ ଭାବରେ ରଚନା କରୁଥିଲେ, କିନ୍ତୁ ବର୍ତ୍ତମାନ ତାହାକୁ ସେ ମୁଖ୍ୟ ଭାବରେ ଗ୍ରହଣ କରିନେଇଥିଲେ । 'ପୁନଶ୍ଚ'ରେ ଏହାର ଅୟମାରମ୍ଭ ହୋଇଥିଲା । ଏହା 1932ରେ 'ପରିଶେଷ' ପରେପରେ ପ୍ରକାଶ ପାଇଥିଲା । ଗଦ୍ୟ କବିତା ବିଷୟରେ ପ୍ରାଥମିକ ସୂଚନା ଦେଇ କବି କହିଥିଲେ, ଯେ ଏହା କେବଳ ଛନ୍ଦ ଓ ଉପଧାମିଳନର ନିୟମକୁ ଉପେକ୍ଷା ବା ଲଂଘନ କରିବା ପାଇଁ ଉଦ୍ଦିଷ୍ଟ ନୁହେଁ, ବରଂ ଗଦ୍ୟର ଅବାରିତ ସ୍ୱାଧୀନତାକୁ ଏହା ଅନୁସରଣ କଲାପରି ମନେ ହେଉଥିଲେ ମଧ୍ୟ ତା'ର ଦିଗ୍‌ବଳୟକୁ ଆହୁରି ବିସ୍ତୃତ କରି ଆଉ ଏକ ନୂଆଛନ୍ଦ ସୃଷ୍ଟିର ସାଫଲ୍ୟକୁ ଇଙ୍ଗିତ କରୁଥାଏ । ଗଦ୍ୟ କବିତାର ଏହି ପାଦଚାରୀ ଶୈଳୀର ସମ୍ଭାବନା ବିଷୟରେ କବିଙ୍କର ଏହି ଉଚ୍ଚ ଅଭିମତ ଦୈନନ୍ଦିନ ଜୀବନ ଓ ସାଧାରଣ ଘଟଣାକୁ ରୂପ ଦେବାରେ ତାଙ୍କର ବର୍ତ୍ତମାନର ମନୋଭାବକୁ ପ୍ରତିଫଳିତ କରୁଥିଲା ।

ପ୍ରଥମ କବିତା 'କୋପାଇ' ଏହାର ସୂଚନା ଦିଏ । ଶାନ୍ତିନିକେତନର ଅନତି ଦୂରରେ ବହିଚାଲିଥିବା ଏକ କ୍ଷୁଦ୍ର ନଦୀ କୋପାଇ । ଏହାର ଶାନ୍ତ ସରଳ ସୌନ୍ଦର୍ଯ୍ୟ ସହିତ କବି ପିଲାଦିନରେ ଅନେକ ବର୍ଷ ଯେଉଁ ନଦୀ କୂଳରେ ଅତିବାହିତ କରିଥିଲେ ସେଇ ପଦ୍ମାନଦୀର ସମ୍ଭ୍ରାନ୍ତ ରୂପକୁ

ତୁଳନା କରିଛନ୍ତି । ''ଏଇ ଗୌରବମୟୀ ନଦୀର ନାମ ବହୁ ପ୍ରାଚୀନ ଗ୍ରନ୍ଥରେ ଦେଖିବାକୁ ମିଳେ, ଏହାର ଧମନୀରେ ଗଙ୍ଗାର ପବିତ୍ର ସ୍ରୋତ ପ୍ରବାହିତ ।'' ବର୍ଷା ଦିନରେ ଯେତେବେଳେ ଏଇ ନଦୀ କୂଳପ୍ଲାବନୀ ହୋଇଉଠେ ବହୁ ଘର ବୁଡି ଯାଏ । ଯେତେବେଳେ ବକ୍ଷତାର ସ୍ଫୀତ, ସେ ନିର୍ଦ୍ଦୟା । କିନ୍ତୁ ବୃଦ୍ଧ ବୟସରେ କବି କୁପାଇକୁ ପଡୋଶୀ ସଙ୍ଗୀ ଭାବରେ ବର୍ଣ୍ଣନା କରିଛନ୍ତି । ''କୁପାଇର ସ୍ରୋତରେ ଥାଏ ସ୍ୱଜନଙ୍କ ମଧୁମୟ ସ୍ୱର, ଭାବଗମ୍ଭୀର ବୌଦ୍ଧିକର ଭାଷା ସେଠି ନାହିଁ ।..... ହାତରେ ଶରଧନୁ ଘେନି ଅଳସଭଙ୍ଗୀରେ ବୁଲୁଥିବା ସାନ୍ତାଳ ବାଳକର ପଦଶବ୍ଦକୁ ଏହାର କଳଧ୍ୱନି ପରାହତ କରୁଥାଏ । କୁଟା ବୋଝେଇ ଶଗଡ ତା' କୂଳଦେଇ ବଜାରକୁ ଧାଏଁ । ମାଟି କଳସର ବୋଝ କାନ୍ଧେଇ ଧଇଁ ସଇଁ ହୋଇ ଦୌଡୁଥିବା ଲୋକଟିର ଛାଇକୁ ଅନୁଗମନ କରୁଥାଏ ତା'ର ପୋଷାକୁକୁର ପାରିଆ, ମାସରେ ତିନିଟଙ୍କା ଦରମା ପାଉଥିବା ଗାଁ ସ୍କୁଲର ଶିକ୍ଷକ ଚିରାଛତାଟିଏ ମୁଣ୍ଡେଇ ବ୍ୟସ୍ତ ହୋଇ ଧାଉଁଥାଏ- ଏ ସବୁକୁ ନିରବ ଭାବରେ ଚାହିଁ ରହିଥାଏ କୁପାଇ ।''

ବହୁ ବିଚିତ୍ର କଥାବସ୍ତୁ ଓ ସୃଷ୍ଟିଶୀଳ ମୁହୂର୍ତ୍ତ ଏଥିରେ ଓ ଅନ୍ୟ ତିନୋଟି ଗଦ୍ୟ କବିତା ଗ୍ରନ୍ଥରେ ବର୍ଣ୍ଣିତ ହୋଇଥିଲା । କେତେକ କୌତୁକପୂର୍ଣ୍ଣ, କେତେକ ଭାବଗମ୍ଭୀର ଏପରିକି ଅତିଭୌତିକ, କେତେକ ଦୁଃଖପୂର୍ଣ୍ଣ, କେତେକ ବର୍ଣ୍ଣନାଶ୍ରୟୀ, କେତେକ ଗୀତିମୟ, କେତେକ ଭାବ ପ୍ରବଣ ଓ ଆଉ କେତେ ବିଦ୍ରୂପରେ ଶାଣିତ । ସେଥିରୁ ଅନେକ ସ୍ମୃତିମଞ୍ଜୁଳ, କେତେକ ପୁଣି ଉତ୍ତମ ପୁରୁଷ ଏକ ବଚନରେ ରଚିତ, ତାହା ବୋଲି କିନ୍ତୁ ସେସବୁ ଜୀବନସ୍ମୃତି ବା ଆତ୍ମଜୀବନୀମୂଳକ ନୁହେଁ । ଏଇସବୁ କବିତାର ତିନୋଟି ମୁଖ୍ୟ ବିଭାବ - ଅତୀତର ଅପାଶୋରା ସ୍ମୃତି ରୋମନ୍ଥନ ଭାବ ବା ସ୍ମୃତିଭରା ଦୀର୍ଘ ଅତୀତକୁ ଫେରିଚାହିଁବା ପାଇଁ ଆଗ୍ରହ, ଚିନ୍ତାର ଦିଗ୍‌ବଳୟକୁ ବିସ୍ତୃତ କରିବା ଏବଂ ବଙ୍ଗଳା ରଚନା ଶୈଳୀ ଓ ଛନ୍ଦରେ ନିହିତଥିବା ସୁଦୂର ସମ୍ଭାବନାକୁ ଆବିଷ୍କାର କରିବା । ଅସଂଲଗ୍ନ ମନେ ହେଉଥିବା କବିତାରେ ନୂତନ ରାଗ ଭରିଦେବା ପାଇଁ ଅତନ୍ଦ୍ର ପ୍ରୟାସ ତଥା ସାମାଜିକ ଓ ନୈତିକ ପ୍ରଥାରେ ଯାହାସବୁ ସାଧାରଣତଃ ଅବହେଳିତ, ଅବାଞ୍ଛିତ, ଘୃଣ୍ୟ ଓ ପରିତ୍ୟକ୍ତ ସେ ସବୁକୁ ଗଭୀର ମମତାରେ ନିଜର କରିବା ଏହାର ବୈଶିଷ୍ଟ୍ୟ ।

ବୈଶିଷ୍ଟ୍ୟମଣ୍ଡିତ ହେଲେ ମଧ୍ୟ ଏଇ ଚାରୋଟି ଗଦ୍ୟ କାବ୍ୟକୁ କବିଙ୍କର ସୃଷ୍ଟି ପଥରେ ଉନ୍ନତି ବା ଅବନତିର ଚିହ୍ନ ଭାବରେ କଳ୍ପନା କରିବା ଭୁଲ ହେବ, ବରଂ ଏହା କବିଙ୍କର କାବ୍ୟ ପ୍ରତିଭାର ଏପରି ଏକ ସ୍ତର ଯେଉଁଠି ପହଞ୍ଚି ସେଠୁ ଅପସରଣ ସମ୍ଭବ ନଥିଲା । ବସ୍ତୁତଃ ଏଇ ଗଦ୍ୟ କବିତା ଗୁଡିକ ରଚନା କାଳରେ କବି ନାନା ପ୍ରୟୋଗବାଦୀ କବିତା ବି ଲେଖୁଥିଲେ ଓ ଲେଖୁଥିଲେ ପାରମ୍ପରିକ ପ୍ରଗୀତିଧର୍ମୀ ସଙ୍ଗୀତ । ଅତୀତରେ କବିଙ୍କ ସୃଷ୍ଟିଧାରା ଅନବରତ ବିକଶିତ ହୋଇ ଚାଲିଥିଲା । ସେ ନୂତନ ରୂପ ଓ ମାଧ୍ୟମର କବିତା ଲେଖିବା ପାଇଁ ସତତ ପ୍ରୟାସୀ ଥିଲେ କିନ୍ତୁ ମୂଳତଃ ତାଙ୍କ ପ୍ରତିଭାର ମୌଳିକ ଧାରା କେତେବେଳେ ବି ଛିନ୍ନ ହୋଇ ନଥିଲା । ସେ ଥିଲେ ପ୍ରକୃତିର ପ୍ରେମିକ, ଧରଣୀର ଓ ଜୀବନ ମୃତ୍ୟୁର ପ୍ରେମିକ, ରହସ୍ୟର ପ୍ରେମିକ, ଯେଉଁଠି ଜୀବନ ଓ ମୃତ୍ୟୁ ଏକାକାର ହୋଇଥିବ । ଏଇ ପ୍ରେମର ଅନୁଭୂତି ମଧ୍ୟରେ ହିଁ ସେ ନିଜସ୍ୱ ସ୍ୱାକ୍ଷର ରଖିଯାଇ ଅଛନ୍ତି । ଧରିତ୍ରୀ କୋଳରେ ବିକଶିତ ସମଗ୍ର ପ୍ରକୃତି ସମ୍ଭାର, ତାଙ୍କର ସହଯାତ୍ରୀ ମାନବ ସମାଜ ପ୍ରତି ସାର୍ବଜନୀନ ସହାନୁଭୂତି ଓ ସୁକୋମଳ ସମତ୍ୱବୋଧ, ତାଙ୍କର ସହଜାତ ପ୍ରଜ୍ଞା ଓ ବୁଦ୍ଧିଦୀପ୍ତତା ସବୁକିଛି ଏଥିରେ ପ୍ରକାଶ ପାଇଛି । ଛଅ ଦଶକ ଧରି ସେ ଯାହାକିଛି ଲେଖିଛନ୍ତି

ସର୍ବତ୍ର ପରିବ୍ୟାପ୍ତ ହୋଇ ରହିଛି ତାଙ୍କର ଏହି ଉଦାର ମର୍ତ୍ତ୍ୟପ୍ରୀତି ।

ଯେଉଁ ପୃଥିବୀରେ ରବୀନ୍ଦ୍ରନାଥ ଜନ୍ମ ହୋଇଥିଲେ ଓ ବଢ଼ିଥିଲେ ତାଙ୍କର ଜୀବନର ଶେଷ ଦଶନ୍ଧି ବେଳକୁ ତାହା ଦ୍ରୁତ ଓ ଆମୂଳ ପରିବର୍ତ୍ତନ ହୋଇ ଯାଇଥିଲା । ଜୀବନ ଓ ଜଗତରେ ଏଇ ଭୟଙ୍କର ଓ ହାସ୍ୟକର ପରିବର୍ତ୍ତନ ମଧ୍ୟରେ ତାଙ୍କର ଏଇ ଉଦାର ମର୍ତ୍ତ୍ୟପ୍ରୀତିର ଅବସାନ ଘଟି ନଥିଲା, ଅଧିକନ୍ତୁ ସେ ଅଧିକ ଆମୃଷ୍ଟ ହୋଇଥିଲେ । ସବୁ କିଛିକୁ ପ୍ରସାରିତ ହସ୍ତରେ ଗ୍ରହଣ କରିନେବାପାଇଁ ସେ ଆହୁରି ଉଦ୍‌ଗ୍ରୀବ ଥିଲେ । ''ମୁଁ ସୁଖ ପାଇଛି । କେତେ ବିପୁଳ ଓ ସାର୍ଥକ ଭାବରେ ଏହା ପାଇଛି ମୁଁ ଜାଣିନି । ଏଇ ପୃଥିବୀକୁ ମୁଁ ଭଲ ପାଇଛି । ମୁଗ୍ଧ ଆଖିରେ ତାକୁ ମୁଁ ଦେଖିଛି । କ୍ଷୁଧା ଓ ତୃଷା ଭିତରେ ମୁଁ ତାର ଅମୃତର ଆସ୍ୱାଦ ପାଇଛି । ତାର ଧୂଳିରେ ମୁଁ ମୋର ପ୍ରକୃତ ପରିପୂର୍ଣ୍ଣତାର ସନ୍ଧାନ ପାଇଛି । ଅପମାନିତ, ଅଧଃଗତଙ୍କ ଭିତରେ ପାଇଛି ମୋର ମୁକ୍ତି ।'' ଏହିଭଳି ଉକ୍ତି ମଧ୍ୟରେ ସାମ୍ୟବାଦ ପ୍ରଚାରର ଦୁଃସାହାସିକତା ସେ ଦେଖାଇ ନାହାନ୍ତି । ଯେଉଁ ଗଭୀର ନିରଭିମାନ ଅନୁଭୂତି ସେ ସ୍ୱର୍ଗରେ ସନ୍ଧାନ କରୁଥିଲେ, ତାକୁ ହିଁ ସେ ଦେଖିଛନ୍ତି ଯେପରି ପୃଥିବୀରେ ଭୂଲୁଣ୍ଠିତ ହୋଇ ରହିଛି । ଏଇ ମର୍ତ୍ତ୍ୟରେ ହିଁ ସେ ସ୍ୱର୍ଗର ସନ୍ଧାନ କରିଛନ୍ତି ।

କୌଣସି ସ୍ଥୂଳ ବସ୍ତୁରେ ନୁହେଁ ହୃଦୟରେ ଭଗବାନଙ୍କୁ ଦେଖିବାର ସେଇ ଆଧ୍ୟାତ୍ମଭାବନା - ଯାହାର ସାଧକ ଥିଲେ ତାଙ୍କର ପିତା ତାହାରି ପ୍ରଭାବରେ କବି ଆଜନ୍ମ ବଢ଼ିଥିଲେ । କବିଙ୍କ ଧର୍ମୀୟ କବିତା ଗୁଡିକ ଥିଲା ତାଙ୍କର ଶୁଦ୍ଧ ଓ ଶ୍ରେଷ୍ଠ ଗୀତି କବିତା । ଏଇ ଧର୍ମୀୟ କବିତା ଭିତରେ ସେ ତାଙ୍କର ଜୀବନ ଦେବତାଙ୍କୁ ଅତି ଅନ୍ତରଂଗ ଭାବରେ ପାଇଥିଲେ । ସେ ଦେବତା ଅଦୃଶ୍ୟ ହୋଇବି ସେ ଯାହା ଦେଖୁଥିଲେ, ଶୁଣୁଥିଲେ ଓ ଅନୁଭବ କରୁଥିଲେ ତାଠାରୁ ସେ ଭିନ୍ନ ନଥିଲେ ବରଂ ତା ସହିତ ଏକାତ୍ମ ହୋଇ ତାଙ୍କର ଭାବନା ଅନୁସାରେ ସେ ରୂପ ଗ୍ରହଣ କରୁଥିଲେ । ସର୍ବମୟ ରୂପରେ ସେ ଭଗବାନଙ୍କୁ ଦେଖୁଥିଲେ- ଯାହା କୁତ୍ସିତ ଓ ଭୟଙ୍କର ତାରି ଭିତରେ ବି ସେ ଦେବତ୍ୱର ଦୀପ୍ତିରେ ଉଦ୍‌ଭାସିତ ହୋଇ ଉଠୁଥିଲେ ।

ଦୁଃଖର ଦହନ ଭିତରେ କବିଙ୍କର ଏଇ ପ୍ରଜ୍ଞାବୋଧ ଜାଗ୍ରତ ହୋଇଥିଲା । କବିଙ୍କ ଭାଷାରେ ଦୁଃଖର ଆଲୋକବର୍ତ୍ତିକାଧରି ଗହନ ଅନ୍ଧକାର ଭିତରେ ଯେଉଁ ପଥ ଲୁଚି ରହିଛି ତାହାର ଗୋଟିଏ ଝଲକ ମାତ୍ର ଦେଖାଯାଇପାରେ । ଏଇ ଚେତନା ଶାସ୍ତ୍ର ବା ଦର୍ଶନର କଥା ନୁହେଁ, ମସ୍ତିଷ୍କରୁ ଉଦ୍‌ଭୂତ ନୁହେଁ, ଏହା ହୃଦୟର ଅନୁଭବ । ଏଇ ଭାବନା ତାଙ୍କୁ ସବୁ ପ୍ରକାର ତଥାକଥିତ ଧର୍ମ, ପରମ୍ପରା, ସଂସ୍କାରରୁ ମୁକ୍ତ ରଖିଥିଲା । କେବଳ ଏଇ ପୃଥିବୀକୁ ସେ ଭଲ ପାଉଥିଲେ । ଏଇ ମର୍ତ୍ତ୍ୟପ୍ରୀତି ତାଙ୍କୁ ସୁଖୀ କରି ରଖିଥିଲା । 'କୌଣସି କାମର ମଣିଷ ନ ହୋଇ ବି ସେ ସୁଖୀଥିଲେ ।' କବିଙ୍କ ନିଜ ଭାଷାରେ କହିଲେ, ''ବାତାୟନ ବାହାରେ ଆଲୋକ ଓ ଛାଇର ଖେଳ ଭିତରେ ମୋର ଚେତନା ଭାସିଯାଉ । ଚିନ୍ତା ନୁହେଁ, କଳହ ନୁହେଁ, ଶିକ୍ଷା ନୁହେଁ- ମିଶିଯାଉ ସେଇ ଅନନ୍ତ ସମୁଦ୍ରରେ ଯେଉଁଠି ଜୀବନକୁ ମୃତ୍ୟୁ ଅପେକ୍ଷା କରିଛି ।''

ପାଶ୍ଚାତ୍ୟ ଉଦାର ମାନବବାଦୀ ଚିନ୍ତା, ଅଥବା ବୈଷ୍ଣବୀୟ ଗୀତିକାର ରହସ୍ୟବାଦ, ଉପନିଷଦୀୟ କଳ୍ପନାରୁ କେବଳ ନୁହେଁ, ତାଙ୍କର ହୃଦୟର ପ୍ରବୁଦ୍ଧ ଚେତନାରୁ ପ୍ରତ୍ୟକ୍ଷ ଓ ସାର୍ଥକ ରୂପେ ମାନବତାବାଦୀ ଆଦର୍ଶର ସେ ସନ୍ଧାନ ପାଇଥିଲେ । 'ପୁନଶ୍ଚ' କବିତା ଗ୍ରନ୍ଥରେ ଗୋଟିଏ କାହାଣୀ ତାଙ୍କର ଏଇ ଅନୁଭବ ଓ ଦୃଷ୍ଟିକୋଣର ଇଙ୍ଗିତ ଦିଏ । ଏହା ଜଣେ ମୁସଲମାନ ରଙ୍ଗକାର

ଝିଅ ରଙ୍ଗରୋଜିନୀର କଥା । ସଭାପଣ୍ଡିତ ଶଙ୍କରଲାଲ ନିଜର ପାଣ୍ଡିତ୍ୟ ଓ ତର୍କବାଗୀଶପଣ ପାଇଁ ବିଖ୍ୟାତ ଥିଲେ । ଥରେ ତାଙ୍କୁ ଦକ୍ଷିଣ ଦେଶାଗତ ଜଣେ ବିଖ୍ୟାତ ପଣ୍ଡିତଙ୍କ ତର୍କ ଯୁଦ୍ଧର ସମ୍ମୁଖୀନ ହେବାକୁ ପଡିଲା । ଯେଉଁ ପଗଡି ପିନ୍ଧି ସେ ରାଜ ସଭାକୁ ଯିବେ, ଦେଖିଲେ ତାହା ମଇଳା ହୋଇଛି । ସେ ତାକୁ ସ୍ଥାନୀୟ ରଙ୍ଗକାର ଜସିମ୍ ପାଖକୁ ଘେନିଗଲେ । ଜସିମ୍ ତାର ତରୁଣୀ କନ୍ୟା ଅମିନାକୁ ପଗଡିଟି ନେଇ ଧୋଇବାକୁ ଦେଲା । ତାକୁ ଧୋଇ ଖରାରେ ଶୁଖାଇବା ବେଳେ ଅମିନା ଦେଖିଲା, ସେଥିରେ ପଦଟିଏ କବିତା ଲେଖାରହିଚି ''ତୋମାର ଶ୍ରୀପଦ ମୋର ଲଲାଟେ ବିରାଜେ ।'' ଅମିନା ସଙ୍ଗେ ସଙ୍ଗେ ରଙ୍ଗୀନ ସୂତା ଆଣି ଆଉ ପଦଟିଏ ସିଲାଇ କରି ଯୋଡି ଦେଲା- ''ପରଶ ପାଇନେ ତାଇ ହୃଦୟେର ମାଝେ ।'' ପଣ୍ଡିତ ମହାଶୟ ପଗଡି ନେବାକୁ ଆସି ଏଇ କବିତା ପଢ଼ି କହିଲେ, ''ମା ଗୋ, ତୁ ମୋର ବୁଦ୍ଧିର ଅହଂକାରକୁ ହୃଦୟର ପ୍ରଜ୍ଞାବୋଧରେ ପରିଣତ କରିଦେଇଛୁ । ମୁଁ ଆଉ ଏବେ ରାଜ ସଭାକୁ ଫେରିପାରିବି ନାହିଁ । ମୋର ପଥ ଏବେ ଭିନ୍ନ ।''

'ପୁନଶ୍ଚ' ପରେ କବି 'ଶେଷ ସପ୍ତକ' ରଚନା କରିଥିଲେ । ପତ୍ର ଶେଷରେ ଶେଷ ଲେଖା ଲେଖି ସାରିବା ପରେ ବି ତାଙ୍କର ଯେପରି ମନେ ହେଲା ଅନେକ କଥା ଲେଖିବାର ଅଛି । ତାଙ୍କର ଆହୁରି ଭାବିବାର, କହିବାର ଅଛି । ସେ ଭାବ ବିଭୋର ହୋଇ ପଛକୁ ଫେରି ଚାହିଁଥିଲେ, ଭାବୁଥିଲେ ଏଇ ହେବ ତାଙ୍କର ଶେଷ ରଚନା । ପ୍ରଥମ କବିତାଟି ତାଙ୍କ ବିଷାଦ ଭାବନାରେ ପୂର୍ଣ୍ଣ । ସେଇ ନାରୀ (କିଏ ? ମୃଣାଳିନୀ ?) ତାଙ୍କ ପାଖରେ ଥିବାବେଳେ ସେ ତାଙ୍କର ମହତ୍ତ୍ୱ ବୁଝି ପାରିନାହାନ୍ତି । ତାଙ୍କର ପ୍ରେମ ଓ ଭକ୍ତି ଉପରେ ନିଜର ଏକାଧିପତ୍ୟ ସ୍ୱୀକାର କରି ନେଇଛନ୍ତି । କିନ୍ତୁ ତାଙ୍କର ଅବର୍ତ୍ତମାନରେ ଦୁଃଖର ଦହନ ଭିତରେ ସେ ତାଙ୍କୁ ସଂପୂର୍ଣ୍ଣ ରୂପେ ପାଇଛନ୍ତି । ନିଜର ଜନ୍ମଦିନ ପଚିଶ ବୈଶାଖରେ ସେ ନିଜ ଦୀର୍ଘ ଜୀବନକୁ ଫେରି ଚାହିଁଛନ୍ତି । ଅନୁଭବ କରିଛନ୍ତି ସେ ଥରକୁ ଥର ମରି ପୁଣି ନବଜୀବନ ଲାଭ କରିଛନ୍ତି । ସେ ଜଣେ ରବୀନ୍ଦ୍ରନାଥ ନୁହଁନ୍ତି, ତାଙ୍କର ଜୀବନ ହେଉଛି ବହୁ ରବୀନ୍ଦ୍ରନାଥ ଘେନି ରଚିତ ଏକ ମାଳା । ସେ ପୃଥିବୀର ଅତୀତ ଇତିହାସକୁ ଦେଖିଛନ୍ତି ଆଟୋପ, ଗୌରବ ଓ ଅହଂକାରର ଧ୍ୱଂସସ୍ତୂପ ରୂପେ । ଚଉଦିଗରେ କେବଳ କ୍ଷଣସ୍ଥାୟୀ ବାଲୁକାରାଶି ଓ ତା ଭିତରେ ''ମୁଁ ଅନୁଭବ କରିଛି ମୋ ହୃଦୟ ସ୍ପନ୍ଦନରେ ଅସୀମର ସ୍ଥିର ଆସନ ।''

ଦିନେ ସନ୍ଧ୍ୟାର ଅନ୍ଧକାରରେ ନିଜ କୋଠରୀରେ ଏକାକି ବସି ସେ ସେଇ ନାରୀକୁ ଝୁରିଛନ୍ତି, ଯେ ଥିଲେ ଏକଦା ତାଙ୍କର ଖେଳସଙ୍ଗିନୀ, ଯିଏ ତାଙ୍କ ଜୀବନକୁ ଏତେ ବେଶୀ ଆନନ୍ଦରେ ଭରି ଦେଉଥିଲେ । ହଠାତ୍ ଶୁଣିଛନ୍ତି କାହାର ନୀରବ ପଦଧ୍ୱନି, ଅନୁଭବ କରିଛନ୍ତି ତାଙ୍କର ସାନିଧ୍ୟ, ଏପରିକି ନିଃଶ୍ୱାସର ସ୍ପର୍ଶ । ପ୍ରଶ୍ନ କରିଛନ୍ତି- ''ତମେ କ'ଣ ପୁରୁଣା ଘରକୁ ଫେରି ଆସିଚ ?'' ସେ ଶୁଣିବାକୁ ପାଇଲେ ଏକ ଅସ୍ଫୁଟ କଣ୍ଠସ୍ୱର ''କାହା ପାଖକୁ ମୁଁ ଫେରି ଆସିବି ? ସେ ଉତ୍ତର ଦେଇଛନ୍ତି, ''କାହିଁକି ମୁଁ କଣ ନାହିଁ ? ତମେ କଣ ମୋତେ ଦେଖି ପାରୁ ନାହଁ ?'' ଧ୍ୱନି ଶୁଣାଗଲା- ''ସେ ଥିଲେ ମୋର ଏକାନ୍ତ ନିଜର ସେଇ ଚିରତରୁଣ ଖେଳ ସାଥୀ ତାଙ୍କୁ ତ ମୁଁ ଏଇ ଘରେ ଆଉ ଦେଖିପାରୁ ନାହିଁ ।'' ମୁଁ ପଚାରିଲି, ''ସେ କ'ଣ କେଉଁଠି ନାହିଁ ?'' ପୁଣି ଅସ୍ଫୁଟ ଧ୍ୱନିରେ ଶୁଣାଗଲା- ''ସେ ସେଇଠି ଅଛି, ଯେଉଁଠି ମୁଁ ଅଛି । ସେ ଆଉ କେଉଁଠି ନାହିଁ ।'' ଅବଶ୍ୟ ସବୁ କବିତାରେ ଏପରି ବିଷାଦ ଭାବନା ବା ସ୍ମୃତି ଚାରଣ ନାହିଁ । ସେସବୁ ହୋଇ ଉଠିଚି, ବୈଚିତ୍ର୍ୟମୟ ଓ ଜୀବନ୍ତ ।

1936ରେ ଅଳ୍ପ ବ୍ୟବଧାନରେ ଦୁଇଟି ଗଦ୍ୟ କବିତା ଗ୍ରନ୍ଥ ପ୍ରକାଶିତ ହେଲା- 'ପତ୍ରପୁଟ' ଓ 'ଶ୍ୟାମଳୀ' । ପତ୍ରପୁଟ ଅର୍ଥ ପତ୍ରରେ ତିଆରି ପାତ ବା ଦନା । ନିଜେ ଯେଉଁ ମାଟି କୁଟୀର ନିଜ ରହିବା ପାଇଁ କବି ନିର୍ମାଣ କରିଥିଲେ, ଶେଷ ବୟସରେ ଯେଉଁଠି ସମୟ କଟାଇଥିଲେ ତାର ନାଁ ଥିଲା 'ଶ୍ୟାମଳୀ' ଯାହାର ଅର୍ଥ କୃଷ୍ଣ-ସବୁଜ ନାରୀ । ଏଇ ଘରେ ମହାତ୍ମା ଗାନ୍ଧି ଶାନ୍ତିନିକେତନ ଭ୍ରମଣ ସମୟରେ ଅବସ୍ଥାନ କରିଥିଲେ । 'ଶ୍ୟାମଳୀ' ହେଉଛି ଏଇ କବିତା ପୁସ୍ତକରେ ପୃଥିବୀ ପ୍ରତି ଏକ ସମ୍ବୋଧଗୀତିର ଶିରୋନମା । ଏଇ କବିତା ବହି ଦୁଇଟିର ବହୁ କବିତା ଅତି ମନୋଜ୍ଞ, ଓ ରାବୀନ୍ଦ୍ରିକ ଅଭିବ୍ୟକ୍ତିର ଶ୍ରେଷ୍ଠ ନିଦର୍ଶନ । ଯାହା ସଚରାଚର କବିଙ୍କ କବିତାରେ ଦେଖା ଯାଇଥାଏ, ଏଠାରେ ସେଇସବୁ ଭାବର ପ୍ରକାଶ ଘଟିଅଛି । କେଉଁଠି ମନୋମୟ ଗୀତିମୟତା, କେଉଁଠି ଭାବବିଭୋର କଳ୍ପନାର କ୍ରୀଡା, କେଉଁଠି ଦାର୍ଶନିକ ଅନୁଚିନ୍ତା, କେଉଁଠି ସ୍ମୃତିଚାରୀର ଆଖ୍ୟାୟିକା, ପୁଣି କେଉଁଠି ବାହାର ଜଗତରେ ଘଟୁଥିବା ବିଭତ୍ସ ଘଟଣାରାଜିର ଆବେଗୋଷ୍ଣ ପ୍ରତିବାଦ । ଗୋଟିଏ କବିତାର ବିଷୟ 'ଆଫ୍ରିକା' ଯେଉଁଠି ଶତାବ୍ଦୀ ଧରି କୃଷ୍ଣକାୟ ମାନେ ହୋଇଛନ୍ତି ଶ୍ୱେତାଙ୍ଗଙ୍କ ଅତ୍ୟାଚାରର ଶିକାର ।

''ତୁମ ଉପରେ ଏବେ
ଶ୍ୱେତାଙ୍ଗ ଶିକାରୀ ମଣିଷଙ୍କ ଫାଶ
ଗଧିଆଙ୍କ ଦାନ୍ତଠାରୁ ଆହୁରି ଭୟାନକ
ସେମାନଙ୍କ ବିଷ ।
ଅଶ୍ରୁ ଓ ରକ୍ତଭିଜା କର୍ଦ୍ଦମାକ୍ତ ଅରଣ୍ୟ ପଥରେ
ସେଇ ଦସ୍ୟୁଙ୍କର ଅଭୁଲା ପଦଚିହ୍ନ
ତୁମ ପରିଚୟର ଇତିହାସ ପୃଷ୍ଠାରେ ।
ତଥାପି ସମୁଦ୍ର ଆରପାରେ ଚିରକାଳ.......
ଗାଁ ଓ ସହରର ଗୀର୍ଜାରେ ଅବାରିତ ଘଣ୍ଟା ରବ,
ଶିଶୁମାନେ ଜନନୀ କୋଳରେ ଝୁଲୁଥାନ୍ତି ନାନାବାୟା ଶୁଣି
କବିମାନେ ଗାଉଥାନ୍ତି ସୌନ୍ଦର୍ଯ୍ୟର ସ୍ତବ ।''

ଅନ୍ୟ ଏକ କବିତାରେ କବି ମାନବିକତାର ଶ୍ରେଷ୍ଠ ଆଦର୍ଶର ଅବତାରଣା କରିଛନ୍ତି ଓ ଧର୍ମର ସମସ୍ତ ବନ୍ଧନକୁ ଦୃଢ଼ଭାବରେ ବିରୋଧ କରିଛନ୍ତି । ତାଙ୍କର ଈଶ୍ୱର ଲୋଡା ନାହିଁ, ଯଦି ସେ ସୂର୍ଯ୍ୟ ଆଲୋକରେ ଓ ଅସ୍ପୃଶ୍ୟଙ୍କ ହୃଦୟରେ, ସମସ୍ତ ଭେଦରେଖାର ବାହାରେ ବିରାଜୁ ଥାନ୍ତି । ଅନାଦି ସୃଷ୍ଟିର ରହସ୍ୟ ସେ ଦେଖିଛନ୍ତି ଆଲୋକର ବିଚ୍ଛୁରଣରେ, ତାର ଚରମ ପ୍ରକାଶ ଦେଖିଛନ୍ତି ପ୍ରେମର ଅମୃତରେ । ସେ ସେହି ଆଧ୍ୟାତ୍ମବାଦୀ ଅଛବଙ୍କ ମଧ୍ୟରେ ଜଣେ ।

''ସେମାନେ ଅନ୍ତ୍ୟଜ ସେମାନେ ପୁଣି ମନ୍ତ୍ର ବର୍ଜିତ
ଦେବାଳୟର ଦ୍ୱାର ଦେଶରେ ପୂଜକ ବ୍ୟବସାୟୀଗଣ
ସେମାନଙ୍କୁ ଅଟକାଇ ଦିଅନ୍ତି.........
କବି ମୁଁ, ସେମାନଙ୍କ ଦଳର
ମୁଁ ବ୍ରାତ୍ୟ, ମନ୍ତ୍ର ହୀନ
ଦେବତାର ବନ୍ଦୀଶାଳାରେ ନୈବେଦ୍ୟ ମୋର ପହଞ୍ଚେ ନାହିଁ ।

ପୂଜକ ମନ୍ଦିରୁ ବାହାରି ହସମୁଖେ ପଚାରନ୍ତି ମତେ
''ଦର୍ଶନ କରିଲ ତୁମ ଦେବତାଙ୍କୁ ?''
''ନା ଦେଲି ମୁଁ ଉତ୍ତର ।'
ଅବାକ୍ ହୋଇ ପଚାରେ, ''ବାଟ ଜଣାନାହିଁ ?''
'ନା' ମୁଁ କହିଲି
ପୁଣି ପ୍ରଶ୍ନକରେ, କିଛି ଜାତି ନାହିଁକି ତମର ?
'ନାଁ......
ଦଳ ଦ୍ୱାରା ଉପେକ୍ଷିତ ମୁଁ
ମଣିଷର ମିଳନ କ୍ଷୁଧାରେ ବୁଲୁଚି
ଯେଉଁ ମଣିଷର ଅତିଥିଶାଳାରେ ପ୍ରାଚୀର ନାହିଁ ପହରା ନାହିଁ..........
ମଣିଷକୁ ଗଣ୍ଡି ଭିତରେ ହଜେଇଛି
ତାର ଦେଖା ପାଇଛି ମୁଁ ଦେଶ ବିଦେଶର ସକଳ ସୀମା ପାରହୋଇ ।

'ଶେଷ ସପ୍ତକ' ଓ 'ପତ୍ରପୁଟ' ପ୍ରକାଶ କାଳରେ ପ୍ରକାଶ ପାଇଥିଲା 1935ରେ ବିଥିକା । ଏଥିରେ ସ୍ଥାନ ପାଇଥିଲା ଛନ୍ଦ କବିତାସବୁ ଓ କେତୋଟି ସଙ୍ଗୀତ । ଅନ୍ୟ ଯେତେ ଭାବରେ କବିତାର ରୂପରଚନା ଲାଗି କବି ପରୀକ୍ଷା ନିରୀକ୍ଷା କରନ୍ତୁ ନା କାହିଁକି, ସେ ତାଙ୍କର ସେଇ ପୁରାତନ ଓ ପ୍ରିୟ ଛନ୍ଦ ଗୀତି ରଚନା ରାଜ୍ୟକୁ ବାରମ୍ବାର ଫେରି ଆସୁଥିଲେ । ଏହି ବହିର ଅନେକ କବିତା ଅତି ମନୋଜ୍ଞ, ସେସବୁର ବିଷୟ ବସ୍ତୁ ଓ କବିଙ୍କ ମନୋଭଙ୍ଗୀ ବୈଚିତ୍ର୍ୟମୟ । ସେ ଯେଉଁ ଦୀର୍ଘ ଅତୀତ ଜୀବନ ବିତାଇଛନ୍ତି ତାକୁ ମନେ ପକାଇଛନ୍ତି, ଯାହା ହରାଇଛନ୍ତି ତାକୁ ଅବଶ୍ୟ ଫେରି ପାଇବେ ନାହିଁ, କିନ୍ତୁ ସେ ଶିଖିଛନ୍ତି ଜୀବନର ରହସ୍ୟ ରାଜ୍ୟକୁ ଦୃଷ୍ଟିପାତ କରିବାକୁ ଓ ଅନୁଭବ କରିଛନ୍ତି- ''ସେଇ ଆନନ୍ଦ ଯାହା ମିଳେ ସମସ୍ତ କ୍ଷତି ଓ ଲାଭ, ସମସ୍ତ ଦୁଃଖ ଓ ସୁଖର ବିସ୍ମରଣରେ ।'' ଏଥିରେ ଅନେକ ପ୍ରେମ କବିତା ଅଛି । ମାତ୍ର ସେସବୁ ଅଦେହୀ, ସେଥିର ପ୍ରେୟ ବସ୍ତୁ ନାହିଁ, ସେଥିରେ ନାହିଁ ପ୍ରେମର ଆବେଗ ଓ ସ୍ଥୂଳ ରୂପ । ପ୍ରେମ ହିଁ କବିଙ୍କ ପ୍ରେମର ଧେୟ, ଯେଉଁ ପ୍ରେମର ସ୍ୱାଦ ସେ ପାଇଛନ୍ତି ତାହାକୁ ସେ ଭୁଲିବା ଅସମ୍ଭବ । ସେ କେବଳ ଆତ୍ମ ସାନ୍ତ୍ୱନା ଖୋଜିଛନ୍ତି, ''ସେ ଅଛି, ପୁଣି ନାହିଁ, ସେଥିଲାଗି ନାହିଁ ତାର ଦୁର୍ବହ ଭାର । ଅବର୍ତ୍ତମାନରେ ତାର ସ୍ୱାର୍ଥକତା, ସେଇଥିପାଇଁ ଏହାର ମୂଲ୍ୟ ।'' 'ଦୁର୍ଭାଗିନୀ ପ୍ରତି' ବୋଲି ଗୋଟିଏ କବିତାରେ ବିଷାଦର ଆବେଗ ଭିତରେ କବିଙ୍କର ପ୍ରକୃତ ବ୍ୟଥିତ ହୃଦୟର ପ୍ରକାଶ ଘଟିଛି । ଏହାର ରଚନା କାଳ 6 ଅଗଷ୍ଟ 1932 । କବିଙ୍କର ଜୀବିତ ଏକମାତ୍ର କନ୍ୟା ଜର୍ମାନୀରେ ନିଜର ଏକମାତ୍ର ପୁତ୍ରର ରୋଗଶଯ୍ୟା ପାଖରେ ଥିବା ସମୟରେ ପରଦିନ ତା'ର ଶୋଚନୀୟ ମୃତ୍ୟୁ ଘଟିଥିଲା । ଘଟିବାକୁ ଯାଉଥିବା ଏଇ ଦୁଃଖ ଦାୟକ ଘଟଣା ବିଷୟରେ କବି ଯେପରିକି ପୂର୍ବାଭାସ ପାଇଥିଲେ । ସେ କଳ୍ପନା କରିଛନ୍ତି ଯେ କନ୍ୟା ତାଙ୍କ ଆଗରେ ଠିଆ ହୋଇଛି ଅଥଚ ସେ ତା ଆଡକୁ ଚାହିଁ ପାରୁ ନାହାନ୍ତି । ତା'ର ସବୁ ଲୁହ ସୁଖି ଯାଇଥିବା ଆଖିରୁ ବାରମ୍ବାର ଉଠୁଛି ଗୋଟିଏ ପ୍ରଶ୍ନ- ''କାହିଁକି ? କାହିଁକି ?''

ଶେଷ ବୟସରେ ସ୍ୱାଧୀନ ଭାବରେ ଭ୍ରମଣ କରିବା ପାଇଁ କବି ଅସମର୍ଥ ହୋଇପଡିଥିଲେ । ସେ ଥରକୁ ଥର ନିଜର ରହିବା ଜାଗା ବଦଳାଉଥିଲେ । ତାଙ୍କ ମନକୁ ଗୋଟିଏ

ଧାରଣା ଆସିଲା ଯେ ସେ ଗୋଟିଏ ମାଟି କୁଟୀରରରେ ରହିବା ଦରକାର । ସେ ଯେଉଁ ସାନ ପକ୍କା ଘରଟିରେ ରହୁଥିଲେ ତା'ରି ପାଖକୁ ଲାଗି ଗୋଟିଏ ମାଟି ଘର ତିଆରି ହେଲା । ସାନ୍ତାଳ ସ୍ତ୍ରୀଲୋକମାନେ କେମିତି ସେଇ ଘରର କାନ୍ଥ ଦେଉଛନ୍ତି । ତାକୁ ସେ ଚାହିଁ ବସି ରହୁଥିଲେ । 'ବିଥିକା'ରେ ସ୍ଥାନିତ ଗୋଟିଏ ମନୋଜ୍ଞ କବିତାରେ ଏଇ ସାନ୍ତାଳ ରମଣୀମାନଙ୍କୁ କବି ଅମର ଭାବେ ଚିତ୍ରଣ କରିଛନ୍ତି । ''ଶିମୁଳି ଗଛ ମୂଳରେ ନାଲି କଙ୍କର ଗୋଡି ମାଟି ଉପରେ ସାନ୍ତାଳ ନାରୀ ମାନେ ଯାଆସ କରୁଛନ୍ତି । ମୋଟା ଧଳା ଶାଢ଼ୀରେ ସେମାନଙ୍କର ସୁଗଠିତ କୃଷ୍ଣ ଶରୀର, ଅଙ୍ଗ ପ୍ରତ୍ୟଙ୍ଗ ଢ଼ାଙ୍କି ହୋଇରହିଛି । ପଳାଶ ଫୁଲର ଲାଲ ଅଗ୍ନି ଶିଖାଭଳି ଉଡୁଛି ଶାଢ଼ୀର ଲାଲଧଡି । ସେଇ ନାରୀମାନଙ୍କୁ ଦେଖିଲେ ମନେ ହେଉଥିଲା ଯେପରି ଅନ୍ୟମନସ୍କ ଦେବଶିଳ୍ପୀ ଆଷାଢ଼ର କୃଷ୍ଣ ବାଦଲରେ ଝଲସୁଥିବା ବିଜୁଳିରେ ଗୋଟିଏ କଳାଚଢ଼େଇ ତିଆରି କରିଛନ୍ତି । ତା'ର ଚଳଚଞ୍ଚଳ ଡେଣା ଯେମିତି ଭିତରେ ଲୁଚି ରହିଛି, ସେ ଚାଲିଗଲା ବେଳକୁ ମନେ ହେଉଛି ସେଇ ଚାଲିରେ ରହିଛି ଗୋଟିଏ ନାରୀର ପାଦର ଗତି ଓ ଚଢ଼େଇର ଉଡାଣ ।''

ଏଇ ବର୍ଷ ଶେଷ ହେବା ପୂର୍ବରୁ ତାଙ୍କର ଦୁଇଟି ନାଟକ ଅଭିନୀତ ହୋଇଥିଲା । ଶାନ୍ତିନିକେତନରେ 'ଶାରଦୋତ୍ସବ' ଓ କଲିକତାରେ 'ଅରୂପରତନ' । ଅରୂପରତନ ନାଟକଟି 'କିଙ୍ଗ୍ ଅଫ୍ ଦି ଡ୍ରାର୍କଚେମ୍ବର' ନାଟକର ପରିବର୍ତ୍ତିତ ରୂପ । ଏଇ ଦୁଇଟି ଯାକ ନାଟକରେ ରବୀନ୍ଦ୍ରନାଥ ନିଜେ ଅଭିନୟ କରିଥିଲେ । କବିଙ୍କୁ ରଙ୍ଗ ମଞ୍ଚରେ ଦେଖି ଦର୍ଶକ ମାନେ ଯେ କେବଳ ଆନନ୍ଦ ବିଭୋର ହୋଇଥିଲେ ତାହା ନୁହେଁ ଏମିତି ଅଭିନୟ କରିବାରେ କବି ବହୁତ ସୁଖ ଅନୁଭବ କରିଥିଲେ । 1936 ଫେବୃୟାରୀ ମାସରେ କଲିକତାରେ ଶିକ୍ଷା ପ୍ରସଙ୍ଗରେ ତିନୋଟି ବକ୍ତୃତା ଦେଇ ସାରିବା ପରେ 'ଚିତ୍ରାଙ୍ଗଦା' ନାଟକର ସଙ୍ଗୀତ ରୂପ ପ୍ରସ୍ତୁତିରେ ସେ ଲାଗିଯାଇଥିଲେ । ଏଇ ଗୀତିନାଟିକାର ରେହରସାଲ ତାଙ୍କ ନିଜ ତତ୍ତ୍ୱାବଧାନରେ ହେଉଥିଲା । ତାଙ୍କର ପୁତ୍ରବଧୂ ପ୍ରତୀମା ଦେବୀ ସେଥିରେ ତାଙ୍କର ପ୍ରଧାନ ସହଯୋଗୀ ଥିଲେ ।

କବି ନିଜେ ଏହାକୁ ନୃତ୍ୟ ନାଟିକା ବୋଲି କହୁଥିଲେ । ଏହା ଖୁବ୍ ଜନପ୍ରିୟତା ଅର୍ଜନ କରିଥିଲା । କଲିକତାରେ ଏହାର ଅଭିନୟ ଉଚ୍ଚପ୍ରଶଂସିତ ହେବାପରେ କବି ତାଙ୍କର ଦଳକୁ ଘେନି ଉତ୍ତର ଭାରତରେ ଏଇ ନୃତ୍ୟ ନାଟିକା ପ୍ରଦର୍ଶନ ପାଇଁ ବାହାରି ପଡିଥିଲେ । ଅନେକ ସହରରେ ଏଇ ନାଟିକାଟି ଯେତେ ପ୍ରଶଂସା ପାଉଥିଲା ସେଇ ତୁଳନାରେ ସେପରି କିଛି ଅର୍ଥଲାଭ ହେଉନଥିଲା । ମାର୍ଚ୍ଚ ଶେଷସପ୍ତାହରେ ଦିଲ୍ଲୀରେ ଏହାର ଅଭିନୟ ହୋଇଥିଲା । ଗାନ୍ଧିଜୀ ସେଇ ସମୟରେ ଦିଲ୍ଲୀରେ ରହୁଥିଲେ । ଅସୁସ୍ଥ ଦେହରେ ବୃଦ୍ଧ କବି ନିଜର ପ୍ରିୟ ଶିକ୍ଷାନୁଷ୍ଠାନ ପାଇଁ ଏହିପରି ବୁଲିବୁଲି ନାଟକ ଦେଖାଇ ଯେ ଅର୍ଥାଗମର ପ୍ରୟାସ କରୁଛନ୍ତି- ଏହା ଗାନ୍ଧିଜୀଙ୍କୁ ବଡ ବିଚଳିତ କରିଥିଲା । ଗାନ୍ଧିଜୀ ଷାଠିଏ ହଜାର ଟଙ୍କାର ଗୋଟିଏ ବ୍ୟାଙ୍କ ଡ୍ରାଫଟ୍ ତତ୍‌କ୍ଷଣାତ୍ ତାଙ୍କ ପାଖକୁ ପଠାଇ ଦେଇଥିଲେ । ଏହା ସହିତ ଥିବା ଗୋଟିଏ ଚିଠିରେ ସେ ଲେଖିଥିଲେ- ''ଏଇ ଅର୍ଥ ହେଉଛି ଜନସାଧାରଣଙ୍କ ଦାନ । ବୁଲିବୁଲି ନାଟକ ପ୍ରଦର୍ଶନ କାର୍ଯ୍ୟକ୍ରମକୁ ବାତିଲ କରି ଜନସାଧାରଣଙ୍କ ମନରେ ଥିବା ଆପଣଙ୍କ ସ୍ୱାସ୍ଥ୍ୟ ଭଙ୍ଗ ବିଷୟରେ ଆଶଙ୍କା ଆପଣ ଦୂରିଭୂତ କରନ୍ତୁ ।'' ଗାନ୍ଧିଜୀଙ୍କ ନିବେଦନ କବିଙ୍କ ହୃଦୟକୁ ସ୍ପର୍ଶକଲା । କିନ୍ତୁ ଦଳକୁ ଧରି ବୁଲିବାରେ ଯେଉଁ ଆନନ୍ଦ ଥିଲା ସେଥିରୁ ସେ ବଞ୍ଚିତ ହେଲେ । ନାଟକ ଅଭିନୟ ବେଳେ ମଞ୍ଚର ଗୋଟିଏ କୋଣରେ ବସି ସେ ନାଟକ ଦେଖୁଥିଲେ । ହୁଏତ ସେଥିଲେ ନିରବ ନିଶ୍ଚଳ ସଞ୍ଚାଳକ ଅଥବା ନିଜ କୃତିର

ସମୀକ୍ଷକ । ସତେ ଯେମିତି ନିଜ କୃତି ଉପରେ ସେ ନିଜର ଅଭ୍ରାନ୍ତ ସ୍ୱାକ୍ଷର ରଖିଯାଉଥିଲେ । ଏଇ ଦିଲ୍ଲୀ ଭ୍ରମଣ କବିଙ୍କ ପ୍ରତି ଗାନ୍ଧିଜୀଙ୍କର ଏଇ ଉଦାରତା ଓ ପ୍ରୀତି ପ୍ରକାଶ ଦିଗରୁ ଯେପରି ସ୍ମରଣୀୟ ଇଂରେଜ୍ ସରକାରଙ୍କର ଗର୍ହିତ ଆଚରଣ ପାଇଁ ମଧ୍ୟ ଠିକ୍ ସେହିପରି ସ୍ମରଣୀୟ ଥିଲା । ଦିଲ୍ଲୀ ଥିଲା ବ୍ରିଟିଶ୍ ସାମ୍ରାଜ୍ୟର ରାଜଧାନୀ । ସରକାରଙ୍କର ଦମନଶୀଳ ନୀତି ବିରୁଦ୍ଧରେ ରବୀନ୍ଦ୍ରନାଥଙ୍କର ସ୍ପଷ୍ଟ ପ୍ରତିବାଦ ପାଇଁ ଇଂରେଜ୍ ଶାସକମାନେ ତାଙ୍କୁ କ୍ରୁର ଦୃଷ୍ଟିରେ ଦେଖୁଥିଲେ । ଦିଲ୍ଲୀ ପୌରସଂସ୍ଥା କବିଙ୍କୁ ଗୋଟିଏ ନାଗରିକ ସମ୍ବର୍ଦ୍ଧନା ଦେବାପାଇଁ ଚାହିଁଥିଲା । କିନ୍ତୁ ସରକାର ତାହା କରିବାକୁ ଦେଇ ନଥିଲେ ।

ଦିଲ୍ଲୀରୁ ଫେରି ମହାତ୍ମାଙ୍କ ପରାମର୍ଶ ଅନୁସାରେ କବି ଚୁପ୍‌ଚାପ ବସି ନଥିଲେ । ସେ କଲିକତାରେ ବହୁ ସାଧାରଣ ସଭାରେ କାୟକ୍ଳେଶ ବରଣ କରି ଅଧ୍ୟକ୍ଷତା କରୁଥିଲେ । ନିଜ ନାଟକ ଦେଖିବା ଅପେକ୍ଷା ଏସବୁ ନିଶ୍ଚୟ ବିରକ୍ତିକର ଥିଲା । ଅକ୍‌ଟୋବର ଦୁଇରେ ଶାନ୍ତିନିକେତନରେ ଗାନ୍ଧିଜୀଙ୍କ ଜନ୍ମଦିନ ଉପଲକ୍ଷେ ଏକ ବିଶେଷ ପ୍ରାର୍ଥନା ସଭା ହେଲା । କବି ସେଠି ତାଙ୍କୁ ଅନ୍ତରର ଶ୍ରଦ୍ଧାର୍ଘ୍ୟ ଅର୍ପଣକଲେ । ତା ପରେ ସେ ପୁଣି ଫେରିଗଲେ ତାଙ୍କର ନାଟକ ଜଗତକୁ । ପୂର୍ବରୁ 'ପରିଶୋଧ' ନାମରେ ରଚିତ ନାଟକକୁ ନୂତନ ନାଟ୍ୟରୂପ ଦେଲେ । ତା'ର ନା ହେଲା 'ଶ୍ୟାମା' । ଶ୍ୟାମା ଏଇ ନାଟିକାର ନାୟିକା । ଅକ୍ଟୋବର ମାସ ଶେଷରେ କଲିକତାରେ ଏହା ମଞ୍ଚସ୍ଥ ହେଲା । ଠିକ୍ ପୂର୍ବ ଭଳି କବି ଯାଇ ମଞ୍ଚ ଉପରେ ଉପସ୍ଥିତ ହୋଇଥିଲେ । ନାଟକର ବିଷୟ ବସ୍ତୁ ହେଉଛି ପ୍ରେମର ଅନ୍ଧ ଅହଂକାର, ଯାହା ଜୀବନର ଅନ୍ୟ କୌଣସି ସୁଖ ଭୋଗ କରିବାକୁ ଦିଏ ନାହିଁ । ଫଳରେ ଏଇ ପ୍ରେମରୁ ମଧ୍ୟ କିଛି ସୁଖ ମିଳେନାହିଁ । ବଜ୍ରସେନ ଜଣେ ବିଦେଶୀ । ମିଥ୍ୟା ଅପରାଧ ଦାୟରେ ତାଙ୍କୁ ଫାଶି ଦଣ୍ଡ ହୋଇଛି । ସୁନ୍ଦରୀ ନଗରବଧୂ 'ଶ୍ୟାମା' ତାଙ୍କ ପ୍ରେମରେ ପଡିଛି । ଶ୍ୟାମା ଶେଷରେ ମୃତ୍ୟୁଦଣ୍ଡରୁ ପ୍ରେମିକକୁ ବଂଚାଇଛି ତା'ର ଅନ୍ୟ ପ୍ରଶଂସକଙ୍କ ସାହାଯ୍ୟରେ ବଜ୍ରସେନ ସ୍ଥାନରେ ଅନ୍ୟ ଜଣଙ୍କୁ ବିସର୍ଜନ ଦେଇ । ବଜ୍ରସେନ ଯେତେବେଳେ ଜାଣିଛି, ଯେ ଶ୍ୟାମା ଏପରି ଏକ ଜଘନ୍ୟ ଅପରାଧ କରି ତାକୁ ବଂଚାଇଛି ସେତେବେଳେ ସେ କ୍ରୋଧ, ବିରକ୍ତି ଓ ଲଜ୍ଜାରେ ଶ୍ୟାମାକୁ ପରିତ୍ୟାଗ କରି ଚାଲିଯାଇଛି । ଯେଉଁ ନୈତିକ ନିୟମ ଜଗତରେ କ୍ରିୟାଶୀଳ ତାହାହିଁ ଏଥିରେ ଅତୁଟ ରହିଛି । ଅଭାଗିନୀ ଶ୍ୟାମା ତାର ପ୍ରେମିକ ପ୍ରତି ଯେତେ ଅନୁଗତ ମାନବିକତା ନିକଟରେ ସେତିକି ଅପରାଧୀ, ସେ ପାଇଛି ତା'ର ଅବଶ୍ୟମ୍ଭାବୀ ପ୍ରତିଫଳ ।

ଫେବୃୟାରୀ ମାସରେ ରବୀନ୍ଦ୍ରନାଥ କଲିକତା ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବରେ ଦୀକ୍ଷାନ୍ତ ଭାଷଣ ଦେଲେ । ସେପର୍ଯ୍ୟନ୍ତ ୫୦ ବର୍ଷର କଲିକତା ବିଶ୍ୱବିଦ୍ୟାଳୟ ଇତିହାସରେ କେବଳ ଇଂରେଜ ଭାଇସ୍‌ରାୟମାନେ ସେଇ ଭାଷଣ ଦେଉଥିଲେ । ଭାରତର ଜଣେ ସାଧାରଣ ନାଗରିକ ପ୍ରଥମଥର ପାଇଁ ବଙ୍ଗଳାରେ ହିଁ ଭାଷଣ ପ୍ରଦାନ କଲେ । କଲିକତା ବିଶ୍ୱବିଦ୍ୟାଳୟ ଇତିହାସରେ ଏହାଥିଲା ଉଲ୍ଲେଖଯୋଗ୍ୟ । ଶିକ୍ଷାର ମାଧ୍ୟମରୂପେ ମାତୃଭାଷାକୁ ଗ୍ରହଣ କରିବା ପାଇଁ ରବୀନ୍ଦ୍ରନାଥ ଗୁରୁତ୍ୱପୂର୍ଣ୍ଣ ମତ ପ୍ରକାଶ କଲେ । ରବୀନ୍ଦ୍ରନାଥ ଆହୁରି ଦୁଇଟି ପ୍ରଧାନ ସଭାରେ ଭାଷଣ ଦେଲେ । ଗୋଟିଏ ହେଲା ବଙ୍ଗୀୟ ସାହିତ୍ୟ ପରିଷଦରେ ଓ ଅନ୍ୟଟି ହେଲା ରାମକୃଷ୍ଣ ପରମହଂସ ଦେବଙ୍କ ଜନ୍ମ ଶତବାର୍ଷିକୀ ଉପଲକ୍ଷେ ଆୟୋଜିତ ସର୍ବଧର୍ମସମନ୍ୱୟ ସଭାରେ । ଏହାପରେ ସେ ଶାନ୍ତିନିକେତନରେ ଚୀନାଭବନର ଉଦ୍‌ଘାଟନ ଉତ୍ସବରେ ଯୋଗଦେଲେ । ଭାରତ ବର୍ଷରେ ଚୀନ୍ ଭାଷା ଓ ସଂସ୍କୃତି ବିଦ୍ୟାଚର୍ଚ୍ଚା କ୍ଷେତ୍ରରେ ଚୀନା ଭବନ ଆଜିବି ଏକ ପ୍ରଧାନ କେନ୍ଦ୍ର । ଏଥର

ଗ୍ରୀଷ୍ମବିକାଶ କବି ହିମାଳୟର ପାଦଦେଶ ଆଲମୋରାରେ କଟାଇଲେ । ବଙ୍ଗଳାର ପାଠକମାନଙ୍କୁ ଆଧୁନିକ ବିଜ୍ଞାନ ବିଷୟରେ ସଚେତନ କରାଇବା ପାଇଁ ସେ 'ବିଶ୍ୱପରିଚୟ' ଗ୍ରନ୍ଥ ରଚନା କଲେ । ବିଜ୍ଞାନରେ ବସ୍ତୁତଃ କୌଣସି ବିଦ୍ୟାରେ ତାଙ୍କର ଶିକ୍ଷାଗତ ଡିଗ୍ରୀ ନଥିଲା । କିନ୍ତୁ ଶୈଶବରୁ ସେ ତାଙ୍କ ବାପାଙ୍କ ସାଙ୍ଗରେ ହିମାଳୟର ପାଦଦେଶକୁ ବୁଲିବାକୁ ଯାଉଥିଲେ । ତାରକା ଖଚିତ ଆକାଶ ତଳେ ସେ ଜ୍ୟୋତିର୍ବିଦ୍ୟା ବିଷୟରେ ପ୍ରତ୍ୟକ୍ଷ ଜ୍ଞାନ ଲାଭ କରୁଥିଲେ । ନାନା ଗ୍ରନ୍ଥ ପଢ଼ି ପ୍ରାକୃତିକ ବିଜ୍ଞାନ ବିଷୟରେ ତାଙ୍କର କୌତୁହଳ ସେ ନିରସନ କରୁଥିଲେ । ଶାନ୍ତିନିକେତନ ସ୍କୁଲରେ ପ୍ରକୃତି ପାଠ ଓ ବିଜ୍ଞାନ ଶିକ୍ଷାକୁ ପ୍ରାଧାନ୍ୟ ଦିଆଯାଇଥିଲା । ତାଙ୍କ ଜୀବନର ଶେଷବର୍ଷ ପର୍ଯ୍ୟନ୍ତ ଆମ୍ଭମାନଙ୍କର ଚତୁର୍ଦ୍ଦିଗରେ ବିରାଜିତ ବିରାଟ ବିଶ୍ୱବିଷୟରେ ପଦାର୍ଥ ବିଦ୍ୟାର ଗ୍ରନ୍ଥ ଅଧ୍ୟୟନ କରିବା ଥିଲା ତାଙ୍କର ପ୍ରିୟ ବିନୋଦନ । ବଙ୍ଗଳା ପାଠକଙ୍କ ପାଇଁ ରଚିତ ବିଶ୍ୱପରିଚୟର ଏହା ହିଁ ଥିଲା ବିଷୟବସ୍ତୁ । ଏଥିରେ ଅବଶ୍ୟ କବି ମୌଳିକ ଗବେଷଣା କରି କୌଣସି ତଥ୍ୟ ପ୍ରକାଶ କରିନାହାନ୍ତି । ମାତ୍ର ପାଠକଙ୍କ ଉପଯୋଗ ପାଇଁ ପ୍ରାକୃତିକ ବିଜ୍ଞାନ କ୍ଷେତ୍ରରେ ହୋଇଥିବା ଗବେଷଣାର ଫଳ ସବୁକୁ କବି ଅତ୍ୟନ୍ତ ଆଗ୍ରହ ଉଦ୍ଦୀପକ ଭାବରେ ଫୁଟାଇ ପାରିଥିଲେ, ଏଥିରେ ସନ୍ଦେହ ନାହିଁ ।

ଆଲ୍‌ମୋରାରୁ ଫେରି କବି ଆଣ୍ଡାମାନ୍‌ରେ ବନ୍ଦୀ ମାନଙ୍କ ପ୍ରତି ହେଉଥିବା ଦୁର୍ବବ୍ୟହାରର ପ୍ରତିବାଦରେ ଆହୂତ ଅନସନ ସଭାରେ ଭାଷଣ ଦେଇଥିଲେ । 1937 ସେପ୍‌ଟେମ୍ବର ମାସରେ କଲିକତାରେ ମଞ୍ଚସ୍ଥ ହୋଇଥିବା 'ବର୍ଷାମଙ୍ଗଳ' ନାମକ ଏକ ସଙ୍ଗୀତ ନୃତ୍ୟ ବିଚିତ୍ରାକୁ ସେ ରଚନା ଓ ପ୍ରଯୋଜନା କରିଥିଲେ । କବି ନିଜେ ତାହା ମଞ୍ଚରେ ବସି ଦେଖିଥିଲେ । ପ୍ରକୃତିର ନବନବ ରୂପଥିଲା ତାଙ୍କର ଏକାନ୍ତ ପ୍ରିୟ । ସବୁ ଋତୁ ଭଳି ସେ ନିରକ୍ଷମଣ୍ଡଳର ଗ୍ରୀଷ୍ମ ଋତୁ, ତା'ର ପ୍ରଚଣ୍ଡ ଗ୍ରୀଷ୍ମ ଓ ଧୂଳିଝଡକୁ ବି ନିଜ ସଙ୍ଗୀତରେ ଆବାହାନ କରିଛନ୍ତି । ତଥାପି ବର୍ଷାଥିଲା ତାଙ୍କର ସବୁଠାରୁ ପ୍ରିୟ ଋତୁ । ଅତି ଶୈଶବରୁ ସେ ଯେଉଁ ପଦଟିଏ ଶିଶୁ ସଙ୍ଗୀତ ଶିଖିଥିଲେ- 'ବୃଷ୍ଟିପଡେ, ପାତାନଡେ' - ଏ କବିତାର ବାକ୍ ଛନ୍ଦ ଭଳି ପ୍ରକୃତିର ସେଇ ଛନ୍ଦ ବର୍ଷାଝରିଲେ, ପତ୍ର ଦୋହଲିଲେ ଯାହା ଉସରିତ ହୁଏ ତାହା ତାଙ୍କ ହୃଦୟକୁ ଆନ୍ଦୋଳିତ କରିଥିଲା ।

ବର୍ଷାଧୂଆ ନିର୍ମଳ ଆକାଶରେ ଘୁରିବୁଲୁଥିବା ଖଣ୍ଡ ବାଦଲର ଋତୁ ଶରତ ତାଙ୍କ ପାଇଁ ଥିଲା ଏକାନ୍ତ ପ୍ରିୟ । ମାତ୍ର 1937 ର ଶରତ ତାଙ୍କ ପାଇଁ ଆଣିଦେଲା ଦୁଃଖ । ସେପ୍ଟେମ୍ବର 10 ତାରିଖ ସନ୍ଧ୍ୟା ସେ ଯେମିତି ତାଙ୍କ ଚୌକୀରେ ବସନ୍ତି ସେମିତି ବସିଥାନ୍ତି ହଠାତ୍ ଅଚେତ ହୋଇ ପଡିଲେ । ପୂର୍ବରୁ କୌଣସି ରୋଗର ସୂଚନା ନଥିଲା । ସେମିତି ଅର୍ଦ୍ଧଚେତନ ଅବସ୍ଥାରେ 48 ଘଣ୍ଟା ଅତିବାହିତ ହେବାପରେ କଲିକତାରୁ ଆସିଲେ ଦଳେ ଡାକ୍ତର । ସେ ସମୟରେ ଶାନ୍ତିନିକେତନରେ ଟେଲିଫୋନ ନ ଥିଲା । ତେଣୁ କଲିକତାରୁ ଚିକିତ୍ସକ ଦଳ ଆସିବା ପାଇଁ ଏତେ ବିଳମ୍ବ ଘଟିଥିଲା । ସେଇ ସମୟରେ ଅଚେତନ କବି ଯେମିତିକି ଜୀବନ ଓ ମୃତ୍ୟୁର ସୀମାରେଖା ଭିତରେ ବିଚରଣ କରୁଥିଲେ । ସୌଭାଗ୍ୟବଶତଃ ତାଙ୍କର ଚେତନା ଫେରିଲା । ଧୀରେ ଧୀରେ ପୁଣି ସ୍ୱାଭାବିକ ସ୍ୱାସ୍ଥ୍ୟ ଫେରି ଆସିଲା ।

କବିଙ୍କ କାବ୍ୟସାଧନାର କୋଟୀ ଏଇ ସମୟରେ ରଚିତ ଅନୁଭୂତି ସମ୍ବଳିତ 18 ଟି କବିତାରେ ଦେଖିବାକୁ ମିଳେ । ବାହାରକୁ ଯାହା ଦେଖାଯାଉଥିଲା ଅଚେତନ, ତାହା ଭିତରେ ହୁଏତ ଏକ ଚୈତନ୍ୟବୋଧ ସକ୍ରିୟ ଥିଲା । ଜୀବନ ଓ ମୃତ୍ୟୁର ସୀମାରେଖା ଭିତରେ ଭ୍ରମଣର

ଅନୁଭୂତି ରୂପାୟିତ ହୋଇଥିଲା ତାଙ୍କର ଏଇ କବିତା ଗୁଡିକରେ । ମଗ୍ନ ଚୈତନ୍ୟର ଗଭୀର ସ୍ପନ୍ଦନରୁ ଏହାର ଜନ୍ମ । ସତେ ଯେମିତି ଭାଗ୍ୟର କୁଶଳୀ ହାତରେ ବିଦ୍ୟୁତ୍ ସ୍ପର୍ଶର ଚିକିତ୍ସା କରିଛି । ଏଇ ସବୁ ଭାବନା ଯେମିତି ସମୃଦ୍ଧ ସେମିତି ଶକ୍ତିଶାଳୀ । ଏଥିରେ ଅବଶ୍ୟ ଏକ ରୁଗ୍ଣ ମନର କ୍ଷୁବ୍ଧ ସ୍ୱର ରହିଛି କିନ୍ତୁ ସେଥିରେ ଭୟ, ଯନ୍ତ୍ରଣା ବା ଅଭିଯୋଗର କୌଣସି ସ୍ୱାକ୍ଷର ନାହିଁ । ଏଠାରେ କବି ମାନସ ଅଧିକ ଏକୀଭୂତ, ସବୁଠାରୁ ଶକ୍ତିକ୍ଷମ । ସତେ ଯେମିତି କବି ଚେତନା ଏକ ଦୁଃସାହସିକ ଶଙ୍କାକୁଳ ଯାତ୍ରା ପଥରେ ଜୀବନ ମୃତ୍ୟୁର ସୀମାରେଖା ଭିତରେ ପରିଚିତ ବିଶ୍ୱର ସବୁ ବନ୍ଧନ ତୁଟାଇ ଅଗ୍ରସର ହେଉଛି ଓ ତାଙ୍କର ଆତ୍ମା ଯେଉଁଠି ଦିନରାତି ନାହିଁ, ଆଲୋକ ଅନ୍ଧାର ନାହିଁ ସେଇ ଶୂନ୍ୟକୁ ଦେଖିବା ପାଇଁ ବାଧ ହୋଇଛି । 1938ରେ 'ପ୍ରାନ୍ତିକ' ନାମରେ ଏଇ କବିତାଗୁଡିକ ସଂକଳିତ ହୋଇଥିଲା । ଏଇ ନାମକରଣ ଥିଲା ଏକାନ୍ତ ସାର୍ଥକ ।

କବି ଚେତନା ଫେରିଆସିବା ସଙ୍ଗେ ସଙ୍ଗେ ଯେଉଁ କବିତାଟି ଲେଖିଥିଲେ ସେଥିରେ ତାଙ୍କର ଏଇ ଆକସ୍ମିକ ପୀଡାର ଅନୁଭୂତି ପ୍ରକାଶ ପାଇଥିଲା । ''ବିଶ୍ୱ ବ୍ରହ୍ମାଣ୍ଡର ଆଲୋକଶୂନ୍ୟ ପଥରୁ ଯେମିତିକି ମୃତ୍ୟୁଦୂତ ଲୁଚି ଲୁଚି ଚାଲିଆସୁଥିଲା ।'' ''ମନର ଆୟତନରେ ଯେତେ କିଛି ଧୂଳି ଜମିଥିଲା ସବୁ ଯେମିତିକି ପୋଛି ହୋଇଗଲା । ବେଦନାର କ୍ଷୟଶୀଳ କ୍ଷାରକରେ ସବୁକିଛି ଯେମିତିକି ଧୋଇହୋଇ ପରିଚ୍ଛନ୍ନ ହୋଇଗଲା । ଯବନିକାର ଅନ୍ତରାଳରେ ଏଇ ଯେମିତି ତାଙ୍କ ଆତ୍ମାକୁ ନିରବରେ କେହି ଯେମିତିକି କୋରିନେଲା'' ଏମିତି ଉପମା ସବୁ ଗୋଟିଏ ଗୋଟିଏ କବିତାରେ ସ୍ଥାନ ପାଇଛି । ''ମୁଁ ମୋ ଚେତନାର ଗୋଧୂଳିରେ ଦେଖୁଛି ମୋ ଦେହ ଏକ କୃଷ୍ଣ ନଦୀ ଜଳରେ ତଳକୁ ଭାସିଯାଉଛି । ସାଙ୍ଗରେ ନେଇ ଯାଉଛି ଯେତେ କିଛି ସଞ୍ଚିତ ଅନୁଭୂତି ଓ ବହୁବିଧ କଷ୍ଟ । ମୋ ଦେହ ଏକ ଛାୟାରେ ପରିଣତ ହେଉଛି, ଅନନ୍ତ ଅନ୍ଧକାର ଭିତରେ ନିଜକୁ ହରାଇ ବସୁଛି ।'' ପୁଣି ଆଉ ଗୋଟିଏ କବିତାରେ ''ରଙ୍ଗ ମଞ୍ଚରୁ ଯେତେବେଳେ ଆଲୋକ ସବୁ ଗୋଟିକ ପରେ ଗୋଟିଏ ଲିଭିଯାଇଛି, ପ୍ରେକ୍ଷାଳୟ ଶୂନ୍ୟ । ମୋ ମନ ସେଇଠି ସେହିପରି ରହିଛି ସ୍ଥିର ହୋଇ । ଏହା ସତେ ଯେପରିକି ଏକ ସୁପ୍ତି ଯାହାର ସବୁ ସ୍ୱପ୍ନ ଅନ୍ଧକାର ହାତର କୃଷ୍ଣ କଳାରେ ପୋଛି ହୋଇଯାଇଛି । ପବନିକା ଉଠିବା ମୁହୂର୍ତ୍ତରୁ ମଞ୍ଚକୁ ଆସିବା ପାଇଁ ମୁଁ ଯେତେ କିଛି ପ୍ରସାଧନ କରିଥିଲି ସବୁ ଯେମିତି ନିରର୍ଥକ ହୋଇଗଲା । ଅଗଣିତ ଦର୍ଶକଙ୍କର ମନୋରଞ୍ଜନ ପାଇଁ ମୁଁ ଯେତେ ସାଜ ବାନ୍ଧିଥିଲି ସେସବୁ ପୋଛି ହୋଇଗଲା ।'' କିନ୍ତୁ କବିଙ୍କର ଏଥିରେ ଦୁଃଖନାହିଁ କାରଣ ସେ ବିସ୍ମୟବିଭୋର ସତ୍ତାର ଦୂରତମ ସୀମା ପର୍ଯ୍ୟନ୍ତ ଦେଖିଛନ୍ତି ।

ସବୁ କବିତାରେ ଯେ କବି ଆତ୍ମସମୀକ୍ଷା କରିଛନ୍ତି ତାହା ନୁହେଁ, ଏଇ 'ପ୍ରାନ୍ତିକ' ବହିର ଶେଷ ଦୁଇଟି କବିତାରେ ୟୁରୋପ୍‌ର ଆକାଶରେ ଯେଉଁ ବିୟୋଗାନ୍ତ ନାଟକ ଘନିଭୂତ ହୋଇ ଉଠୁଥିଲା ଓ ଅତିଶୀଘ୍ର ଯାହା ତାହାକୁ କବଳିତ କରିଦେଲା, ତାହା ବିଷୟରେ କବି ତୀବ୍ର ପ୍ରତିକ୍ରିୟା ପ୍ରକାଶ କରିଛନ୍ତି । ଗୋଟିଏ କବିତା, ଯାହା ସେ ନିଜେ ପରେ ଇଂରାଜୀରେ ଅନୁବାଦ କରିଥିଲେ ସେଥିରେ ତାଙ୍କର ଏଇ ମନଭାବ ପ୍ରକାଶିତ । ''ମୋ ମନ ଯେତେବେଳେ ଅଜ୍ଞାତର ଅନ୍ଧକାର ପଥରୁ ମୁକ୍ତିଲାଭ କରୁଥିଲା ସେତେବେଳେ ଭାଗ୍ୟ ମତେ ନେଇ ଯାଇଥିଲା ଏକ ଅତ୍ୟାଶ୍ଚର୍ଯ୍ୟର ସମ୍ମୁଖକୁ । ମନେ ହେଲା ମନୁଷ୍ୟକୁ ଅଣନିଃଶ୍ୱାସୀ କରିବା ଭଳି ଅପମାନର ଧୂଆଁ ବାହାରୁଥିବା ଏକ ଆଗ୍ନେୟଗିରିର ମୁଖ ଦେଶରେ ମତେ ନେଇ ଠିଆ କରାଇ ଦେଲା । ଏହାର ଏକ ଦିଗରେ ଉଦ୍ଧତ ବର୍ବରତା, ଆତ୍ମଘାତୀ ଉନ୍ମତ୍ତତା, ଅନ୍ୟ ଦିଗରେ ନିଜର ସଞ୍ଚିତ ସଂପଦକୁ ଜାବୁଡିଧରି

ରହିଥିବା ଧନ କୃପଣମାନଙ୍କର କାର୍ପଣ୍ୟ । ସେ କ୍ରୁଦ୍ଧ ହୋଇଉଠିଥିଲେ । ସେଇ ନରଭୋଜୀଙ୍କର ପ୍ରବଳ କ୍ଷୁଧାରୁ ନାରୀ କି ଶିଶୁ କେହି ବାଦ ଯାଆନ୍ତି ନାହିଁ । ତାଙ୍କରି ଉପରେ ସେ ନିଜର ବାକ୍ୟବାଣ ବର୍ଷା କରିଥିଲେ । କିନ୍ତୁ କାହାକୁ ଅଭିଶାପ ଦେବା ତାଙ୍କ ସ୍ୱଭାବଗତ ନଥିଲା । ସେ ଜାଣିଥିଲେ ଏହା ମଧ୍ୟ ଏକ ପ୍ରକାର ବର୍ବରତା ଓ ଏହି କ୍ରୋଧ ନିଷ୍ଫଳ । ଅବଶ୍ୟ ସେ ଚାହୁଁଥିଲେ ସ୍ନେହ, ପ୍ରେମ ଓ ଦୟାର ବାଣୀ ଶୁଣାଇବାକୁ । କିନ୍ତୁ ସେ ଜାଣିଥିଲେ ଏହା ମଧ୍ୟ ହେବ ସେହିପରି ନିରର୍ଥକ । 1937ରେ ଖ୍ରୀଷ୍ଟ ଉତ୍ସବ ଉପଲକ୍ଷେ ରଚିତ ସବୁଠାରୁ କ୍ଷୁଦ୍ର 'ପ୍ରାନ୍ତିକ' ସଙ୍କଳନର ଶେଷ କବିତାଟିରେ ସେ ଲେଖିଥିଲେ-

ଚାରିଦିଗେ ପଡିଅଛି ନାଗୁଣିଙ୍କ ବିଷାକ୍ତ ନିଃଶ୍ୱାସ,  
ଶାନ୍ତିର ଲଳିତ ବାଣୀ ଶୁଣାଇବ ବ୍ୟର୍ଥ ପରିହାସ ।  
ବିଦାୟ ନେବାର ଆଗେ ତେଣୁ ତାଙ୍କୁ ଏହିକଥା କହି ଦେଇ ଯାଏ  
ଦାନବଙ୍କ ସାଥେ ଯିଏ ସଂଗ୍ରାମ ପାଇଁ କି  
ଘରେ ଘରେ ପ୍ରସ୍ତୁତ ହୁଅନ୍ତି ।  
କାରଣ କିଛି ଦିନ ପରେ ସେ ଗୋଟିଏ କବିତାରେ ଲେଖିଥିଲେ-

ସେ ଜଗତର ମନ୍ଦ ଓ କଷ୍ଟ ବହୁତ ଦେଖିଛନ୍ତି । ଦେଖିଛନ୍ତି ମଣିଷ କିପରି ନିଜର ଆତ୍ମାକୁ କଳୁଷିତ କରୁଛି । ତା ସଙ୍ଗେ ସଙ୍ଗେ ଶୁଣିଛନ୍ତି ବିଶ୍ୱ ସଙ୍ଗୀତର ଐକ୍ୟତାନ । ଧୂଳି ଝଡ ଭିତରେ ସେ ଶୁଣିଛନ୍ତି ଶାନ୍ତିର ଚିରନ୍ତନବାଣୀ । ରବୀନ୍ଦ୍ର କବିତାର ଅସୀମ ଶକ୍ତି, ବୈଚିତ୍ର୍ୟ ଓ ସମୃଦ୍ଧି ମୂଳରେ ଥିଲା ଏହିଭଳି ବିପରୀତ କଣ୍ଠସ୍ୱର ଓ ଦ୍ୱନ୍ଦ୍ୱାତ୍ମକତାର ସ୍ୱୀକୃତି । କବି ସବୁବେଳେ ସତତା ଅନୁଭବ କରିଛନ୍ତି । ତାଙ୍କର ପ୍ରତ୍ୟେକ ମନୋଭଙ୍ଗୀ ଓ ଅନୁଭୂତିରେ ଏହା ପ୍ରକାଶିତ । ଯେମିତି ମହାତ୍ମାଙ୍କ ଠାରେ ଦେଖିବାକୁ ମିଳୁଥିଲା ସେମିତି କବିଙ୍କଠାରେ ଏହି ଆବେଗୋଷ୍ଣ ସତତା ହିଁ ଆହ୍ୱାନର ସମ୍ମୁଖୀନ ହେବା ପାଇଁ ଶକ୍ତି ଦେଉଥିଲା ଏବଂ ଥରକୁ ଥର ସେ ନିଜକୁ ଅତିକ୍ରମ କରିପାରୁ ଥିଲେ ।

କବି ଧୀରେ ଧୀରେ ସ୍ୱାସ୍ଥ୍ୟଲାଭ କରୁଥିବା ବେଳେ ତାଙ୍କୁ କଲିକତା ନିଆଯାଇଥିଲା । କୌଣସି ରାଜନୈତିକ ସମ୍ମିଳନୀ ପାଇଁ ଆସି ଗାନ୍ଧି ଓ ନେହେରୁ କଲିକତାରେ ଥିଲେ । ସେମାନେ କବିଙ୍କୁ ସାକ୍ଷାତ କରିଥିଲେ । ସେ ସୁସ୍ଥ ହେଲେ । 1938 ଜାନୁୟାରୀ ମାସରେ ଲର୍ଡ ଲୋଥିଆନ ଓ ବ୍ରାବୋରନ୍‌ଙ୍କୁ ସେ ଶାନ୍ତିନିକେତନରେ ସ୍ୱାଗତ କରିଥିଲେ । ଅବିଳମ୍ବେ ବସନ୍ତ ଆସିଲା । ପୁଣି କବି ମାତି ଉଠିଲେ ସଙ୍ଗୀତ ରଚନାରେ । ତାଙ୍କର 'ଚଣ୍ଡାଳିକା' ନାଟକକୁ ପୁଣି ନୃତ୍ୟନାଟିକାରେ ରୂପାନ୍ତର କଲେ । ଏହା ଏକ ଶକ୍ତିଶାଳୀ ନାଟକ । ମାର୍ଚ୍ଚ ମାସରେ ଅତି ସଫଳତାର ସହିତ ଏହା କଲିକତାରେ ମଞ୍ଚସ୍ଥ ହେଲା । ଶେଷ ରଜନୀରେ କବି ନିଜେ ମଞ୍ଚର ଗୋଟିଏ କୋଣରେ ବସି ରହିଥିଲେ ନାଟକ ଦେଖିବାକୁ । ସେ ସମୟରେ ଗାନ୍ଧି କଲିକତାରେ ଥିଲେ । ପୁଣି ଥରେ ସେ କବିଙ୍କୁ ଭେଟିବାକୁ ଆସିଥିଲେ । ସହୃଦୟ ଗାନ୍ଧିଜୀ ନିଜର ସୂକ୍ଷ୍ମ ଦୃଷ୍ଟିରେ ବୁଝିପାରିଲେ ଯେ କବି ପୂର୍ବରୁ ଯେଉଁ ପ୍ରତିଶ୍ରୁତି ଦେଇଥିଲେ ଯେ ନିଜର ସ୍ୱାସ୍ଥ୍ୟକୁ ଅବହେଳା କରି ସହର ମାନଙ୍କରେ ଆଉ ନାଟକ ଅଭିନୟ କରିବାକୁ ଯିବେ ନାହିଁ, ତାହା ତାଙ୍କଠାରୁ ଆଶା କରିବା ବୃଥା । ସେ ବୁଝିଥିଲେ ଯେ ତାଙ୍କର ଅନୁଷ୍ଠାନ ପାଇଁ ଚାନ୍ଦା ଆଦାୟ କରିବା କେବଳ ଏକ ଉପଲକ୍ଷ ମାତ୍ର । ଜଣେ ଶିଳ୍ପୀର ପ୍ରଧାନ ଆବଶ୍ୟକତା ଶିଳ୍ପ ସୃଷ୍ଟି ଓ ନିଜର ସୃଷ୍ଟିକୁ ମଞ୍ଚରେ ଉପଭୋଗ କରିବା ।

ସେଇ ବର୍ଷ ଗ୍ରୀଷ୍ମ ଋତୁରେ କବି କାଲିଂପଙ୍ଗରେ ରହିଥିଲେ । ହିମାଳୟର ପୂର୍ବ ପଟରେ ଏହା ଏକ କ୍ଷୁଦ୍ର ସହର । ସେଠି ତାଙ୍କ ପୁଅଙ୍କର ଗୋଟିଏ ଘର ଥିଲା । ସେଇ ବର୍ଷ ସେଠି ରହି କବି ନିଜର ଜନ୍ମଦିନରେ ଗୋଟିଏ ସୁନ୍ଦର କବିତା ଲେଖିଲେ । ସେଇବର୍ଷ ଶେଷ ଭାଗରେ ସେହି କବିତା ନାଁରେ ପ୍ରକାଶିତ ହେଲା ଏକ କବିତା ଗ୍ରନ୍ଥ । ନାମ ତାର 'ସେଁଜୁତି' - ସନ୍ଧ୍ୟାଦୀପ । ସେଇ ଜୀବନ ମୃତ୍ୟୁର ସୀମା ତାଙ୍କ ମନକୁ ଭୂତଗ୍ରସ୍ତ କରୁଥିଲା । ତଥାପି ଜୀବନର ଯେଉଁ ମାୟା ତାହା ନୂତନ କରି ତାଙ୍କ ଉପରେ ପ୍ରଭାବ ବିସ୍ତାର କରୁଥିଲା । ଏହି କବିତାର କେତୋଟି ପଂକ୍ତି ନିମ୍ନରେ ଉଦ୍ଧାର କରାଗଲା-

ଆଜି ମୋର ଜନ୍ମଦିନ । ସଦ୍ୟ ହିଁ ପ୍ରାଣର ପ୍ରାନ୍ତ ପରେ
ବୁଡିକରି ଉଠିଛି ସେ ବିଲୁପ୍ତିର ଅନ୍ଧାର ଭିତରେ
ମରଣର ଛାଡପତ୍ର ନେଇ । ମନେ ହୁଏ ମୁଁ ଅବା କିଏ ?
ପୁରାତନ ବର୍ଷର ଗ୍ରନ୍ଥି ବନ୍ଧା ଜୀର୍ଣ୍ଣମାଳାଟିଏ ।
ସେଇଠି ଛିନ୍ନ ହୋଇଅଛି । ନବସୂତ୍ରେ ଗୁନ୍ଥା
ନବ ଜନ୍ମ ଦିନ ଆଜି ।

ଏହି କୃପାର ଅମାପ ମୂଲ୍ୟ ବିଷୟରେ ସାମୟିକ ଅମୃତ ଆସ୍ୱାଦନ ପାଇଁ ସେ ସଚେତନ ଥିଲେ । ସେ ପ୍ରାର୍ଥନ କରିଛନ୍ତି ।

ମତେ ଆଶୀର୍ବାଦ କର ।
ମିଶିଯାଉ ତୃଷାତପ୍ତ ଦିଗନ୍ତରେ ମାୟାବିନି ମରୀଚିକା
ଭରିଥିଲି ଆସକ୍ତିର ଥାଳି କାଙ୍ଗାଳଙ୍କ ପରି
ଅଶୁଚି ସଞ୍ଚୟ ପାତ୍ର କର ଖାଲି
ଭିକ୍ଷା ମୁଠି ଧୂଳିକୁ ଫେରାଇ ନିଅ
ଯାତ୍ରାତରୀ ବାହି ପଛକୁ ଫେରିବି ଯେପରି
ନ ଚାହେଁ ଆର୍ଦ୍ର ଦୃଷ୍ଟିଭରି
ଜୀବନଭୋଜିର ଶେଷ ଉଚିଷ୍ଟ

କାଲିଂପଙ୍ଗରୁ ସେ ମଂପୁ ଗଲେ । ଏହା ଦାର୍ଜିଲିଂ ଜିଲ୍ଲାର ପାର୍ବତ୍ୟନିବାସ । ସେ କିଛି ଦିନ ତାଙ୍କର ଜଣେ ସ୍ତାବକ ତରୁଣୀକବିଙ୍କର ଅତିଥି ହୋଇ ରହିଲେ । ତାଙ୍କ ସ୍ୱାମୀ ଥିଲେ ସରକାରୀ ସିକୋନା (କୁଇନାଇନ୍) ଚାଷ ବିଭାଗର ନିର୍ଦ୍ଦେଶକ । କବି ସେଠି କେତେକ କବିତା ଲେଖିବା ସଙ୍ଗେ ସଙ୍ଗେ 'ବଙ୍ଗଳା ଭାଷା ପରିଚୟ' ନାମକ ଏକ ବହି ଲେଖିଲେ । ବଙ୍ଗଭାଷା ବିଷୟରେ ରବୀନ୍ଦ୍ରନାଥଙ୍କର ଯେଉଁ ଗଭୀର ସମୀକ୍ଷାତ୍ମକ ଅନ୍ତର୍ଦୃଷ୍ଟିଥିଲା, ବଙ୍ଗ ଭାଷାର ଗଠନ, ଧ୍ୱନି ଓ ସାହିତ୍ୟିକ କଥନରୀତି ବିଷୟରେ ଆଜୀବନ ସେ ଯେଉଁ ଅନୁଶୀଳନ କରିଥିଲେ ଏହି ଗ୍ରନ୍ଥରେ ତାହାର ନିଦର୍ଶନ ମିଳେ । କେତେବେଳେ କାବ୍ୟିକତା, କେତେବେଳେ ସମୀକ୍ଷାତ୍ମକ ବିଶ୍ଳେଷଣ ଧର୍ମିତା, କେତେବେଳେ ରୋମାଣ୍ଟିକ୍ ଆଦର୍ଶବାଦ ପୁଣି କେତେବେଳେ ତଥ୍ୟ ସର୍ବସ୍ୱ ନୈର୍ବକ୍ତିକ ମୂଲ୍ୟାୟନ ଏସବୁ ଯେପରିକି ଏକତ୍ର ସହାବସ୍ଥାନ କରିଛି ଏହି ଗ୍ରନ୍ଥରେ । ତାଙ୍କ ରୋମାଣ୍ଟିକ୍ ପିତାମହଙ୍କର ଦୁର୍ଦ୍ଧର୍ଷ ଦୁଃସାହସିକତା ଓ ତାଙ୍କ ପିତାଙ୍କର ବାସ୍ତବବାଦୀ ଆଦର୍ଶବାଦ- ଏ ସବୁ ତାଙ୍କ ଭିତରେ ଥିଲା । ଅବଶ୍ୟ ଏ ଉଭୟଙ୍କଠାରୁ ସେ ଥିଲେ ବହୁ ପରିମାଣରେ ଭିନ୍ନ ।

ସେ ସବୁବେଳେ ନାରୀମାନଙ୍କର ସେବା ଯତ୍ନକୁ ଆନନ୍ଦର ସହିତ ଗ୍ରହଣ କରୁଥିଲେ । କାଲିଂପଙ୍ଗରେ ତାଙ୍କର ପୁତ୍ରବଧୂଙ୍କ ପାଖରେ ଓ ମଂପୁରେ ମଧ ସେ ଖୁସୀରେ ବିଶ୍ରାମ ନେଇଥିଲେ । ମଂପୁରେ ତାଙ୍କର ସହକାରିଣୀ ଜନସନ୍‌ଙ୍କ ବସୱେଲ୍‌ଭଳି ସତତାର ସହିତ ତାଙ୍କର ସବୁକଥା ଟିକିନିଖି ବୁଝୁଥିଲେ ଓ ଲେଖୁଥିଲେ । ତାଙ୍କର ଅତିଥିଙ୍କର ସମସ୍ତ ସଂଳାପ, ତାଙ୍କର ହାସ୍ୟରସିକତା, ପରିହାସପ୍ରବଣତା, ତାତ୍‌କାଳିକ ବୁଦ୍ଧିମତା, ପ୍ରତ୍ୟେକ ବିଷୟରେ ତାଙ୍କର ଆଗ୍ରହ ଓ କୌତୁହଳପ୍ରବଣତାକୁ ନିଜର ସ୍ମୃତି କଥାରେ ସେ ଟିକିନିଖି ବର୍ଣ୍ଣନା କରିଛନ୍ତି । ସ୍ମୃତି କଥାଟି 'ମଂପୁତେ ରବୀନ୍ଦ୍ରନାଥ' ନାମରେ ପରବର୍ତ୍ତୀ ସମୟରେ ପ୍ରକାଶ ପାଇଛି ।

ଜୁଲାଇରେ ସେ ଶାନ୍ତିନିକେତନ ଫେରିଲେ ଯଥା ସମୟରେ ତାଙ୍କର ପ୍ରିୟଋତୁ ବର୍ଷାକୁ ସ୍ୱାଗତ କରିବା ପାଇଁ । ଏଇ ସମୟରେ ଜାପାନର କବି ନଗୁଚିଙ୍କ ସହିତ ତାଙ୍କର କେତେକ ବେଦନା ଦାୟକ ପତ୍ର ବିନିମୟ ହୋଇଥିଲା । ନଗୁଚିଙ୍କୁ କବି ପ୍ରଶଂସାଦୃଷ୍ଟିରେ ଦେଖୁଥିଲେ । କିଛି ଦିନ ପୂର୍ବରୁ ଶାନ୍ତିନିକେତନରେ ତାଙ୍କୁ ଭବ୍ୟ ଅଭ୍ୟର୍ଥନା ଜଣାଇଥିଲେ । ନଗୁଚି ଯେ ଚୀନ୍ ବିରୁଦ୍ଧରେ ଜାପାନ୍‌ର ଯୁଦ୍ଧକୁ ଏସିଆର ମୁକ୍ତି ଯୁଦ୍ଧ ବୋଲି ସ୍ୱାଗତ କରିବେ ଏହା କବି କେବେ ବିଶ୍ୱାସ କରିପାରି ନଥିଲେ । କବି ଏକ ପତ୍ରରେ ନଗୁଚିଙ୍କୁ ଲେଖିଥିଲେ । '' ଆପଣ ସେଇ ଏସିଆର ସ୍ୱପ୍ନ ଦେଖୁଛନ୍ତି ଯେଉଁ ଏସିଆ ମଣିଷର କଙ୍କାଳର ସ୍ତୂପ ଉପରେ ପ୍ରତିଷ୍ଠିତ ହେବ । ଆପଣ ଯଥାର୍ଥରେ କହିଛନ୍ତି ମୁଁ ଏସିଆର ଆତ୍ମାର ବାଣୀରେ ବିଶ୍ୱାସ କରେ । କିନ୍ତୁ ସେଇବାଣୀ ଯେଉଁ କୀର୍ତ୍ତି ତୈମୁରଲଙ୍ଗଙ୍କ ହୃଦୟକୁ ଆନନ୍ଦିତ କରିଥିଲା ସେଇ ନରସଂହାରର ଭୟାବହତା ଉପରେ ପ୍ରତିଷ୍ଠିତ ହେବନାହିଁ । 'ଏସିଆ ପାଇଁ ଏସିଆ' ଏଇ ଯେଉଁ ତତ୍ତ୍ୱ ଆପଣ ଚିଠିରେ ବଖାଣିଛନ୍ତି ଏହା ଏକ ରାଜନୈତିକ ଶଠତା । ୟୁରୋପୀୟଙ୍କଠାରେ ଏଇଗୁଣ ଦେଖାଯାଏ । ମୁଁ ସବୁଦିନେ ଏହାର ବିରୋଧ କରିଆସିଛି । ଆମ ଭିତରେ ଥିବା ରାଜନୈତିକ ପ୍ରଚାର ଓ ବିଭେଦତାର ଊର୍ଦ୍ଧ୍ୱରେ ଥିବା ମହାନ୍ ମାନବିକତା ସହିତ ଏହାର କୌଣସି ସଂପର୍କ ନାହିଁ ।''

ରବୀନ୍ଦ୍ରନାଥ ଜାପାନ୍ ପ୍ରତି ଖୁବ୍ ଅନୁରକ୍ତ ଥିଲେ । ଯେଉଁ ଦେଶକୁ ଏକ ସମୟରେ ସେ ଏସିଆର ନୂତନ ସୂର୍ଯ୍ୟ ରୂପେ ପ୍ରାଚ୍ୟରଦୁଃଖ ମୋଚନ କରିବ ବୋଲି ଭାବୁଥିଲେ ତାହାର ଏ ଆଚରଣରେ କବି ବିଶେଷ କ୍ଷୁବ୍ଧ ହୋଇଥିଲେ । ଜାପାନର ଏପରି ରକ୍ତ ପିପାସୁ ଯୁଦ୍ଧବାଦୀ ନୀତି ବୁଦ୍ଧଙ୍କ ଆଦର୍ଶକୁ ପରିହାସ କଲାପରି ମନେ ହେଉଥିଲା । ଏଇ କ୍ଷୁବ୍ଧ ହୃଦୟରେ ବେଦନା ଦାୟକ ବିଦ୍ରୂପ ବ୍ୟଞ୍ଜକ ଯେଉଁ କବିତାଟି ସେ ରଚନା କରିଥିଲେ ନିମ୍ନରେ ସେଥିରୁ କିଛି ପଂକ୍ତି ଉଦ୍ଧାର କରାଗଲା ।-

ଉଚ୍ଚସ୍ୱରେ ପ୍ରାର୍ଥନା ମୁଁ କରେ
ଆର୍ତ୍ତ ରୋଦନ ଆଜି ଜାଗୁ ଘରେ ଘରେ
ଆତ୍ମୀୟ ବନ୍ଧନ କରିଦେବ ଛିନ୍ନ
ଗ୍ରାମ ପଲ୍ଲୀ ଚତୁର୍ଦ୍ଦିଗେ ଭସ୍ମର ଚିହ୍ନ
ବକ୍ଷ ଫୁଲାଇ ମାଗନ୍ତି ବର
ଦୟାମୟ ବୁଦ୍ଧଙ୍କ ପାଖରେ
ତୂରୀ ଭେରୀ ବାଜି ଉଠେ କ୍ରୋଧେ ଜରଜର ।
ଧରାତଳ କମ୍ପି ଉଠେ ତ୍ରାସେ ଥର ଥର ।

ରବୀନ୍ଦ୍ରମାନସ ବହୁ ବିଚିତ୍ର ଧାରାରେ ଗତିକରୁଥିଲା । ବହୁ ଭାବନାର ଭାର ତାଙ୍କ ମସ୍ତିଷ୍କ ଏକ ସମୟରେ ବହନ କରୁଥିଲା । 1937 ପୂର୍ବରୁ ଏବଂ ପରେ ମୃତ୍ୟୁର ବିଚିତ୍ର ଅନୁଭୂତି ଭିତର ଦେଇ ହୃଦୟର ରକ୍ତ ରଞ୍ଜିତ କବିତା ସବୁ ଲେଖିସାରିବା ପରେ ମଧ୍ୟ ସେ ବିଚିତ୍ର ବର୍ଣ୍ଣରେ ବ୍ୟଙ୍ଗ, ବିଦ୍ରୂପ, ହାସ୍ୟ, ଅଦ୍ଭୁତ, ପରିହାସ ବ୍ୟଂଜକ, ଲଘୁଚପଳଛନ୍ଦ, ଲୋକକବିତାର ଛନ୍ଦ ଓ ବାକ୍‌ରୀତି ସମ୍ବଳିତ ଏପରି କବିତା ସବୁ ରଚନା କରିଥିଲେ ଯାହା ଯୁବକ ଓ ବୃଦ୍ଧ, ସାଧାରଣ ଓ ବିଜ୍ଞଜନ ସମସ୍ତଙ୍କର ଉପଭୋଗ୍ୟ ହୋଇପାରିଥିଲା । 1937ରେ ପ୍ରକାଶିତ ଏପରି ଦୁଇଟି କବିତା ବହି ହେଉଛି 'ଖାପଛଡା' ଓ 'ଛଡା ଓ ଛବି' । ଆଉ ଏକ ଗଦ୍ୟରେ ଲେଖା ଫାଣ୍ଟାସୀ ଗପବହି 'ସେ' । ଗୋଟିଏ ବର୍ଷରେ ଏ ସବୁ ଗୁଡିକ ପ୍ରକାଶିତ ହୋଇଥିଲା । ଏହା ପରେପରେ 1939 ରେ ପ୍ରକାଶିତ ହେଲା 'ପ୍ରହାସିନୀ' । ଏଥିରେ କବି ଆଧୁନିକା ନାରୀମାନଙ୍କୁ ହାସ୍ୟ କୌତୁକ ଓ ବିଦ୍ରୁପରେ ଜର୍ଜରିତ କରିଛନ୍ତି । ରବୀନ୍ଦ୍ରନାଥ ପିଲାମାନଙ୍କ ସହିତ ହସଖୁସୀ କରିବାକୁ ସୁଖ ପାଉଥିଲେ । କବି ଯେପରି ଭାବରେ ଅଦ୍ଭୁତ କଳ୍ପନା ରାଜ୍ୟରେ ସଞ୍ଚରଣ କରୁଥିଲେ ପିଲାମାନଙ୍କ ପାଇଁ ତାହା ଥିଲା ଏକାନ୍ତ ଆମୋଦଦାୟକ । ସେ ଅନେକ ନନ୍‌ସେନ୍‌ସ୍‌ଭର୍ସ ନର୍ସେରୀ ରାଇମ୍ ଓ ଗଦ୍ୟ ଫାଣ୍ଟାସୀ ଲେଖିଥିଲେ । ଏସବୁ ରଚନାକୁ ଅନ୍ୟ ଭାଷାରେ ଅନୁବାଦ କରିବା ଅସମ୍ଭବ । ତଥାପି ଶାନ୍ତିନିକେତନ ପିଲାଙ୍କ ପାଇଁ ରଚିତ 'ସହଜ ପାଠ'ର ଗୋଟିଏ କବିତାର ଅନୁବାଦରୁ ଏହା ବିଷୟରେ କିଛି ଧାରଣା କରାଯାଇ ପାରେ । ଏହାର ଇଂରାଜୀ ଗଦ୍ୟାନୁବାଦ କରିଥିଲେ ହୁମାୟୁନ୍ କବୀର ।

ଦିନେ ରାତିରେ ମୁଁ ଦେଖିଲି ସପନଟିଏ
'ଉଠି ଦେଖ, ଉଠି ଦେଖ' ବିନୁ କହୁଥାଏ ।
କଡି ବରଗା ଠୁକ୍ ଠାକ୍ ଉଠି ଦେଖେ ବୁଲି
କଲିକତା ଚାଲିଅଛି ସତେ ଝୁଲି ଝୁଲି ।
ଇଟାଗଢ଼ା ଘର ସବୁ ଚାଲୁଥାଏ ସିଧା
ଦୁର୍ ଦାର୍ ପଡୁଥାଏ ଝରକା ଦରଜା ।
ଅଜଗର ସାପପରି ରାସ୍ତା ଚାଲୁଅଛି
ପିଠିରେ ତା ଟ୍ରାମ୍ ଗାଡି ଅଜାଡି ପଡୁଛି ।
ଦୋକାନ ବଜାର ସବୁ ଉଠେ ଆଉ ପଡେ
ଛାତର ଉପରେ ଛାତ ମୁଣ୍ଡ ପିଟି ଗଡେ ।
ମସ୍ତବଡ ବିଛାପରି ଚାଲେ ହାଓଡା ବ୍ରିଜ୍
ହାରିସନ୍ ରୋଡ୍ ତା' ପଛରେ ସଜବାଜ୍
ମନୁମେଣ୍ଟର ଦୋଳି ପାଗଳା ହାତୀ ପରି
ଶୂନ୍ୟକୁ ଟେକି ଶୁଣ୍ଢ ମାତିଛି ଯେପରି
ଆମର ଇସ୍କୁଲଟା ହୋଇଛି ଶୂନ୍‌ଶାନ୍
ଅଙ୍କ ଆଉ ବ୍ୟାକରଣ ବହି ଖିନ୍‌ଭିନ୍ ।
ମ୍ୟାପ୍ ସବୁ କାନ୍ଥ ଉପରେ ହୁଅନ୍ତି ଛଟପଟ
ପକ୍ଷୀ ଅବା ମାରୁଅଛି ଡ଼େଣାରେ ଝପଟ ।

ଘଣ୍ଟା ଖାଲି ହଲି ହଲି ଢ଼ଙ୍ଗଢ଼ଙ୍ଗ ବାଜେ
ଯେତେବେଳ ହେଲେ ବି ତା ବନ୍ଦ ହୁଏନା ଯେ ।
ଲକ୍ଷ ଲକ୍ଷ ଲୋକ କହନ୍ତି ରହ ରହ ଆରେ,
କେଉଁଠୁ କେଉଁଠି କି ଯିବ ପାଗଳାମି କିରେ ।''
କଲିକତା ଶୁଣେନା କିଛି ଚାଲିବା ଖିଆଲରେ,
ନୃତ୍ୟର ନିଶା ଲାଗିଛି ତା'ର ଖମ୍ବ ଓ କାନ୍ଥରେ ।
ମନେ ମନେ ମୁଁ ଭାବଇ ଚିନ୍ତା ନାଇ ଆଉ
କଲିକତା ସିଧା ଯାଇ ବମ୍ବେ ପହଞ୍ଚି ଯାଉ ।
ଦିଲ୍ଲୀ ଲାହୋରକୁ ଯାଉ, ଯାଉ ବି ଆଗ୍ରା
ମୁଣ୍ଡରେ ପଗଡି ଦେବା ପାଦରେ ନାଗରା ।
କିମ୍ବା ସିଏ ଯଦି ଆଜି ବିଲାତକୁ ଛୁଟେ
ଇଂରେଜ୍ ହେବେ ସମସ୍ତେ ବୁଟ୍-ହ୍ୟାଟ୍-କୋଟେ
କ'ଣ ଗୋଟେ ଶବ୍ଦଶୁଣି ନିଦ ଗଲାଭାଙ୍ଗି
ଉଠି ଦେଖିଲି କଲିକତା ଯେଉଁଠି ସେଇଠି ।

ପୂର୍ବରୁ ସୂଚିତ ହୋଇଥିବା 'ସେଁଜୁତି' ପରେ ଆଉ ତିନିଖଣ୍ଡ ଭବ୍ୟକବିତା ସଂକଳନ ପ୍ରକାଶ ପାଇଥିଲା- 'ଆକାଶ ପ୍ରଦୀପ' (1939) 'ନବଜାତକ' (1939) ଓ 'ସାନାଇ' (1940) । 'ପ୍ରାନ୍ତିକ'ରେ ଯେମିତି ଗାମ୍ଭୀର୍ଯ୍ୟ ରହିଛି ଜୀବନ ଓ ମୃତ୍ୟୁର ପ୍ରାନ୍ତ ରେଖାରେ ସଂଚରଣର ବିଭୀଷିକା ଓ ସୌନ୍ଦର୍ଯ୍ୟ- ଏଥିରେ ଅବଶ୍ୟ ତାହା ନାହିଁ, କିନ୍ତୁ କବି ପୁଣିଥରେ ନିଜର କୋମଳ ହସ୍ତରେ ତାଙ୍କର ପ୍ରିୟ ପୃଥିବୀକୁ ଆଲିଙ୍ଗନ କରିବାକୁ ଅଥୟ ହୋଇ ଉଠିଛନ୍ତି । ଅବଶ୍ୟ ପୁଣି ପରବର୍ତ୍ତୀ କାଳରେ ରଚିତ କବିତାରେ ଥରକୁ ଥର ସେଇ ଉଦାତ୍ତଭାବନା— ସୁଉଚ୍ଚ କଳ୍ପନାର ଉଦ୍ଦୀପନା ଅନୁଭବ କରିଛନ୍ତି । କିନ୍ତୁ ଏଇ ସମୟରେ କବିମାନସ ଯେମିତିକି ବିଶ୍ରାମ ଲୋଡୁଥିଲା । ପୃଥିବୀର ଛୋଟ ଛୋଟ ଦୃଶ୍ୟ ଓ ଧ୍ୱନି ଭିତରେ ସେ ଆନନ୍ଦ ଅନୁଭବ କରୁଥିଲେ । ଜୀବନର ଆନନ୍ଦାନୁଭୂତି ଲାଭ କରିବା ପାଇଁ ଅଧିକ କିଛି ତାଙ୍କ ପାଖରେ ନଥିଲା । ଶୂନ୍ୟ ଘରେ ପ୍ରଦୀପ ଜାଳିବାରେ କି ଲାଭ ? ତା ଅପେକ୍ଷା ବରଂ ଆକାଶକୁ ଦୀପଟି ସେ ଟେକି ଧରିବେ ଯେଉଁଠି ସଞ୍ଚିତ ରହିଛି ତାଙ୍କର ପୁରାତନ ସ୍ମୃତି ସେଇ ତାରକା ଭେଳା ମଧ୍ୟରେ ଯାହାକୁ ସେ ଆଜୀବନ ଚାହିଁ ରହିଛନ୍ତି । ହୁଏତ ଏ ଦୀପ ଦୂର ଆକାଶରୁ ସ୍ମୃତିକୁ ଟାଣିଆଣିବ । ଏମିତି ଭାବରେ ଏଇ ସଂକଳନର ପ୍ରଥମ କବିତାଟିରେ କବିତା ଗ୍ରନ୍ଥଟିର ନାମକରଣର ବ୍ୟାଖ୍ୟା ସେ କରିଛନ୍ତି । ଆନନ୍ଦ ଓ ସାନ୍ତ୍ୱନା ଖୋଜିଛନ୍ତି କେବଳ ଅତୀତକୁ ଝୁରିହେବା ଭିତରେ । ବହୁ କବିତାରେ କେବଳ ସ୍ମୃତିଚାରଣ ଘଟିଛି । କିନ୍ତୁ ଏଥିରେ ନାହିଁ ଆତ୍ମଦୈନ୍ୟ ବା ହତାଶାର ଭାବ ।

ଚୈତ୍ରମାସ । ଆମ୍ବ ମୁକୁଳର ସୁବାସ । ଦିନେ ସକାଳେ କବି ଉଠି ଚା ଖାଉଛନ୍ତି । ଦେଖୁଛନ୍ତି ତିନୋଟି କଞ୍ଚା ଆମ୍ବ ଖସି ପଡୁଛି ମାଟିରେ । ତାଙ୍କର ମନେ ପଡିଯାଉଛି ନିଜର ଶୈଶବ ଦିନର କଥା । ''ଯେତେବେଳେ ଗୋଟିଏ କଞ୍ଚା ଆମ୍ବ ତାଙ୍କ ହାତରେ ଥିଲା ସାରା ଦିନ ଆନନ୍ଦଲୋକର ଦ୍ୱାର ଖୋଲିବା ପାଇଁ ସୁନାର ଚାବି ।'' ସେ ଝିଅଟି କଞ୍ଚା ଆମ୍ବକୁ ବହୁତ ଭଲ ପାଉଥିଲା । ଗୋପନରେ ଆମ୍ବଟିଏ ତୋଳିନେଇ ତାକୁ ଦେଇ ସାନିଧର ସୁଯୋଗ ସେ ପାଉଥିଲେ । ଗଛ

ଚଢ଼ିବା ମନା ଥିଲା । ତେଣୁ ଆମ୍ବ ଗଛ ମୂଳେ ସେ ଅପେକ୍ଷା କରୁଥିଲେ । କେତେବେଳେ ପବନ ବହିବ ଓ ଆମ୍ବଟିଏ ଝଡି ପଡିବ । ଯେଉଁଥର ଆମ୍ବଟିଏ ନେଇ ସେ ଝିଅଟି ପାଖକୁ ସେ ପ୍ରଥମେ ଯାଉଥିଲେ ସେ କହିଥିଲା- 'ତୁମକୁ ଆମ୍ବ ଆଣିବାକୁ କିଏ କହିଥିଲା ?' ସେ ଆକାଶରୁ ପଡିଲା ଭଳି ଅତମତ ହୋଇ କହିଲେ କେହି କହି ନାହାନ୍ତି । ଆମ୍ବ ଝୁଡିଟି ତା ପାଖରେ ରଖିଦେଇ ସେ ପଳାଇ ଯାଇଥିଲେ । ଆଉ ଦିନେ ଆମ୍ବ ତୋଳୁଥିଲାବେଳେ ତାଙ୍କୁ ମହୁମାଛି କାମୁଡିଲା । ସେ ତାଙ୍କୁ ଚିଡେଇ ଚିଡେଇ କହିଲା, 'ଏମିତି ତମେ ଆଉ କେବେ କରିବନି ।'ସେ ଚୁପ ହୋଇ ରହିଲେ । କିନ୍ତୁ ଶେଷରେ ସେ ଝିଅଟିର ସଙ୍ଗଲାଭ କଲେ । ଦିନେ ସେଇ ଝିଅଟି ତାଙ୍କୁ ସୁନା ମୁଦିଟିଏ ଦେଲା । ସେଥିରେ କିଛି ମଧୁର କଥା ଲେଖା ହୋଇଥିଲା । ଗଙ୍ଗାରେ ଗାଧୋଉ ଗାଧୋଉ ମୁଦିଟି ହାତରୁ ଖସି ହଜିଗଲା । କଞ୍ଚା ଆମ୍ବ ଏବେବି ଗଛରୁ ପଡେ । କିନ୍ତୁ ତାକୁ ତୋଳିବା ପାଇଁ ତାଙ୍କର ମନ ବଳେ ନାହିଁ । ସେଇ ଚାବି ନାହିଁ, ତାଙ୍କ ହାତର ଚାବିକାଠିରେ କିଛି ଆଉ ଖୋଲୁ ନାହିଁ ।''

ତାଙ୍କର ମନେ ପଡିଯାଏ ତାଙ୍କ ବୁଢ଼ିମା ଶୁଣାଉଥିବା ଶିଶୁଭୁଲାଣିଆ ଗୀତ । ବୋହୂ ଆସିଲା ପାଲିଙ୍କିରେ, ବେକରେ ତାର ମୁକୁତା ମାଳ, ଗୋଡରେ ତାର ସୁନାର ବଳା । ସେଇ ଦିନୁ ସେ ସେଇ ବୋହୂ ଆସିବା ପଥକୁ ଚାହିଁ ରହିଛନ୍ତି । ମାତ୍ର ସେ ପଥ ଯେ ହଜିଯାଇଛି ଦୂର ଆକାଶର ତାରକାରେଖା ପରି ।

ତା' ପରର କବିତା ବହି ହେଉଛି 'ନବଜାତକ' । ଏଥିରେ କବିଙ୍କର ମନଭାବ ସଂପୂର୍ଣ୍ଣ ଭିନ୍ନ, ଅଧିକ ପୌରୁଷ ସଂପନ୍ନ ଓ ତାଙ୍କ ପରିପାର୍ଶ୍ୱରେ ଯାହା ଘଟୁଛି ତାହା ବିଷୟରେ ସେ ସଚେତନ । ଏହି ବହିର ଭୂମିକାରେ କବି ଲେଖିଥିଲେ ଯେ ତାଙ୍କ କବିତାରେ ଥରକୁ ଥର ଋତୁ ପରିବର୍ତ୍ତନ ଘଟୁଛି ତାଙ୍କ ନିଜର ଅଲକ୍ଷ୍ୟରେ । ତାଙ୍କ ଚାରିପାଖରେ ଯେଉଁ ନୂତନ ପୃଥିବୀ ଜନ୍ମ ଲାଭ କରୁଥିଲା ତାହାରି ମର୍ମ ଏସବୁ କବିତା ଭିତରେ ପ୍ରକାଶିତ ହୋଇଛି । ଅବଶ୍ୟ ଏଇଠି ସୂଚାଇ ଦେବା ଉଚିତ ଭିନ୍ନ ଭିନ୍ନ ସମୟରେ ଯେ ଗୋଟିଏ ଗୋଟିଏ କବିତାବହିର କବିତା ସେ ଲେଖୁଥିଲେ, ତାହା ନୁହେଁ । ଏକ ସମୟରେ ଅନେକ ବହିର କବିତାଗୁଡିକ ଲେଖାଯାଉଥିଲା । ଉଦାହରଣ ସ୍ୱରୂପ ନବଜାତକର ପ୍ରଥମ କବିତା ରଚିତ ହୋଇଥିଲା 1938ରେ । କିନ୍ତୁ ଏହି ବହିଟି ପ୍ରକାଶ ପାଇଥିଲା 1940ରେ । କବିଙ୍କର ମନୋଭଙ୍ଗୀର ରୂପାନ୍ତର, ମନର ଭାବାନ୍ତର, ଏପରିକି ତାଙ୍କର ଖିଆଲର ପରିବର୍ତ୍ତନ- ଏ ସବୁ ଅତି ଦ୍ରୁତ ଗତିରେ ଘଟୁଥିଲା । ଏମିତିକି ଗୋଟିଏ ଦିନ ଭିତରେ ଏହିସବୁ ବିଚିତ୍ର ମନୋଭଙ୍ଗୀ ବହୁ ପ୍ରକାରର ବିବିଧ ଧାରାର କବିତା ଭିତରେ ପ୍ରକାଶ ପାଇବା ସ୍ୱାଭାବିକ । ସେ ସବୁକୁ ସଂଗ୍ରହ କରି ବିଭିନ୍ନ ଖଣ୍ଡରେ ପ୍ରକାଶ କରାଯାଇଥିଲା । 'ନବଜାତକ'ର କବିତା ଗୁଡିକ ତୁଳନାତ୍ମକ ଭାବରେ ନୈର୍ବ୍ୟକ୍ତିକ ଭାବନାସଂଜାତ । କବି ତାଙ୍କର ଚତୁର୍ପାର୍ଶ୍ୱର ଜଗତ କଥାହିଁ କହିଛନ୍ତି । କବି ଯେଉଁ ବିଷୟ ଓ ରୂପକର ଅବତାରଣା କରିଛନ୍ତି ତାହା ସବୁ ଥିଲା ବସ୍ତୁପରକ, ଯେମିତିକି ରେଡିଓ, ରେଲୱ୍ୱେ, ହିନ୍ଦୁସ୍ଥାନ, ରାଜସ୍ଥାନ ଇତ୍ୟାଦି ।

ପୂର୍ବରୁ ସୂଚିତ ଯେଉଁ କବିତାରେ କବି ଜାପାନୀ ସୈନିକମାନଙ୍କର ବୁଦ୍ଧପ୍ରାର୍ଥନାକୁ ବିଦ୍ରୂପ କରିଛନ୍ତି ତାହା 1938 ଜାନୁୟାରୀରେ ଲେଖା ହୋଇଥିଲା । ୟୁରୋପରେ ଯୁଦ୍ଧରବିଭୀଷିକାର ବାୟୁ ମଣ୍ଡଳ । ସୁଦୂରପ୍ରାଚ୍ୟର ଧ୍ୱଂସର ଯନ୍ତ୍ରଭାବରେ ବ୍ୟୋମଯାନର ଦୁରୁପଯୋଗ, ମଣିଷର ଉଦ୍ଭାବନ ବିରୁଦ୍ଧରେ କବିଙ୍କୁ ବିବ୍ରତ କରିଥିଲା । ତାଙ୍କର 'ପକ୍ଷୀମାନବ' ନାମକ କବିତାରେ ବର୍ଣ୍ଣିତ

ଏଇ ଦୂତ ଯେଉଁ ସ୍ଥାନ ଈଶ୍ୱର ପକ୍ଷୀ ମାନଙ୍କ ପାଇଁ ସଂରକ୍ଷିତ କରି ରଖିଥିଲେ ଦିନେ ତାକୁ ସେ ଅଧିକାର କରିବ । ଏଇ କବିତାର ଶେଷ ପଂକ୍ତିଟି ହେଉଛି । ''ଦୁଃଖିନୀ ପୃଥିବୀର ପ୍ରାର୍ଥନା ଶୁଣ, ଘନ ସବୁଜ ଅରଣ୍ୟ ଆଉଥରେ ମୁଖରିତ ହୋଇଉଠୁ ପକ୍ଷୀଙ୍କର କାକଳିରେ ।''

ପକ୍ଷାନ୍ତରେ ମଂପୁର ଆରାମଚୌକୀରେ ବସି ହିମାଳୟର ସେଇ ଶୀତ ସକାଳରେ କବି ମୁଗ୍ଧହୋଇ ଶୁଣୁଥିଲେ ସାତସମୁଦ୍ର ସେପାରିରୁ ରେଡିଓର ସଙ୍ଗୀତ । ''ବିଦେଶିନୀର ବିଦେଶୀ ଭାଷାରେ ସଙ୍ଗୀତ,'' ସେଇ ଯେ ସଙ୍ଗୀତ ଧ୍ୱନିତ ହେଉଥିଲା ପାହାଡ ଉପରେ, ନଦୀ ଓ ସମୁଦ୍ର ଉପରେ, ତାହା ବୃଦ୍ଧ କବିଙ୍କର ରୋମାଣ୍ଟିକ୍ ହୃଦୟରେ ବଜାଉଥିଲା ନୂତନ ମେଘଦୂତର ପ୍ରେମଲୋଳ ହୃଦୟର ଉଚାରଣ ଭଳି । ସେଇ କବିତାଟିର ନାଁ 'ସାଢ଼େ ନଅଟା' ।

'ରାତି ଗାଡି' ଏଇ ନାମରେ ଗୋଟିଏ କବିତା ଯାହା ଜୀବନର ପ୍ରତୀକ, ଗଡୁଛି ଯାଉଛି ଅନ୍ଧକାର ମଧ୍ୟକୁ । ପ୍ରତିଡବା ଘୁମନ୍ତ ନରଦେହରେ ପୂର୍ଣ୍ଣ । କେହି ଜଣେ ଅଜଣା ବ୍ୟକ୍ତି ଅଜଣା ପଥରେ ବାଟ କଢ଼ାଉଛି । ''କେହି କହନ୍ତି ଇଏ ଗୋଟିଏ ଖାଲି ଯନ୍ତ୍ର, ଆଉ କିଛି ନୁହେଁ । ତଥାପି ଅନ୍ଧହାତରେ ସେମାନେ ସମସ୍ତେ ନିଜ ଜୀବନକୁ ସମର୍ପି ଦିଅନ୍ତି । ନିଜର ବିଛଣା କରନ୍ତି, ଶୁଅନ୍ତି ଓ ସ୍ୱପ୍ନ ଦେଖନ୍ତି ଦୂର ସକାଳର ।'' ଆଉ ଗୋଟିଏ କବିତାର ନାଁ 'ଷ୍ଟେସନ' । ପ୍ଲାଟ୍‌ଫର୍ମରେ ଯାତ୍ରୀମାନଙ୍କର ଯିବା ଆସିବା ହିଁ କବିଙ୍କୁ କୌତୁହଳୀ କରିଛି । କିଏ ଟ୍ରେନ ଧରେ କିଏ ବା ଧରି ପାରେନି ପୁଣି କିଏ ବା ଧୈର୍ଯ୍ୟଧରି ଅପେକ୍ଷା କରେ । ଇଏ ଯେମିତି ଭଙ୍ଗା ଗଢ଼ାର ଚିରନ୍ତନ ଛନ୍ଦ । ତୂଳୀର ଛଟାରେ ଯାହା ଜନ୍ମ ନିଏ ପୁଣି ଆଉ ଥରକରେ ତାହା ପୋଛି ହୋଇଯାଏ । କେତେ ରୂପ ଦୂରରୁ ନିକଟକୁ ଭାସି ଆସେ, ପୁଣି ଆଉ କେତେ ରୂପ ନିକଟରୁ ଚାଲିଯାଏ ଦୂରକୁ । ଏଇ ସବୁତ ଜୀବନ ।

ଆଉ ଗୋଟିଏ କବିତା କେତେ ସୁନ୍ଦର କେତେ ଶକ୍ତିଶାଳୀ- କବି ପ୍ରଶ୍ନ କରିଛନ୍ତି ଏଇ ମହାବିଶ୍ୱରେ ଏତେ ଶକ୍ତିର ନିରର୍ଥକ ଅପଚୟ ଘଟୁଛି । ଏମିତି ବି ଘଟୁଛି ଜୀବନରେ ଓ ମଣିଷର ମନରେ । ଶେଷରେ ସବୁକିଛି ତ ଅଦୃଶ୍ୟ ହୋଇଯିବ । ମିଶିଯିବ ଅନନ୍ତ ଶୂନ୍ୟରେ । ଠିକ୍ ଯେମିତି ପ୍ରସାଦ ଖାଇ କୁଡୁଆକୁ ଫିଙ୍ଗି ଦିଅନ୍ତି । କାହିଁକି ? ଏହାର କୌଣସି ଉତ୍ତର ନାହିଁ, କବି ବି କୌଣସି ସାନ୍ତ୍ୱନା ଦେଇ ପାରି ନାହାନ୍ତି । ଏଇ ପ୍ରଶ୍ନକୁ ସେ ସେମିତି ଛାଡି ଦେଇଛନ୍ତି । ଯଥାର୍ଥ ନାମ କରଣ କରିଛନ୍ତି କବିତାଟିର 'କାହିଁକି' ?

କିଛି ଦିନ ପରେ 'ସାନାଇ' କବିତା ସଂକଳନରେ ବିଷୟ, ମନୋଭଙ୍ଗୀ ଓ ଭାଷାଶୈଳୀ ସଂପୂର୍ଣ୍ଣ ଭିନ୍ନ । ଯେମିତି ଭାରତର ସେଇ ମହୁରିରୁ ମହୋମୟ ସଙ୍ଗୀତ ଝରିଆସେ ସେମିତି ଏହାର କବିତା ସବୁ ପୂର୍ବ ସ୍ମୃତିର ସଞ୍ଚରଣରେ ମଧୁର । ଏ ବୟସରେ ଏମିତି ଲଘୁପକ୍ଷ ଚିନ୍ତା କବିଙ୍କୁ ଆବୋରି ଥିବାରୁ କେତେକ ଆଧୁନିକମନା ବୁଦ୍ଧିଜୀବୀ ଏତେ ବୃଦ୍ଧ ବୟସରେ କବି କିପରି ତରୁଣ ସୁଲଭ ପ୍ରଣୟ କବିତା ରଚନା କରିଥିଲେ ତା'ର ପ୍ରଶଂସା ମଧ୍ୟ କରିଛନ୍ତି । ଲୋକଙ୍କ ରୁଚି ଭିନ୍ନ । କିନ୍ତୁ ସେଇ ମନଭାବରେ ଚାଳିତ ହୋଇ କବି ଯେତେବେଳେ ଭବିଷ୍ୟ ବକ୍ତା, ପୁରୋହିତ ଓ ଆଧୁନିକ ବୁଦ୍ଧିଜୀବୀ ଭୂମିକାରୁ ନିଜକୁ ଓହରାଇ ନେଇଛନ୍ତି ସେ ଚାହିଁଛନ୍ତି ପ୍ରକୃତିର ଦୃଶ୍ୟ ଓ ଧ୍ୱନିରେ ଆନନ୍ଦରେ ମଜ୍ଜି ରହିବାକୁ, ନିଜକୁ ହଜାଇ ଦେବାକୁ ନିଜର ସ୍ୱପ୍ନରେ । ତଥାପି ବାହାରେ ଝଡର କଠୋର ଆଘାତକୁ ସେ ଏଡେଇ ଦେଇ ପାରିନାହାନ୍ତି । 1940 ଖ୍ରୀଷ୍ଟ କାଳରେ କାଲିଂପଙ୍ଗରେ ଲେଖିଥିବା ଗୋଟିଏ ଗୀତରେ ନାଟକୀୟ ଭାବରେ ସେ ଏହାର ଅବତାରଣା

କରିଛନ୍ତି । ମନଶ୍ଚକ୍ଷୁରେ ଭାସି ଉଠିଛି ଗ୍ରାମୀଣ ବଙ୍ଗଳାର ଶାନ୍ତ ସରଳ ସ୍ନିଗ୍ଧ ରୂପ । ସନ୍ଧ୍ୟା, ଧୀର ସମୀର, ପାଲବୋଝେଇ ବଳଦ ଗାଡି ଚାଲିଛି ନିର୍ଜନ ପ୍ରାନ୍ତରରେ । ବାଛୁରୀଟିଏ ହମ୍ବାରଡି କରି ଚାଲିଛି । ବନମାଳୀ ପଣ୍ଡିତଙ୍କ ପୁଅ ତଥାପି ପୋଖରୀ କୂଳରେ ବନ୍‌ଶୀଖଡା ପକାଉଛି । ବନ୍ୟ ବତକ ଦଳ ଆଧାର ଖୋଜି ପୋଖରୀ ଆଡକୁ ଦୌଡୁଛନ୍ତି । ଦୁଇଜଣ ତରୁଣ ବନ୍ଧୁ ସେମାନଙ୍କ ଭିତରୁ ଜଣେ ନବ ବିବାହିତ ବହୁଦିନ ପରେ ପରସ୍ପରକୁ ଭେଟୁଛନ୍ତି । ଓଦା ଘାସ ଉପରେ ପଦଚାରଣ କରୁଛନ୍ତି । ଅଶେଷ କଥାବାର୍ତ୍ତାରେ ସେମାନେ ମସଗୁଲ ହୋଇ ରହିଛନ୍ତି । ଚାରିପାଖରେ ଜଙ୍ଗଲି ଫୁଲ । ଜାରୁଲ୍ ଗଛର ଡାଳରୁ କୋକିଳ ରାବି ଉଠୁଛି । ସ୍ୱର ତାର ବିରକ୍ତିକର ମୋଟା, ଠିକ୍ ସେଇ ସମୟରେ ଭାସି ଆସିଲା ତାରବାର୍ତ୍ତାର ସମ୍ବାଦ ''ସୋଭିଏଟ୍ ବିମାନ ଫିନ୍‌ଲାଣ୍ଡକୁ ଧ୍ୱଂସକରି ଦେଇଛି ।'' ବିଦ୍ରୂପ କରି କବି ନାଁ ଦେଇଛନ୍ତି 'ଦୁର୍ଘଟଣା' ।

ଇତିମଧ୍ୟରେ ୟୁରୋପରେ ଯୁଦ୍ଧ ଆରମ୍ଭ ହୋଇ ଯାଇଛି । 1914 ରେ ବିଶ୍ୱ ଯୁଦ୍ଧ କବିଙ୍କୁ ବେଦନା ବିହ୍ୱଳ କରିଥିଲା । ସେ ଜନସମ୍ମୁଖକୁ ଆସି ସାରା ପୃଥିବୀରେ ଶାନ୍ତି ବାର୍ତ୍ତା ପ୍ରଚାର କରିଥିଲେ । ଏକ ସମୟରେ ସେ ଭାବୁଥିଲେ ଯେ ସେ ଅନେକ ଶୁଭେଚ୍ଛା ଲାଭ କରିଛନ୍ତି । ୟୁରୋପୀୟ ଖ୍ରୀଷ୍ଟୀୟ ସଭ୍ୟତାର ବିଜ୍ଞ ବିଚାରବୋଧ ଆଉ କେବେ ଏହି ଦୁଃଖଦାୟକ ଘଟଣାକୁ ପୁନରାୟ ହେବାକୁ ଦେବନାହିଁ । କିନ୍ତୁ ତାଙ୍କର ଏହି ମୋହଭଙ୍ଗ ଥିଲା ଅତ୍ୟନ୍ତ ବେଦନା ଦାୟକ । ଖ୍ରୀଷ୍ଟୋତ୍ସବରେ ଲେଖା ଗୋଟିଏ କବିତା, ଯାହାକୁ କବି ନିଜେ ଇଂରେଜୀରେ ଅନୁବାଦ କରିଥିଲେ ତାହାର ଶେଷପଂକ୍ତି ଉଲ୍ଲେଖ ଯୋଗ୍ୟ-

ଦିନେ ଯେଉଁମାନେ ତାଙ୍କୁ ମାରିଥିଲେ ଯାଇ
ରାଜାଙ୍କର ଦ୍ୱାହି ଦେଇ ।
ଏ ଯୁଗେ ସେମାନେ ଜନ୍ମ ନେଇଛନ୍ତି ଆଜି
ଚର୍ଚ୍ଚକୁ ସବୁ ଆସିଛନ୍ତି ଭକ୍ତ ସାଜି ।
ଘାତକ ସୈନ୍ୟଙ୍କୁ ଡାକି,
ମାର ମାର ତାଙ୍କୁ ଡାକି ।
ଗର୍ଜନରେ ମିଶେ ପୂଜା ମନ୍ତ୍ରର ସ୍ୱର,
ମାନବ ପୁତ୍ର ତୀବ୍ର ବ୍ୟଥାରେ କହନ୍ତି ହେ ଈଶ୍ୱର !
ଏ ପାନ ପାତ୍ର ନିଦାରୁଣ ବିଷେ ଭରା
ଦୂରେ ଫିଙ୍ଗି ଦିଅ ତାକୁ ।

# ସୂର୍ଯ୍ୟାସ୍ତ

**ମନକୁ ଗୋଟିଏ କଥା ଆସେ ବାରବାର**
**ଆଉ ତାହା ଦୂର ନୁହେଁ, ନୁହେଁ ବେଶୀଦୂର ।**

1940 ଥିଲା ଶୁଭଙ୍କର ଓ ଇଙ୍ଗିତମୟ । ଫେବୃୟାରୀ ମାସରେ ମହାତ୍ମାଗାନ୍ଧି ଓ କସ୍ତୁରବା ଶାନ୍ତିନିକେତନ ଆସିଲେ । ଏହା ଥିଲା କବି ଓ ମହାତ୍ମାଙ୍କର ଶେଷ ସାକ୍ଷାତ । ଶୁଭ୍ର ଆମ୍ରକୁଂଜରେ ଗାନ୍ଧିଜୀଙ୍କ ସ୍ୱାଗତ ପାଇଁ ଏକ ଉତ୍ସବାନୁଷ୍ଠାନର ଆୟୋଜନ ହେଲା । କବି ନିଜେ ତାଙ୍କୁ ଶ୍ରଦ୍ଧା ଜଣାଇଲେ । ଯାହାଙ୍କୁ ସେ ଏକଦା ଭିକ୍ଷୁକ ବେଶଧାରୀ ଏକ ମହାନ ଆତ୍ମା ବୋଲି ବର୍ଣ୍ଣନା କରିଥିଲେ ତାଙ୍କରି ଉଦ୍ଦେଶ୍ୟରେ ସେ କହିଲେ, ''ଆପଣ ହେଉଛନ୍ତି ଏକାନ୍ତଭାବେ ଆମ ନିଜର ସେଥିସଙ୍ଗେ ସମଗ୍ର ମାନବଜାତିର ।'' ଉଦାରମନା ମହାତ୍ମା ଉତ୍ତରରେ କହିଲେ, ''ଯଦିବା ମୁଁ ମୋର ଏଇ ଶାନ୍ତିନିକେତନ ପରିଦର୍ଶନକୁ ଏକ ତୀର୍ଥଯାତ୍ରା ବୋଲି କହେ ତଥାପି ମୁଁ ଏଠି ଆଗନ୍ତୁକ ନୁହେଁ । ମୁଁ ମନେ କରୁଛି ମୁଁ ମୋର ଘରକୁ ବାହୁଡ଼ିଛି । ଗୁରୁଦେବଙ୍କର ଆଶୀର୍ବାଦ ପାଇଛି । ମୋର ହୃଦୟ ପାତ୍ର ଆନନ୍ଦରେ ପୂର୍ଣ୍ଣ ହୋଇ ଉଠିଛି ।''

ଫେବୃୟାରୀ 5 ତାରିଖରେ ଚାର୍ଲସ୍ ଫାବ୍ରିକ୍ ଆଣ୍ଡୃସ୍ କଲିକତାରେ ଦେହତ୍ୟାଗ କଲେ । କବି ଏହି ଘଟଣାକୁ ଏକାନ୍ତ ବ୍ୟକ୍ତିଗତ ଶୋକଭାବରେ ଅନୁଭବ କରିଥିଲେ । ସେ ଥିଲେ ତାଙ୍କର ଅତି ଅନୁଗତ ବନ୍ଧୁ । ଶାନ୍ତିନିକେତନରେ ଶୋକସଭାରେ କବି କହିଥିଲେ, ''କୌଣସି ବ୍ୟକ୍ତିବିଶେଷଙ୍କ ଭିତରେ ଖ୍ରୀଷ୍ଟଧର୍ମର ଏପରି ବୀଜ ମୁଁ ଦେଖିନାହିଁ । ଇଂରେଜୀ ଲୋକଙ୍କ ବିଷୟରେ କୌଣସି ଅହିତ ଚିନ୍ତା ମୁଁ କରିପାରିବିନି, ତାର ଅନ୍ୟ କୌଣସି କାରଣ ନାହିଁ, କେବଳ ଆଣ୍ଡ୍ରୁସ୍ ସେମାନଙ୍କ ମଧ୍ୟରେ ଜଣେ, ଏଇଥିପାଇଁ ।'' ଆଣ୍ଡୃସ୍ଥିଲେ ତାଙ୍କର ଏକଦା ପ୍ରଧାନ ସହଯୋଗୀ ଉପଦେଷ୍ଟା ଓ ବନ୍ଧୁ । ତାଙ୍କ ଛଡା ଆଉ କାହାରି ପାଖକୁ କବି ଏତେ ବେଶୀ ଚିଠି ଲେଖି ନାହାନ୍ତି । ସବୁ ଚିଠିରେ ପ୍ରକାଶ ପାଇଛି କବିଙ୍କର ଖୋଲା ମନଭାବ । ସେ ଏମିତି ଜଣେ ବନ୍ଧୁ ଚାହିଁଥିଲେ ଯାହାଙ୍କୁ ସେଇ ସଂପୂର୍ଣ୍ଣ ବିଶ୍ୱାସ କରିପାରିବେ ଓ ନିଜର ଚିନ୍ତା ତଥା ଅନୁଭବକୁ ଖୋଲି କହିପାରିବେ । ପରବର୍ତ୍ତୀ କାଳରେ ସେଇ ଚିଠିରୁ ଅଧିକାଂଶ ଆଣ୍ଡୃସ୍ଙ୍କ ସଂପାଦନାରେ ପ୍ରକାଶ ପାଇଥିଲା ଓ ଏହାର ଯଥାଯୋଗ୍ୟ ଶିରୋନାମା ସେ ଦେଇଥିଲେ-'ଲେଟେରସ୍‌ଟୁ ଏ ଫ୍ରେଣ୍ଡ' । ଆଣ୍ଡୃସ୍‌ଙ୍କୁ କବି ଶ୍ରଦ୍ଧା କରୁଥିଲେ । ଗାନ୍ଧିଜୀ ଓ ରବୀନ୍ଦ୍ରନାଥଙ୍କ ଭିତରେ ସେ ଥିଲେ ଜୀବନ୍ତ ସେତୁ । ଗାନ୍ଧିଜୀଙ୍କୁ ମଧ୍ୟ ସେ ଶ୍ରଦ୍ଧା ଓ ଭକ୍ତି କରୁଥିଲେ ଯଦିଓ ତାହାଥିଲା ଭିନ୍ନ । ଆଣ୍ଡୃସ୍ ଥିଲେ ବିଶ୍ୱମାନବର ସେବକ । ଦୁଃଖୀଜନଙ୍କର ବନ୍ଧୁ । ଏଇ ଦୁଃଖୀଜନ ଯେଉଁଠି ଥାଆନ୍ତୁନା କାହିଁକି ସେ ସେମାନଙ୍କର

ସେବା କରୁଥିଲେ । ସେଥିପାଇଁ ସେ ଯଥାର୍ଥରେ ଦୁଃଖୀଜନଙ୍କ ବନ୍ଧୁ ବା ଦୀନବନ୍ଧୁ ଆଣ୍ଡ୍ରୁସ୍ ନାଁରେ ପରିଚିତ ଥିଲେ । ପୁଣି ସେ ଥିଲେ ଯୀଶୁଙ୍କର ଯଥାର୍ଥ ସନ୍ୟାସୀ ଭକ୍ତ । CFA ରୁ chief faithful Apostole କଥାଟି ଯେପରିକି ସୂଚିତ ହେଉଥିଲା । ଏଇ ସମୟରେ ଭାରତ ଓ ଭାରତ ବାହାରେ ତାଙ୍କର ଉପସ୍ଥିତି ଏକାନ୍ତ ପ୍ରୟୋଜନ ଥିଲା । ତେଣୁ ସେ ରବୀନ୍ଦ୍ରନାଥଙ୍କ ଠାରୁ ଦୂରେଇ ରହୁଥିଲେ । ନିକଟ ସାନିଧ୍ୟ ନଥିଲେ ବି ଏ ଦୁହିଁଙ୍କ ଭିତରେ ବନ୍ଧନ ଅତୁଟ ଥିଲା ।

ସାହିତ୍ୟ ରଚନା କଲାବେଳେ ରବୀନ୍ଦ୍ରନାଥଙ୍କ ମୁହଁରୁ କଥା ଉଛୁଳି ପଡୁଥାଏ, ସେ ଅବାରିତ ଭାବେ ଭାବବିହ୍ୱଳ ହୋଇଯାଆନ୍ତି କିନ୍ତୁ ବ୍ୟକ୍ତିଗତ କଥା ପ୍ରକାଶ କଲାବେଳେ ସ୍ୱଳ୍ପ କଥା କୁହନ୍ତି, ତାଙ୍କ ହୃଦୟ ସ୍ନେହଧାରରେ ପରିପୂର୍ଣ୍ଣ ହୋଇ ରହିଥିଲେ ବି ସେ ନିଜକୁ ଅଲଗା କରି ରଖନ୍ତି । ଏଇ ଅନ୍ତରଙ୍ଗ ବନ୍ଧୁଙ୍କ ବିୟୋଗ ଦୁଃଖ ସେ ଏକାନ୍ତରେ ନିଜେ ସହ୍ୟ କରିଥିଲେ । କେବଳ ଶାନ୍ତିନିକେତନର ଶୋକସଭାରେ ଶ୍ରଦ୍ଧାଞ୍ଜଳି ଅର୍ପଣ କରିବା ବ୍ୟତୀତ ସେ କେବେ କାହା ସମ୍ମୁଖରେ କିଛି ପ୍ରକାଶ କରି ନଥିଲେ । ଏହା ପରେ ମଂପୁରେ କବି ବିଶ୍ରାମ କରୁଥିଲା ବେଳେ ତାଙ୍କର ଆତିଥ୍ୟକାରିଣୀଙ୍କ ଆଗରେ ସେ ପ୍ରକାଶ କରିଥିଲେ କେମିତି ଶାନ୍ତିନିକେତନରେ ଥିଲାବେଳେ ଆଣ୍ଡୃସ୍ ପ୍ରତିଦିନ ସକାଳୁ ଆସି ତାଙ୍କୁ ଆଲିଙ୍ଗନ କରନ୍ତି । ପୁଣି ତାଙ୍କ ବିଷୟରେ ସେ କହିଥିଲେ ''ତାଙ୍କର ମୋ ପ୍ରତି ସ୍ନେହ ଓ ଶ୍ରଦ୍ଧା ଥିଲା ଅଦ୍ଭୁତ ଭାବରେ ବିଶୁଦ୍ଧ । ଆମ ପାଇଁ ସେ କେତେ କଣ ଯେ କରି ନାହାନ୍ତି । ସମ୍ପୂର୍ଣ୍ଣ ନିଃସ୍ୱାର୍ଥପର ଭାବରେ ଅସୀମ ଶ୍ରମ ସ୍ୱୀକାର କରିଛନ୍ତି । ନିଜ ପାଇଁ କିଛି ଚାହିଁ ନାହାନ୍ତି । ଏତେ ସବୁ କାମ କରି ବି ନିଜ କାମ ବିଷୟରେ ତାଙ୍କର ଟିକିଏ ଗର୍ବ ନଥିଲା । ସେ ଥିଲେ ପ୍ରକୃତ ଖ୍ରିଷ୍ଟୀୟାନ୍ ।''

ପୂର୍ବ ବର୍ଷ ଭଳି ସେଇ ବର୍ଷ ଗ୍ରୀଷ୍ମଦିନ କବି ମଂପୁ ଓ କାଲିଂପଙ୍ଗରେ କଟାଇଲେ । ମଂପୁରେ ଥିଲା ବେଳେ ତାଙ୍କ ଜୀବନର ସର୍ବଶେଷ ଦାରୁଣ ଶୋକସମ୍ବାଦ ସେ ପାଇଥିଲେ । ତାଙ୍କର ଅତିପ୍ରିୟ ପୁତୁରା ସୁରେନ୍ଦ୍ରନାଥଙ୍କର କଲିକତାରେ ଦେହାନ୍ତ ହୋଇଗଲା । ସୁରେନ୍ଦ୍ରନାଥ ଓ ଇନ୍ଦିରା ଦେବୀ କବିଙ୍କ ବଡଭାଇ ସତ୍ୟେନ୍ଦ୍ରନାଥଙ୍କର ଦୁଇ ସନ୍ତାନ ଷାଠିଏ ବର୍ଷ ପୂର୍ବେ ବିଲାତରେ ଥିଲେ ତାଙ୍କର ଖେଳସାଥୀ । ସେଇଦିନ ଠାରୁ ସେମାନେ ଥିଲେ ତାଙ୍କର ଗଭୀର ସ୍ନେହଭାଜନ । ଶେଷ ପର୍ଯ୍ୟନ୍ତ ଏଇ ଭାଇଭଉଣୀ ଦୁହେଁ ଥିଲେ କବିଙ୍କର ଏକାନ୍ତ ଅନ୍ତରଙ୍ଗ । ସୁରେନ୍ଦ୍ରଙ୍କ ମୃତ୍ୟୁଖବର ଶୁଣି ସେ ନିରବରେ ବସି ରହିଲେ । ସାରାଦିନ ଚୁପ୍ ହୋଇ ରହିଲେ ଓ ନିଜ ଅନୁଭବକୁ ରୂପଦେଲେ କ୍ଷୁଦ୍ର ଏକ ପ୍ରାଣସ୍ପର୍ଶୀ କବିତାରେ । ଆଣ୍ଡୃସ୍ ଓ ସୁରେନ୍ଦ୍ରଙ୍କ ଦେହାନ୍ତ ଘଟଣା ଯେପରି ତାଙ୍କୁ ସୂଚାଇ ଦେଲା ଯେ ଅନତି ବିଳମ୍ବେ ତାଙ୍କୁ ବି ସେଇ ଅଜଣା ପଥରେ ଯିବାକୁ ପଡ଼ିବ । ସେ ପ୍ରାୟ କହୁଥିଲେ 'ମୁଁ ନଈ ଘାଟରେ ବସି ଫେରିନୌକାକୁ ଚାହିଁ ରହିଛି ଆର ପାଖକୁ ଯିବାପାଇଁ ।''

ଯେଉଁଦିନ ମଂପୁରେ ସୁରେନ୍ଦ୍ରନାଥଙ୍କ ମୃତ୍ୟୁ ସମ୍ବାଦ ପହଞ୍ଚିଲା ସେଇଦିନ ରବୀନ୍ଦ୍ରନାଥଙ୍କର ଜନ୍ମଦିନ ପାଳିତ ହେଉଥିଲା । ତେଣୁ ଦିନକପରେ ସେ ଖବର କବିଙ୍କୁ ଜଣାଇ ଦିଆଗଲା । ଛୋଟ ଏଇ ପାର୍ବତ୍ୟ ଗ୍ରାମ ମଂପୁରେ ତାଙ୍କର ଜନ୍ମଦିନ ଯେଭଳି ସରଳ ନିରାଡମ୍ବର ଓ ଗୌରବପୂର୍ଣ୍ଣ ଭାବରେ ପାଳିତ ହେଉଥିଲା ତାହା କୌଣସି ବଡ ସହରରେ ହୋଇପାରି ନଥାନ୍ତା । ଏହା ଥିଲା ତାଙ୍କର ଶେଷର ପୂର୍ବ ଜନ୍ମଦିନ ଉତ୍ସବ । ଏହି ଉତ୍ସବରେ କେହି ଜଣେ ବୌଦ୍ଧ ସନ୍ୟାସୀ ସେଦିନ ସକାଳେ ରବୀନ୍ଦ୍ରନାଥଙ୍କୁ ସମ୍ବର୍ଦ୍ଧନା କରିବାକୁ ଗାଁରୁ ଆସିଥିଲେ । ସେ ଆସି ମାଟିରେ ବସି ଧୂପଟିଏ ଜାଳି ବୁଦ୍ଧଙ୍କ ଉଦ୍ଦେଶ୍ୟରେ ମନ୍ତ୍ରୋଚାରଣ କରିଥିଲେ । କବି ଅଭିଭୂତ ହେଲେ । ପରଦିନ ଏଇ

ଅନୁଭବକୁ କବି କବିତାରେ ରୂପ ଦେଇଥିଲେ । ବୌଦ୍ଧ ସନ୍ନ୍ୟାସୀଙ୍କ ସ୍ତୋତ୍ରରେ ଥିଲା '' ସେଇ ମହାମାନବଙ୍କ କଥା ଯାହାଙ୍କର ଜନ୍ମ ଏଇ ପୃଥିବୀକୁ ପବିତ୍ର ଓ ମନୁଷ୍ୟର ଜୀବନକୁ ପରିପୂର୍ଣ୍ଣ କରିଦେଇଥିଲା ।'' କବି ଅନୁଭବ କରିଥିଲେ ଯେପରିକି ଅଶୀବର୍ଷ ପୂର୍ବେ ସେ ସେଇ ମହାମାନବଙ୍କର ଦାୟଦତ୍ୱ ଗ୍ରହଣ କରିଥିଲେ ।

ସନ୍ଧ୍ୟାରେ ତାଙ୍କର ସତ୍କାରକାରିଣୀ ଗାଁ ଲୋକଙ୍କୁ ଡାକି ଭୋଜି ଖୁଆଇଥିଲେ । ସେମାନେ ସମସ୍ତେ ଫୁଲ ହାତରେ ଧରି ଆସିଥିଲେ ଓ ଫୁଲର ଏକ ସ୍ତୂପ ଜମି ଯାଇଥିଲା କବିଙ୍କ ଆଗରେ । ଏଇ ସରଳ ଗ୍ରାମବାସୀ ଯେଉଁମାନେ କେବେ ତାଙ୍କର ଲେଖା ପଢ଼ି ନାହାନ୍ତି ସେମାନଙ୍କ ଶ୍ରଦ୍ଧାରେ କବିଙ୍କ ହୃଦୟ ପୂରି ଯାଇଥିଲା । କବି ଗୋଟିଏ କବିତା ଲେଖି କୃତଜ୍ଞତା ପ୍ରକାଶ କରିଥିଲେ । ଶତ ଶତ ବର୍ଷ ପରେ ଏଇ ନଣ୍ଡା ପାହାଡ ଉପରେ ପୃଥିବୀର ଅଗ୍ନି ତପସ୍ୟା ଆଜି ଯେମିତି କି ଫୁଲ ରୂପକ ବର ଲାଭ କଲା ଓ ଯେପରି କି ତାଙ୍କୁ ଅଭିନନ୍ଦନ ଜଣାଇବାପାଇଁ ତା କୋଳରେ ଜନ୍ମ ନେଇଥିଲେ ଆଦିମ ଯୁଗରୁ ଏଇ ମଣିଷମାନେ । ଏଇ ବିଶ୍ୱ ବ୍ରାହ୍ମାଣ୍ଡ ଯେଉଁଠି କୋଟି କୋଟି ଗ୍ରହ ନକ୍ଷତ୍ର ପ୍ରକାଶିତ ସେଠି ଏପରି ଦୃଶ୍ୟ କେବେ କେଉଁଠି ଥରେ ଭାସି ଉଠିଥିଲା । ଧ୍ୟାନ ନେତ୍ରରେ ସେ ସୃଷ୍ଟିର ଆଦିମ ରହସ୍ୟକୁ ଚିନ୍ତା କରିଥିଲେ । ଏକ ଦୀର୍ଘ ଓ ହୃଦୟଗ୍ରାହୀ କବିତା ସେ ସେଦିନ ରଚନା କରିଥିଲେ:

''ଜୀବନର ଅଶୀବର୍ଷେ ପ୍ରବେଶିଲି ଯେବେ
ଏ ବିସ୍ମୟ ମନେ ଆଜି ଜାଗେ
ଲକ୍ଷକୋଟି ନକ୍ଷତ୍ରର
ଅଗ୍ନିନିର୍ଝରର ଯେଉଁ ନିଃଶବ୍ଦ ଜ୍ୟୋତିର ବନ୍ୟାଧାରା
ଛୁଟିଛି ଅଚିନ୍ତ୍ୟ ବେଗେ ନିରୁଦ୍ଦେଶ ଶୂନ୍ୟକୁ ପ୍ଲାବନକରି
ଦିଗେ ଦିଗେ
ତମୋଘନ ଅନ୍ତହୀନ ସେଇ ଆକାଶର ବକ୍ଷସ୍ଥଳେ
ଅକସ୍ମାତ୍ କରିଛି ଉତ୍‌ଥାନ
ଅସୀମ ସୃଷ୍ଟିର ଯଜ୍ଞରେ ମୁହୂର୍ତ୍ତର ସ୍ଫୁଲିଙ୍ଗଟି ପରି
ଧାରାବାହି ଶତାବ୍ଦୀର ଇତିହାସପରେ ।''

ତାପରେ ସେ ବର୍ଣ୍ଣନା କରିଛନ୍ତି ସମୁଦ୍ର ଗର୍ଭରେ ଜୀବର ପ୍ରଥମ ପ୍ରକାଶ ଓ ପୃଥିବୀର ରଙ୍ଗମଞ୍ଚରେ ସଚେତନ ମଣିଷର ଅଭିନୟ ବିଷୟରେ-

''ମୁଁ ସେଇ ନାଟକର ଅଭିନେତା ମେଳେ
ସାଜିଛି ନିଜକୁ
ମତେ ଡକାହୋଇଥିଲା ଯବନିକା ଉଠାଇବା ପାଇଁ
ଏଇ ମୋ ପରମ ବିସ୍ମୟ
ସାବିତ୍ରୀ ପୃଥିବୀ ଏହା, ଆତ୍ମାର ମର୍ତ୍ତ୍ୟ ନିକେତନ
ଚତୁର୍ଦ୍ଦିଗ ଆକାଶରେ ଆଲୋକ ପବନେ
ଭୂମିତଳେ, ସମୁଦ୍ରରେ, ପର୍ବତ ଉପରେ
କିଗୂଢ଼ ସଂକଳ୍ପ ଘେନି କରିଥାଏ ସୂର୍ଯ୍ୟ ପ୍ରଦକ୍ଷିଣ

ସେ ରହସ୍ୟ ସୂତ୍ରେ ବନ୍ଧା  ଆସିଥିଲି ଅଶୀବର୍ଷ ଆଗେ
ଚାଲିଯିବି କେଇ ବର୍ଷ ପରେ ।''

କେତେ ବର୍ଷ ନୁହେଁ, ମାତ୍ର କେତୋଟି ମାସ ଏଇ ପୃଥିବୀରେ ତାଙ୍କର ଜୀବନଯାତ୍ରା ବାକିଥିଲା ।

ମଂପୁରେ ଜନ୍ମଦିନ ପାଳନ ପରେ ରବୀନ୍ଦ୍ରନାଥ କାଳିଂପଙ୍ଗ ଗଲେ । ସେଠାରେ ତାଙ୍କର ପୁତ୍ର ଓ ପୁତ୍ରବଧୂ ଅପେକ୍ଷା କରିଥିଲେ । ସେଇ ସମୟରେ କ୍ଷୁଧିତ ହେଟାବାଘଭଳି ନାଜି ସୈନ୍ୟମାନେ ସାରା ୟୁରୋପରେ ଖେଳି ବୁଲୁଥିଲେ । ଏଇ ଖବର ଶୁଣି କବି ବ୍ୟଥିତ ହୋଇଥିଲେ । କିଛିଦିନ ପୂର୍ବେ ସେ ଯେଉଁସବୁ ଦେଶଭ୍ରମଣ କରିଥିଲେ, ସେ ଦେଶବାସୀଙ୍କୁ ଭଲ ପାଇଥିଲେ ଓ ସେମାନଙ୍କ କୀର୍ତ୍ତିଦେଖି ପ୍ରଶଂସାମୁଖର ହୋଇଥିଲେ ସେସବୁ  ଦେଶରେ ଏହା ଘଟୁଥିଲା । ଏଇ ଘଟଣାରେ  ନିଜ ମନର ଆତଙ୍କ, ବିହ୍ୱଳତା ଓ କ୍ଷୋଭ ସେ ସେଇମାସର ଶେଷ ଭାଗରେ ରଚିତ ଦୁଇଟି କବିତାରେ ପ୍ରକାଶ କରିଥିଲେ । କାହିଁକି ସୁସଭ୍ୟ ମଣିଷ ହଠାତ୍ ଭୟଙ୍କର ଉତ୍ୟକ୍ତ ମଣିଷରେ ପରିଣତ ହୁଏ ? ଶତଶତ ବର୍ଷ ଧରି ମଣିଷର ପୁଂଜୀଭୂତ ଅପରାଧ କ'ଣ ତାର ଭାଗ୍ୟକୁ ବିଡମ୍ବିତ କରିଛି ?- ସେ ପ୍ରଶ୍ନ କରିଥିଲେ । ସେ ଦୁଃଖ ଓ ବେଦନା ଅନୁଭବ କରିଥିଲେ କିନ୍ତୁ ଉତ୍ତେଜିତ ହୋଇ ନଥିଲେ କି ଅଭିଶାପ ଦେଇନଥିଲେ । ତାଙ୍କର ପବିତ୍ର ଧ୍ୟାନଦୃଷ୍ଟି ଘେନି ସହଗାମୀ ମାନବ ଜାତିର କୁକର୍ମକୁ ଇତିହାସର ବୃହତ୍ତର ପରିପ୍ରେକ୍ଷୀରେ ସେ ଦେଖିଥିଲେ । ସେ ଏକାବେଳକେ ଆଶାହତ ହୋଇ ନଥିଲେ ।

''ଢୋଲ ଉଠୁଛି ବାଜି
ଦିନ ବଦଳର ପାଲା ଆରମ୍ଭିଲା ଝଡଯୁଗରେ ଆଜି
ସୃଷ୍ଟିହେବ ନିର୍ମମ ଏକ ନୂତନ ଅଧ୍ୟାୟ
ନ ହେଲେ କାହିଁକି ଏତେ ଅପବ୍ୟୟ
ଓହ୍ଲାଇ ଆସୁଛି ନିଷ୍ଠୁର ଅନ୍ୟାୟ
ଅନ୍ୟାୟକୁ ଟାଣି ଆଣେ ଅନ୍ୟାୟର ଭୂତ
ଭବିଷ୍ୟତର ଦୂତ । xxx
ଜୀର୍ଣ୍ଣ ଯୁଗର ସଞ୍ଚୟରେ ଯିବ କ'ଣ ଆଉ କ'ଣ ବା ରହିବ
ପାଲିସ୍ କରା ଜୀର୍ଣ୍ଣତାକୁ ଚିହ୍ନିବାକୁ ହେବ ଆଜି
ଢୋଲ ଟି ତେଣୁ ତାହା କହୁଛି ବାଜିବାଜି ।''

ବର୍ତ୍ତମାନ ଯେତେ ବି ସଦୃଶ ହେଉନା କାହିଁକି କବି ଭବିଷ୍ୟତର ଆଶା ଛାଡିଦେଇ ନଥିଲେ । ମଣିଷର ଅନ୍ତିମ ପରିପୂର୍ଣ୍ଣତାରେ କବିଙ୍କର ବିଶ୍ୱାସ ଥିଲା । ବିଶ୍ୱାସ ଥିଲା  ଅନ୍ତର୍ନିହିତ ଦେବତ୍ୱରେ । କବିଙ୍କର ବିଚଳିତ ଆତ୍ମାର ସ୍ୱସ୍ତିଲାଭ ଲାଗି ଏହାର ପ୍ରୟୋଜନ ଥିଲା ।  ଅନ୍ୟ ଏକ କବିତାରେ ସେ ଏଇ ବିଶ୍ୱାସକୁ ସମର୍ଥନ କରି ଲେଖିଥିଲେ ।

ମୃତ୍ୟୁର ଭୟାନକ ଭୀଷଣ ନୃତ୍ୟରେ
ଯେବେ ଏଇ ବିଭତ୍ସ ଖେଳ  ଶୀର୍ଷେ ପହଞ୍ଚିବ,
ପାପଭରା ଯୁଗ ସେଠି ଅନ୍ତଯିବ ।
ଲୋଭ ଓ ମୋହର ସବୁ ଯନ୍ତ୍ରଣା ଯାତନା ଘେନି

ଧ୍ୱଂସ ସ୍ତୂପର ଭସ୍ମବେଦୀପରେ,
ମନୁଷ୍ୟ ନିଜର ଆସନ ପାତିବ
ବନ୍ଦନା କରିବାକୁ ନୂତନ ସୃଷ୍ଟିରେ,
ଆଜିର ଏ ନିୟମର ଗର୍ଜନ ନୂତନ ସୃଷ୍ଟିର ପ୍ରଚାରକ ହେବ ।

ଯେଉଁ କଳାରେ ସେ ନିପୁଣ ଥିଲେ ସେଥିରେ ତାଙ୍କର କ୍ଷୋଭ ପ୍ରକାଶ କରି ସେ ସନ୍ତୁଷ୍ଟ ହୋଇ ନଥିଲେ । ତାଙ୍କ ନିଜ ଦେଶ ବି ବିଚଳିତ ଓ ବିବ୍ରତ ଅବସ୍ଥାରେ ଥିଲା । ହୁଏତ ଗୋଟିଏ ହିତାହିତଶୂନ୍ୟ ସିଦ୍ଧାନ୍ତ ନେବାକୁ ଯାଉଥିଲା । ବୃଦ୍ଧ, ଦୁର୍ବଳ ଓ ଅସୁସ୍ଥ- ଅନେକ ଦିନ ଧରି ତାଙ୍କ ଦେହରେ ଜ୍ୱର ରହୁ ଥିଲା । ତଥାପି ସେ ଅନୁଭବ କରିଥିଲେ ନିଜ ଜାତିର ପ୍ରତିବାଦକୁ ଜଣାଇବା ପାଇଁ ସେ କିଛି ପଦକ୍ଷେପ ନେବେ । 15 ଜୁନ୍ କାଲିଂପଙ୍ଗରୁ ସେ ଆମେରିକାର ରାଷ୍ଟ୍ରପତି ରୁଜ୍ -ଭେଲ୍ଟଙ୍କୁ ଗୋଟିଏ ଚିଠି ଲେଖିଥିଲେ । ଯେତେବେଳେ ସମଗ୍ର ପୃଥିବୀ ଜୀବନ ମରଣ ସଂଗ୍ରାମର ସମ୍ମୁଖୀନ ସେତେବେଳେ ବ୍ରିଟିଶ୍ ଉପନିବେଶ ଭାବରେ ଅସହାୟ ଭାରତର ଦୁଃଖ ଦୁର୍ଦ୍ଦଶା ଏଇ ଚିଠିରେ ବର୍ଣ୍ଣନା କରିଥିଲେ । କବି ଲେଖିଥିଲେ, ''ମୁକ୍ତ ଭାରତ ହେବ ମୁକ୍ତ ପୃଥିବୀର ସଂପଦ, କିନ୍ତୁ ଦାସତ୍ୱପ୍ରପୀଡିତ ଭାରତ ହେବ ପୃଥିବୀର ବୋଝ ।''

1940 ଅଗଷ୍ଟ 7 ତାରିଖ ଦିନ ଶାନ୍ତିନିକେତନରେ ଏକ ସ୍ୱତନ୍ତ୍ର ଉତ୍ସବରେ ରବୀନ୍ଦ୍ରନାଥଙ୍କୁ ସମ୍ମାନଜନକ ଡକ୍ଟରେଟ୍ ଉପାଧିରେ ଭୂଷିତ କଲେ ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟ । ମାନପତ୍ରରେ ସରସ୍ୱତୀଙ୍କର ଶ୍ରେଷ୍ଠ ବରପୁତ୍ର ରୂପେ ତାଙ୍କୁ ବର୍ଣ୍ଣନା କରାଯାଇଥିଲା । ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟର ପ୍ରତିନିଧି ଥିଲେ, ଉଚ୍ଚତମ ନ୍ୟାୟାଳୟର ପ୍ରଧାନ ବିଚାରପତି ମରିଶ୍ ଗୟାର, ଅକ୍ସଫୋର୍ଡର ପ୍ରଫେସର ରାଧାକ୍ରିଷ୍ଣନ୍ ଓ ବିଚାରପତି ହେଣ୍ଡେରସନ । ବିଚାରପତି ଗୟାର କହିଲେ, ''ଯେଉଁ ବିଶ୍ୱବିଦ୍ୟାଳୟର ମୁଁ ପ୍ରତିନିଧି କବିଙ୍କୁ ସମ୍ମାନ ଦେଇ ସେଇ ବିଶ୍ୱବିଦ୍ୟାଳୟ ନିଜେ ସମ୍ମାନିତ ହୋଇଛି ।'' ଏଇ ବିଶ୍ୱବିଦ୍ୟାଳୟ 28 ବର୍ଷ ପୂର୍ବେ ଭାରତୀୟ କବିଙ୍କୁ ସ୍ୱୀକାର କରିନଥିଲା । ରୋଦେନ୍‌ଷ୍ଟାଇନ୍‌ଙ୍କ ଭାଷାରେ ''ଅକସ୍‌ଫୋର୍ଡ ଓ କେମ୍ବ୍ରିଜ୍ ରବୀନ୍ଦ୍ରନାଥଙ୍କୁ ସମ୍ମାନ ଜନକ ଉପାଧି ପ୍ରଦାନ କରୁ ଏହା ଫକସ୍ ଷ୍ଟ୍ରଙ୍ଗୱେସ୍ ଚାହିଁଥିଲେ । ଏଥିପାଇଁ ଲର୍ଡ କର୍ଜନଙ୍କୁ ପରାମର୍ଶ ମଗାଯାଇଥିଲା । ସେ କହିଥିଲେ, ''ଭାରତରେ ରବୀନ୍ଦ୍ରନାଥ ଠାକୁରଙ୍କ ଠାରୁ ଅନେକ ସମ୍ମାନାସ୍ପଦ ଲୋକ ଅଛନ୍ତି, ଅବଶ୍ୟ ମୁଁ ସେ ସମସ୍ତଙ୍କୁ ଜାଣେ ନାହିଁ । କିନ୍ତୁ ମୋର ଦୁଃଖ, ସାହିତ୍ୟରେ ଅବଦାନର ସ୍ୱୀକୃତି ପାଇଁ ଇଂଲଣ୍ଡକୁ ବିଦେଶମୁଖୀ ହେବାକୁ ପଡିଛି ।''

ଏଇ ବର୍ଷ ଶେଷ ହେବା ପୂର୍ବରୁ ତାଙ୍କର ଶେଷ ତିନୋଟି କ୍ଷୁଦ୍ର ଗଳ୍ପ 'ତିନିସଙ୍ଗୀ' ଶୀର୍ଷକରେ ପ୍ରକାଶ ପାଇଥିଲା । ଗଳ୍ପ ଗୁଡିକ ହେଲା 'ରବିବାର' 'ଶେଷ କଥା' ଓ 'ଲାବୋରଟରୀ' । ତାଙ୍କର ପୂର୍ବ ଗଳ୍ପ ଠାରୁ ଏଗୁଡିକ ଥିଲା ସଂପୂର୍ଣ୍ଣ ଭିନ୍ନ । କବିଙ୍କର ରସଧାରା ଯେପରି ଶୁଖି ଯାଇଛି, ସେ ହୋଇଛନ୍ତି ଯେପରି ବୁଦ୍ଧିଜୀବୀ, ସେହି ମହାନ ଗଳ୍ପକାର ହୋଇଛନ୍ତି ବ୍ୟାଖ୍ୟାକାର । ହିମାଳୟ ମଥାନତ କରି ପରିଣତ ହୋଇଛି ନଭଶ୍ଚୁମ୍ବୀ ପ୍ରାସାଦର ମାଳଭୂମିରେ । ରବୀନ୍ଦ୍ର ଥିଲେ ପୂର୍ଣ୍ଣତାର ଉପାସକ । ଶୀଥିଳ ଗତିରେ ସେ ସୁଖୀ ନଥିଲେ । ଏଇଠି ପୂର୍ଣ୍ଣତାର ଅବସାନ ତାଙ୍କ ମତରେ । ଉଚ୍ଚତମ ଶୃଙ୍ଗରେ ଆରୋହଣ କରିସାରି ସେ ଅନ୍ୟ ଶୃଙ୍ଗ ଆଡକୁ ଯାଇଥିଲେ ତାହା ଅନୁଚ୍ଚ ହୋଇ ପାରେ କିନ୍ତୁ ସଦ୍ୟତାରେ ପୂର୍ଣ୍ଣ । ପୁଣି ସେଇ ବର୍ଷ ପ୍ରକାଶିତ ହୋଇଥିଲା 'ଛେଲେବେଲା' କବିଙ୍କର ବାଳୁତ ଦିନର ସ୍ମୃତିକଥା । ଏହାର ଶୈଳୀଥିଲା ସରଳ, ଜୀବନ୍ତ ଓ ଅପ୍ରଭାବିତ । ପୂର୍ବ ବର୍ଣ୍ଣିତ

ଗଳ୍ପଠାରୁ ଏହା ଭାବ ଓ ଭଙ୍ଗୀରେ ଭିନ୍ନ, ନାନା ସ୍ତରରେ ସେ ଏହାକୁ ଭାବିଥିଲେ, ଅନୁଭବ କରିଥିଲେ ଓ ନିଜର ମନୋଭାବ ସୃଷ୍ଟିଶୀଳଭାବରେ ଏକା ସମୟରେ ପ୍ରକାଶ କରିଥିଲେ । ସେ ଯେପରି ଇଚ୍ଛା ଅନୁସାରେ ଚେତନାର ତରଳ ଧାରାକୁ ପ୍ରତିହତ ଅଥବା ସଞ୍ଚାରିତ କରିପାରୁଥିଲେ । ହୁଏତ କେବଳ ନିଜ ଇଚ୍ଛାରେ ଚାଳିତ ହୋଇ ନୁହେଁ ମୁହୂର୍ତ୍ତର ଭାବାବେଗ ତାକୁ ପ୍ରଭାବିତ କରୁଥିଲା । ପିଲାଦିନ (ଛେଲେବେଲା) ଲେଖାରୁ ଦେଖାଯାଇ ପାରେ ପୂର୍ବସ୍ମୃତି ବର୍ଣ୍ଣନାରେ ତାଙ୍କର ଅଭାବନୀୟ ସାଫଲ୍ୟ । ବୁଢ଼ିମା'ଙ୍କ କାଳରୁ ପରିତ୍ୟକ୍ତ ଗୋଟିଏ ଅଚଳ ପାଲିଙ୍କି ଥିଲା । ରବୀନ୍ଦ୍ରନାଥଙ୍କ ଦାୟିତ୍ୱ ନେଇଥିବା ଚାକର ମାନେ ଖାଇସାରି ଦିପହରେ ଶୋଇବା ବେଳେ ସେ ସେହି ପାଲିଙ୍କିରେ ଆଶ୍ରୟ ନେଉଥିଲେ, ପରିତ୍ୟକ୍ତ ପାଲିଙ୍କି ଓ ଅବହେଳିତ ଶିଶୁ ଏ ଉଭୟଙ୍କ ମଧ୍ୟରେ ଯେମିତିକି ଏକ ଅଚ୍ଛେଦ୍ୟ ଆତ୍ମୀୟ ବନ୍ଧନ ଗଢ଼ିଉଠିଥିଲା । ସମସ୍ତଙ୍କ ଆଖି ଆଡୁଆଳରେ ବନ୍ଦ ପାଲିଙ୍କି ଭିତରେ ବସି ସେ ନିଜ କଳ୍ପନା ଜଗତରେ ପୂର୍ଣ୍ଣ ରାଜତ୍ୱ କରୁଥିଲେ ।

''ଅଚଳ ପାଲିଙ୍କି ମୋ ମନ ଭିତରେ ଚାଲିବାକୁ ଲାଗିଛି । ପବନରେ ତିଆରି କାନ୍ଧିଆ ମାନେ ମୋ ମନର ଖୋରାକ ଖାଇ ମଣିଷ ହୋଇଛନ୍ତି । ଚାଲିବା ରାସ୍ତାଟି ତିଆରି ହୋଇଛି ମୋଅରି ଖିଆଲରେ । ସେଇ ବାଟରେ ଚାଲିଛି ପାଲିଙ୍କି । ଦୂରରୁ ଦୂରକୁ, ଦେଶରୁ ଦେଶକୁ । ସେ ସବୁ ଦେଶର ବହି ପଢ଼ା ନାଁ ମୁଁ ହିଁ ଦେଇଛି । କେତେବେଳେ ବା ତାର ବାଟ ଘନ ଜଙ୍ଗଲ ଭିତର ଦେଇ ଯାଇଛି । ବାଘର ଆଖି ଜଳି ଉଠୁଛି, ଦେହ ଥରି ଉଠୁଛି, ସାଙ୍ଗରେ ଅଛି ଶିକାରୀ ବିଶ୍ୱନାଥ, ବନ୍ଧୁକ ମରା ହେଲା ଦୁମ୍ । ତା' ପରେ ସବୁ ଚୁପ୍ । ତା ପରେ କେତେବେଳେ ପାଲିଙ୍କିର ଆକାର ବଦଳି ଯାଏ ମୟୂର ପକ୍ଷୀ, ଭାସି ଚାଲେ ସମୁଦ୍ରରେ, କୂଳ ଦେଖିହୁଏ ନାହିଁ । ଆହୁଲାର ଶବ୍ଦ ହୁଏ ଛପ୍-ଛପ୍ । ଫୁଲି ଉଠିଥାଏ ଢେଉ, ନାଉରୀମାନେ କୁହନ୍ତି, ସମ୍ଭାଳ ସମ୍ଭାଳ, ଝଡ ଉଠିଲା' । ମଙ୍ଗ ପାଖରେ ଠିଆ ହୋଇଛି ଅବଦୁଲ ମାଝି, ଦାଢ଼ି, ନିଶ ନାହିଁ, ତାର ମୁଣ୍ଡ ନଣ୍ଡା । ତାକୁ ମୁଁ ଚିହ୍ନେ, ବଡ ଭାଇଙ୍କ ପାଇଁ ପଦ୍ମାରୁ ଇଲିଶି ମାଛ ଆଉ କଇଁଚ ଅଣ୍ଡା ଆଣି ଦେଉଥିଲା ସେ ।''

ସାତ ଅଗଷ୍ଟ ରବୀନ୍ଦ୍ରନାଥଙ୍କ ଏକ ସ୍ମରଣୀୟ ଦିନ । ଏଇ ସାତ ଅଗଷ୍ଟରେ ଆଠ ବର୍ଷ ତଳେ ତାଙ୍କ ନାତି ନୀତୀନ୍ଦ୍ରର ଜର୍ମାନୀରେ ମୃତ୍ୟୁ ଘଟିଥିଲା । ରବୀନ୍ଦ୍ରନାଥ ବି ବର୍ଷକ ପରେ ସେଇ ତିଥିରେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟ ସମାବର୍ତ୍ତନର ତିନିଦିନ ପରେ ସେ ରାମାୟଣର ସାଂସ୍କୃତିକ ତାତ୍ପର୍ଯ୍ୟ ବିଷୟରେ ସାଧାରଣରେ ବକ୍ତୃତା ଦେଇଥିଲେ । ହାନ୍ଦିଭାଷୀଙ୍କ ଭିତରେ ବାଇବେଲ ରୂପେ ପରିଚିତ 'ରାମ ଚରିତ ମାନସ'ର ସ୍ରଷ୍ଟା ତୁଳସୀ ଦାସଙ୍କ ସ୍ମୃତିରେ ଏଇ ସଭା ଅନୁଷ୍ଠିତ ହୋଇଥିଲା । 13 ସେପ୍ଟେମ୍ବର 'ବର୍ଷା ମଙ୍ଗଳ' ଉତ୍ସବରେ ଶାନ୍ତିନିକେତନରେ ସେ ଶେଷଥର ପାଇଁ ସଭାପତିତ୍ୱ କରିଥିଲେ । 15 ଦିନ ପରେ 19 ସେପ୍ଟେମ୍ବରରେ କଲିକତାରେ ତାଙ୍କର ସ୍ୱାସ୍ଥ୍ୟ ପରୀକ୍ଷା କରାଯାଇଥିଲା ଓ ତା ପରେ ବର୍ଣ୍ଣାଢ଼୍ୟ ଶରତରେ ହିମାଳୟର ଶୋଭା ଉପଭୋଗ କରି ସ୍ୱାସ୍ଥ୍ୟ ଲାଭ କରିବା ପାଇଁ ସେ କାଲିଂପଙ୍ଗ ଗଲେ ।

ସେ ଆରାମ ଚୌକିରେ ବସି ଶରତର ସୁନେଲୀ ସୂର୍ଯ୍ୟାଲୋକରେ ସ୍ନାନ କରି ନୀଳଆକାଶ ଆଡକୁ ଅନାଇ ରହୁଥିଲେ । ଗୋଟିଏ ସପ୍ତାହ ଶରତକୁ ସେ ଏତେ ଉପଭୋଗ କରିଥିଲେ ଯେ ସଂପୂର୍ଣ୍ଣ ସୁସ୍ଥ ଓ ବିଶ୍ରାମ ଲାଭ କରିଥିଲେ ।

ନିଃଶବ୍ଦ ଆନନ୍ଦରେ ଆକାଶ ମାରୁଛି ତାଳି
ଶବ୍ଦ ଓ ବର୍ଣ୍ଣମୟ ସୁଖ ମତେ ଦେଉଅଛି ତାଳି
କାଲିଂପଙ୍ଗ ଏକଥା କି ଜାଣେ ?
ଡିଂ ଡଂ ସକାଳର ଘଣ୍ଟା ବାଜେ
କାଲିଂପଙ୍ଗ୍ ଏ କଥା କି ଶୁଣେ ?

25 ସେପ୍ଟେମ୍ବର ଦିନ ଏ କବିତା ରଚିତ ହୋଇଥିଲା । ତା ପରଦିନ ସେ ଅସୁସ୍ଥ ହୋଇ ପଡିଲେ । ସଂଜ୍ଞା ଲୋପ ପାଇଲା । ତିନିବର୍ଷ ପୂର୍ବେ ଏଇ ସେପ୍ଟେମ୍ବର ମାସରେ ଠିକ୍ ଏପରି ହୋଇଥିଲା । କବିଙ୍କ ଭାଷାରେ ''ପୁଣିଥରେ ମୃତ୍ୟୁଦୂତ ଗୋପନରେ ତମସାମୟ ବିଶ୍ୱ ଜଗତର ଅସରନ୍ତି ପଥ ଅତିକ୍ରମ କରି ଆସିଥିଲା । ଗତ ଥର ଯେପରି ସଂକଟ ମୁହୂର୍ତ୍ତରେ ହୋଇଥିଲା ଏଥର ବି ସେମିତି ଯଥୋଚିତ ଡାକ୍ତରୀ ଚିକିତ୍ସା ମିଳିନଥିଲା । ସେଥର ଥିଲେ ଶାନ୍ତିନିକେତନରେ ଆଉ ଏଥର କାଲିଂପଙ୍ଗରେ । ସେ ତ କଲିକତାରୁ ଅନେକ ଦୂରରେ । କଲିକତାରୁ ଜଣେ ଭାରତୀୟ ଡାକ୍ତରଙ୍କୁ ଡ଼ କାଯାଇଥିଲା, ବିଳମ୍ବ ଅସହ୍ୟ । ଦାର୍ଜିଲିଂର ଗୋରା ସିଭିଲ ସର୍ଜନ୍‌ଙ୍କୁ ଅନୁରୋଧ ଜଣାଗଲା । ସେ କୁଣ୍ଠିତ ଭାବରେ ଆସିଲେ । ରୋଗୀଙ୍କୁ ପରୀକ୍ଷା କଲେ ଓ ରୂଢ଼ କଣ୍ଠରେ ପଚାରିଲେ ''ଏ ରୋଗୀ ଇଂରେଜୀ ବୁଝେ କି ନାହିଁ ?'' ଏଇ ଦେଶର ଲୋକଙ୍କ ଠାରୁ ବିଦେଶୀ ଶାସକଶ୍ରେଣୀଙ୍କର ଦୂରତ୍ୱ ଯେ କେତେ ବଢ଼ି ଚାଲିଥିଲା, ଏହାଠାରୁ ବେଦନାଦାୟକ ଦୃଷ୍ଟାନ୍ତ ଆଉ ମିଳିବ ନାହିଁ । ଡାକ୍ତର ନିଦାନ ଦେଲେ କବିଙ୍କର ମୂତ୍ରାଶୟରେ ଘୁଣ ହୋଇ ଅଛି, ତେଣୁ ଏକ ଅସ୍ତ୍ରୋପଚାର ଦରକାର । ତା ନ ହେଲେ ଏଇ ସଂଜ୍ଞାହୀନ ରୋଗୀଙ୍କର ଜୀବନ ରଖିବା ଅସମ୍ଭବ । ସୌଭାଗ୍ୟକୁ ଏଇ ଗୋରା ସର୍ଜନଙ୍କୁ ଅପରେସନ କରିବାକୁ ଦିଆଗଲା ନାହିଁ । ଇତି ମଧ୍ୟରେ କଲିକତା ସାଙ୍ଗରେ ଘେନିଯିବା ପାଇଁ ଜଣେ ଚିକିତ୍ସକ ଆସି ପହଞ୍ଚିଲେ ।

29 ସେପ୍ଟେମ୍ବରରେ କବିଙ୍କୁ ପୈତୃକ ଗୃହରେ ପହଞ୍ଚାଇ ଦିଆଗଲା । ତା'ର ଦୁଇ ଦିନ ପରେ ମହାତ୍ମା ଗାନ୍ଧିଙ୍କ ସେକ୍ରେଟାରୀ ମହାଦେବ ଦେଶାଇ ଗାନ୍ଧିଜୀଙ୍କର ଉଦ୍‌ବେଗ ବାର୍ତ୍ତା ଘେନି ପହଞ୍ଚିଲେ । ଏତେବେଳ ପର୍ଯ୍ୟନ୍ତ କବି ତାଙ୍କର ବାକ୍‌ଶକ୍ତି ଫେରି ପାଇ ନଥିଲେ । ସେ ଅସହାୟ ଭାବରେ ମହାଦେବଙ୍କୁ ଚାହିଁ ରହିଲେ । ତାଙ୍କ ଦୁଇ ଆଖିରୁ ଅଶ୍ରୁଧାରା ଝରିଗଲା । ଏହି ଦୃଶ୍ୟ ବର୍ଣ୍ଣନା କରି ତାଙ୍କର ପୁତ୍ରବଧୂ ଲେଖିଥିଲେ, ''ଏଇ ପ୍ରଥମ ଥର ଦେଖିଲି ସେ ଭାଙ୍ଗି ପଡିଛନ୍ତି । ସେ ସର୍ବଦା ଧୈର୍ଯ୍ୟବାନ ଥିଲେ । ଶୋକ ମୁହୂର୍ତ୍ତରେ ବି ସେ ଭାଙ୍ଗି ପଡୁ ନଥିଲେ । କିନ୍ତୁ ଏବେ ଜଣାଗଲା ସେ ଧୈର୍ଯ୍ୟର ବନ୍ଧ ଭାଙ୍ଗି ପଡିଛି ।''

ତାଙ୍କର ଶକ୍ତିର ପୂର୍ଣ୍ଣ ବିନିଯୋଗ କରିବା ପାଇଁ କ୍ଷମତା ସେ କେବେ ଫେରିପାଇ ନଥିଲେ । କିନ୍ତୁ ଶିଘ୍ର ସେ ବିଛଣାରେ ଉଠି ବସିବାକୁ ଓ କଥା କହିବାକୁ ସମର୍ଥ ହୋଇଥିଲେ । ଭଲ ଭାବରେ ହାତରେ କଲମ ଧରିବା ପାଇଁ ତାଙ୍କର ବଳ ନଥିଲା । ସେ କବିତା ମୁଖେ ମୁଖେ ଡ଼ାକି ଦେଉଥିଲେ । ଏମିତି ଗୋଟିଏ କବିତା ନିମ୍ନରେ ଉଦ୍ଧାର କରାଗଲା । ଅମୀୟ ଚକ୍ରବର୍ତ୍ତୀ କବିତାଟି ବଙ୍ଗଳାରୁ ଇଂରାଜୀରେ ଅନୁବାଦ କରିଥିଲେ ।

ଏଇ ମହାବିଶ୍ୱତଳେ ଯନ୍ତ୍ରଣାର ଘୂର୍ଣ୍ଣଯନ୍ତ୍ର ଚଳେ
ଚୂର୍ଣ୍ଣ ହେଉଥାଏ ଗ୍ରହ ଆଉ ତାରା ।
ଉତ୍‌କ୍ଷିପ୍ତ ସ୍ଫୁଲିଙ୍ଗ ଯେତେ

ଦିଗ୍ ବିଦିଗେ ଅସ୍ତିତ୍ୱର ବେଦନାରେ ପ୍ରଳୟ ଦୁଃଖର ରେଣୁ ଜାଳେ
ବ୍ୟାପ୍ତ କରିବାକୁ ଛୁଟେ ପ୍ରଚଣ୍ଡ ଆବେଗେ ।
ପୀଡନର ଯନ୍ତ୍ର ଘରେ, ଚେତନାର ଉଦ୍ଦୀପ୍ତ ପ୍ରାଙ୍ଗଣେ
କେଉଁଠି ସେ ଶେଳ ଶୂଳ ହେଉଛି ଝଂକୃତ
କେଉଁଠି ସେ କ୍ଷତରକ୍ତ ଉସାରୁଛି ?
ମନୁଷ୍ୟର କ୍ଷୁଦ୍ର ଦେହ, ଯନ୍ତ୍ରଣାର ଶକ୍ତି କି ଦୁଃସୀମ
ସୃଷ୍ଟି ଓ ପ୍ରଳୟର ସଭା ତଳେ
ତା'ର ବହ୍ନି ରସପାତ୍ର,
କାହିଁକି ସେ ଯୋଗଦେଲା ବିଶ୍ୱର ସେ ଭୈରବୀ ଚକ୍ରରେ
ବିଧାତାର ପ୍ରଚଣ୍ଡ ମଉତା କାହିଁକି ଏ ଦେହରେ ମୃତ୍-ପାତ୍ର ଭରି
ରକ୍ତ ବର୍ଣ୍ଣ ପ୍ରଳାପର ଅଶ୍ରୁର ସ୍ରୋତରେ କରେ ବିପ୍ଲାବିତ ।

କବି ଯେ ଉତ୍ତର ଜାଣିଛନ୍ତି ବା କେବେ ଜାଣିବେ ତାହା ଭାବି ସାନ୍ତ୍ୱନା ପାଉ ନଥିଲେ । କିନ୍ତୁ ଦୈହିକ ଦୁର୍ଭୋଗର ଅନୁଭୂତି ଦ୍ୱାରା ପରାଭୂତ ହୋଇ ତାଙ୍କର ଇଚ୍ଛାଶକ୍ତି ଅଥବା ବିଶ୍ୱାସ କ୍ଷୁଣ୍ଣ ହେଉ ଏହା ସେ ଚାହୁଁ ନଥିଲେ । ଦୁଃଖର ମର୍ମର ଦାହ ଭିତରୁ ଯେ ମଣିଷ ଅମୃତ କାଢ଼ି ନେଇ ପାରିବ ସେ ତାହା ଜାଣିଥିଲେ ।

ପ୍ରତିକ୍ଷଣେ ଅନ୍ତହୀନ ମୂଲ୍ୟ ଦେଲା ତାକୁ
ମାନବର ଦୁର୍ଜୟ ଚେତନା,
ଦେହ ଦୁଃଖର ହୋମାନଳରେ ଯେଉଁ ଅର୍ଘ୍ୟ ଦେଲା ସେ ଆହୂତି
ଜ୍ୟୋତିଷ୍କର ତପସ୍ୟାର କ'ଣ ତୁଳନା ଅଛି କି କେଉଁଠି ?

ଧୀରେ ଧୀରେ ସ୍ୱାସ୍ଥ୍ୟ ଫେରି ପାଇବା ସଙ୍ଗେ ସଙ୍ଗେ କବି ନିଜ ମନର ସ୍ୱାଭାବିକ ଅବସ୍ଥା ଫେରି ପାଇଲେ । ତୁଚ୍ଛ ବସ୍ତୁ ଓ ଶବ୍ଦ ଭିତରୁ ଆନନ୍ଦ ଆହରଣର ଶକ୍ତି ତାଙ୍କର ଆସିଲା । 11 ନଭେମ୍ବର ପ୍ରତ୍ୟୁଷରେ ସେ ଏକ ଅତି ସୁନ୍ଦର ଆମୋଦ ଦାୟକ କବିତା ଡ଼ାକି ଦେଲେ । କବିତାଟି ହେଉଛି- ଗୋଟିଏ ବାଇ ଚଢ଼େଇ ପ୍ରତିଦିନ ତାଙ୍କ ଝରକାରେ ଖୁମ୍ପୁଥିଲା, ଘରକୁ ପଶି ଆସୁଥିଲା । ପୁଚ୍ଛ ହଲାଇ ନାଚୁ ଥିଲା । ଆଉ ଟୁଇଁ ଟାଇଁ କରି ପଚାରୁଥିଲା ଆଉ କଣ କିଛି ଖବର ଅଛି ?

ଅନିଦ୍ରାରେ ଯେବେ ମୋର ଦୁଃଖର ରାତ୍ରିକାଟେ
ଆଶା ମୁଁ କରେଁ ଦ୍ୱାରରେ ତୁମ ପ୍ରଥମ ଚଞ୍ଚୁଘାତ
ଅଭିକ ଚଟୁଳ ତମର ସେଇ ସହଜ ପ୍ରାଣର ବାଣୀ
ଦିଅହେ ମୋତେ ଆଣି
ସକଳ ଜୀବର ଦିନାଲୋକ ନିଏ ଯେ ମତେ ଡାକି
ରେ ମୋ ଭୋର୍‌ର ଚଢ଼େଇ ପକ୍ଷୀ ।

ଦିନରାତି ତାଙ୍କ ପାଖରେ ସେବା କରୁଥିବା ସେବାକାରୀଙ୍କୁ ଲକ୍ଷ୍ୟ କରି ସେ ଅନେକ କୋମଳ କାନ୍ତ କବିତା ରଚନା କରିଥିଲେ । ପ୍ରଶିକ୍ଷଣପ୍ରାପ୍ତ ନର୍ସଙ୍କର ସେବାର ସେ ବିରୋଧୀ ଥିଲେ । ତାଙ୍କର ଦରକାର ଥିଲା ବନ୍ଧୁତ୍ୱ ପୂର୍ଣ୍ଣ ପ୍ରୀତିଭରା ସେବା, ଯେଉଁମାନେ ପ୍ରକୃତରେ ତାଙ୍କୁ

ଭଲ ପାଉଥିଲେ, ଯେଉଁମାନଙ୍କୁ ସେ ଭଲ ପାଇପାରିବେ, ପିଠି ଥାପୁଡେଇ ପାରିବେ, ଥଟ୍ଟା, କରିପାରିବେ, ସେଇ ମାନଙ୍କୁ ସେ ଚାହୁଁଥିଲେ ।

ଗହନ ରଜନୀ ମଧ୍ୟେ
ରୋଗୀର ଆବିଳ ଦୃଷ୍ଟିରେ
ଯେବେ ମୁଁ ସହସା ଦେଖେ ତୁମର ଜାଗ୍ରତ ଆବିର୍ଭାବ
ମନେହୁଏ ସତେ ଆକାଶରେ ଅଗଣିତ ଗ୍ରହତାରା
ଅନ୍ତହୀନ କାଳେ
ମୋହରି ପରାଣ ଭାର
କରିଛି ସ୍ୱୀକାର ।

ଆଉ ଗୋଟିଏ କବିତାରେ ସେ କ୍ରୀଡା ଚପଳ ଭଙ୍ଗୀରେ ଅସହାୟତାକୁ ବିଦ୍ରୁପ କରିଛନ୍ତି- ଏମିତି ଆଦେଶ ଭଙ୍ଗୀରେ- ''ଚୁପ୍ ହୁଅ, ଏତେ ବେଶୀ କଥା କୁହନି, ଆଉ ଟିକିଏ ବେଶୀ କି ଖାଅ'', ସତେ ଯେମିତି କିଏ ଜଣେ ଶିଶୁ ତା'ର ଖେଳନାକୁ କହୁଚି ।

ତା ପରେ ଅନତି ବିଳମ୍ବେ ତାଙ୍କୁ ଶାନ୍ତିନିକେତନ ଅଣାଗଲା । ଆଗରେ ବିସ୍ତୃତ ଦିଗ୍‌ଦୃଶ୍ୟ, ନୀଳ ଆକାଶ, ବୃକ୍ଷରାଜି, ଖୁସୀରେ ଭରା ବିଦ୍ୟାଳୟର ବାଳକ ବାଳିକା-ଏ ସବୁ ଯେମିତି ତାଙ୍କର ଜୀବନପ୍ରତି ମମତା ବଢ଼ାଇ ଦେଲା ଓ ସ୍ୱାସ୍ଥ୍ୟ ଲାଭରେ ସାହାଯ୍ୟ କଲା ।

ଖୋଲିଦିଅ ଦ୍ୱାର
ନୀଳାକାଶ କର ଅବାରିତ
କୌତୁହଳୀ ପୁଷ୍ପର ସୁରଭି କରୁ ହେ ପ୍ରବେଶ
ପ୍ରଭାତର ସୂଯ୍ୟାଲୋକ ସର୍ବଦେହେ ହେଉ ସଞ୍ଚାରିତ
ଶିରାରେ ଶିରାରେ ।
ମୁଁ ଏବେବି ବିଞ୍ଚିଛି
ତା'ର ଅଭିନନ୍ଦନ ବାଣୀ ମର୍ମରିତ ପଲ୍ଲବରେ ମତେ
ଗ୍ରହଣ କରିବାକୁ ଦିଅ ।

ଏଇ କବିତା ଓ ଆହୁରି ଅନେକ ଏମିତି ବିଚିତ୍ର ଅନୁଭବ ପୂର୍ଣ୍ଣ କବିତା ବର୍ଷକ ପରେ ଯଥୋଚିତ ଶୀର୍ଷକ ଘେନି 'ରୋଗଶଯ୍ୟାୟ' ନାମରେ ପ୍ରକାଶିତ ହେଲା । ଏହା ପରେ 1941ରେ 'ଆରୋଗ୍ୟ' ନାମକ କବିତା ସଂକଳନ ପ୍ରକାଶିତ ହେଲା । ଏଇ କବିତା ସଙ୍କଳନ ସୂଚନା ଦିଏ କବି ଆରୋଗ୍ୟ ଲାଭ କରିଥିଲେ । କିନ୍ତୁ ପ୍ରକୃତରେ ସେ କେବେ ପୂର୍ଣ୍ଣଆରୋଗ୍ୟ ଲାଭ କରିନଥିଲେ । ଅବଶ୍ୟ କବି ଆରାମ ଚୌକିରେ ବସୁଥିଲେ ଓ ଚକ ଲଗା ଚୌକିରେ ବସି ବୁଲୁଥିଲେ । ତାଙ୍କର ରୋଗର ଯନ୍ତ୍ରଣା କମି ଯାଇଥିଲା । ରୋଗ ଶଯ୍ୟାର କ୍ଷୀଣ ଆଲୋକଟି ଟିକିଏ ଉଜ୍ଜ୍ୱଳତର ହୋଇ ଉଠିଥିଲା ଯଦିବା ଝରକାର ସୂର୍ଯ୍ୟକିରଣ ଘରେ ଖେଳିଯାଇ ନଥିଲା । ତଥାପି କବି ଆଉଥରେ ତାଙ୍କର ପ୍ରିୟ ସ୍ମୃତି ଚାରଣ ଓ ଧ୍ୟାନମଗ୍ନ ମନୋଭଙ୍ଗୀକୁ ଫେରି ଆସିଥିଲେ । ସୂର୍ଯ୍ୟ ତାଙ୍କୁ ଭଲ ଲାଗୁଥିଲା । ଏଇ ସଂକଳନର ଅଧିକାଂଶ କବିତା 'ରୋଗ ଶଯ୍ୟାୟ' ର କବିତା ଭଳି ସେ ପ୍ରଭାତରୁ ଡାକୁ ଥିଲେ । ସନ୍ଧ୍ୟା ବେଳକୁ ପୁଣି ଜ୍ୱର ଆସୁଥିଲା । କୌଣସି ପରିଶ୍ରମ ପାଇଁ ଶକ୍ତି ରହୁନଥିଲା । ' ଆରୋଗ୍ୟ'ର ପ୍ରଥମ କବିତାଟିରେ ଯେମିତିକି ସେ ତାଙ୍କର ପୁରୁଣା ବିଶ୍ୱାସକୁ ଫେରାଇ ଆଣିବାକୁ

ଚାହିଁଛନ୍ତି-

ଏଇ ଦ୍ୟୁଲୋକ ମଧୁମୟ ଧରିତ୍ରୀର ଧୂଳି
ଅନ୍ତରରେ ନେଇଛି ମୁଁ ତୋଳି
ଏଇ ମହାମନ୍ତ୍ର ଧ୍ୱନି
ଚରିତାର୍ଥ ଜୀବନର ବାଣୀ ।
ଶେଷ ସ୍ପର୍ଶ ନେଇଯିବି ଯେବେ ଧରଣୀର
କହି ଯିବି, ତୁମର ଧୂଳିର
ତିଳକ ପିନ୍ଧିଛି ଭାଲେ
ଦେଖିଛି ନିତ୍ୟର ଜ୍ୟୋତି ଦୁର୍ଯୋଗର ମାୟାର ଉଢ଼ାଳେ ।
ସତ୍ୟର ଆନନ୍ଦ ରୂପ ଏ ଧୂଳିରେ ନେଇଛି ମୂରତି,
ଏହା ଜାଣି ଏ ଧୂଳିରେ ଢ଼ାଳିଲି ପ୍ରଣତି ।

ଏଇ ଜୀବନରେ ସୌନ୍ଦର୍ଯ୍ୟ ଓ ଐଶ୍ୱର୍ଯ୍ୟର ଆଶୀର୍ବାଦ ଲାଭ କରିଥିଲେ, ସେଥିପାଇଁ ସେ ଥିଲେ କୃତଜ୍ଞ । ମାନବ ପ୍ରୀତିର ପାତ୍ରରେ ସେ ସ୍ୱର୍ଗୀୟ ଅମୃତର ସ୍ୱାଦ ଚାଖିଥିଲେ । ଅସହ୍ୟ ଦୁଃଖ ବେଦନା ତାଙ୍କୁ ଅନାହତ ଅବିଦିତ ଆତ୍ମାର ସନ୍ଧାନ ଦେଇଥିଲା ।- ''ଏହି ସ୍ମୃତି ମୁଁ କୃତଜ୍ଞ ଚିତ୍ତରେ କହି ଯିବି ।''

'ରୋଗଶଯ୍ୟାୟ' ବହିର ଗୋଟିଏ କବିତାରେ ରୋଗଶଯ୍ୟାରେ ଶୋଇଥିବା ଗୋଟିଏ ଅବସ୍ଥାକୁ ସେ ତୁଳନା କରିଛନ୍ତି ନଈ ମଝିରେ କେତେଗୁଡିଏ ଭାସିଯାଉଥିବା କାଠି ତିଆରି କରିଥିବା ଗୋଟିଏ ଦ୍ୱୀପ ସହିତ । ଯେଉଁ ଦ୍ୱୀପକି ପ୍ରଧାନ ଧାରାଠାରୁ ଦୂରରେ ରହି ନିଜ ଚତୁର୍ଦ୍ଦିଗରେ ଘୂରୁଥାଏ । ତାଙ୍କର ରୋଗୀଘରର ନିବୁଜ ଆକାଶ ତଳେ ଦୁଃଖ ଓ ଯନ୍ତ୍ରଣା ତାଙ୍କ ଚେତନାକୁ ନିଜ ଚାରିପଟେ ବୁଲିବାକୁ ବାଧ କରିଥିଲା । ନିଜ ବିଚାରରେ କବି ନିଷ୍ଠୁର ଭାବେ ନିଜକୁ ଆଘାତ କରୁଥିଲେ । ଯେଉଁମାନେ ତାଙ୍କୁ ସେବା କରୁଥିଲେ ସେମାନେ ବ୍ୟଥା ବେଦନା ସହିବାରେ କବିଙ୍କର ଆଶ୍ଚର୍ଯ୍ୟଜନକ କ୍ଷମତା ଥିବା କଥା କହନ୍ତି । ନିଜ କଷ୍ଟ କଥା ନଭାବି ସେ ବେଶୀ ଭାବୁଥିଲେ ତାଙ୍କୁ ଯେଉଁମାନେ ସେବା କରୁଛନ୍ତି ସେମାନଙ୍କ କଥା । ସେ ହାସ୍ୟରସ କବିତା ଓ ଥଟ୍ଟା ପରିହାସରେ ସେମାନଙ୍କୁ ଖୁସି କରିବାକୁ ଚାହୁଁଥିଲେ । ନିଜର କଷ୍ଟ ସେ ଯେପରି ସେବାକାରୀଙ୍କ ଆଖିରେ ଦେଖୁଥିଲେ । ସେ ନିଜର ସମସ୍ତ ଦୁଃଖକୁ ଲୁଚାଇ ଦେଉଥିଲେ । ସାରା ଜୀବନ ଦୈହିକ କଷ୍ଟ ସହିବା ପାଇଁ ସେ ନିଜକୁ ସାଧନା ସମର୍ଥ କରିଥିଲେ । ତାଙ୍କ ବୟସ ଯେତେବେଳେ କମ୍‌ଥିଲା, ସେ ବହୁତ ସଂଯମ ପାଳନ କରୁଥିଲେ ।

ଥରେ ତାଙ୍କର କଲିକତାର ପୈତୃକ ଅବ୍ୟବହୃତ ବାସଗୃହରେ ସେ ଏକୁଟିଆ ଶୋଇଥିଲା ବେଳେ ତାଙ୍କ ଆଙ୍ଗୁଠିରେ ଗୋଟେ ବିଷାକ୍ତ କଙ୍କଡା ବିଛା କାମୁଡି ଦେଇଥିଲା । ସେତେବେଳେ କିଛି କରିବାର ନଥିଲା । ସେ ଆଉ କାହାର ନିଦ ଭାଙ୍ଗିବାକୁ ଚାହିଁନଥିଲେ । ତେଣୁ ଯନ୍ତ୍ରଣା ସେ ନିଜେ ସହିଥିଲେ । କଷ୍ଟ ଯେତେବେଶୀ ହେଲା ସେ ନିଜର ଚେତନା ଶକ୍ତିକୁ ଶରୀରଠାରୁ ଅଲଗା କରିଦେଇଥିଲେ । ତାଙ୍କ ଆଗରେ ଯେଉଁ ଦେହ ପଡି ରହିଛି ସେ କଷ୍ଟ ପାଉଛି, କିନ୍ତୁ ସେ ତ ପାଉ ନାହାନ୍ତି । ଦେହ ଓ ଆତ୍ମା ଭିତରେ ଥିବା ଦ୍ୱୈତ ଭାବନାକୁ ନିଜର ଏକୀଭୂତ ଇଚ୍ଛାଶକ୍ତି ଦ୍ୱାରା ଯଥାସାଧ୍ୟ ଚେଷ୍ଟା କରି ପ୍ରତିଷ୍ଠା କରିବାରୁ ତାଙ୍କର ବେଦନା ସଂପୂର୍ଣ୍ଣ ବନ୍ଦ ହୋଇଗଲା ।

ଏପରି କଷ୍ଟ ନିବୃତ୍ତିର ଅନୁଭୂତି ତାଙ୍କ ଜୀବନରେ ଦ୍ୱିତୀୟ ଥର ହୋଇନଥିଲା । କିନ୍ତୁ ଯେତେବେଳେ ସେ ଦୈହିକ କଷ୍ଟର ସମ୍ମୁଖୀନ ହେଉଥିଲେ ସେ ସେଇ ପୂର୍ବର ଅନୁଭୂତି ମନେ ପକାଇ ଦେହରୁ ବିଦେହୀ ହେବାପାଇଁ ଚେଷ୍ଟା କରୁଥିଲେ ।

ଶାନ୍ତିନିକେତନ ଆସିଲା ପରେ ବି ତାଙ୍କ ଦେହକଷ୍ଟ ଓ ରୋଗଭୋଗ ଶେଷହୋଇ ନଥିଲା । କିନ୍ତୁ ସେ ସେସବୁକୁ ଭୁଲିଯିବାକୁ ସମର୍ଥ ହୋଇଥିଲେ । ବିଶେଷ ଭାବରେ ସକାଳେ ଓ ଦିନରେ ସେ ସବୁ ଭୁଲି ଯାଉଥିଲେ, ଉପର ବେଳା ତାଙ୍କ ଦେହକୁ ଜ୍ୱର ଫେରିବା ପର୍ଯ୍ୟନ୍ତ । ଫେବୃୟାରୀ ଆରମ୍ଭରେ ବସନ୍ତ ଆସିଲା । ତାଙ୍କର ସେଇ ସ୍ୱାସ୍ଥ୍ୟୋଜ୍ଜ୍ୱଳ ଦିନକୁ ସେ ଫେରିବାକୁ ଚାହିଁଲେ । ଜୀବନର ଆନନ୍ଦ ଓ ପ୍ରକୃତିର ବର୍ଣ୍ଣାଢ୍ୟ ରୂପରେ ନିଜକୁ ପୁଲକିତ କରିବାକୁ ସମର୍ଥ ହେଲେ । ଆଉଥରେ ଜଗତର ମଣିଷର କଥା ତାଙ୍କୁ ବ୍ୟଥିତ କଲା । ଏମିତି ଏକ ମୁହୂର୍ତ୍ତରେ ଫେବୃୟାରୀ 13 ତାରିଖରେ ସେ ଏକ ମହନୀୟ କବିତା ଡ଼ାକି ଦେଇଥିଲେ "ଅଳସ ସମୟ ଧାରା ବହେ ।"

ତାଙ୍କ ନିଜ ଦେଶର ଇତିହାସର ଦୃଶ୍ୟପଟ ଆଡକୁ ତାଙ୍କ ମନ ଫେରି ଯାଇଥିଲା । ସେ ଦେଖିଲେ ଏକ ବିରାଟ ଶୂନ୍ୟତା, ଯାହା ଭିତରେ ଭାସି ଯାଉଛନ୍ତି ସାମ୍ରାଜ୍ୟଲୋଭୀ ପଠାଣ, ତାଙ୍କ ପଛକୁ ମୋଗଲ ବିଜୟରଥର ଧୂଳି ଉଡାଇ । ପୁଣି ସେ ଦେଖିଛନ୍ତି ସେମାନଙ୍କର କୌଣସି ଅବଶେଷ ଆଜି ନାହିଁ । ପୁଣି ଆଉ ଗୋଟିଏ ଛାୟାଛବି ତାଙ୍କ ଆଖି ଆଗରେ ଭାସି ଉଠିଛି ଇଂରେଜଙ୍କର । ଲୁହାର ବନ୍ଧା ପଥ ଉପରେ ଅଗ୍ନିଶ୍ୱାସ ଛାଡୁଥିବାର ରଥ । ସେମାନେ ବି ଚାଲିଯିବେ । କିଛି ଚିହ୍ନ ତାଙ୍କର ରହିବ ନାହିଁ । ଯାହା ରହିବ ତାହା ହେଉଛି- ସକାଳ ଓ ସନ୍ଧ୍ୟାର ସେଇ ନୀଳ ଗଗନ ଓ ଏଇ ପୃଥିବୀରେ ଜୀବନକୁ ବଞ୍ଚେଇ ରଖିବା ପାଇଁ ଶ୍ରମନିରତ ସାଧାରଣ ଜନଗଣ ।

ସେଇମାନେ ଚିରକାଳ ଆହୁଲା ମାରନ୍ତି/ ମଙ୍ଗଧରିଥାନ୍ତି,
ଜମିରେ ବୀଜ ସେ ବୁଣନ୍ତି/ ପାଚିଲା ଧାନକୁ କାଟନ୍ତି ।
କାମ ସେ କରନ୍ତି ନଗରେ ପ୍ରାନ୍ତରେ ।
ରାଜ ଛତ୍ର ଭାଙ୍ଗି ପଡେ, ରଣଶିଙ୍ଗା ଶବ୍ଦ ତୋଳେ ନାହିଁ,
ରକ୍ତ ମଖା ଅସ୍ତ୍ର ହାତେ ଯେତେ ଲାଲ ଆଖି
ଶିଶୁପାଠ୍ୟ କାହାଣୀରେ ଥାଏ ମୁଖ ଢ଼ାଙ୍କି ।
ସେମାନେ କାମ ଯେ କରନ୍ତି ଦେଶଦେଶାନ୍ତରେ ।

ଅଙ୍ଗବଙ୍ଗ କଳିଙ୍ଗର ସମୁଦ୍ର ନଦୀର ତଟେ ତଟେ/ ପଞ୍ଜାବ, ବମ୍ବେ ଓ ଗୁଜୁରାଟେ । ଗୁରୁ ଗୁରୁ ଗର୍ଜନ ଝନ୍‌ଝନ୍ ସ୍ୱର/ ଦିନ ରାତି ଲାଗିପଡି ଜୀବନକୁ କରନ୍ତି ମୁଖର । ସୁଖ ଦୁଃଖ ଦିବସ ରଜନୀ/ ମୁଦ୍ରିତ କରି ଦିଏ ଯେ ଜୀବନର ମହାମନ୍ତ୍ର ଧ୍ୱନି ।

ଶତ ଶତ ସାମ୍ରାଜ୍ୟର ଭଗ୍ନଶେଷ ପରେ । ସେହିଁ କାମ କରେ ।

କବିଙ୍କର ଅନେକ ଶୁଭେଚ୍ଛୁ ସ୍ତାବକ ଏଇ କବିତାରୁ ସାମ୍ୟବାଦୀଆଦର୍ଶ ପ୍ରତି ପରିଣତ ବୟସରେ କବିଙ୍କର ଅନୁରକ୍ତିର ସନ୍ଧାନ ପାଇଥାନ୍ତି । ସେମାନେ ଭାବନ୍ତି ସର୍ବହରାର କବି ଭାବେ ରବୀନ୍ଦ୍ରନାଥ ଶ୍ରେଷ୍ଠ ସମ୍ମାନର ଅଧିକାରୀ । କିନ୍ତୁ ଆଜିକାଲି ଯେଉଁ ଅର୍ଥରେ ସର୍ବହରାର କବି କଥାଟି ପ୍ରଯୁକ୍ତ ହୁଏ ରବୀନ୍ଦ୍ରନାଥ ତାହା ନଥିଲେ । ତାଙ୍କର ଏକମାତ୍ର ଅଙ୍ଗୀକାର ଥିଲା ଜୀବନ -ପ୍ରୀତି । ଜୀବନର ଅତି ସାଧାରଣ ଆନନ୍ଦ ଓ ବିଷାଦକୁ ସେ ଶ୍ରଦ୍ଧା କରୁଥିଲେ । ଆଉ କବିଙ୍କ ଭାଷାରେ

କହିଲେ ଏଇ କବିତାଟି ପ୍ରକୃତରେ ଜୀବନର ଏକ ମହତ୍ ସ୍ତୋତ୍ର । ଜନସାଧାରଣ ଭିତରେ ଏହା ଏକ ଫେସନ୍ ହେବାର ଅନେକ ପୂର୍ବରୁ ସେ ସାଧାରଣ ଲୋକଙ୍କ କଥା ଭାବୁଥିଲେ ଓ ତାଙ୍କୁ ଭଲ ପାଉଥିଲେ । ଅର୍ଦ୍ଧ ଶତାବ୍ଦୀ ପୂର୍ବେ ସେ ଯେତେବେଳେ ଗାଁ ଗହଳିରେ ରହି ନିଜ ଜମିଦାରୀ ତଦାରଖ କରୁଥିଲେ, ସେତେବେଳର ଲେଖା ଚିଠିରେ ତାହାର ପ୍ରମାଣ ମିଳେ । କୃଷକ, ଶ୍ରମିକ ଓ ଗ୍ରାମୀଣଜନତାଙ୍କ ପ୍ରତି ମମତାର ନିଦର୍ଶନ ଏଇ ପତ୍ର ଗୁଡିକରେ ରହିଛି । ଜନସାଧାରଣଙ୍କ ପ୍ରତି ଏଇ ଯେ ଦରଦ ସେଥିରେ କବିଙ୍କର ସୁସ୍ଥ ନୈତିକ ଭାବାଦର୍ଶ ପ୍ରକାଶିତ ହୋଇଛି ।

ଯେତେବେଳେ ସାମ୍ରାଜ୍ୟ ସବୁ ଭାଙ୍ଗିଯାଏ ସାଧାରଣ ଲୋକେ ହିଁ ପୃଥିବୀର ଜୀବନ ଧାରା ବହନ କରି ନିଅନ୍ତି । ଏମିତି ଉକ୍ତିରେ ଏପରି କିଛି ମୌଳିକତା ଲକ୍ଷ୍ୟ କରାଯାଇ ପାରେ ନାହିଁ । ଏଇ କଥାକୁ କବି ଯେମିତି ଭାବରେ କାବ୍ୟରୂପ ଦେଇଛନ୍ତି, ତାହାହିଁ ଆମ ସ୍ମୃତିରେ ଗୁନ୍ଥି ହୋଇଯାଏ । ଜଣେ ବଙ୍ଗଳା ଅଧ୍ୟାପକ ଦୁଃଖ କରନ୍ତି ଯେ- 'ଏଇ କବିତାର ଶିଳ୍ପକଳାଗତ ପରିପୂର୍ଣ୍ଣତାକୁ ଅନେକେ ଭୁଲି ଯାଆନ୍ତି । ସେ ପୁଣି କୁହନ୍ତି, ''ଏଥିରେ ତାଙ୍କର ପରିପୂର୍ଣ୍ଣତା ଓ ଅନାୟସଲବ୍ଧ ନୈପୁଣ୍ୟ ଏତେ ବେଶୀ ଯେ କବିଙ୍କର ଶାନ୍ତ ସମାହିତ ଧ୍ୟାନମୟ ଦୃଷ୍ଟି ଏହି କବିତାର ଛନ୍ଦରୁ ଆମେ ଅନୁଭବ କରୁ ଓ ଶୁଣିବାକୁ ପାଉ ।'' ''ରବୀନ୍ଦ୍ରନାଥ ତାଙ୍କର ପ୍ରତିଭା ପ୍ରତି ସତତ ନିଷ୍ଠାବାନ୍ । ସେ ସାହିତ୍ୟରେ କୌଣସି ଫେସନ୍ ସମ୍ମୁଖରେ ନତି ସ୍ୱୀକାର କରି ନାହାନ୍ତି । ଯଦି ବା ତାଙ୍କ ଚାରିପାଖରେ ଦୁନିଆରେ ଯାହା ସବୁ ପରିବର୍ତ୍ତନ ଘଟୁଥିଲା ସେଥିପ୍ରତି ସେ ସଂପୂର୍ଣ୍ଣ ସଚେତନ ଥିଲେ ଓ ସହସା ପ୍ରତିକ୍ରିୟା ପ୍ରକାଶ କରୁଥିଲେ ।'' ମଣିଷ ଭିତରେ ମନୁଷ୍ୟତ୍ୱକୁ ହିଁ ରବୀନ୍ଦ୍ରନାଥ ପ୍ରୀତିପୂର୍ଣ୍ଣ ଓ ପ୍ରଶଂସା ନେତ୍ରରେ ଦେଖୁଥିଲେ । ଏଥିରେ ସମାଜରେ ମଣିଷର ଆସନର ଭେଦ ନଥିଲା । ଏହି ଦୃଷ୍ଟିରୁ ଗାନ୍ଧି ଓ ତାଙ୍କ ଭିତରେ ସଂପୂର୍ଣ୍ଣ ମେଳ ଥିଲା । 13 ଡିସେମ୍ବର 1940 ଦିନ ସେ ମହାତ୍ମା ଗାନ୍ଧିଙ୍କ ଉପରେ ଲୋକଛନ୍ଦମୟ ଗୋଟିଏ କବିତା ଡ଼ାକି ଦେଇଥିଲେ । ଏଥରେ ପଦସମୂହ କେତେବେଳେ ଲଘୁଚପଳ ଭଙ୍ଗୀରେ ଓ କେତେବେଳେ ଗମ୍ଭୀର ଭଙ୍ଗୀରେ ରଚିତ । ଏହା ତାଙ୍କର ସାଧାରଣ ଦୃଷ୍ଟିକୋଣ ଓ ମନର ସ୍ୱାଭାବିକ ସ୍ଥିତିର ନିଦର୍ଶନ ।

ଗାନ୍ଧି ମହାରାଜଙ୍କ ଶିଷ୍ୟ,
କେହି ବା ଧନୀ, କେହି ବା ନିଃସ୍ୱ,
ଗୋଟିଏ ଜାଗାରେ ରହିଛି ଆମର ମେଳ ।
ଗରିବ ମାରି ପୂରାଉ ନା ଆମେ ପେଟ,
ଧନୀଙ୍କ ପାଖେ କରୁ ନା ମଥା ନତ,
ଭୟରେ ମୁହଁ ହୁଏନି କେବେ ନୀଳ ।

'ଆରୋଗ୍ୟ' ପରେ 'ଜନ୍ମଦିନେ' କାବ୍ୟଗ୍ରନ୍ଥ ପ୍ରକାଶ ପାଇଲା । ଏପରି ଶୀରୋନାମାର କାରଣ ହେଉଛି କବିତା ଗୁଡିକ ତାଙ୍କର ଜନ୍ମଦିନରେ ରଚିତ ହୋଇଥିଲା । ଏସବୁ କବିତାରେ ଜନ୍ମ ଓ ମୃତ୍ୟୁର ଦିନ ପରସ୍ପରକୁ ମୁଖାମୁଖୀ ହୋଇଥାନ୍ତି । ଏଇ ଭାବ ସଚେତନତା ସବୁ କବିତାରେ ପ୍ରାଧାନ୍ୟ ଲାଭ କରିଛି । ଗୋଟିଏ କବିତାରେ 1924 ରେ ତାଙ୍କର ଚୀନ ଭ୍ରମଣର ସ୍ମୃତି ବର୍ଣ୍ଣିତ ହୋଇଛି । ସେଠି ତାଙ୍କର ଜନ୍ମଦିନ ଗଭୀର ଆତ୍ମୀୟତା ଭିତରେ ପାଳିତ ହୋଇଥିଲା ।

ଏକଦା ଯାଇଥିଲି ଚୀନ୍ ଦେଶେ
ଅଚିହ୍ନା ସେମାନେ

ଲଲାଟେ ମୋ ଦେଇଣ ତିଳକ ତମେ ଆମର ପରିଚିତ'
ବୋଲି ପାଛୋଟି ଯେ ନେଲେ
ଖସି ପଡିଥିଲା ସେତେବେଳେ ପରର ଛଦ୍ମବେଶ
ଦେଖାଦେଇଥିଲା ସେଠି ଅନ୍ତରର ନିତ୍ୟ ଯେ ମଣିଷ
ଅଭାବିତ ପରିଚୟେ ଆନନ୍ଦର ଜୁଆର ଉଠିଲା ।
ଧରିଲି ଚ଼ୀନ ନାଁ, ପନ୍ଧିଲି ଚୀନ୍‌ର ବେଶବସ୍ତ୍ର
ଏକଥା ବୁଝିଲି ମନେ
ଯେଉଁଠାରେ ବନ୍ଧୁ ମିଳେ ସେଇଠାରେ ନବଜନ୍ମ ଘଟେ ।

ମଂପୁରେ ପାଳିତ ତାଙ୍କର ଶେଷ ଜନ୍ମଦିନ ବିଷୟରେ ମଧ୍ୟ କେତୋଟି କବିତା ସେ ରଚନା କରିଥିଲେ । ତାର ସୂଚନା ଆଗରୁ ଦିଆଯାଇଛି । ଅତି ସୁନ୍ଦର ଗୋଟିଏ କବିତା 21 ଜାନୁୟାରୀ 1941ରେ ଶାନ୍ତିନିକେତନରେ ଡାକି ଦେଇଥିଲେ । କବି ଭାବରେ କଣ ତାଙ୍କର କୃତିତ୍ୱ ତାହା ଏ କବିତାରେ ସେ ବର୍ଣ୍ଣନା କରିଛନ୍ତି । ସେ ସଚେତନ ଥିଲେ କଣ ତାଙ୍କ କବିତାର ଦୁର୍ବଳତା । ହୃଦୟସ୍ପର୍ଶୀ ବିନୟର ସହିତ କବି କହିଛନ୍ତି, 'କେତେ ବିପୁଳ ବିଚିତ୍ର ଏ ବିଶ୍ୱ, ତା ବିଷୟରେ ମୁଁ ବା କେତେ ଜାଣିଛି ।'' ବିରାଟ ବିଶ୍ୱର ଏକ କୋଣରେ ରହି ବହୁ ଦିଗ୍‌ଦୃଶ୍ୟ ଓ ବିଚିତ୍ର ଜୀବନ ତାଙ୍କର ପ୍ରତ୍ୟକ୍ଷ ଅନୁଭବର ବାହାରେ ରହିଯାଇଛି । ସେ ଯାହା ଜାଣିଛନ୍ତି କେବଳ ବହିପଢ଼ି ବା ଅନ୍ୟଙ୍କଠାରୁ-

ମୁଁ ଯେ ଧରିତ୍ରୀର କବି, ଯହିଁ ଯେତେ ଉଠେ ତାର ଧ୍ୱନି
ମୋହର ବଂଶୀର ସ୍ୱରେ ସେଇକ୍ଷଣି ଜାଗିବ ତା'ର ପ୍ରତିଧ୍ୱନି
ଏଇ ସ୍ୱରସାଧନାରେ ପହଞ୍ଚିନି ବହୁତର ଡାକ
ରହିଗଲା ଫାଙ୍କ ।..........
ସବୁଠାରୁ ଦୁର୍ଗମ ଯେ ମଣିଷ ଆପଣା ଅନ୍ତରାଳେ
ତାର କିଛି ପରିମାପ ନାହିଁ ବାହାରର ଦେଶ ଅବା କାଳେ ।
ସେ ଅନ୍ତରମୟ
ଅନ୍ତର ମିଶାଇଲେ ହିଁ ମିଳେ ତା'ର ପରିଚୟ ।
ପାଇନି ସର୍ବତ୍ର ତା'ର ପ୍ରବେଶର ଦ୍ୱାର
ବାଧା ମୋର ବାଡ ଯେତେ ଜୀବନ ଯାତ୍ରାର
ବିଲେ ଚାଷୀ ଚଳାଉଛି ହଳ
ତନ୍ତି ବସି ତନ୍ତ ବୁଣେ, କେଉଟ ଫିଙ୍ଗେ ଜାଲ-
ବହୁଦୂର ପ୍ରସାରିତ ଏମାନଙ୍କ କର୍ମଭାର
ତା ଉପରେ ଭରା ଦେଇ ଚଳୁଅଛି ସମସ୍ତ ସଂସାର ।
ଅତି କ୍ଷୁଦ୍ର ଅଂଶେ ତାର ସମ୍ମାନର ଚିର ନିର୍ବାସନେ
ସମାଜର ଉଚ୍ଚ ମଞ୍ଚପରେ ବସିଛି ମୁଁ ସଂକୀର୍ଣ୍ଣ ବାତାୟନେ ।
କେବେ କେବେ ଯାଇଛି ମୁଁ ସେ ପ୍ରାଙ୍ଗଣର ଧାରେ,
ଭିତରକୁ ପ୍ରବେଶିବା ଶକ୍ତି ମୋର ନଥିଲା ଏକବାରେ ।

ଜୀବନ ଜୀବନେ ଯୋଗକରା
ନ ହେଲେ କୃତ୍ରିମ ପଣ୍ୟେ ବ୍ୟର୍ଥ ହୁଏ ଗୀତର ପସରା
ତେଣୁ ମୁହିଁ ମାନିନିଏ ସେ ନିନ୍ଦାର କଥା
ମୋର ସ୍ୱରର ଅପୂର୍ଣ୍ଣତା
ମୋହର କବିତା ତେଣୁ, ଜାଣେ ମୁହିଁ
ଗଲେ ବି ବିଚିତ୍ର ପଥେ, ସର୍ବତ୍ରଗାମୀ ସେ ହୋଇପାରିନାହିଁ ।

ନିଜର ସୀମାବଦ୍ଧତା ସ୍ୱୀକାର କରିବା ପରେ କବି ଭବିଷ୍ୟତରେ ସେଇ କବିଙ୍କୁ ସ୍ୱାଗତ କରିଛନ୍ତି ଯିଏ ମାଟିର ସନ୍ନିକଟରେ ରହିବେ, ଯିଏ ଚାଷିର ଜୀବନରେ ଭାଗୀଦାର ହେବେ ଓ ହେବେ ତାର ସହଯୋଦ୍ଧା, ଯିଏ ହେବେ ମୂକ ଜନସାଧାରଣଙ୍କ କବି । ସେ ଭାଷା ଦେବେ ସେମାନଙ୍କ ହୃଦୟରେ ଲୁଚିଥିବା ଦୁଃଖକୁ, ଏଇ ଶୁଷ୍କ ଭୂମିରେ ଆନନ୍ଦମୟ ସଂଗୀତର ଧାରା ଖେଳାଇ ଦେବେ । ସେ ପ୍ରାର୍ଥନା କରିଛନ୍ତି ନୂଆ କବି ହୁଅନ୍ତୁ ନିଜ ବିଶ୍ୱାସ ପ୍ରତି ସତ୍ । ତାଙ୍କ କଥା ଓ କାମ ଭିତରେ ପ୍ରକୃତ ମେଳ ଦେଖାଯାଉ । ସେ କେବଳ ଗରିବପ୍ରତି ଛଳନାମୟ ସହାନୁଭୂତିରର ବାନାବାନ୍ଧି ନ ବୁଲନ୍ତୁ । ସେଇ କବିଙ୍କୁ କବି ତାଙ୍କର ପ୍ରଣାମ ଜଣାଇଛନ୍ତି । କିନ୍ତୁ ସଂଗେ ସଂଗେ ନକଲିମାନଙ୍କ ପ୍ରତି ସାବଧାନ କରିଦେଇଛନ୍ତି ।

ସେ ଅବଶ୍ୟ ଜାଣିନଥିଲେ ଯେ ଏତେ ଶୀଘ୍ର ମୂକ ଓ ଦଳିତଙ୍କ ପାଇଁ ସହାନୁଭୂତି ଗୋଟେ କଲ୍ଟ ଓ ଫେସନ୍ ହୋଇ ପଡ଼ିବ । ସାହିତ୍ୟ ଜଗତଟା ଏଇଭଳି ଧ୍ୱଜାଧାରୀ କବିଙ୍କ ଦ୍ୱାରା ପୂର୍ଣ୍ଣ ହୋଇଯିବ । ଅଥବା ଏହା ଘଟିବ ବୋଲି ସେ କ'ଣ ଆଶଙ୍କା କରିଥିଲେ କି ଯେଉଁଥି ପାଇଁ ଶୁଣାଇଥିଲେ ଚେତାବାଣୀ । ଯଦି ବା ତାଙ୍କ ନିଜର ସୀମାବଦ୍ଧତା ବିଷୟରେ ବର୍ଣ୍ଣନା କରିଛନ୍ତି ଓ କବିଙ୍କର ସ୍ଥାନ କେତେ ଉଚ୍ଚ ସେ କଥା ଦେଖାଇ ଦେଇଛନ୍ତି । ନିଜ ବିଷୟରେ ଏମିତି ବିନୟ ଭାବ ପ୍ରକାଶ କରିବାର କୌଣସି ଆବଶ୍ୟକତା ନ ଥିଲା । ସେମିତି କବି କାହାନ୍ତି ଯାହାଙ୍କର ଦୃଷ୍ଟି ସହାନୁଭୂତି ଓ ଅବବୋଧ ପୃଥିବୀରେ ଯାହାକିଛି ଅଛି ଓ ଯେତେ ମଣିଷ ବାସ କରୁଛନ୍ତି ତାଙ୍କୁ ସ୍ପର୍ଶ କରିବ । ''ଯେଉଁମାନେ ଦଳିତଙ୍କ ପାଇଁ ଅତି ଆଗ୍ରହ ଦେଖାନ୍ତି ସେମାନଙ୍କର ଆଉ କିଛି ପାଇଁ ସମୟ ନଥାଏ । ତାଙ୍କର ଏ ସମୟର କବିତା ଯେଉଁ କବିତାରେ ସେଇ ସାମ୍ରାଜ୍ୟ ସବୁ ଭାଙ୍ଗି ପଡ଼ିବ ବା ଶ୍ରମଜୀବୀମାନେ ପୃଥିବୀରେ ଜୀବନଭରିଦେବା କଥା କହିଛନ୍ତି ସେସବୁ କବିଙ୍କ ବାର୍ଦ୍ଧକ୍ୟର ଓ ମୃତ୍ୟୁର ମୁଖାମୁଖୀ ହେବାର ଇଙ୍ଗିତ କେବଳ ଦିଏ ନାହିଁ, ତାଙ୍କର ମନୋଭଙ୍ଗୀ ବା ବିଶ୍ୱାସର ପରିବର୍ତ୍ତନ ଘଟି ଥିଲା । ସେ ଦୁଇ ଦିନର ଅତିଥି ଭଳି ମନଭାବ ପ୍ରକାଶିତ ହୋଇନାହିଁ । ବରଂ ଏହା ସୂଚିତ କରେ,ବୟସ ବଢ଼ିବା ସଙ୍ଗେ ସଙ୍ଗେ କବିଙ୍କ ଚେତନାର ଦିଗବଳୟ ପ୍ରସାରିତ ହୋଇଛି, ଭାବାନୁଭୂତି ଗଭୀର ହୋଇଛି, ଆଧୁନିକ ଜୀବନର ଅନ୍ତର୍ବେଦନା ଓ ମଣିଷର ଭାଗ୍ୟ ବିଷୟରେ ତାଙ୍କର ଅବବୋଧ ଅଧିକତର ପୂର୍ଣ୍ଣ ହୋଇଛି । କବି ଭାବରେ ତାଙ୍କର ସାଧନା ବିଷୟରେ ସେ ଅଧିକ ମୁଖର ଓ ଉଦ୍‌ବେଳିତ ହୋଇପଡ଼ିଛନ୍ତି ।

ଏଇ ସବୁ ଗଭୀର ତତ୍ତ୍ୱାଶ୍ରୟୀ କବିତା ଲେଖିବା ସଂଗେ ସଂଗେ ଶିଶୁ କବିତା, ଗଳ୍ପ ଓ ରୂପକଥା ତାକିଯାଇଛନ୍ତି । ସତେ ଯେମିତି ଜଣେ ଅଜା ଚାହିଁଛନ୍ତି ଆନନ୍ଦ ଓ ହାସ୍ୟୋଜ୍ଜ୍ୱଳ ରୀତିରେ ନିଜର କଥା କହିଯିବା ପାଇଁ । ଏ ସବୁ ପଢ଼ିଲେ ମନେ ହୁଏ ନାହିଁ ଯେ ସିଏ ମୃତ୍ୟୁ ଶଯ୍ୟାରେ ପଡିରହି ଅସମ୍ଭବ ଶାରୀରିକ ଯନ୍ତ୍ରଣା ପାଉଥିଲେ । ଏ ସବୁ ଲେଖା 1941 ମସିହାରେ

'ଗଳ୍ପସଳ୍ପ' ନାମରେ ବାହାରି ଥିଲା । ସେଥିରେ ଗୋଟିକର ନାଁ ହେଉଛି 'ଜବର ଖବର' । ଏଥିରେ ସମକାଳିନ ଯାନ୍ତ୍ରିକ ସମାଜର ଚିତ୍ର ସେ ଫୁଟାଇଛନ୍ତି । ସେ ବର୍ଣ୍ଣନା କରିଛନ୍ତି ଡ଼ଙ୍ଗାର ଆହୁଲା ଓ ପାଲ ଭିତରେ କଳି ବିଷୟରେ । ଆହୁଲା କାମ କରି ମରେ ଆଉ ଜାହାଜକୁ ଚଲାଇ ନିଏ ବୋଲି କିଛି ନକରି ପାଲ ଦାବୀ କରେ । କୁସୁମୀ ଅଜାକୁ ପଚାରେ ଆଜିର ବଡ଼ ଖବର କ'ଣ?

କୁସୁମୀ କହିଲା- 'ତମର ବଡ଼ ଖବରଟା ଏତେ ଛୋଟ
ତମେ ମତେ ଥଟ୍ଟାକରୁଛ ?'
ଅଜା କହିଲେ 'ତତେ ଥଟ୍ଟା ଲାଗିପାରେ, କିନ୍ତୁ ଦେଖିବୁ
ଏଇ ଖବରଟା ଦିନେ ବଡ଼ ହୋଇଯିବ ।'
ସେଦିନ ତୋର ଅଜା ଆହୁଲା ସାଙ୍ଗେ ତାଳ ଦେଇ
ଚାଲିବାକୁ ଅଭ୍ୟାସ କରିବ ।
ଆଉ ମୁଁ ?
'ଯେତେବେଳେ ଆହୁଲାର କଚ୍ କଚ୍ ଶବ୍ଦ ହେବ
ତୁ ସେଠି ଟୋପାଏ ତେଲ ଦେଇଦେବୁ'
ଅଜା କହି ଚାଲିଲେ, ପ୍ରକୃତ ଖବର ଖୁବ୍ ଛୋଟ
ଯେମିତି ଗୋଟାଏ ମଞ୍ଜି । ଦିନେ ସେ ହୁଏ ଗଛ
ଶାଖା ମେଲେ । ପତ୍ର ଖେଳାଏ । ବୁଝିଲୁତ ଏବେ?
ବୁଝିଲୁ ତ ? 'ବୁଝିଲି ?'
କିନ୍ତୁ ମନେହେଲା ସେ କିଛି ବୁଝିନାହିଁ
କୁସୁମୀର ଗୋଟେ ଗୁଣ ହେଲା, ସେ ଯେ ବୁଝିନି
ତାହା ବୁଝିବାକୁ ସେ ତା' ଅଜାଙ୍କୁ ଦିଏ ନାହିଁ ।

ଶିଶୁ ମାନଙ୍କ ପାଇଁ ଏଇ ବହି ଓ ପୂର୍ବ କଥିତ 'ଜନ୍ମ ଦିନେ' ଏସବୁ 1941 ଏପ୍ରିଲ ମାସରେ ପ୍ରକାଶିତ ହୋଇଥିଲା । ଏପ୍ରିଲ ମାସ ମଝିରେ ବଙ୍ଗଳା ନବବର୍ଷ ଆରମ୍ଭ ହୁଏ । ଶାନ୍ତିନିକେତନରେ ଏହା ନବବର୍ଷ ଓ ରବୀନ୍ଦ୍ର ଜନ୍ମଦିନ ଭାବରେ ମିଳିତଭାବେ ପାଳିତ ହୁଏ । ରବୀନ୍ଦ୍ର ଜନ୍ମତିଥି ମେ 7/8 ରେ ପଡୁଥିଲେ ବି ଗ୍ରୀଷ୍ମ ଛୁଟିଯୋଗୁଁ ଏହା ଆଗରୁ ପାଳିତ ହୁଏ । 14 ଏପ୍ରିଲ 1941ରେ କବି ଜୀବନର ଶେଷ ସାଧାରଣ ସଭାରେ ବକ୍ତୃତା ଦେଇଥିଲେ । ଏହାପରେ 'ସଭ୍ୟତାର ସଂକଟ' ନାମରେ ପ୍ରକାଶିତ ହେଲା । ଦୁର୍ବଳ ଦେହରେ ଭାଷଣ ପଢ଼ିବା ସମ୍ଭବ ନଥିଲା । ତାଙ୍କ ସମ୍ମୁଖରେ ଆଉ ଜଣେ ତାହା ପଢ଼ିଥିଲେ । ନାନା ଭାବରେ ଓ ନାନା କାରଣରୁ ଭାରତ, ୟୁରୋପ ତଥା ସୁଦୂର ପ୍ରାଚ୍ୟର ଲୋକେ ଅତ୍ୟନ୍ତ ଦୁଃଖମୟ ଜୀବନ ଯାପନ କରୁଥିଲେ । ଯାହା ଘଟୁଥିଲା ତାହା ଥିଲା ସଭ୍ୟତାର ସଂକଟ । ରବୀନ୍ଦ୍ରନାଥ ନିଜ ଭାଷଣରେ ପ୍ରକାଶ କରିଥିଲେ ନିଜର କ୍ଷୋଭ ଓ ଆର୍ଷବାଣୀ । ସେ ବକ୍ତୃତା ଆରମ୍ଭ କରିଛନ୍ତି ଆଧୁନିକ ପାଶ୍ଚାତ୍ୟ ସଭ୍ୟତା ପ୍ରତି ତାଙ୍କର ଯେଉଁ ବିଶ୍ୱାସ, ତାହା ଇଂରେଜୀ ସାହିତ୍ୟ ଓ ଇଂଲଣ୍ଡର ମାନବ ମଙ୍ଗଳକାମୀ ଅନୁଷ୍ଠାନର ସମ୍ପର୍କରେ ଆସି କିପରି ଗଢ଼ିଉଠିଥିଲା । ସେ ସ୍ମରଣ କରିଛନ୍ତି କେମିତି ଲଣ୍ଡନରେ ଛାତ୍ର ଥିଲାବେଳେ ପାର୍ଲାମେଣ୍ଟରେ ଜନ୍ ବ୍ରାଇଟେନ୍‌ଙ୍କ ବକ୍ତୃତା ମନଦେଇ ଶୁଣୁଥିଲେ । ''ଆଜିର ଏଇ ବିଭସ୍ତ ସ୍ୱପ୍ନଭଙ୍ଗର ଦିନରେ ସେଇ ମହାନ ହୃଦୟ ଉଦାରବାଦୀଙ୍କର ବକ୍ତୃତା କ୍ଷୁଦ୍ର ଜାତିସୀମା

ଲଙ୍ଘନ କରି ମୋ ମନରେ ଜୀବନ୍ତ ରହିଛି ।'' ଏଇ ବିଭସ୍ତ ସ୍ୱପ୍ନଭଙ୍ଗର କାରଣ ନିର୍ଦ୍ଦେଶ କରି ସେ କହିଛନ୍ତି ପାଶ୍ଚାତ୍ୟ ସଭ୍ୟତାର ଯାହାଥିଲା ଗୌରବ, ବ୍ରିଟିଶ ଶାସକମାନେ ତା'ର ମହତ୍ତ୍ୱକୁ ଅସ୍ୱୀକାର କରିବାର ଫଳ ଏୟା । ''ଭାଗ୍ୟର ଚକ ଘୁରିବ । ଦିନେ ବ୍ରିଟିଶ ବାଧ୍ୟ ହେବ ଭାରତ ଛାଡ଼ିଦେବାପାଇଁ । କିନ୍ତୁ ସେମାନେ କେଉଁ ଭାରତକୁ ଛାଡ଼ିବେ, ଦୁଃଖ ଜର୍ଜରିତ ଭାରତବର୍ଷ? ଯେତେବେଳେ ଦୁଇଶତ ବର୍ଷର ସେମାନଙ୍କର ଶାସନର ଧାରା ଶୁଖିଯିବ, ସେତେବେଳେ ତାଙ୍କ ଆଗରେ ପଡ଼ିରହିବ କେବଳ ପଙ୍କ ଓ ଆବର୍ଜନା ।''

ଏଇ ଅନ୍ଧକାରମୟ ମୁହୂର୍ତ୍ତରେ ବି ରବୀନ୍ଦ୍ରନାଥଙ୍କ ବାଣୀ ନିରାଶର କଥା କହି ଶେଷ ହୋଇନଥିଲା । କବିଙ୍କ ଭାଷାରେ- ''ମୋ ଚଉଦିଗରେ ଦେଖୁଛି ତୁଚ୍ଛତାର ସ୍ତୁପ ଆବର୍ଜନା ହୋଇ ଭାଙ୍ଗି ପଡ଼ିଛି । ଏଇ ପ୍ରଳୟ ଶେଷ ହେବାପରେ ସେବା ଓ ତ୍ୟାଗ ଦ୍ୱାରା ଏଇ ବାୟୁ ମଣ୍ଡଳ ପରିଷ୍କୃତ ହେବାପରେ ମାନବ ଇତିହାସରେ ଯେଉଁ ଦିନ ଏକ ନୂଆ ବାଟ ଫିଟିବ ମୁଁ ସେଇ ପଥକୁ ଚାହିଁ ରହିବି ।''

ମନୁଷ୍ୟର ଭାଗ୍ୟ ବିଷୟରେ ତାଙ୍କର ଏ ସୂଚନା କେତେଦୂର ସତ୍ୟଥିଲା ତାହା କିଏ କହିବ ? ଏହା ଆହୁରି ଉଦ୍‌ବେଳ ଭାବରେ ପ୍ରକାଶିତ ହୋଇଛି ଏକ ସଙ୍ଗୀତରେ । ସଙ୍ଗୀତଟି ସେଇ ଉତ୍ସବ ଉପଲକ୍ଷେ ରଚିତ ହୋଇ ଗାନ କରାଯାଇଥିଲା ।

ଅଳ୍ପ କେତେଦିନ ଆଗରୁ ତାଙ୍କ ନାତି ସୌମେନ୍ଦ୍ରନାଥ କଲିକତାରୁ ତାଙ୍କୁ ଦେଖିବାକୁ ଆସିଥିଲେ । ସେ କବିଙ୍କୁ ଅନୁରୋଧ କରିଥିଲେ ଗୋଟେ ନୂଆ ଗୀତ ରଚନା କରିବା ପାଇଁ ଯାହା ସମବେତ କଣ୍ଠରେ ଗାଇହେବ ଓ ଯାହାର ଭାବ ହେବ ସମାଜର ଅଙ୍ଗ ଭାବରେ ଘାଣ୍ଟୁ ନହୋଇ ପ୍ରକୃତ ନୂତନ ଓ ସ୍ୱାଧୀନ ମଣିଷର ଆବିର୍ଭାବ ଘଟିବ । ଏଇ ସୂଚନାର ବୀଜ ଅଙ୍କୁରିତ ଓ ପୁଷ୍ପିତ ହେବାକୁ ଆଦୌ ସମୟ ଲାଗି ନଥିଲା ।

ସେଇ ମହା ମାନବ ଆସେ
ଦିଗେ ଦିଗେ ରୋମାଂଚ ଲାଗେ
ମର୍ତ୍ୟ ଧୂଳିର ଘାସରେ ଘାସରେ
ସୁରଲୋକେ ବାଜିଉଠେ ଶଙ୍ଖ
ନରଲୋକେ ବାଜେ ଜୟ ଡ଼ାକ
ଆସିଲା ମହା ଜନ୍ମର ଲଗ୍ନ ।
ଉଦୟ ଶିଖରରେ ଜାଗେ ମା ଭୈଃ ମା ଭୈଃ ରବ
ନବ ଜୀବନର ଆଶ୍ୱାସେ
ଜୟ ଜୟ ଜୟ ରେ ମାନବ ଅଭ୍ୟୁଦୟ
ମନ୍ଦ୍ରି ଉଠିଲା ମହାକାଶେ ।

ଶେଷ ତିନି ମାସ ତାଙ୍କ ଯାତନାର ଅନ୍ତ ନଥିଲା । ଦେହ କଷ୍ଟ ଲାଗି ରହିଥିଲା । ବେଦନାରେ ଆତୁର ଦେହକୁ ସହି ସହି ସେ ଆଦୌ ଶାନ୍ତିପାଉ ନଥିଲେ । ତାଙ୍କ ନିଜର ଦୁଃଖୀ ଦେଶ ଗୋଟିଏ ବିରାଟ ବନ୍ଦୀ ଶାଳାରେ ପରିଣତ ହୋଇଥିଲା । ନେତାମାନେ ଜେଲରେ ଥିଲେ । ଚାରିଆଡ଼େ କ୍ଷୁଧାର ଆର୍ତ୍ତନାଦ । ଭୟରେ ସମସ୍ତେ ଆତୁର ହୋଇଉଠିଆନ୍ତି । ରବୀନ୍ଦ୍ରନାଥ ନିଜ ଦେଶବାସୀଙ୍କୁ ଗଭୀର ଭାବରେ ଭଲପାଉଥିଲେ । କିନ୍ତୁ ତାଙ୍କର ଦୁଃଖ କେବଳ ନିଜ ଦେଶବାସୀଙ୍କ

ପାଇଁ ନଥିଲା । ୟୁରୋପରେ ଯୁଦ୍ଧର ତାଣ୍ଡବଲୀଳା ଚାଲିଥିଲା । ହିଟ୍‌ଲରଙ୍କ ସୈନ୍ୟବାହିନୀ ରୁଷ୍ ଆଡ଼କୁ ମାଡ଼ିଯାଉଥିଲେ । ବିନା ଦୋଷରେ ଯୁଦ୍ଧରେ ବଳି ପଡୁଥିବା ବା ଯୁଦ୍ଧର ହତିଆର ହେଉଥିବା ସବୁ ଦେଶର ସାଧାରଣ ଲୋକଙ୍କ ପାଇଁ କବି ବ୍ୟଥିତ ହୃଦୟରେ ଅଧୀର ହୋଇଉଠୁଥିଲେ । ଯଦିବା କବିଙ୍କର ଚୀନ୍, ରୁଷ୍ ଓ ମିତ୍ର ପକ୍ଷଙ୍କ ପ୍ରତି ସହାନୁଭୂତି ଥିଲା । ତଥାପି ଏଇ ନାଟକରେ ଜର୍ମାନ ଓ ଜାପାନର ଲୋକଙ୍କୁ ଅସହିଷ୍ଣୁ ଖଳନାୟକ ବୋଲି ମନେ କରୁନଥିଲେ । ନିଜ ତିଆରି ଏକ ବିଷଜନ୍ତାରେ ପୃଥିବୀ ବାରମ୍ବାର ପଡୁଥିଲା । ଏହାହିଁ ସେ ବାରମ୍ବାର କହୁଥିଲେ । ନାନା ପ୍ରକାର ବାଦ ଓ ବିବାଦ ଆହୁରି ଏହାକୁ ଜଟିଳ କରୁଥିଲା । ଲୋଭୀ ବଣିକ, ଚତୁର ପୁରୋହିତ, କ୍ଷମତାଲୋଭୀ ରାଜନୈତିକ ସମସ୍ତେ ସାଧାରଣ ଲୋକଙ୍କୁ ଶୋଷଣ କରୁଥିଲେ । ଏଇ ଜନସାଧାରଣଙ୍କର ଘୃଣା ଓ ବୀରତ୍ୱକୁ ନିଜର ସ୍ୱାର୍ଥ ପାଇଁ ବ୍ୟବହାର କରୁଥିଲେ ।

ଏହି ଦୈହିକ ଓ ମାନସିକ ଦୁଃଖ ଭିତରେ, ସାହିତ୍ୟ ସାଧନା, ଚିନ୍ତା ଭାବନା, ତାଙ୍କର ପ୍ରିୟ ତାଙ୍କର ଶାନ୍ତିନିକେତନ ଓ ସେଇ ଆଶ୍ରମ ବିଦ୍ୟାଳୟର ସାନ ସାନ ପିଲାମାନଙ୍କୁ କେନ୍ଦ୍ରକରି ଘୂରି ବୁଲୁଥିଲା । ବିଦ୍ୟାଳୟ ପ୍ରତି ତାଙ୍କର ଥିଲା ସବୁଠାରୁ ବେଶୀ ସ୍ନେହ । ଗୌରବମୟ ବିଶ୍ୱଭାରତୀ ଯେତେବେଳେ ସୃଷ୍ଟି ହେଲା, ସେତେବେଳେ ସ୍କୁଲକଥା ସେ କେତେ ପରିମାଣରେ ଭୁଲି ଯିବାକୁ ବାଧ ହୋଇଥିଲେ । କିନ୍ତୁ ଏଇ ମୂହୂର୍ତ୍ତରେ ପୁଣି ସେଇ ପୁରୁଣା ଦିନର କଥା ତାଙ୍କର ମନେ ପଡ଼ିଯାଉଥିଲା- ''ଆଜିକାଲି ସ୍କୁଲରେ କିଏ ବଂଗଳା ପଢ଼ାଉଛନ୍ତି ? ତାଙ୍କର ସାହିତ୍ୟ ପ୍ରତି ଅନୁରାଗ ଓ ଭାଷାପ୍ରତି ଦରଦ ଅଛି ତ ? ନା ସେ କେବଳ ଜଣେ ମକ୍ଷିଚୋଷ ପଣ୍ଡିତ । ଶିଶୁମାନେ ଶିକ୍ଷକଙ୍କର କଣ୍ଠର ଧ୍ୱନି ଅନୁଭବ କରିବା ଉଚିତ୍ । '' ତାଙ୍କର ମନେ ପଡୁଥିଲା ପିଲାମାନଙ୍କୁ ପଢ଼ାଇବାକୁ ଯାଇ ସେ କିପରି ଭାବବିହ୍ୱଳ ହୋଇ ଯାଉଥିଲେ । ତାଙ୍କ କଣ୍ଠ ଭାରି ହୋଇଯାଉଥିଲା ଯେତେବେଳେ ସେ କହୁଥିଲେ ''ଆହା ମୁଁ ଆଉ ତାଙ୍କୁ ପଢ଼ାଇ ପାରିବି ନାହିଁ କି ତାଙ୍କ ପାଠ ପଢ଼ାକୁ ତଦାରଖ କରିପାରିବି ନାହିଁ ।'' ସେ ସବୁବେଳେ ଲକ୍ଷ୍ୟ ରଖୁଥିଲେ ଯେମିତି ଜାର୍‌ରେ ଲଜେନ୍‌ସ୍ ଓ ବାକ୍‌ସରେ ଚକୋଲେଟ୍ ଭରି ହୋଇ ରହେ । ଏମିତିକି ଗୋଟେ ବାରବୁଲା କୁକୁର ଥିଲା ସେ ବି ବାଦଯାଏନି । ସେ ବି ଘରର ଜଣେ ସମ୍ମାନିତ ବ୍ୟକ୍ତି ହୋଇଯାଇଥିଲା । ତାଙ୍କର ଆରାମ୍ ଚୌକୀ ପାଖରେ ସେ ଆଶ୍ରୟ ପାଉଥିଲା । ପ୍ରତିଦିନ ସକାଳୁ ଆସି କବିଙ୍କ ପାଖରେ ଠିଆ ହୁଏ । ନିଜ ହାତରେ କବି ନଛୁଇଁଲେ ସେ ତିଳାର୍ଦ୍ଧେ ଘୁଂଚେ ନାହିଁ । ଚୌକି ପାଖରେ ବସେ, ଯେତେବେଳେ ଆଉ କେହି ଅତିଥି ଆସି ପହଞ୍ଚନ୍ତି, ଘରର ଆଉ ଗୋଟେ କୋଣକୁ ଚାଲିଯାଏ । 'ଆରୋଗ୍ୟ'ରେ ଏଇ ନାମହୀନ କୁକୁର ବିଷୟରେ ଗୋଟିଏ କବିତା ଅଛି । କୁକୁରର ବେଦନାହତ ଭକ୍ତି ପୀଡ଼ିତ କବିଙ୍କ ହୃଦୟକୁ ସ୍ପର୍ଶ କରିଥିଲା । ଯେତେବେଳେ ତାଙ୍କ ଦେହ ଆହୁରି ଖରାପ ହେଲା, ବିଛଣାରେ ସବୁବେଳେ ଶୋଇରହିବାକୁ ହେଲା । ଚୌକିରେ ବସି ପାରିଲେ ନାହିଁ । 'ଶୂନ୍ୟ ଚୌକି' ନାମକ ଏକ କବିତାରେ ସେ ଭାବ ପ୍ରକାଶ କରିଥିଲେ । ଅମୀୟ ଚକ୍ରବର୍ତ୍ତୀ ପରେ ତାର ଇଂରାଜୀ ଅନୁବାଦ କରିଥିଲେ । ସେ ଚୌକି ଥିଲା ତାଙ୍କର ଅତ୍ୟନ୍ତ ପ୍ରିୟ । ଷୋଳ ବର୍ଷ ପୂର୍ବେ ଏଇ ଚୌକିରେ ବସି ଯେତେବେଳେ ସେ ତାଙ୍କର ଅନେକ ଆନନ୍ଦମୟ ମୂହୂର୍ତ୍ତ ବିତାଉଥିଲେ । ଖାଲିଟାରେ ବସି ଚାହିଁଥିଲେ ବି ସୃଷ୍ଟିଶୀଳତାରେ ତାଙ୍କ ହୃଦୟ ପୂରି ଉଠୁଥିଲା । ସାନ୍‌ଇସିଡ୍ରୋରେ ସେ ଥିଲେ ଭିକ୍‌ଟୋରିଆ ଓକାମ୍ପୋଙ୍କ ଅତିଥି । ତାଙ୍କର ଆତିଥ୍ୟ କାରିଣୀ ଚୌକିରେ କବିଙ୍କୁ ଏପରି ଭାବରେ ଆରାମ କରିବା ଦେଖି ସେ ଫେରିବା ବେଳେ ଜାହାଜରେ ସେଇ ଚୌକିଟିକୁ ତାଙ୍କ ସାଙ୍ଗରେ

ଦେଇଥିଲେ । ସେଇଦିନଠାରୁ ଶାନ୍ତିନିକେତନରେ ଏଇ ଚୌକିଟି ଥିଲା କବିଙ୍କର ବସିବାର ପ୍ରିୟ ସ୍ଥାନ । ଏବେ ଏଇଟି ସଂଗ୍ରାହାଳୟରେ ସଂରକ୍ଷିତ ହୋଇଛି ।

ରୌଦ୍ରତାପ ଝାଁ ଝାଁ କରେ
ଜନହୀନ ବେଳ ଦିପହରେ ।
ଶୂନ୍ୟ ଚୌକିଆଡେ ଚାହିଁ
ସେଠାରେ ସାନ୍ତ୍ୱନାର ଲେଶ ମାତ୍ର ନାହିଁ ।
ବୁକେଭରା ତା'ର
ହତାଶାର ଭାଷା ଯେହ୍ନେ କରେ ହାହାକାର ।
କରୁଣାରେ ଭରା ସେଇ ଶୂନ୍ୟତାର ବାଣୀ
ମର୍ମ ତାର ହୁଏ ନାହିଁ ଜାଣି ।

ଶେଷ ପର୍ଯ୍ୟନ୍ତ ତାଙ୍କର ସ୍ନେହଶୀଳତା ଓ ପରିହାସପ୍ରବଣତା ଅତୁଟ ଥିଲା । ତାଙ୍କୁ ଯେଉଁମାନେ ପାଖରେ ଥାଇ ସେବା କରୁଥିଲେ ସେମାନଙ୍କ ସହ କବି ଯେପରି ରସିକତାପୂର୍ଣ୍ଣ କଥା କହୁଥିଲେ ତାକୁ ହିଁ ସେମାନେ ଏବେ ଅମୂଲ୍ୟ ଦାନ ରୂପେ ଗ୍ରହଣ କରିଥିଲେ । ତାଙ୍କୁ ସବୁବେଳେ ଗ୍ଲାକ୍‌ସୋ ଦିଆହେଉଥିଲା, ତେଣୁ ସେ ନିଜକୁ କହୁଥିଲେ 'ଗ୍ଲାକ୍‌ସୋ ଦେବୀ' । ତାଙ୍କୁ ଅଳ୍ପ ଅଳ୍ପ ଖାଇବାକୁ ଦିଆ ହେଉଥିଲା । ସେ ନିଜକୁ କହୁଥିଲେ ମୁଁ ତ ଦୁଇମାସର ପିଲା । ଗ୍ଲାକ୍‌ସୋ ଗ୍ଲାସ୍ ଧରି ଆସିଲାବେଳେ ଲୋକଟିକୁ ପଚାରୁଥିଲେ ଆଜି ମୋର କେତେମାସ ହେଲା ? ତାଙ୍କର ପ୍ରିୟ ବଂଧୁ ଥିଲେ ଆଖ ପାଖର ଗଛ ସବୁ । ଯେତେବେଳେ ସେ ପିଲାଥିଲେ ତାଙ୍କର ରଖୁଆଳ ଓ ଚାକରମାନେ ଚକ୍‌ରେ ମଣ୍ଡଳୀ କାଟିତାଙ୍କୁ ବନ୍ଦୀ କରି ରଖୁଥିଲେ ସେତେବେଳେ ସେ ଗୋଟେ ପୁରୁଣା ବରଗଛକୁ ଚାହିଁ ଚାହିଁ ଆନନ୍ଦ ପାଉଥିଲେ । ତାଙ୍କ ଜୀବନର ଶେଷମାସ ଯାକ ସେ ଚଳତ୍‌ଶକ୍ତିରହିତ ହୋଇ ଶାନ୍ତିନିକେତନର ତାଙ୍କ କୁଟୀରର ବାହାରେ ଥିବା ଶିମୁଳି ଗଛର ରୂପକୁ ଚାହିଁ ରହୁଥିଲେ । ଗ୍ରୀଷ୍ମର ଦହନତାପରେ ଆଶ୍ରମର ଗଛମାନଙ୍କ କଥା ଭାବି ତାଙ୍କୁ ଦୁଃଖ ଲାଗୁଥିଲା । ଯେ କୌଣସି ମତେ ପାଣି ଦେଇ ଗଛକୁ ବଂଚାଇବାକୁ ସେ କହୁଥିଲେ କେହି ପରିଦର୍ଶକ ଆସିଲେ ସେ ପଚାରି ଦେଉଥିଲେ ତମ ବଗିଚାରେ ମହୁଲ ଗଛ ଅଛି କି ? ଯଦି ନଥାଏ ଗୋଟିଏ ରୋପଣ କର । ଦେଖିବ ଫୁଲ ଧରିଲେ କେତେ ସାନ୍ତାଳ ଝିଅ ଫୁଲ ତୋଳିବାକୁ ଆସି ରୁଣ୍ଡ ହେବେ । ଏଇ ଫୁଲରେ ସେମାନେ ତାଙ୍କର ପ୍ରିୟ ମହୁଲି ମଦ ତିଆରି କରିଥାନ୍ତି । ରବୀନ୍ଦ୍ରନାଥଙ୍କ ଜରୁଆ ପାଟିକୁ ଯେମିତି ରୁଚିବ ସେମିତି ନାନା ଖାଦ୍ୟ ତାଙ୍କୁ ଦିଆଯାଉଥିଲା । ସେ ଟିକି ପିଲାଙ୍କ ଭଳି ସେଥିରୁ ଟିକିଏ ଚାଖି ରଖି ଦେଉଥିଲେ । ଥରେ ତାଙ୍କ ପାଖକୁ ଜାମୁକୋଳି ନେଥାଟିଏ ଅଣାଗଲା । ତାକୁ ନିଜ ବିଛଣା ପାଖରେ ରଖି କିଏ ଆସିଲେ କହନ୍ତି, ''ଗୋଟିଏ ନେଇ ଚାଖ, ଏ ଜାମୁ କେତେ ସୁଆଦ, 'ଶ୍ୟାମଳୀ' ପଛରେ ଥିବା ମୋ ନିଜ ଗଛର ଏ ଜାମୁ ।''

ମେ ଆଠ ତାରିଖ ତାଙ୍କ ଜନ୍ମଦିନର ତିନି ଦିନ ପୂର୍ବରୁ ସେ ଗୋଟିଏ ସଙ୍ଗୀତ ମୁହେଁ ମୁହେଁ ଡ଼ାକିଲେ । ରବୀନ୍ଦ୍ରନାଥ ସଙ୍ଗୀତଟିର ସ୍ୱରଲିପି ଠିକ୍ ଜାଣି ନଥିଲେ । କିନ୍ତୁ ଯେତେବେଳେ ତାଙ୍କ ମନକୁ ଭାବଟିଏ ଆସୁଥିଲା ସେ ଗୁଣୁ ଗୁଣୁ ହୋଇ ଗାଉଥିଲେ । ଆଉ ଜଣେ କିଏ ତାକୁ ଶୁଣି ତା'ର ସ୍ୱର ଲିପି ତିଆରି କରୁଥିଲେ । ଏଇ ଶେଷ ସଙ୍ଗୀତଟି ତାଙ୍କର ଶେଷ ଜନ୍ମ ଦିନରେ ପ୍ରଥମେ ଗାନ କରାହୋଇଥିଲା । ଏବେ ବି ତାଙ୍କର ପ୍ରତ୍ୟେକ ଜନ୍ମ ଦିନରେ ଏଇ ଗୀତଟି ଗାନ

କରାଯାଏ । ଚିର ନବୀନଙ୍କୁ ନୂଆ ଭାବରେ ପ୍ରକାଶିତ ହେବା ପାଇଁ ସେ ଆହ୍ୱାନ କରିଛନ୍ତି ।

ହେ ନୂତନ
ଦେଖାଦେଉ ଆଉଥରେ ଜନ୍ମର ପ୍ରଥମ ଶୁଭକ୍ଷଣ
ତୁମର ପ୍ରକାଶ ହେଉ କୁହେଳିକା କରି ଉଦ୍‌ଘାଟନ
ସୂର୍ଯ୍ୟଙ୍କ ସମାନ
ରିକ୍ତତାର ବକ୍ଷଭେଦି ଆପଣାକୁ କରୁ ଉନ୍ମୋଚନ
ବ୍ୟକ୍ତ ହେଉ ଜୀବନର ଜୟ
ବ୍ୟକ୍ତ ହେଉ ତୁମଠାରେ ଅସୀମର
ସେ ଚିର ବିସ୍ମୟ ।

ମେ' ଛଅ ତାରିଖ ସକାଳେ ଏଇ ଗୀତଟି କବି ମୁଖେ ମୁଖେ ଡାକି ଦେଇଥିଲେ । ଏହାର ଆବେଦନ ଗଭୀର ମର୍ମସ୍ପର୍ଶୀ । ଆଗକୁ ଥିବା ଜନ୍ମ ଦିନରେ ଆନନ୍ଦ ଉତ୍ସବ ମୁଖରେ କବି ନିଜେ ଅନୁଭବ କରିଛନ୍ତି ଯେମିତିକି ସେ ଥାଇକି ବି ନାହାନ୍ତି । ତାଙ୍କ ଥାଳି ଶୂନ୍ୟ । ଯାହାକିଛି ତାଙ୍କର ଥିଲା ସେ ଦେଇ ସାରିଛନ୍ତି । ସେ ସଂପୂର୍ଣ୍ଣ ନିଃସ୍ୱ । ସେ ଚାହାନ୍ତି ମଣିଷର ଉଷ୍ମତାର ଶେଷ ସ୍ପର୍ଶ । ଆଉ ତାହାହିଁ ହେବ ତାଙ୍କ ବିଦାୟ ମୁହୂର୍ତ୍ତର ଉପହାର ।

କିଛି ସ୍ନେହ, କିଛି କ୍ଷମା-
ତେବେ ତାହା ସଙ୍ଗେ ଘେନି ଯାଏଁ
ସେପାଖର ନାଆରେ ମୁଁ ଯିବି ଯେବେ
ଭାଷାହୀନ ଶେଷଉତ୍ସବରେ ।

ସାଧାରଣତଃ କବିମାନଙ୍କ ଠାରେ ଯାହା ଦେଖାଯାଇଥାଏ ସେଇଭଳି ମୁହୂର୍ତ୍ତକୁ ମୁହୂର୍ତ୍ତ ତାହାର ପରିବର୍ତ୍ତନ ଘଟୁଥାଏ । ଆଉ ଜୀବନର ଏଇ ଶେଷ ମାସରେ ଯେମିତି ଜୀବନ ଅଧିକରୁ ଅଧିକ ଦୁର୍ବିସହ ହୋଇ ପଡୁଥିଲା । ତାଙ୍କ ମନୋଭଙ୍ଗୀର ପରିବର୍ତ୍ତନ ଆହୁରି ଦ୍ରୁତ ହୋଇଥିଲା । ଆନନ୍ଦରୁ ନିରାନନ୍ଦ, ବିଶ୍ୱାସରୁ ସଂଶୟ, ସ୍ନେହ ପ୍ରବଣତାରୁ ନିର୍ଲିପ୍ତତା ଆଦି ଭାବ ତାଙ୍କ ମନରେ ଦେଖାଯାଉଥିଲା । ଯେତେବେଳେ ଯେଉଁ ଭାବ ତାଙ୍କ ମନରେ ଆସୁଥିଲା, ସେ ଗଭୀର ଭାବରେ ଅନୁଭବ କରୁଥିଲେ । ପ୍ରକାଶ କରୁଥିଲେ ସତତାରେ । ଏଥିରେ ଅଳଙ୍କାର ବା ଅନାବଶ୍ୟକ ଉପାଦାନ ରହୁନଥିଲା । ସେତେବେଳେ ସେ ଅସ୍ଥିରତା ଓ ଯନ୍ତ୍ରଣାକାତର ଅବସ୍ଥାରେ ଥିଲେ ।

"ଚାରିଆଡ଼େ ଯେତେବେଳେ ଧୂସର ଗୋଧୂଳି
ମନ କହୁଚି ମୁଁ ମୋ ଘରକୁ ଯିବି
କିନ୍ତୁ ସେ ଘର କେଉଁଠି ମୁଁ ଜାଣେନି"

ପୁଣି ଯେତେବେଳେ ତାଙ୍କ ଅନ୍ତର ବିଶ୍ୱାସରେ ପରିପୂର୍ଣ୍ଣ ହୋଇ ଉଠୁଥିଲା-

ରାହୁ ଭଳି ମୃତ୍ୟୁ ଜୀବନରେ ଛାୟା କରଇ ବିସ୍ତାର
କିନ୍ତୁ ଜୀବନର ସ୍ୱର୍ଗୀୟ ଅମୃତ ପାରେନା ସେ ଗ୍ରାସୀ
ଜଡ଼ର କେବଳେ, ଏହା ମୁଁ ଜାଣଇ ନିଶ୍ଚିତ ।"

ବିଶ୍ୱାସ ତାଙ୍କ ପ୍ରାଣରେ ଶକ୍ତି ସଂଚାର କରୁଥିଲା । ଏହାହିଁ ଥିଲା ତାଙ୍କ ହାତର ଯଷ୍ଟି ଓ ଅନ୍ଧାର ରାତିର ପଥ ଦେଖାଇବା ପାଇଁ ଦିଗହରାର ଆଲୋକ ସଂକେତ । ଏହା ଆତ୍ମ ପ୍ରବଞ୍ଚନା

ନଥିଲା । ପୃଥିବୀର ଦୁଃଖଦୁର୍ଦ୍ଦଶାର ବାସ୍ତବ ଚିତ୍ର ପ୍ରତି ସେ ଆଖି ବୁଜି ଦେଉନଥିଲେ । ବ୍ୟକ୍ତି ଜୀବନରେ ଯାହା ଘଟି ଯାଉଥିଲା ତାକୁ ଭାଗ୍ୟ ବା ପ୍ରକୃତିର ଦୁହାଇ ଦେଇ ସେଥିପ୍ରତି ଉଦାସୀନ ରହୁନଥିଲେ । ମିଛ ଆଶାରେ ସେ ନିଜକୁ ପ୍ରବଞ୍ଚିତ କରୁନଥିଲେ । ତୀବ୍ର ନୈରାଶ୍ୟ ଅଥବା ଆତ୍ମଦୈନ୍ୟରେ ଚାଳିତ ହୋଇ ସତ୍ୟର ଭୟଙ୍କର ରୂପକୁ ଅସ୍ୱୀକାର କରୁନଥିଲେ । 'ରୋଗ ଶଯ୍ୟା'ର ଗୋଟିଏ କବିତାରେ ଭାଗ୍ୟକୁ ଆଦିମ ସନ୍ନ୍ୟାସିନୀ ରୂପେ ବର୍ଣ୍ଣନନା କରିଛନ୍ତି ।

ହେ ପ୍ରାଚୀନ ତମସ୍ୱିନୀ
ଆଜି ମୁହିଁ ରୋଗର ବିମିଶ୍ର ତମିସ୍ରାରେ
ମନେ ମନେ ଦେଖୁଅଛି
କାଳର ପ୍ରଥମ କଳ୍ପରେ ନିରନ୍ତର ଅନ୍ଧକାରେ
ବସିଛ ସୃଷ୍ଟି ଧ୍ୟାନରେ
କି ଭୀଷଣ ଏକା ହୋଇ
ମୂକ ହୋଇ ଅନ୍ଧହୋଇ ।

ସୃଷ୍ଟିର ରହସ୍ୟ ବିଷୟରେ ସେ ଭାବିଚାଲିଲେ । ପକ୍ଷ୍ମପାତ ନକରି ସେ ଚାହିଁ ରହିଲେ । ଆଖି ଖୋଲି ଦେଖିଲେ ଓ କହି ଉଠିଲେ ''ରୂପ ନାରାୟଣର ତୀରରେ''- ରୂପ ନାରାୟଣ ବଙ୍ଗର ଏକ ନଦୀର ନାମ- ଏହାର ଅର୍ଥ ହେଉଛି ଈଶ୍ୱରଙ୍କର ଦୃଶ୍ୟମାନ ପ୍ରକାଶ ରୂପ ପୃଥିବୀ ।

ଜାଣିଲି ମୁଁ, ଏ ଜଗତ ସ୍ୱପ୍ନ ନୁହେଁ
ରକ୍ତର ଅକ୍ଷରରେ ଦେଖିଲି ମୁଁ ଆପଣାର ରୂପ
ଚିହ୍ନିଲି ନିଜକୁ ଆଘାତେ ଆଘାତେ
ବେଦନାରେ ବେଦନାରେ ।
ସତ୍ୟ ଯେ କଠିନ, କଠିନକୁ ଭଲ ମୁଁ ପାଇଲି
ତାହା କେବେ କରେନା ବଂଚନା

ଏମିତି ମେ ଓ ଜୁନମାସ ବିତିଲା । ଗ୍ରୀଷ୍ମର ପ୍ରବଳ ଆତପ ବାହାର ପୃଥିବୀକୁ ଶୋଷି ଚାଲିଥିଲା । ଆଉ ଉତ୍ତାପ ଘର ଭିତରେ କବିଙ୍କ ଦେହରେ ଅବଶିଷ୍ଟ ଶକ୍ତିକୁ ଚିପୁଡ଼ି ନେଉଥିଲା ।

ରୋଗଶଯ୍ୟାରେ
ଜୀବନର ଗତି ଏବେ ହୋଇଛି ମନ୍ଥର
ତୃଣ ଓ ଶିଉଳି ଭଳି ରୂପଏବେ
କିବା ମୂଲ୍ୟତା'ର.....

ତାଙ୍କ ଶେଷ ଦିନରେ ଯେଉଁ କବିତାଟି ସେ ଡ଼ାକି ଦେଇଥିଲେ ତାହା ଥିଲା ତାଙ୍କର ନିଜସ୍ୱ ମୂଲ୍ୟାୟନ । କିନ୍ତୁ ବଙ୍ଗଳା ସାହିତ୍ୟର ଯେଉଁ ସମୀକ୍ଷକମାନେ ଚୟନଶୀଳ, ପ୍ରବୀଣ ଓ ସୂକ୍ଷ୍ମଦର୍ଶୀ ସେମାନେ ବିଶ୍ୱାସ କରନ୍ତି ଏଇ ଶେଷ ଦିନର କବିତା ଗୁଡ଼ିକରେ ସଂକ୍ଷିପ୍ତ, ଭାବମୟ ଓ ସନ୍ନଦ୍ଧ ଏକ ଅଦ୍ଭୁତ ସୌନ୍ଦର୍ଯ୍ୟ ପ୍ରକାଶିତ ହୋଇଥିଲା, ଯାହା ତାଙ୍କର ପୂର୍ବ ଦିନର କବିତାରେ ଦେଖିବାକୁ ମିଳେ ନାହିଁ । ଏଥିରୁ ଅନେକ ଥିଲା ଅପୂର୍ବ । ମୃତ୍ୟୁ ପୂର୍ବରୁ ଲେଖା ତାଙ୍କର ଏଇ କବିତା ଗୁଡ଼ିକ 'ଶେଷ ଲେଖା' ଶୀର୍ଷକରେ କବିଙ୍କ ଦେହାବସାନ ପରେ ପ୍ରକାଶିତ ହୋଇଥିଲା ।

ଦିନକୁ ଦିନ ତାଙ୍କର ଦେହର ଯନ୍ତ୍ରଣା ବଢ଼ିଲା । ସନ୍ଧ୍ୟାପରେ ଜ୍ୱର ଆସୁଥିଲା । ରାତିରେ

ସେ ବଡ଼ କଷ୍ଟ ପାଉଥିଲେ । କଲିକତାଠାରୁ ଯେଉଁ ଡ଼ାକ୍ତରମାନେ ଆସୁଥିଲେ ଗୋଟିଏ ବଡ଼ଧରଣର ଅପରେସନ୍ ପାଇଁ ତାଙ୍କୁ କଲିକତା ନେବା ପାଇଁ କହିଲେ । ଏଇ କଥା ଶୁଣି ସେ ବିଚ୍ଳିତ ହେଲେ । କାରଣ ତାଙ୍କର ଏଲୋପାଥିକ୍ ଚିକିତ୍ସା ଉପରେ ଖୁବ୍ କମ୍ ବିଶ୍ୱାସ ଥିଲା । ବୈଜ୍ଞାନିକ ଚିକିତ୍ସା ନାମରେ ତାଙ୍କ ଦେହକୁ କାଟିକୁଟି ଖଣ୍ଡ ବିଖଣ୍ଡିତ କରିବାକୁ ସେ ଆଦୌ ପସନ୍ଦ କରୁନଥିଲେ । କିନ୍ତୁ ସେ ଥିଲେ ଅସହାୟ ଏବଂ ଏମିତିକି ଗାନ୍ଧିଙ୍କୁ ବି ଥରେ ଶଲ୍ୟ ଚିକିତ୍ସା ପାଇଁ ରାଜି ହେବାକୁ ହୋଇଥିଲା । କବି ପ୍ରତିବାଦ କରି କହୁଥିଲେ ''ମତେ କାହିଁକି ଶାନ୍ତିରେ ମରିବାକୁ ଦେବ ନାହିଁ ? ମୁଁ କ'ଣ ଅନେକ ଦିନ ବଂଚି ନାହିଁ ?'' ସେ ମନେ ମନେ ଜାଣିଥିଲେ ଯେ ତାଙ୍କର ଶେଷ ଦିନ ଆସନ୍ନ, ''ପକ୍ଷୀ ଉଡ଼ିଯିବାର ଏ ସମୟ'', ଏ କଥା କବିତା ରେ ସେ କେବେଠାର ଲେଖି ସାରିଛନ୍ତି । ''କ୍ଷଣକୁ କ୍ଷଣ ମୁଁ ଅନୁଭବ କରୁଛି ବିଦାୟ ନେବାର ବେଳ ମୋର ଆସି ଗଲାଣି'' । କିନ୍ତୁ ତାଙ୍କ ଚତୁର୍ପାର୍ଶ୍ୱରେ ଥିବା ଲୋକେ ଅବିଚ୍ଳ ଥିଲେ । ଏମିତି ଏକ ମୂଲ୍ୟବାନ୍ ଜୀବନକୁ ରକ୍ଷା କରିବା ପାଇଁ କୌଣସି ସୁଯୋଗ ଛାଡ଼ିବାକୁ ସେମାନେ ରାଜି ନଥିଲେ । ତାଙ୍କର ପ୍ରିୟ ଓ ନିକଟଜନଙ୍କର ଏଇ ଅନୁରୋଧକୁ ଏଡ଼େଇ ଦେବା ତାଙ୍କ ପାଖରେ ସମ୍ଭବ ନଥିଲା । ନିଜ ଇଚ୍ଛା ବିରୁଦ୍ଧରେ ତାଙ୍କୁ ରାଜି ହେବାକୁ ପଡ଼ିଲା । ଶାନ୍ତିନିକେତନରେ ଶେଷ ନିଶ୍ୱାସ ତ୍ୟାଗ କରିବେ, ତାଙ୍କ ଚାରିପାଖେ ରହିଥିବେ ତାଙ୍କର ପ୍ରିୟଜନ, ଗଛଲତା ଓ ବିଦ୍ୟାଳୟର ପିଲାମାନେ ।

ଜୁଲାଇ ମାସ । ଆକାଶରେ ବର୍ଷୁକ ମେଘର ମେଳା । ସବୁ ଯେମିତି ତାଙ୍କୁ ସ୍ୱାଗତ କରୁଛି । ସେଇ ପୁରାତନ ଦିନର ଆନନ୍ଦଘନ ମୁହୂର୍ତ୍ତକୁ ସେ ଫେରି ପାଇଛନ୍ତି । ଯେଉଁ ଜାଗାକୁ ସେ ସବୁଠାରୁ ଭଲ ପାଉଥିଲେ, ଯେଉଁ ଗଛଲତା ତାଙ୍କ ନିଜ ଲାଳନରେ ବଢ଼ିଥିଲେ, ସେ ସବୁକୁ ଛାଡ଼ି ଯିବା ପାଇଁ ତାଙ୍କ ମନରେ ଅସୀମ ବେଦନା । ସେ ମନେ ମନେ କହୁଥିଲେ ''ବୋଧହୁଏ ଏଇ ଗଛ ଲତାକୁ ଆଉଥରେ ଜୀବନରେ ଦେଖି ପାରିବି ନାହିଁ ।''

25 ଜୁଲାଇ ଦିନ ତାଙ୍କୁ କଲିକତା ନିଆଗଲା । ଏଇଟା ଥିଲା ବିଧିର ନିର୍ଦ୍ଦେଶ । ହୁଏତ ଏହାହିଁ ଥିଲା ଠିକ୍, ଯେଉଁ ପୈତୃକ ଘରେ ସେ ଦିନେ ମାଟି ଛୁଇଁ ଥିଲେ ସେଇଠି ସେ ତାଙ୍କର ଶେଷଦିନ ବିତାଇବେ । କଲିକତାରେ ପହଞ୍ଚିବାର ଦୁଇଦିନ ପରେ ସେ ଗୋଟିଏ କବିତା ଡ଼ାକିଦେଇଥିଲେ । ଏଇ କବିତାର ସନ୍ନଦ୍ଧ, ବଳିଷ୍ଠ ଭାବରାଶି ଯେପରିକି ଋକ୍ ବେଦର ଶ୍ରେଷ୍ଠ ମନ୍ତ୍ର ଭଳି ।

ପ୍ରଥମ ଦିନର ସୂର୍ଯ୍ୟ ପ୍ରଶ୍ନ କରିଥିଲା
ସତ୍ତାର ନୂତନ ଆବିର୍ଭାବେ
କିଏ ତୁମେ
ମିଳିନି ଉତ୍ତର ।
ବର୍ଷ ବର୍ଷ କଟିଗଲା
ଦିବସର ଶେଷ ସୂର୍ଯ୍ୟ
ଶେଷ ପ୍ରଶ୍ନ ପଚାରିଲା ପଶ୍ଚିମ ସାଗର ତୀରେ
ନିସ୍ତବ୍ଧ ସନ୍ଧ୍ୟାରେ
କିଏ ତୁମେ ?
ପାଇନି ଉତ୍ତର ।

ଏଇ କବିତାର ଉଚାରଣ ଭିତରେ ସୁଉଚ୍ଚ ବୌଦ୍ଧିକ ନିର୍ଲିପ୍ତତା କ'ଣ ରବୀନ୍ଦ୍ରମାନସର ସେଇ ଇଙ୍ଗିତ ଦେଉଛି ଯେଉଁଠି କବି ବିଶ୍ୱାସ ଉପରେ ନୁହେଁ ଶଂସୟ ଉପରେ ଆସ୍ଥାବାଦୀ ? ଏହାର ଠିକ୍ ଉତ୍ତର ଦେବା କଠିନ । କିନ୍ତୁ ଏକଥା ସତ, ରବୀନ୍ଦ୍ର ଥିଲେ ସତ୍ୟର ପଥିକ, ଅଥବା ତାଙ୍କ ଭାବନାରେ ବିଶ୍ୱାସ ଓ ଶଂସୟ-ଉଭୟର ସ୍ଥାନ ଥିଲା ସମାନ ଭାବେ । କବି ଯାହା ଉଚାରଣ କରିଥିଲେ ତାହାଥିଲା ଏକାନ୍ତ ସତ୍ୟ । ଜୀବନର ପରମ ରହସ୍ୟ ଅଥବା ବିଶ୍ୱ ବ୍ରହ୍ମଣ୍ଡ ବିଷୟରେ ସଂପୂର୍ଣ୍ଣ ଜ୍ଞାନ ତାଙ୍କର ନଥିଲା । ଏହି ଦେହ ସତ୍ତାର ବାହାରେ ଯେଉଁ ରାଜ୍ୟ ତାହା ସେ ଜାଣି ନଥିଲେ । ଏହାତ କେହି ଏପର୍ଯ୍ୟନ୍ତ ଜାଣି ନାହାଁନ୍ତି । ତେଣୁ ସେ ମୁକ୍ତ ଭାବରେ କହିଲେ- କୌଣସି ଉତ୍ତର ମୁଁ ପାଇନି । ଏଥିରେ କବିଙ୍କର ନାସ୍ତିବଚନ ନୁହେଁ ବରଂ ସତ୍ୟ ନିଷ୍ଠାହିଁ ପ୍ରକାଶ ପାଇଛି । ସେ ଜାଣିଥିଲେ ସତ୍ୟ ହିଁ କଠୋର । ସତ୍ୟହିଁ ସାରବସ୍ତୁ । ସାଧାରଣତଃ ଯେଉଁ ଅର୍ଥରେ ଆମେ ବୁଝୁ- ସେଇ ଅର୍ଥରେ ସେ ବସ୍ତୁବାଦୀ ନଥିଲେ କି ନୈରାଜ୍ୟବାଦୀ ନଥିଲେ । ସେ ଜାଣିଥିଲେ ମୃତ୍ୟୁଠାରୁ ଜୀବନ ବଡ଼ । ଜୀବନଠାରୁ ମନୁଷ୍ୟର ଆତ୍ମା ବଡ଼ । ଜୀବନ, ପ୍ରକୃତି ଓ ଜଗତ- ଏକତ୍ର ଗ୍ରଥିତ ଓ ଏକ ସାର୍ବଜନୀନ ନିୟମରେ ପରିଚାଳିତ । ଏହା ଯାନ୍ତ୍ରିକ ନୁହେଁ ଆଧ୍ୟାତ୍ମିକ । ତେଣୁ ଏସବୁର ଅବବୋଧ ଆଂଶିକ ଭାବରେ ହେଲେ ବି କେବଳ ହୃଦୟ ଦ୍ୱାରା ସମ୍ଭବ ମସ୍ତିଷ୍କ ଦ୍ୱାରା ନୁହେଁ, ଶ୍ରଦ୍ଧା ଦ୍ୱାରା ସମ୍ଭବ ଯୁକ୍ତି ଦ୍ୱାରା ନୁହେଁ ।

ରବୀନ୍ଦ୍ରନାଥ ମୂଳତଃ ଜଣେ ବିଶ୍ୱାସବାଦୀ ଥିଲେ । କିନ୍ତୁ ଏଇ ବିଶ୍ୱାସ ମୂଳରେ ଥିଲା ସାହସ ଓ ସତ୍ୟ । ଏହା ଦୁଃଖର ଦହନ ଭିତରେ ପ୍ରମାଣିତ ହୋଇଥିଲା । କୃତ୍ରିମ ଧାରକରା ବିଶ୍ୱାସ ଉପରେ ଏହା ପର୍ଯ୍ୟବସିତ ନଥିଲା । ଅପରନ୍ତୁ ଦୁଃଖର ଅନୁଭବ ଭିତରେ ଏହାକୁ ସେ ଉପଲବ୍ଧି କରିଥିଲେ । ତାଙ୍କର ତରୁଣ ବୟସରୁ ଅବଶ୍ୟ ଉତ୍ତରାଧିକାରୀ ସୂତ୍ରରେ ସେ ଅନେକ ବିଶ୍ୱାସର ବଶବର୍ତ୍ତୀ ହୋଇଥିଲେ କିନ୍ତୁ ତାଙ୍କର ବୟସ ବଢ଼ିବା ସଙ୍ଗେ ସଙ୍ଗେ ଯାହା ଅବାସ୍ତବ ବୋଲି ତାଙ୍କୁ ବୋଧ ହୋଇଥିଲା, ତାହାକୁ ସେ ପରିହାର କରିଥିଲେ । ଏପରି ଭାବରେ ଖାଦସବୁ ପୋଡ଼ିଯାଇ ଯାହା ଖାଣ୍ଟି ତାହା ତାଙ୍କ ଭିତରେ ଶେଷ ପର୍ଯ୍ୟନ୍ତ ଜାରିତ ହୋଇରହିଥିଲା । ତାଙ୍କର ଶେଷ ଦୁଇଟି କବିତା, ଯାହା ମୃତ୍ୟୁ ଶଯ୍ୟାରେ ଶୋଇ ଶୋଇ ଡ଼ାକି ଦେଇଥିଲେ ସେଥିରେ ତାଙ୍କର ବିଶ୍ୱାସର କୋଟୀ ଗମ୍ଭୀର, ଉଜ୍ଜ୍ୱଳ, କରୁଣ ଓ ସମୁନ୍ନତ ଭାବରେ ପ୍ରକାଶିତ । ପ୍ରଥମଟି 19ଜୁଲାଇରେ ଲେଖା କଲିକତାରେ ପହଞ୍ଚିବାର ଚାରିଦିନ ପରେ ।

ଦୁଃଖର ଅନ୍ଧାର ରାତି ବାରେ ବାରେ
ଆସିଛି ମୋହର ଦ୍ୱାରେ;
ଏକମାତ୍ର ଅସ୍ତ୍ରତା'ର ଦେଖିଥିଲି
କଷ୍ଟର ବିକୃତ ରୂପ ତ୍ରାସର ବିକଟ ଭଙ୍ଗୀ
ଅନ୍ଧକାରେ ଛଳନାର ଭୂମିକା ତାହାର ।
ଯେତେଥର ଭୟର ମୁଖାକୁ ତା'ର କରିଛି ବିଶ୍ୱାସ
ସେତେଥର ହୋଇଛି ଅନର୍ଥ ପରାଜୟ
ଏଇ ହାର୍‌ଜିତ୍ ଖେଳ
ଜୀବନର ମିଥ୍ୟା ଏ କୁହୁକ
ଶିଶୁ ବେଳଠାରୁ ବିଜଡ଼ିତ ପଦେପଦେ ଏଇ ବିଭୀଷିକା

ଦୁଃଖର ପରିହାସେ ଭରା
ଭୟର ବିଚିତ୍ର ଚକ୍ରବିତ୍ର
ମୃତ୍ୟୁର ନିପୁଣ ଶିଳ୍ପ ବିକୀର୍ଣ୍ଣ ଅନ୍ଧାରେ ।

ଏହାର ପରଦିନ ତାଙ୍କର ଶଲ୍ୟ ଚିକିତ୍ସା କରାଯାଇଥିଲା । ସେ ଦିନ ସକାଳେ ଅପରେସନ୍ ଟେବୁଲକୁ ଯିବା ପୂର୍ବରୁ ସେ ତାଙ୍କର ଶେଷ କବିତାଟି ଡ଼ାକି ଦେଇଥିଲେ । ଏହା ଥିଲା ସରସ୍ୱତୀଙ୍କ ଠାରେ ତାଙ୍କର ଶେଷ ନିବେଦନ । ଏଥିରେ ସେ ତାଙ୍କର ପରମ ପ୍ରିୟ ଦେବୀଙ୍କୁ ହୃଦୟର ଶେଷ କଥା କହିଯାଇଛନ୍ତି ।

ତୁମର ସୃଷ୍ଟିର ପଥ ରଖିଛି ଆକୀର୍ଣ୍ଣ କରି
ବିଚିତ୍ର ଛଳନା ଜାଲରେ
ହେ ଛଳନାମୟୀ ।
ମିଥ୍ୟା ବିଶ୍ୱାସର ଫାନ୍ଦ ପକାଇଛ ନିପୁଣ ହାତରେ
ସରଳ ଜୀବନରେ ।
ଏଇ ପ୍ରବଞ୍ଚନା ଦେଇ ମହତ୍ତ୍ୱକୁ କରିଛ ଚହ୍ନିତ,
ତାହା ପାଇଁ ରଖିନ ଗୋପନ ରାତ୍ରି ।
ତୁମର ଜ୍ୟୋତିଷ୍କ ତାକୁ ଯେ ପଥ ଦେଖାଏ
ସେ ଯେ ତା'ର ଅନ୍ତରର ପଥ
ସେ ଯେ ଚିର ସ୍ୱଚ୍ଛ,
ସହଜ ବିଶ୍ୱାସେ ସେ ଯେ କରେ ତାକୁ ଚିର ସମୁଜ୍ଜ୍ୱଳ ।
ବାହାରେ କୁଟିଳ ହେଉ ଅନ୍ତରେ ସେ ଋଜୁ
ଏଇ ସବୁ ତାହାର ଗୌରବ
ଲୋକେ ତାକୁ ବୋଲେ ବିଡ଼ମ୍ବିତ ।
ସତ୍ୟକୁ ସେ ପାଏ
ଆପଣା ଆଲୋକେ ଧୌତ ଅନ୍ତରେ ଅନ୍ତରେ,
କିଛି ହିଁ ପାରେନା ତାକୁ ପ୍ରବଞ୍ଚିତ କରି
ଶେଷ ପୁରସ୍କାର ନେଇ ଯାଏ ସେ ଯେ
ଆପଣା ଭଣ୍ଡାରେ ।
ଅନାୟାସେ ଯିଏ ଛଳନା ପାରିଛି ସହି
ସେ ହିଁ ପାଏ ତୁମରି ହାତରୁ
ଶାନ୍ତିର ଅକ୍ଷୟ ଅଧିକାର ।

ସାଧାରଣତଃ ସେ ଯାହା ଡ଼ାକି ଦେଉଥିଲେ ତାକୁ ଥରେ ପଢ଼ି ସଂଶୋଧନ କରୁଥିଲେ । ପୂନର୍ଲିଖନ କରାଉଥିଲେ । କିନ୍ତୁ ଏଇ କବିତାଟି କ୍ଷେତ୍ରରେ ତାହା କରିବାର ସୁଯୋଗ ନଥିଲା । ଅପରେସନ୍ ପରେ ତାଙ୍କ ସ୍ୱାସ୍ଥ୍ୟର ଆଉ ଉନ୍ନତି ନହୋଇ ବରଂ ଅବନତି ଘଟିଲା । ଧୀରେ ଧୀରେ ସେ ଅଚେତନ ହୋଇପଡ଼ିଲେ । ଆଉ ଚେତନା ଫେରିଲା ନାହିଁ । ଅଗଷ୍ଟ 7ତାରିଖ ଦିନ ଅଧହ୍ନର 10 ମିନିଟ୍ ପୂବର୍ବରୁ ଅଶୀବର୍ଷ ପୂର୍ବେ ଯେଉଁଠି ଯେଉଁ ତିଥିର ଠିକ୍ ତିନିମାସ ପୂର୍ବରୁ ଆଖି

ଖୋଲିଥିଲେ ସେଇଠି ସେ ଶେଷ ନିଃଶ୍ୱାସ ତ୍ୟାଗ କଲେ । ସେଦିନ ଥିଲା ଶ୍ରାବଣ ପୂର୍ଣ୍ଣିମା । ସେଇ ବର୍ଷୁକ ଶ୍ରାବଣ ଯାହାର ଜୟଗାନ ଅଜସ୍ର ସଙ୍ଗୀତ ଓ କବିତାରେ ସେ କରିଥିଲେ । ବହୁଦିନ ଆଗରୁ ତାଙ୍କର ମୃତ୍ୟୁ ପରେ ଗାଇବା ପାଇଁ ଗୋଟିଏ କବିତା ସେ ରଚନା କରିଥିଲେ । ସେଇ କବିତାଟି ତାଙ୍କର ମୃତ୍ୟୁପରେ ଗାନ କରାଯାଇଥିଲା । ଏବେ ବି ତାଙ୍କର ପ୍ରତ୍ୟେକ ଶ୍ରାଦ୍ଧ ଦିନରେ ଏଇ କବିତାଟି ଗାନ କରାଯାଇଥାଏ ।

ହେ ନାଉରୀ !
ତୁମେ ମୋର ଚିର ସାଥୀ
ସମ୍ମୁଖରେ ଶାନ୍ତି ପାରାବାର
ଏବେ ବାହିଚାଲ ତରୀ ।

ଏମିତି କବି ତାଙ୍କର ଶେଷ ଯାତ୍ରାର ତରଣୀ ଖୋଲି ଦେଲେ । ତାହାର କର୍ଣ୍ଣଧାର ଥିଲେ ସବୁଠାରୁ ତାଙ୍କର ପ୍ରିୟତମ । ତାଙ୍କର ଲକ୍ଷ୍ୟଥିଲା ସେଇ ଅସୀମ ଅଜଣା ପଥ, ଯାହାକୁ ଜାଣିବାପାଇଁ ସେ ସାରା ଜୀବନ ସାଧନା କରିଥିଲେ । ତିରିଶ ବର୍ଷ ପୂର୍ବେ 'ଗୀତାଞ୍ଜଳି'ର ଗୋଟିଏ ସଙ୍ଗୀତରେ ସେ ଗାଇଥିଲେ:

ନାନା ସୁରର ଆକୁଳଧାରା, ମିଳାଇ ଦେଇ ଆତ୍ମହରା
ଗୋଟିଏ ନମସ୍କାରେ, ପ୍ରଭୁ! ଗୋଟିଏ ନମସ୍କାରେ,
ସମସ୍ତ ଗୀତ ସମାପ୍ତ ହେଉ ନୀରବପାରାବାରେ ।

ଏଇ କବିତାର ସ୍ୱର ଥିଲା ବହୁଧାରାରେ ବିଭକ୍ତ । କିନ୍ତୁ ଦୀର୍ଘ ତିରିଶ ବର୍ଷ ଭିତରେ ଯାହା ପରସ୍ପର ଠାରୁ ବିଛିନ୍ନ ହୋଇଯାଇଛି ବୋଲି ମନେହେଉଥିଲା, ପୁଣି ଗୋଟିଏ ସ୍ରୋତରେ ପରିଣତ ହୋଇଗଲା । ମୃତ୍ୟୁର କେତେ ମାସ ପୂର୍ବରୁ ଏଇ ପ୍ରାର୍ଥନା ପୁନରାବୃତ୍ତ ହୋଇଥିଲା :

ଆବୁ ମୋର ଖସିପଡୁ
କୁହେଳିକା ଦୂର ହୋଇ ସଚେତନ ଶୁଭ୍ରାଲୋକେ
ସତ୍ୟ ହେଉ ଚିର ସମୁଜ୍ଜ୍ୱଳ ।

ପୁଣି ଏକ ସଙ୍ଗୀତରେ:

ମାଟିର ବନ୍ଧନ ଏବେ ଛିନ୍ନ ହେଉ
ମହାଜଗତ ତାକୁ କୋଳ କରିନେଉ
ନିର୍ଭୟରେ ତା ହୃଦୟ ପୂରିଉଠୁ
ଜାଣୁ ସେ ଯେ ମହାଅଜଣାରେ ।

ମନେ ହେଲା ତାଙ୍କର ଦେହାବସାନ ସାଙ୍ଗରେ ଗୋଟିଏ ଯୁଗ ଶେଷ ହୋଇଗଲା । ଏହା ଥିଲା ଭାରତବର୍ଷରେ ପରାଧୀନତାର ଶେଷଯୁଗ, ତଥାପି ଭାରତ ଇତିହାସରେ ଏହି ଯୁଗ ସ୍ୱର୍ଣ୍ଣଯୁଗ ରୂପେ ସ୍ମରଣୀୟ ହୋଇ ରହିବ । କାରଣ ଭାରତର ଏକତା ଓ ସ୍ୱାଧୀନତାର ମୂଳଦୁଆ ଏଇ ଯୁଗରେ ପଡ଼ିଥିଲା, ଯେଉଁ ମୂଳଦୁଆ ଉପରେ ଭାରତର ବର୍ତ୍ତମାନ ଓ ଭବିଷ୍ୟତର ବଂଶଧରମାନେ ତାଙ୍କର ଇଚ୍ଛାନୁସାରେ ସୌଧ ତୋଳିପାରିବେ । ଏଇ ଯୁଗ ଜନ୍ମ ଦେଇଥିଲା ଭାରତର ଦୁଇ ଜଣ ମହାନ୍ ସନ୍ତାନଙ୍କୁ, ଜଣେ ନିଜ ଦେଶକୁ ସ୍ୱାଧୀନ ଦେଖି ଯାଇପାରିଲେ ନାହିଁ । ଆଉ ଜଣେ ଅକୃତଜ୍ଞ ଦେଶବାସୀଙ୍କ ଦ୍ୱାରା ମୃତ୍ୟୁ ବରଣ କରିଥିଲେ । ମୃତ୍ୟୁଂଜୟୀ ଉତ୍ତରାଧିକାରୀ ଯେଉଁମାନେ ଛାଡ଼ି ଯାଆନ୍ତି ସେମାନେ କଣ କେବେ ମରନ୍ତି ?

# ସହାୟକ ଗ୍ରନ୍ଥସୂଚୀ

ଏହା ରବୀନ୍ଦ୍ରନାଥ ଠାକୁରଙ୍କ ଜୀବନ ଓ କୃତି ସଂପର୍କରେ ଇଂରାଜୀ ଭାଷାରେ ଲିଖିତ ଗ୍ରନ୍ଥମାନଙ୍କର ଏକ ସଂକ୍ଷିପ୍ତ ଓ ସୁନିର୍ବାଚିତ ସୂଚୀ । ଏଥିରୁ କେତୋଟି ବହିର ଶେଷରେ (7, 8, 12 ଓ 14 ନମ୍ବର ବହି )ରବୀନ୍ଦ୍ରନାଥଙ୍କ ରଚିତ ଉଭୟ ବଙ୍ଗଳା ଓ ଇଂରାଜୀ ଗ୍ରନ୍ଥଗୁଡ଼ିକର ସଂପୂର୍ଣ୍ଣ ତାଲିକା ଦିଆଯାଇଛି । ପୁଣି ଗୋଟିକରେ ( 8 ନମ୍ବର ବହି ) କବିଙ୍କର ପ୍ରସ୍ତକଗୁଡ଼ିକର ବିଭିନ୍ନ ଭାରତୀୟ ଓ ବିଦେଶୀ ଭାଷାରେ ଅନୂଦିତ ସଂସ୍କରଣର ଓ କବିଙ୍କ ଉପରେ ରଚିତ ଗ୍ରନ୍ଥର ତାଲିକା ମଧ୍ୟ ଦିଆଯାଇଛି ।

ତେଣୁ ଏହି ବହିରେ ସେସବୁ ତାଲିକାର ପୁନରାବୃତ୍ତି କରିବା ପ୍ରୟୋଜନ ମନେ ହେଲା ନାହିଁ । ଆଗ୍ରହୀ ପାଠକମାନେ ନିମ୍ନୋକ୍ତ ବହିରୁ ସେସବୁ ପାଇପାରିବେ ।


1. *ରବୀନ୍ଦ୍ରନାଥ ଟାଗୋର : ଏ ବାଇଓଗ୍ରାଫିକାଲ ଷ୍ଟଡ଼ି,* ଅରନେଷ୍ଟ ରାଇସ୍, ମାକ୍‌ମିଲାନ୍ ଏଣ୍ଡ୍ କମ୍ପାନୀ, ଲଣ୍ଡନ, 1915 ।
2. *ରବୀନ୍ଦ୍ରନାଥ ଟାଗୋର : ଦି ମ୍ୟାନ ଆଣ୍ଡ ହିଜ୍ ପୋଏଟ୍ରି,* ବସନ୍ତ କୁମାର ରାୟ, ଡ଼ଡ୍ ମେଡ୍ ଆଣ୍ଡ କମ୍ପାନୀ, ନିଉୟର୍କ, 1916 ।
3. *ରବୀନ୍ଦ୍ରନାଥ ଟାଗୋର : ପୋଏଟ୍ ଆଣ୍ଡ ଡ୍ରାମାଟିଷ୍ଟ,* ଏଡ୍‌ୱାର୍ଡ ଥମ୍ପସନ୍, ଅକ୍‌ସଫୋର୍ଡ ୟୁନିଭରସିଟି ପ୍ରେସ୍, ଲଣ୍ଡନ, 1926, ଦ୍ୱିତୀୟ ସଂସ୍କରଣ, 1948 ।
4. *ରବୀନ୍ଦ୍ରନାଥ ଟାଗୋର : ହିଜ୍ ପରସ୍‌ନାଲିଟି ଆଣ୍ଡ ୱାର୍କ,* ଭି.ଲେସ୍‌ନୀ, ଜର୍ଜ ଆଲେନ୍ ଆଣ୍ଡ ଅନ୍‌ୱିନ୍, ଲଣ୍ଡନ, 1939 ।
5. *ଟାଗୋର : ଏ ଷ୍ଟଡ଼ି,* ଧୂର୍ଜଟୀ ପ୍ରସାଦ ମୁଖାର୍ଜୀ, ପଦ୍ମା ପବ୍ଲିକେସନସ୍, ବମ୍ବେ,1943 ।
6. *ଅନ୍ ଦି ଏଡ୍‌ଜେସ୍ ଅଫ୍ ଟାଇମ୍ : ରିକଲେକସନ୍‌ସ୍ ଅଫ୍ ହିଜ୍ ଫାଦର୍ ବାଇ ରବୀନ୍ଦ୍ରନାଥ ଟାଗୋର,* ଓରିଏଣ୍ଟ ଲଙ୍ଗମ୍ୟାନ୍, ବମ୍ବେ, 1958 ।
7. *ରବୀନ୍ଦ୍ରନାଥ ଟାଗୋର : 1861 - 1961, ଏ ସେଣ୍ଟେନାରୀ ଭଲ୍ୟୁମ୍,* ସାହିତ୍ୟ ଏକାଡ଼େମୀ, ନୂଆଦିଲ୍ଲୀ, 1961 ।
8. *ଟାଗୋର ସେଣ୍ଟେନାରୀ ଏକ୍‌ଜିବିସନ୍,* 1961, ଲଳିତକଳା ଏକାଡ଼େମୀ, ନୂଆଦିଲ୍ଲୀ, 1961 ।
9. *ଏ ଟାଗୋର ରିଡ଼ର,* ଅମୀୟ ଚକ୍ରବର୍ତ୍ତୀ, ଦି ମ୍ୟାକ୍‌ମିଲନ୍ କମ୍ପାନୀ, ନ୍ୟୁୟର୍କ, 1961 ।
10. *ଟାଗୋର ବାଇ ଫାୟାରସାଇଡ଼,* ମୈତ୍ରେୟୀ ଦେବୀ, ରୂପା ଆଣ୍ଡ କମ୍ପାନୀ, କଲିକତା, 1961 ।

11. *ଦି ଲ୍ୟାଟର୍ ପୋଏମ୍‌ସ ଅଫ୍ ଟାଗୋର,* **ଶିଶିର** କୁମାର ଘୋଷ, ଏସିଆ ପବ୍ଲିସିଙ୍ଗ୍ ହାଉସ୍, ବମ୍ବେ, 1961 ।

12. *ରବୀନ୍ଦ୍ରନାଥ ଟାଗୋର : ଏ ବାଇଓଗ୍ରାଫି,* **କୃଷ୍ଣ** କୃପାଳିନୀ, ଅକସ୍‌ଫୋର୍ଡ଼ ୟୁନିଭରସିଟି ପ୍ରେସ୍, ଲଣ୍ଡନ, 1961 ।

13. *ଦି ଲ୍ୟୁଟ୍ ଆଣ୍ଡ ଦି ପ୍ଲାଓ : ଏ ଲାଇଫ୍ ଅଫ୍ ରବୀନ୍ଦ୍ରନାଥ ଟାଗୋର,* ଜି.ଡ଼ି. ଖାନୋଲ୍‌କର, ଦି ବୁକ୍ ସେଣ୍ଟର, ବମ୍ବେ, 1963 ।

14. *ଆନ୍ ଆର୍ଟିଷ୍ଟ ଇନ୍ ଲାଇଫ୍ : ଏ କମେଣ୍ଟାରୀ ଅନ୍ ଦି ଲାଇଫ୍ ଆଣ୍ଡ ୱାର୍କସ୍ ଅଫ୍ ରବୀନ୍ଦ୍ରନାଥ ଟାଗୋର,* ନିହାର ରଂଜନ ରାୟ, ୟୁନିଭରସିଟି ଅଫ୍ କେରଳ, ତ୍ରିଭେନ୍ଦ୍ରମ୍, 1967 ।

# ଶବ୍ଦ-ସୂଚୀ

Lasertypeset at OMKAR, Bhubaneswar and Printed at J.J. Offset Printers, Delhi